# ଭାତ ଓ ବିଲାତ

(ଭ୍ରମଣ କାହାଣୀ)



ଓଡ଼ିଶା ବୁକ୍ ଷ୍ଟୋର

ବିନୋଦବିହାରୀ, କଟକ—୨

# BHATA-O-BILATA

*By* :

UDAYANATH MISHRA

*Published by* :

**GOVIND CHARAN PATRO**

**Orissa Book Store**
Binodbehari, Cuttack-2

*First Edition* : 1979

*Printed at* :
**Sri Radhanath Co-op. Press**
Balubazar, Cuttack-2

**Price : Rs. 30-00**
**Hard Bound : Rs. 35 00**

# ଭାତ ଓ ବିଲାତ

ଲେଖକ :

**ଉଦୟନାଥ ମିଶ୍ର**

ପ୍ରକାଶକ :

**ଗୋବିନ୍ଦ ଚରଣ ପାତ୍ର**
ଓଡ଼ିଶା ବୁକ୍ ଷ୍ଟୋର
ବିନୋଦବିହାରୀ, କଟକ-୨

ପ୍ରଥମ ପ୍ରକାଶ : ୧୯୭୯

ମୁଦ୍ରଣ :
ଶ୍ରୀ ରାଧାନାଥ କୋ-ଅପରେଟିଭ ପ୍ରେସ
ବାଲୁବଜାର, କଟକ-୨

**ମୂଲ୍ୟ : ଟ ୩୦-୦୦**
**ବନ୍ଧାଇ ସହ ମୂଲ୍ୟ : ଟ ୩୫-୦୦**

## ଶରୀରଂ ବା ପାତୟେତ୍ ବାର୍ତ୍ତଂ ବା ସାଧୟେତ୍

ବମ୍ବେ ବନ୍ଦରରେ ହୁଲୁ ସ୍ଥୁଲୁ କାଣ୍ଡ । ଶହ ଶହ ଲୋକ ଜମା ହୋଇଥାନ୍ତି, କେତେ ରଙ୍ଗରେ, କେତେ ବେଶରେ । ପୁଣି ଗୋଟାକୁ ଗୋଟା ମୋଟର ଗାଡ଼ି ମାଡ଼ିଆସୁଥାଏ ଜାହାଜ ଘାଟରେ । ବନ୍ଧୁବାନ୍ଧବଙ୍କ ଗହଣରେ ତହିଁରୁ ଓହ୍ଲାଇ ପଡ଼ୁଥାଆନ୍ତି କେତେ ଯୁବକ-ଯୁବତୀ, କେତେ ପ୍ରୌଢ଼-ପ୍ରୌଢ଼ା, କେତେ ବୃଦ୍ଧ-ବୃଦ୍ଧା, ବିଦେଶ ଯାତ୍ରାର ଯାବତୀୟ ମାଙ୍ଗଳିକ ସଙ୍କେତ ଦେହରେ ଧରି, ପାଥେୟ ଓ ଅନ୍ୟାନ୍ୟ ଆସବାବକୁ ସଜାଡ଼ି ସୁଜାଡ଼ି । କାହା ଭାରତୀୟ ସୌନ୍ଦର୍ଯ୍ୟର ନମୁନା କୁଞ୍ଚିତ କେଶରେ ଏବେ ବି ପୂଜା ଓ ହୋମର ସୂଚନା ଶୁକ୍ଳତଣ୍ଡୁଳ ବିଦ୍ୟମାନ, କାହା ଅବିସ୍ମୃତ ଲଲାଟରେ ବିରାଟ ଚନ୍ଦନ ଟୋପା । କାହା ଉନ୍ନତ କପାଳରେ ସୀମନ୍ତିନୀ-ସୁନ୍ଦର କ୍ଷୀଣ ସିନ୍ଦୂର ଗାର । ଏହି ମାଳାସୂତ୍ର ରୂପାନ୍ତିତ ମନୁଷ୍ୟ ସମୁଦ୍ରର ଦୁର୍ବାର ତରଙ୍ଗମାଳ ତୁହାକୁ ତୁହା ମାଡ଼ି ଆସୁଥାଏ । ବନ୍ଦରଟା ଏକବାରେ ଲୋକାରଣ୍ୟ । କିଛି ସମୟ ପରେ ସମସ୍ତେ ହେବେ ସାଗର-ପଥର ଯାତ୍ରୀ । କିଏ କାହାର ଉଦ୍ଦେଶ୍ୟ—କିଏ କରିବ ପି-ଏଚ୍-ଡ଼ି (Ph. D.) କିଏ କରିବ ଏଫ-ଆର୍-ସି-ଏସ୍ (F. R. C. S.) କିଏ ଭାରତରେ ପଢ଼ିଛି ଏମ୍. ଏ. ବା ଏମ୍. ଏସ୍ସି ପୁଣି ବିଲାତରେ ଆରମ୍ଭ କରିବ ଡ଼ିଗ୍ରୀଆଡ଼ୁ । ଫେରିଲେ ଲେଖିବ ବି.ଏ. (ଅକସନ୍) ବା ବି. ଏସ୍ସି. (କାଣ୍ଟାବ୍) । କିଏ ହେବ ବାରିଷ୍ଟର । କିଏ ବା ଆଉ କଣ ପଢ଼ିବ । କିଏ ବା କିଛି ବ୍ୟବସାୟ ଉଦ୍ଦେଶ୍ୟରେ ବାହାରିଛି । ଆଗରୁ ତ

ସବୁ ବ୍ୟବସାୟ ସାହେବମାନେ ଏକ ପ୍ରକାର ଏକଚାଟିଆ କରିଥିଲେ । ଦେଶ ସ୍ୱାଧୀନ ହେଲାରୁ ଦେଶୀ ଲୋକଙ୍କୁ ସୁବିଧା ମିଳୁଛି । ତେଣୁ ଆରମ୍ଭ କରିଛନ୍ତି ଭାରତୀୟ ଆଚାର (Indian Pickles) କମ୍ବା ଲଙ୍କା ମରିଚ ରସ(Chilli Sauce)ରୁ ବେପାର, ବଣିଜ ।

କିଏ ଯିବ ବିଲାତ, କିଏ ଯିବ ଲଣ୍ଡନ ଦେଇ ଆମେରିକା । କୁଆଡ଼େ ସେ ସବୁ ଦେଶ ? ସମସ୍ତେ ଦେଖିଚନ୍ତି ମାନଚିତ୍ରରେ । କେତେଜଣ ଅବା ସେ ପବିତ୍ର ଭୂଇଁରେ ପାଦ ଦେଇଥିବେ । ନହେଲ ମୋ ପରି ପ୍ରାୟ ସମସ୍ତଙ୍କୁ ସେସବୁ ଦେଶ ଅଦେଖା ଅଜଣା । ଶୁଣିଚନ୍ତି ଖାଲି ବିଲାତ ଆମେରିକାର ନାଁ, ତାର ଯଶ-ମହିମା କିନ୍ତୁ କେମିତି ସେ ? ତାର କୋଠାବାଡ଼ି କୁଡ଼ିଆ-ପଡ଼ିଆ ଆମରି ଦେଶ ପରି ନା ସେ ପୁରୀ କୁବେର ପୁରୀ ? ଯେଉଁମାନେ ସେ ଦେଶ ଥରେ ମାଡ଼ିଚନ୍ତି ସେମାନେତ ପ୍ରଶଂସାରେ ପଞ୍ଚମୁଖ, ସବୁ ସୁନ୍ଦର ସବୁ ଅପୂର୍ବ । ଦୁଃଖ-ଦାରିଦ୍ର୍ୟ ନାହିଁ । ବେକାର ଭିକାରୀ ନାହାନ୍ତି । ବାଃ, ବଡ଼ ଚମତ୍କାର ତ !

ପୁଣି ଲୋକ ଗୁଡ଼ାକ ନିହାତି ସଚ୍ଚୋଟ । ହକରମାନେ ରାସ୍ତା କଡ଼ରେ ଖବର କାଗଜ ଥୋଇ ଦେଇଥିବେ । ଯେ ଚାହିଁବ ତାର ମୂଲ୍ୟ ରଖିଦେଇ ଖବର କାଗଜ ନେଇଯିବ । ଶେଷରେ ଦେଖିଲାବେଳକୁ ହିସାବ ଠିକ୍ । ଯେବେ ଏ ଅଧେ ଅଧିକା ଥିବ ପଛେ କମ୍ ନୁହେଁ । ସତେ ! ବଡ଼ ଆଶ୍ଚର୍ଯ୍ୟ କଥା ତ ! ଆମ ଦେଶରେ ତ ଲୋକେ ପଇସା ଦେଖିଲେ ପକେଟ୍ ମାରୁଚନ୍ତି, ହାତରୁ ଛଡ଼େଇ ନେଉଚନ୍ତି । ପୁଣି କଣନା ଦେଶଯାକ ଚକ୍ ଚକ୍, ଝକ୍ ଝକ୍, ମଇଳା ବୋଲି ଟିକେ ନାହିଁ । କିଏ ଯଦି କେଉଁଠି କୋଣି ମଞ୍ଜି କି କାଗଜ ଖଣ୍ଡେ ପକେଇଦେଲା ତେବେ ଅନ୍ୟ ଲୋକ ଦେଖିଲେ ତାକୁ ଗୋଟାଇ ଡଷ୍ଟବିନ୍‌ରେ ପକାଇଦେବେ । କି ସହଯୋଗ ! କି ସଭ୍ୟତା !

ବାହାରିଛନ୍ତି ସମସ୍ତେ ବିଦେଶ ଉଦ୍ଦେଶ୍ୟରେ । କିନ୍ତୁ କାହା ମନରେ ନିମିତ୍ତ କିଛି ଦୁଃଖ ନାହିଁ । କାହିଁକି ବା ନହେବ ! ଦୁଃଖ-ଦୈନ୍ୟ-ଭରା ଏ ଭାରତ ଭୂଇଁ ଛାଡ଼ି ଯିବେ ବିଲାତ ବା ଆମେରିକା । ମାନମର୍ଯ୍ୟାଦା ହେଉ ବା ନହେଉ ଶିଖିବେ କେତେ ଆଦବ କାଏଦା । କରିବେ କେତେ

ମଉଜ ମଜଲିସ୍ । ଫେରିବେ ପୂରା ସାହେବଙ୍କ ଢ଼ଙ୍ଗରେ ! ସବୁଟା ଯେପରି ସ୍ୱର୍ଗ-ସୁଖ ପରି ମନେ ହେଉଛି । ତେବେ ସେଠି ପାଇପ୍ ଶୋଷିବେ କି ଚିରୁଟ୍ ଧରିବେ, ବୋ ଲଗେଇବେ କି ଟାଇ ବାନ୍ଧିବେ ଇମିତି କେତେଟା ଛୋଟିଆ ବଡ଼ ସମସ୍ୟା ମନକୁ ଯେ ଆଲୋଡ଼ନ କରୁ ନଥିବ ତା ନୁହେଁ । ତେବେ ଏଇଲେ ସେ ଚିନ୍ତା କାହିଁକି ? ଆଗ ସେ ସୁଖ-ସୌନ୍ଦର୍ଯ୍ୟର ନନ୍ଦନକାନନକୁ ଚାଲ । ତା'ପରେ ମନଲାଖି ଫୁଲ ତୋଳିବା କଣ କଷ୍ଟ ହେବ ।

କେହି ଜଣେ ଗୁଜୁରାଟୀ ନନ୍ଦନ, ବିରାଟ ବ୍ୟବସାୟୀଙ୍କର ଏକମାତ୍ର କୁଳାଙ୍କୁର, ଡାକ ନା ଭୂଟା କିନ୍ତୁ ସେ ଆଦୌ ମୋଟା ନୁହନ୍ତି, ବାହାରିଚନ୍ତି ବିଲାତ ଅଭିଯାନରେ । ପଢ଼ିବେ ଲ , ଫେରିଲେ କରିବେ ଇନକମ୍ ଟାକ୍ସର ପ୍ରାକଟିସ୍ । ଜ୍ଞାତି-ସ୍ୱଜନ କି ଗୋଷ୍ଠୀ ଭିତରୁ ସାତ ପୁରୁଷରେ କେହି ଯାଇ ନାହାନ୍ତି ଏ ଦେଶ ଛାଡ଼ି । ତେଣୁ ସେମାନେ ଏ ବିଦେଶ-ଯାତ୍ରାକୁ ମୋଟାମୋଟି ଏକ ଜାତୀୟ ଉତ୍ସବରେ ପରିଣତ କରିଦେଇଥାନ୍ତି । ବହୁ ପୁରୁଷ- ସ୍ତ୍ରୀ, ଶିଶୁ-ବୃଦ୍ଧ ଗଣ୍ଡା ଗଣ୍ଡା ଫୁଲହାର, କର୍ପୂରମାଳ ଧରି ପହଞ୍ଚି ଯାଇଥାନ୍ତି । ଗଣ୍ଡା ଗଣ୍ଡା ଭଙ୍ଗା ଖାଉଥାଏ ନଡ଼ିଆ । ପୁଣିବି ଭୂମ୍ ଭାସ୍ ଚାଲିଥାଏ ।

ଏ ନଡ଼ିଆ ବଧ କାମଟା ଆମ ଦେଶର ଗୋଟେ ବିଶେଷତ୍ୱ ! ଭାରତ ତମାମ୍ ଯୁଠିକି ଯାଅ ନଡ଼ିଆ ନ ହେଲେ ଅନୁକୂଳ, ମଙ୍ଗଳ-କାମ ନାସ୍ତି । ଏ ଆମ ସଭ୍ୟତାର ଚିହ୍ନ କି ଅସଭ୍ୟତାର ଲକ୍ଷଣ ଜାଣେନି । ହୁଏତ ଏ ଦେଶରେ ବେଶୀ ନଡ଼ିଆ ହୁଏ । ଜନଷଟି ଖାଇବାକୁ ଭାରି ମିଠା । ତେଣୁ ଆମ ପୂର୍ବ ପୁରୁଷମାନେ ଚତୁରତା ଦେଖେଇ ଏଟାକୁ ଯୋଡ଼ି ଦେଇଚନ୍ତି ସବୁ ପୂଜାଉଜାରେ, ସବୁ ପର୍ବପର୍ବାଣୀରେ । ପ୍ରଭୁ ଗଜାନନ ଓ ମା ବୀଣାପାଣୀଙ୍କର ଏଟା କୁଟି ଭାରି ପ୍ରିୟ । ତେଣୁ ଗଣେଶ ଚତୁର୍ଥୀ ଓ ସରସ୍ୱତୀପୂଜାରେ ମଣ୍ଡେ ଅସଂଖ୍ୟ ନଡ଼ିଆ ବଳି । ହେଲେ ପିଲେ ଯଦି ଖାଇବେ ସତେଇ ବି ରଖିବେନି । ତେଣୁ ନିଷେଧ ଆଜ୍ଞା, ଏ ନଡ଼ିଆ ଖାଇଲେ ପାଠ ଆସିବନି । ଫଳରେ ଅବଧାନଙ୍କର ଗୁନ୍ଦା ଟଙ୍କା, ଲୁଗାପଟା ଛଡ଼ା ପ୍ରଚୁର ବେଣ୍ଟା ଲଗା ଲିଆ ଆଉ ଅସୁମାରି ଭଙ୍ଗା ନଡ଼ିଆ ଏସବୁ ପୂଜାରେ ଆଦାୟ ! କି ଅପୂର୍ବ ବ୍ୟବସ୍ଥା !

ଗୁଜରାଟୀ ନନ୍ଦନଙ୍କ ଜ୍ଞାତି ପରିବାର ସହିତ ଆସିଥାନ୍ତି ତାଙ୍କ କୁଳ-ପୁରୋହିତ । ବିରାଟ ନାଶ, ବିକୃତ ପଗଡ଼ି, ପଢ଼ୁଥାନ୍ତି ମନ୍ତ୍ର ଅନବରତ ସଂସ୍କୃତ, ହିନ୍ଦୀ, ଗୁଜୁରାଟୀ ଏମିତି କଣ ମିଶାମିଶି । ଖାଲି ଶୁଣାଯାଉଥାଏ ଓଁ ମଙ୍ଗଳଂଆହିହ ମଙ୍ଗଳଂ...... । ପଚାରୁ ଥାନ୍ତି ବାରକୁ ବାର ବିକଳ ଭାବରେ ସମୟ କେତେ ହେଲା ? କାରଣ ମାହେନ୍ଦ୍ର ବେଳାରେ ଅନୁକୂଳ କରିବାକୁ ପଡ଼ିବ । ସେ ଯଦି ଏ ଧୁମ୍‌ଧାମ୍ ଭିତରେ କେତେବେଳେ ଖସିଯାଏ ତେବେତ ମହା ଅସୁବିଧା ।

ବନ୍ଦରରେ ଆଉ ଟିକିଏ ଗହଳି ଘନେଇ ଆସିଲା । ଜାହାଜ ଛାଡ଼ିବ ଖୁବ୍ ଅଳ୍ପ ସମୟ ପରେ । ଦେଶରୁ ବିଦାୟ ନେବା ମୁହୂର୍ତ୍ତ ପ୍ରାୟ ଆସିଗଲାଣି । କେତେକଙ୍କ ମୁଖରେ ମହା ଦୁଃଖର ଛାଇ । ହଳେ ଯୁବକ-ଯୁବତୀ, ବୈବାହିକ ସମ୍ବନ୍ଧ ବୋଧହୁଏ ବେଶୀ ଦିନର ନୁହେଁ, ତାର ଏକମାତ୍ର ସଙ୍କେତ ମହିଳାଙ୍କ କୋଳରେ ଶିଶୁ ସନ୍ତାନଟି ।ଦୁହିଁଙ୍କ ମୁହଁରେ ବ୍ୟଥାର ଚିହ୍ନ । ହେଲେ ମହିଳା ଜଣକ ଯେପରି ଦୁଃଖରେ ଭାଙ୍ଗି ପଡ଼ୁଥିଲେ । କଥାକହିବାକୁ ମନବଳ ନଥାଏ । ଖାଲି ବିକଳ କାନ୍ଦଣା ଉଠୁଥାଏ ଅସ୍ପଷ୍ଟ ଦୋହଲାଇ । ଯୁବକଟି ନାନା କଥା କହି ତାଙ୍କୁ ପ୍ରବୋଧ ଦେଉଥାନ୍ତି । ପୁଣି ଯାତ୍ରାର ଆୟୋଜନରେ ଲାଗିପଡ଼ୁଥାନ୍ତି । ହେଲେ ଘଟଣାଟା ତାଙ୍କୁ ବେଶୀ ବାଧୁ ନଥାଏ । କାଇଁକି ବା ବାଧିବ ? ସେତ ଯିବେ ବିଲାତ ବିହାରରେ, କେତେ ମଉଜ ସଜଲସ୍‌ରେ ଦିନ କାଟିବେ, କେତେ ନୂଆ ପ୍ରେମିକା ପ୍ରେୟସୀ ଯୁଟିବେ । ଯେବେ ମନ ଖୁସି-ହେବ ଫେରିବେ । କିନ୍ତୁ ଯୁବତୀଙ୍କ ଭାଗ୍ୟରେତ ଏ ସୁଯୋଗ ସମ୍ଭବ ନୁହେଁ । କେଜାଣି ! ଆମ ଦେଶବି ବିଳାସି ସଭ୍ୟତାରେ ବହୁଦୂର ଆଗେଇଲାଣି ।

ଭାରତ ଭୂଇଁ ଛାଡ଼ିବାର ବେଳ ଆଗେଇ ଆସୁଥାଏ । ବିଲାତ ଯିବାର ଯେତେ ମୋହ ଥିଲେବି ମନଟା ମୋର ଯେମିତି ବିକଳ ହୋଇ ଉଠୁଥାଏ । କୁଆଡେ ରହିଲା ମୋ ପ୍ରିୟ ପରିବାର କୁଆଡେ ରହିଲେ ମୋ ଆତ୍ମୀୟସ୍ୱଜନ । ସେମାନେ କିମିତି ଅବସ୍ଥାରେ ଥିବେ । ମୋ ବିରହରେ କେତେ ଦୁଃଖ ହେଉ ନଥିବ ତାଙ୍କ ମନରେ । ପଶ୍ଚିମ ଦିଗକୁ ଚାହିଁ ସେମାନେ ହୁଏତ ମୋ ଯାତ୍ରାର ବେଳା ହିସାବ କରୁଥିବେ ! କୁଆଡେ

ରହିଲାଣି ମୋ ଓଡ଼ିଶା ଭୂଇଁ ! ସେ ବନ-ପାହାଡ଼ ସେ ଗଛ ବଣ ତ ମୋ ଆଖିରେ ଆଉ ପଡ଼ୁନ । କାହାନ୍ତି ସେ ଚିରଦରିଦ୍ର ଓଡ଼ିଆ ଲୋକ ! ଏତେବଡ଼ ଜନଗହଳିରେ କେହିତ ଜଣେ ଆପଣାର ପରି ଜଣା ପଡ଼ୁନାହାନ୍ତି । ସମସ୍ତେ କୋର୍ଟ-ପ୍ୟାଣ୍ଟ-ପିନ୍ଧା ଫିଟ୍ ବାବୁ । ଏଟା ବମ୍ବେ ସହର; ପୁରୀ, କଟକ କି ବାଲେଶ୍ୱର ନୁହେଁ । ସତେ ଯେପରି ଅଧଲଙ୍ଗଳା ଚିର ଭୋକିଲା ମୋ ଦେଶବାସୀଙ୍କୁ ଦେଖିବାକୁ ମନ ବିକଳ ହୋଇଉଠିଲା । କାଇଁ ସେମିତିକ କେହି ଦିଶୁ ନାହାନ୍ତି ! ଅବୁଝାମନରେ ଏକ ଅଦ୍ଭୁତ ଚିନ୍ତା ! ଏଠିତ କେତେ ଦେଶୀ ବିଦେଶୀ ସାହେବ, କେତେ ଭଲ କି ଭଲା ପୋଷାକ ପିନ୍ଧା ବାବୁ ଜମା ହୋଇଛନ୍ତି । ଆଉ ସେ ଧଡ଼ିଆ ଓଡ଼ିଆ ଏଠିକି ଆସିବେ କୁଆଡ଼ୁ !

କଷ୍ଟମସ୍ ଅଫିସ୍ ଅନୁଭୂତିଟା ଦେଶ ଛାଡ଼ିବା ଆଗରୁ ଟିକେ ବେଆଡ଼ା ଲାଗେ । ଆଗରୁତ ସମସ୍ତେ ଫର୍ମ-ପତ୍ର ପୂର୍ଣ୍ଣ କରିଦେଇଥାନ୍ତି । ତା'ପରେ ଆରମ୍ଭ ହୁଏ ଜେରା । ସାଙ୍ଗରେ କଣ ଅଛି ? କଣ ନଉଚ ? କୁଆଡେ ଯାଉଚ ? କଏବା କଣ ନବ ଏ ଗରିବ ଦେଶରୁ ! କଏ କମିତି କିଛି ଗୁଣ୍ଡି କି ଗୁଡ଼ାଖୁ, କିଛି ମସଲା ମସଲି, କିଛି ଖଟା ଆଚୁର ନେଇ ଯାଉଥାନ୍ତି ବିଲାତରେ ଥିବା କୌଣସି ବନ୍ଧୁବାନ୍ଧବ ବା ଆତ୍ମୀୟ ସ୍ୱଜନଙ୍କ ପାଇଁ । ସେମାନେ ଯେତେ ବିଲାତରେ ରହିଲେ ବି, ଯେତେ ବିଲାତି ହେଲେବି ଜାତିର ଏ କୁ-ଅଭ୍ୟାସଗୁଡ଼ିକ ଛାଡ଼ିପାରିନାହାନ୍ତି । ବିଲାତରେ ଯେତେ ଯାହା ମିଳିଲେ ବି ଗୁଣ୍ଡି ଦିଆ ପାନ ଖିଲେ ନ ଖାଇଲେ ମନ ଖୁସି ହୁଏନ । ଗୁଡ଼ାଖୁ ବିନାତ ବହିର୍ଭୂମି ବନ୍ଦ । ତାପରେ ଆଁଚୁର, ଖଟା ଦେଇ ସେଠି ପହିଲୋ ପହିଲୋ ପଥ୍ୟ କରିବାକୁ ହୁଏ । କାରଣ ତେଲ-ମସଲା ବହୁଳ ତରକାରି ଖିଆ ପାଟିକୁ ସେଠାର ପିଖାମିଠି ଅନ୍ନ-ବ୍ୟଞ୍ଜନ ଆଦୌ ଭଲ ଲାଗେନ ।

ଅଳ୍ପ କେତେ ସମୟ ପରେ ବାହାରେ ଥିବା ବାକି ଯାତ୍ରୀଙ୍କ ଜାହାଜକୁ ଉଠିଲେ । ସାଙ୍ଗେ ସାଙ୍ଗେ ତା'ର କାଠ କୋଠରୀଗୁଡ଼ିକ ଆହୁରି ବେଶିମୁଖର ହୋଇପଡ଼ିଲା । ଆତ୍ମୀୟ-ସ୍ୱଜନମାନେ ସେମାନଙ୍କ ଶେଷ ସମ୍ବର୍ଦ୍ଧନା ଓ ଶୁଭେଚ୍ଛା ଜଣାଇବାରେ ଲାଗିପଡ଼ିଥାନ୍ତି । କୁଟି କାନ୍ଦକଟା

କେଉଁଠି ଖୁସି ଗପ ଲଗିଯାଇଥାଏ । ସେ ଗୁଜୁରାଟୀ ନନ୍ଦନଙ୍କ ଜନ୍ମଷଣ୍ଢ ସଜାଡ଼ିବାରେ ଲଗିଥାନ୍ତି ତାଙ୍କର ଅଗଣିତ ଆତ୍ମୀୟ ସ୍ୱଜନ ଓ ପରିବାରବର୍ଗ-ବୃନ୍ଦ । କେତେ କଣ ଆସିଥାଏ କେତେ କଣ ଆସୁଥାଏ । ତେବେ ବି ବହୁତ ବାକି ରହିଚି । ତେଣୁ ଲଗିଥାଏ ପାଟିତୁଣ୍ଡ, ଗାଳିଗୁଲା । ଏତେ ବଡ଼ ଅନୁକୂଳ କଣ ଗୋଳମାଳ ହୋଇଯିବ । ନା ସେ କୌଣସି ମତେ ଗାଡ଼ିରେ ଦୌଡ଼ିଯାଇ ଆଣ । ନଚେତ୍ ପ୍ଲେନରେ ଏଡେନ୍ ବା ପୋର୍ଟ ସୟୂଦ୍‌କୁ ଆଜି ଜଣେ କାହାକୁ ପଠାଇବାକୁ ପଡ଼ିବ ଯାହା ଖର୍ଚ୍ଚ ହେଉ ।

ହେଲେ ମୁଁ ନିହାତି ଏକା ! କେହି ଦୁଃଖ ପ୍ରକାଶ କରି ବିଦାୟ ଦେବାକୁ ଆସିନି, କି ଏଠି କେହି ମୋ ପାଇଁ ଶୋକ ପ୍ରକାଶ କରୁନି ମୋର ଆସନ୍ନ ବିରହରେ ବ୍ୟଥିତ ହୋଇ । ମୁଁ ମୋ କୋଠରୀରେ ଚୁପ୍ ହୋଇ ବସିଥାଏ । କୁଆଡେ ଯାଉଚି, କଣ ପାଇଁ ଘର ଛାଡ଼ି ଅଇଲି, ସିମିତି କିଛି ନିଷ୍ପତ୍ତି କରି ପାରୁନି । ଗୋଟିଏ ହଟରେ ଆଶା, ଆକାଙ୍କ୍ଷା ଅନ୍ୟ ହଟରେ ଚିନ୍ତା, ଭାବନା ସବୁଟା ମିଶି ମୁଣ୍ଡ ଭିତରେ ଭୂମିକମ୍ପ ଗୋଳମାଳ ସୃଷ୍ଟି କରୁଥାନ୍ତି । ଭାଦ୍ରମାସର ଚଲା ବଉଦ ପରି କେତେ କଣ ମନ ଭିତରେ ଖେଳିଯାଉଥାଏ । କ୍ଷଣକ ପରେ ସବୁ କୁଆଡ଼େ ଉଭେଇଯାଇ ପୁଣି ଆସେ କେତେ କଣ ଭାବନା ! ଭାବନା, ଭାବନା ଖାଲି ଭାବନା !

ମୋର ବରିଆପାରି ଶିକ୍ଷା ନେଇ ଜୀବନରେ ଏମିତି ଗୋଟେ ଝଡ଼ଝଞ୍ଜା ବୋହିଗଲା ଯେ ଆଗପଛ ନ ଭାବି ଏହି ବିଲାତ ଯାହାରେ ହଠାତ୍ ବାହାରିପଡ଼ିଲି । ହେଲେ ଅବୁଝା ମନର କେଉଁ କଣରେ କି ଅସନ୍ତୋଷ ରହିଯାଇଥାଏ । ସେ ବାହାରି ପଡୁଥାଏ ବହୁ ଦୀର୍ଘ ନିଶ୍ୱାସ ଦେଇ । ପୁଣି ମନଟାଣ କରି ଅଣ୍ଟା ଭିଡୁଥାଏ କର୍ତ୍ତବ୍ୟ ପଥରେ ଆଗେଇ ଯିବାକୁ । ତଥାପି ନିଜ ଦେଶର ମାୟା, ଭିଟାମାଟିର ମୋହ ଛାଡ଼ିବାକୁ ମନ ଯେମିତି ବଳୁ ନଥାଏ ।

ଗତ ପୁଣି ଉଷୁନା ଗତ ! ଏ ଜନ୍ମଷଣ୍ଢାକୁ ମୁଁ କେବେ ବଡ଼ କରି ଦେଖିନି । ଧାନ ଉଷୁଆରେ ଗୁଡ଼ଉଳର କେତେ ସାର ଯାଏ । ପୁଣି ରନ୍ଧା ହେଲେ ଟେକି ଗଳାଯାଏ । ତେଣୁ ସେ ଘାସମଞ୍ଜି ଗୁଡ଼ିକରେ ଆଜି

ବଙ୍ଗକର କଣ ରହେ ! ତା'ପରେ ପଖାଳ ! ଉଷୁନା ଚାଉଳ ରାନ୍ଧ ସେଥିରେ ପଖାଳ କରିବାର ଉଦ୍ଦେଶ୍ୟ କଣ ଥାଇପାରେ ? ହୁଏତ ଅଳ୍ପ ଚାଉଳ ରାନ୍ଧିଲେ ବେଶୀଭାତ ହେବ । ସାମାନ୍ୟ ଖର୍ଚ୍ଚରେ ପେଟ ପୂରେଇ ହେବ, ବିନା କିଛି ତିଅଣ, ତରକାରୀରେ ବା ଦରକାର ହେଲେ ଖାଲି-ଲୁଣ ଲଙ୍କା ପିଆଜ ଦେଇ ଖାଇବାକୁ ବୋଧହୁଏ ଏ ପଖାଳର ସୃଷ୍ଟି ! ଏକ ସଙ୍ଗେ ଖାଦ୍ୟ ଓ ପେୟର ବ୍ୟବସ୍ଥା । ଗରିବ ଓଡ଼ିଆ ଲୋକଙ୍କର ସମ୍ବଳ ତୋରାଣି-ପଖାଳ । ଗଣ୍ଡେ କୁଣ୍ଡାକୁଣ୍ଡାଚ ପକେଇ ଗୋରୁଙ୍କୁ କୁଣ୍ଡେ ମୁହାଁଇବା ପରି କୌଣସି ମତେ ପେଟ ପୂରାଇବା ଫିକର । ଦେଖନା ପଞ୍ଜାବୀମାନଙ୍କୁ । ରୁଟି-ଡାଲି ଖାଇ କମିତି ତାଗଡ଼ା ହେଇଚନ୍ତି, ଜବରଦସ୍ତ ବପୁ ବୁହାଇଚନ୍ତି । ଦେଖନା ତେଲଗୁ ମାନ୍ଦ୍ରାଜୀଙ୍କୁ । ଅରୁଆ ଚାଉଳ ଭାତ ଓ ଚୁଚୁ-ଚଲ୍ଲା, ଇଡ଼ିଲି ଦୋଷା ଖାଇ କି ଟାଣ ହେଇଚନ୍ତି । ରିକ୍‌ସାବାଲାଙ୍କଠାରୁ ଆରମ୍ଭ କରି ବଡ଼ ଦପ୍ତରର ହାକିମ ପର୍ଯ୍ୟନ୍ତ ବହୁତ ଦକ୍ଷିଣୀ । ଆମ ଓଡ଼ିଶାରେ ଗୁନ୍ଦ ହୋଇଗଲେଣି । ବେଶୀ ଖଟନ୍ତି, ବେଶୀ ଉଦ୍ୟମ କରିପାରନ୍ତି । ତେଣୁ ଖାଲି ଓଡ଼ିଶା ନୁହେଁ ଭାରତର ଚାରିଆଡ଼େ ସେମାନେ ଚେନ୍ଦିଗଲେଣି । ଆଉ ଦେଖନା ମାରୱାଡ଼ି ଓ ଗୁଜୁରାଟୀଙ୍କୁ । ଖାଲି ତେଲିଆ ଜିନିଷ ପୁରି-ଲୁଚି ସର-ଲହୁଣୀ ଖାଇ କି ବପୁ ପାଇଚନ୍ତି । ଖାଲି ଏହୁଁ...

କିନ୍ତୁ ଯୁଠି ଧଡ଼ିଆ ଓଡ଼ିଆଙ୍କୁ ଦେଖ ଉଷୁନା ଭାତ ବା ପଖାଳଖାଇ ଦୋହଲି ଦୋହଲି ଚାଲୁଥିବେ, ଧୀର ମନ୍ଥର ଗତିରେ । କାମ କଲାବେଳେ ଶୋଇଲା ପରି ମନେହେବ । ଶୋଇଲେ ମଲାପରି ଜଣାପଡ଼ିବ । ରାସ୍ତାରେ କାମ କରୁଥିବା ମୂଲିଆ, ରିକ୍‌ସାବାଲା, ଅଫିସ୍ ହାକିମ ଯେଉଁ ଓଡ଼ିଆକୁ ଦେଖ ସେଇ ଉଷୁନା ଭାତ, ପଖାଳଖିଆ ଢଙ୍ଗ, ସେଇ ଉଷୁନା ଭାତ ପଖାଳଖିଆ ଚେହେରା !

ହେଲେ କେଜାଣି କାହିଁକି ସେଇ ଉଷୁନା ଭାତ ପ୍ରତି ବଙ୍ଗାଳ ବାହାରିବା ଆଗରୁ ମୋର ଅସୀମ ମମତା ଫୁଟିଉଠିଲା । ଠିକେ ଠିକେ କଥାରେ କହିଉଠିଲି, ଭାତ ଗଣ୍ଡିଏ ଖାଇବା । ପୁଣି କେଉଁଠି କେବେ ମିଳିବ କି ନାହିଁ । ସେଇ ବଗଡ଼ା ଭାତ ପଖାଳ ପାଣିରେ ଗଙ୍ଗା ଏ ଦେହଟା ବୋଧହୁଏ ଆଗାମୀ ବଙ୍ଗାଳ ସୁଲଭ ଅନ୍ନ ବ୍ୟଞ୍ଜନ ଓ

ଢଙ୍ଗରଙ୍ଗ ବିପକ୍ଷରେ ବିରୋଧ କରିଉଠୁଥିଲା । ବିଚିତ୍ର ଏ ରକ୍ତର ବିପ୍ଳବ କରିବାର କ୍ଷମତା ।

ଘର ସାଙ୍ଗକୁ ପାନଟା ଓଡ଼ିଆଜାତି ଆତିଥ୍ୟର ଏକ ଅପୂର୍ବ ଉପାଦାନ । ଧନୀଠାରୁ ଗରିବ ପର୍ଯ୍ୟନ୍ତ ଯାହା ଘରକୁ ଯାଅ, ଯାଚିଦେବେ ବା ଦେଇଦେବେ ଖଣ୍ଡେ ପାନ । କିଏ ଅଛି ସେ ଗଗୁଆ ପରରେ କେଜାଣି !

ତା' ସଙ୍ଗରେ ଗୁଆ । ଓଃ କି ଠାଣି ! ଖାଲି ଦାନ୍ତ-କସରତ ସାମଗ୍ରୀ । ପୁଣି ଖଇର, କଥା, କେତକୀ ବା ସାଧା ଖାଇବାକୁ ପିଠା, ପାଟିକୁ କରେ ନାଲି । ପୁରୁଷମାନଙ୍କୁ କରେ ବିମ୍ବୋଷ୍ଠ, ସ୍ତ୍ରୀମାନଙ୍କୁ କରେ ଜବାଧର୍ମା, ବିଲାତି ଲିପିଷ୍ଟିକ୍‌ର ଦରକାର ନାହିଁ । ପାଟିଟାକୁ ସବୁବେଳେ କରେ ରଙ୍ଗୀନ୍ ରସଭରା । ସେଥିସାଙ୍ଗକୁ ଅନେକଙ୍କର ଗୁଣ୍ଡି, ଭଜା ବା କଞ୍ଚା । ପୁଣି କେତେ ପ୍ରକାର ମିଠା-କଡ଼ା ମସଲା ମୋହିନୀ ଜରଦା, କେଶରୀ କମାମ୍, ଲକ୍ଷ୍ମୀ ବଟି, କବାଉଚିନି, ଜାଇଫଳ, ପେପରେମେଣ୍ଟ, ଅଳେଇଚ, ଗୁଜୁରାତି, ଜହରପତି, ତରଙ୍ଗମୁକ୍ତି ଇମିତି କେତେ କଣ ଦେଇ ତିଆରି ହୁଏ ପାନ । ଏ ବିଚିତ୍ର ରଙ୍ଗ ପୁଡ଼ିଆ ତିଆରି କରିବାରେ କି କାରସାଦି ! କେତେ ପ୍ରକାରେ ମୋଡ଼ା ହୁଏ । ରଜପର୍ବ ସମୟରେ ଦେଖିବ କେତେ କିସମର ପାନ । ହେଲେ ଖାଇବାକୁ ଭାରି ମଜା ଲାଗେ । ଖଣ୍ଡେ ପାଟିରେ ପୂରେଇ ପିକ ପିଚ୍ ପିଚ୍ ମାରି ଦଉଥିବ । ଯୁଁଠି ପଡ଼ିବ, ସେଠାରେ ଅକାଳ ହୋଲି ଖେଳର ବ୍ୟବସ୍ଥା । "ମୋ ପୁଅ ପରି, ମୋ ଧଡ଼ ମରି କିଏ ହେବ ! ପାନ ଖାଇ ପିକ ପକଉଥିବ ଲୋ···" ମା ମାନେ ପୁଅକୁ ଗେହ୍ଲାକରି ଗୀତ ବୋଲନ୍ତି ।

ସେଇ ପାନଟା ! ମୁଁ ସେମିତି ଓସ୍ତାଦ୍ ପାନଖିଆଳି ନୁହେଁ । ଶୋଇଲା ବେଳେ କଳରେ ପାକେନି, କି ରାତି ଅଧରେ ଉଠି ଚକଆଡ଼ଳି ଦରାଣ୍ଡେନି । ତେବେ ବି ଦିଗୁଣ ଖଣ୍ଡ ଯାହା ଖାଏ ତା ପ୍ରତି କିଛି କମ୍ ମମତା ଜାଗି ଉଠିନଥାଏ । ସତରେ ମୋତେ ବେଶ୍ ମଜା ଲାଗିଲା ସେ ପାନ, ବିଲାତ ନିବା କଥା ଉଠିଲାକ୍ଷଣି । ଦେଶ ଛାଡ଼ିବା ଆଗରୁ ମୁଁ ମୁଁ'ର ପ୍ରଶଂସାରେ ପଞ୍ଚମୁଖ ହୋଇ ଉଠିଲି । ବଡ଼ ବଢ଼ିଆ ଜିନିଷ ଏ ପାନଟା ।

କେତେ ପ୍ରକାର ଟାଣ-ନରମ କଡ଼ା-ମିଠା, ରଙ୍ଗ-ବେରଙ୍ଗ ଜିନଷରେ ତିଆରି ଏ ଅପୂର୍ବ ପଦାର୍ଥକୁ ପୂର୍ବ ପୁରୁଷ ଆମପାଇଁ ସୃଷ୍ଟି କରିଯାଇଛନ୍ତି। ଖୁବ୍ ଶସ୍ତା ବି। ପୂରା ନିଶାପଦ ନହେଲେ ବି ସିଗାରେଟ୍‌ପରି କଲିଜା ଖରାପ କରେନି କି ଅଫିମ ଗଞ୍ଜେଇ ପରି ମତୁଆଲା କରେନି। ତଥାପି ବେଶ୍ ଉତ୍ସାହ ଉଦ୍ଦୀପନା ଦିଏ। ତାପରେ ଏଥିକୁ ନେଇ କେତେ ସାହିତ୍ୟ-ସଙ୍ଗୀତର ସୃଷ୍ଟି। କଉଡ଼ିଆ ପାନ ଖଣ୍ଡେ ନହେଲେ କବିତା-ନାଟକ କି କାହାଣୀ-ଉପନ୍ୟାସ ଲେଖିବା ଏକବାରେ ଅସମ୍ଭବ। କମ୍ ଅଡୁଆ ବି ନୁହେଁ ଏହାର ଆୟୋଜନ। ଥରେ କିଏ ଗୁରୁଜଣ ବନ୍ଧୁ ଏକାଠି ବସିଥିଲେ। ବରାଦ କରି ଦେଲେ ଚାକରକୁ ବଜାରରୁ ପାନ ଆଣିବା ପାଇଁ-ଅଖଇରିଆ, ଖଇରିଆ, ଅଳ୍ପ ଖଇର, ବେଶୀ ଖଇର, ଭଜାଗୁଣ୍ଡି, କଞ୍ଚାଗୁଣ୍ଡି, ଧୂଳଗୁଣ୍ଡି, ବୋତଲ ଗୁଣ୍ଡି, ସାମାନ୍ୟ ମୋହମା ଜରଦା, ବେଶୀ ଗୋଲ ଜରଦା, ମଧ୍ୟ ଭଲଆ କିମାମ୍, ବେଶୀକରି ସୁବାସପତ୍ର, ଗୁଣ୍ଡଗୁଆ, ବଡ଼ ବଡ଼ ଗୁଆ ଇମିତି କେତେ କଣ। ଗଣିତଜ୍ଞ ହେଲେ ବି ପାଗଳ ହୋଇଯାନ୍ତି! ଚାକର କି ଏଥିକି ଭାଜନ!

ସେଇ ପାନଟା! ବନ୍ଧୁମାନେ ବୋଧେ ମୋ ମନର ଭାବ ବୁଝିପାରିଥିଲେ। ଆଦରରେ ଆଣି ପକେଟରେ ପୂରେଇ ଦେଲେ ମୋର ପ୍ରିୟ କିମାମ୍‌ଦିଆ ପାନ, ଦଶପନ୍ଦର ଖଣ୍ଡ ଉପହାର ଛଳରେ କଟକ ଷ୍ଟେସନରେ। ସେସବୁ ସଜାଡ଼ି ରଖି ସ୍ୱଭାବତ ଟେଳା-ପାଳୁଳ ଆରମ୍ଭ କରିଦେଲି। ମନେ ମନେ ଭାବୁଥାଏ, ଖରାପ କଣ? ବିଲାତ ଗଲେ ବୋଲି ମୋର ଜାତୀୟ ବ୍ୟସନ ଗୁଡ଼ାକ ଛାଡ଼ିବି କାହିଁକି? ଆମେ ସ୍ୱାଧୀନ ହୋଇଚୁ, ଆମର ଯାହା ପ୍ରିୟ ଚର୍ବ୍ୟ ଚୋଷ୍ୟ ଯେସବୁ ତା' ଆମେ ନିଶ୍ଚୟ ବ୍ୟବହାର କରିବୁ। ସେଥିରେ ସିନା ଆମ ଜାତୀୟ ଭାବ ପ୍ରକାଶ ପାଇବ। ବିଲାତ ଯାଉଚି ବୋଲି ସିଗାରେଟ୍ କି ପାଇପ୍ ଧରିବି କାହିଁକି? ଏ ପାନ ଯଦି ବିଲାତରେ ମିଳନ୍ତା ନା, ଖଣ୍ଡକୁ ଖଣ୍ଡ ଚୋବେଇ ମହା ଉଲ୍ଲାସରେ ଠାଣିରେ ପିକ୍ ପିଚ୍ ପିଚ୍ ସାହେବଙ୍କ ଆଗରେ ପକାନ୍ତି!

ଯେଉଁ ବନ୍ଧୁବାନ୍ଧବମାନେ ଆଗରୁ ବିଲାତ ଯାଇଥିଲେ ସେମାନେ ମତେ ସମୁଦ୍ର-ବେମାରି ସମ୍ବନ୍ଧରେ ବହୁ ପ୍ରକାର ତାଗିଦ୍ କରି ଦେଇଥାନ୍ତି।

ମୁଣ୍ଡ ବୁଲେଇବ, ବାନ୍ତିହବ, କିଛି ଖୁଆଇ ହବନି । ଖାଇଲେ ପେଟରେ ରହିବନି । ତେଣୁ ସାଙ୍ଗରେ କିଛି କାଗଜି ଲେମ୍ବୁ ଓ ଔଷଧ ନେଇ ଯିବାକୁ ହେବ । ଏପରି କରିବାକୁ ହେବ ସେପରି କରିବାକୁ ହେବ ଇତ୍ୟାଦି । ବାପ୍‌ରେ ବାପ୍ ! ଏତେ କଥା । ବିଲାତ ଯାତ୍ରାଟା ଏଭରେଷ୍ଟ ଶୃଙ୍ଗ ଆରୋହଣ ବା ଇଂଲିଶ ପ୍ରଣାଳୀ ସନ୍ତରଣ ଅଭିଯାନଠାରୁ କଠିନ ।

ଦେଶ ଛାଡ଼ିବା ଆଗରୁ କେତେ ଜଣ ନିମନ୍ତ୍ରଣ କଲେ । କେତେ ଭୋଜି ହେଲା । ଘରେ ବି ଖିଆପିଆଟା ଧୁମ୍‌ଧାମ୍‌ରେ ଚାଲିଲା । ମୁଁ କିନ୍ତୁ ଜୋର ଦେଇଥାଏ ସେଇ ଭାତ ଉପରେ । ଯିବା ଦିନ ଏଣୁ ତେଣୁ କରି ବେଶ୍ ପେଟେ ପେଟେ ଦୁଇତିନିଥର ପକେଇଲି । କଟକ ଷ୍ଟେସନରେ ବନ୍ଧୁ ବାନ୍ଧବ ଓ ଆତ୍ମୀୟ ସ୍ୱଜନଙ୍କ ସମାଗମ ହେତୁ ଟିକିଏ ଦୋହଲ ପାହଲ ହେବାକୁ ପଡ଼ିଲା । ନାନା ମନସ୍ତାପ ଦୁଃଶ୍ଚିନ୍ତା ଭିତରେ ପୁରୀ-କଲିକତା ଏକ୍‌ସ୍‌ପ୍ରେସ୍ ଗାଡ଼ି ଧରିବାପରେ ଯେତେବେଳେ ଜାଗ୍ରତ ଭାବରେ ଅନୁପ୍ରାଣିତ ହୋଇ କଡ଼ା କିମାମ୍‌ଦିଆ ପାନ ଖଣ୍ଡେ ଚଢ଼େଇ ଦେଲି, ଆରମ୍ଭ ହୋଇଗଲା ବାନ୍ତି । ଖାଲି ଅ-ଅ- । ଆଉ ବନ୍ଦ ନହୁଏ । କି ଆଶ୍ଚର୍ଯ୍ୟ ! ସମୁଦ୍ର ରୋଗରୁ ରକ୍ଷା ପାଇବା ପାଇଁ ନାନା ପ୍ରକାର ଉପକରଣ ଧରି, ନାନା ଭାବେ ସାବଧାନ ହୋଇ ବାହାରିବା ପରେ ଏ ଗର୍ଭଧାରଣ ଲକ୍ଷଣ କାହିଁକି ଆରମ୍ଭ ହୋଇଗଲା । କଣ ଘରକୁ ଫେରିଯିବି ! ଏତ ଯମା ବନ୍ଦ ହେଉନି । ପରେ ପରେ ଝାଡ଼ା ମାଡ଼ିଲା । ସର୍ବନାଶ । ଏତ ହଇଜା ଲକ୍ଷଣ । କିନ୍ତୁ ଶୋଷତ ନାହିଁ । ସାଙ୍ଗେ ସାଙ୍ଗେ ଭରି ଶୋଷ ଲାଗିଲା । ଗିଲାସେ ଦି'ଗିଲାସ ପାଣି ପିଇଲି । ପୁଣି ବାନ୍ତି ! କଣ ଚେନ୍ ଟାଣି ଦେଇ ଓହ୍ଲେଇ ପଡ଼ିବି ! କିନ୍ତୁ ମୁଁ କେଉଁଠି ? ଏତ ଘୋରଅନ୍ଧାର ଅନ୍ଧାର । ବାଟରେ ପଡ଼ି ମଲେତ ବିଲୁଆ କୁକୁର ଖାଇଯିବେ । ନା ମିଛଟାରେ କାହିଁକି ଏମିତି କୋକୁଆ ଭୟ ! ସତରେ କଣ ହଇଜା ହୋଇଯାଇଛି ନା ମୁଁ ମରିଯାଉଛି । ମୋର ସ୍ୱାସ୍ଥ୍ୟତ ବେଶ୍ ଭଲ । ସେ ଯାହା ହଉ ବିଲାତ ମିବ ଯିବ ଯିବ ! ମୋ ମନ ସହିତ ତାଳ ମିଳେଇ ହାଓଡ଼ା ଏକ୍‌ସ୍‌ପ୍ରେସ୍ ଧୁ ଧୁ ଆଗକୁ ମାଡ଼ି ଚାଲିଲା, ଏମିତି ଯିବ ଯିବ କହି । ଚାଲୁ ଯେତେ ଜୋର୍‌ରେ ପାରେ । ଆଗ ଷ୍ଟେସନ ଯାଏ ଯାଉ । ଦେଖିବା କଣ ହଉଛି । ମନକୁ ପ୍ରବୋଧ ଦେଲି, ଦମ୍ଭ ବାନ୍ଧିଲି ।

ରାତ୍ତିର ଅନ୍ଧକାର । ବର୍ଷା ବି ଟୁପୁଟୁପୁ ପଡୁଥାଏ । ଗାଡ଼ି ଯେତେବେଳେ ଆଉ ଥୋଡ଼ାଏ ବାଟ ଆଗେଇ ଗଲା କେଜାଣି କାହିଁକି ମନ ଭିତରେ ଗୋଟେ କୋକୁଆ ଭୟ ଜାଗି ଉଠିଲା । ଦେହଟା ଅଗ୍ନେୟ ଭାବରେ କମ୍ପି ଉଠିଲା, ପୁଣି ବାନ୍ତି ଆରମ୍ଭ ହୋଇଗଲା । କଣ ହେଲା, କଣ କରିବି ! ଯାତ୍ରା ଆରମ୍ଭରୁ ତ ଏ ବିପଦ । ପରେ ଭାଗ୍ୟରେ କଣ ଅଛି କିଏ କହିବ ! ବିଲାତ ଯାତ୍ରା ମତେ ସହିବନି କି !

ଜଣେ କିଏ ଭଲ ସାଥୀ ମିଳନ୍ତା କି, ତେବେ ନାନା ଦୁଃଖସୁଖ ଗପ କରି ବେଳ କଟିଯାଆନ୍ତା ଏବଂ ତାହାରି ମନ ଭିତରେ ଏ ଯେ ନାନା ଦୁଃଶ୍ଚିନ୍ତାର ଝଡ ଉଠିଛି ସେଥିରୁ ରକ୍ଷା ମିଳନ୍ତା ! ଫାଷ୍ଟ କ୍ଲାସ୍ ସିଟ୍ ଉପରେ ଗୁଡ଼ିକାଡ଼ି ଲମ୍ବେଇ ପଡ଼ିଯାଇ ମୁଁ ଭାବୁଥାଏ ।

କେତେ ସମୟ ପରେ କୌଣସି ଷ୍ଟେସନରୁ ଜଣେ ଭଦ୍ରଲୋକ ମୋ ଡବାକୁ ଉଠିବା ଦେଖି ବଡ଼ ଆଶ୍ୱସ୍ତ ହେଲି । କିନ୍ତୁ ନିରେଖି ଦେଖେ ତ ସେ ଜଣେ ଦେଶୀ ପାଦ୍ରୀବାବା । ଲମ୍ବା ପଞ୍ଜାବି, ବେକରେ ମାଳା, କୁଆଡେ ଧର୍ମ ପ୍ରଚାର କି ଜନସେବା କାର୍ଯ୍ୟରେ ଯାଇଥିଲେ । ରାତି-ବିକାଳ ଫେରିଯାଉଛନ୍ତି ବୋଧହୁଏ ତାଙ୍କ ପୀଠସ୍ଥଳୀକୁ । କିଛି ନକହି ନକରି କୁଳଠାରୁ ବିଛଣା ନେଇ ସିଟ୍ ଉପରେ ଲମ୍ବେଇ ଦେଲେ । ସାଙ୍ଗେ ସାଙ୍ଗେ ଲମ୍ବ ହୋଇ ଶୋଇ ପଡ଼ିଲେ । ମୋ ପରି ଗୋଟେ ଜୀବ ଯେ ସେ ଘରେ ଅଛି ସେ ବିଷୟରେ ଆଦୌ ସଚେତନ ଥିଲାପରି ଜଣାଗଲାନି ।

ମୁଁ ମଉକା ଖୋଜୁଥାଏ କେମିତି କଥାବାର୍ତ୍ତା ଆରମ୍ଭ କରି-ଦେବି । ହେଲେ ବାଟ ପାଉନଥାଏ କିମିତି ବନ୍ଧୁତା ପାତିବି ସେ ଧର୍ମପ୍ରାଣ ପାଦ୍ରୀବାବାଙ୍କ ସାଙ୍ଗରେ ! ମାତ୍ର ଏଥି ଭିତରେ ସେ ମହାଶୟ ସୁଖ ନିଦ୍ରାଯାଇ ଘୁଙ୍ଗୁଡ଼ି ଆରମ୍ଭ କରିଦେଇଥାନ୍ତି । ବୋଧହୁଏ ବହୁତ ସ୍ଥାନରେ ବକ୍ତୃତା କରି କରି ଥକି ଯାଇଥିଲେ ତେଣୁ ଗାଡ଼ ଛୁଉଁ ଛୁଉଁ ନିଦ ଘୋଟିଆସିଲା । ହଉ ଶୁଅନ୍ତୁ । ଦେଶପାଇଁ ଧର୍ମ ପାଇଁ କେତେ କଷ୍ଟ ସହୁଚନ୍ତି ! ମୁଁ ବି ଶୁଏ । ହେଲେ ମତେ ନିଦ ଆସିଚି କି ନାହିଁ କେଜାଣି କେତେ ସମୟ ପରେ ଭାବିଲି ରାତି ଶେଷ ହେବା ଉପରେ ! ତରତରରେ

ଉଠି ଗାଡ଼ିରେ ଗାଧୁଆ ପାଧୁଆ କାମ ସାରିଦେଲି । କଲିକତାର କାର୍ଯ୍ୟକ୍ରମ ପାଇଁ ପ୍ରସ୍ତୁତ ହେବାକୁ ପଡ଼ିବ । ସେଠି ବିଦେଶ ପାଇଁ ଯାହା ବିଦେଶୀ ମୁଦ୍ରା ଆବଶ୍ୟକ ତାକୁ ବ୍ୟବସ୍ଥା କରି ପୁଣି ସେଇଦିନ ସନ୍ଧ୍ୟାରେ ବମ୍ବେ ଉଦ୍ଦେଶ୍ୟରେ ଗାଡ଼ି ଧରିବାକୁ ହେବ ।

ହାବଡ଼ା ଷ୍ଟେସନରେ ମୋର ଜୋଇଁ ବାବୁ ରଘୁନାଥ ଆଉ ତାଙ୍କର ଜଣେ ବନ୍ଧୁ ମୋତେ ପାଛୋଟି ନେବାକୁ ଉପସ୍ଥିତ ଥିଲେ । ତାଙ୍କୁ ଦେଖି ମନ ପ୍ରଫୁଲ୍ଲ ହୋଇଉଠିଲା । ମୁଁ ଯେ ସୁଦୂର ବିଦେଶଯାତ୍ରାର ପଥିକ ସେଇଟା ପାଶୋରି ସେମାନଙ୍କ ଗହଣରେ କେତେ ଘଣ୍ଟା ସୁଖରେ କଟାଇଲି । ହେଲେ ସେମାନଙ୍କଠାରୁ ବିଦାୟ ନେଇ ଯେତେବେଳେ ବମ୍ବେ ମେଲ ଧରିଲି ମନଟା ଯେମିତି ଅସ୍ଥିର ହୋଇ ପଡ଼ିଲା । ଘର ସହିତ ଶେଷ ସମ୍ପର୍କଟା ଏଇଠି ଯେପରି କଟିଗଲା ।

ଏଥର ସାଥୀ ମିଳିଥାନ୍ତି ଜଣେ ବୃଦ୍ଧ ବଙ୍ଗାଳି ଡାକ୍ତର । ଝିଅ ଓ ନାତିଙ୍କୁ ଧରି ଯାଉଥାନ୍ତି ପୁନା । ସେଠି ଜୋଇଁ ସୈନ୍ୟ ବିଭାଗରେ କାମ କରନ୍ତି । ତାଙ୍କ ପାଖରେ କେତେ ଦିନ ଆରାମ କରିବେ । ସରକାରୀ ଚାକିରି ପରେ ନେଇଚନ୍ତି ଅବସର । ଅଉ ଚିନ୍ତା କଣ ! ଭଦ୍ରଲୋକ ଜଣେ ଦୁର୍ଦ୍ଦାନ୍ତ ଗପୁଡ଼ି । ସାଙ୍ଗେ ସାଙ୍ଗେ ନାନା ଗପ ଆରମ୍ଭ କରିଦେଲେ । ତାଙ୍କର ନାତି ସହିତ ମୁଁ ଟିକିଏ ଆତ୍ମୀୟତା ଜମେଇ ଦେଇଥାଏ । ଏମିତି କୌଣସି ମତେ ସମୟ କଟିଲା ।

ଅନ୍ୟ ସମୟରେ କୁଆଡ଼େ ରେଲ୍‌ରେ ବୁଲାବୁଲି କରିବାକୁ ବା କର୍ମ ଜଞ୍ଜାଳରେ ଗଲେ ମୁଁ ଗବାକ୍ଷଦେଇ ଚାହିଁ ରହେ ବାହାରର ଉନ୍ମୁକ୍ତ ପ୍ରକୃତିକୁ ଏବଂ ତାର ଶୋଭା ନିରୀକ୍ଷଣରେ ନିଜକୁ ହଜେଇଦିଏ । ହେଲେ ଆଜ ସେସବୁ ମୋହ ସେମିତି ନଥିଲା । ମାତ୍ର ଗାଡ଼ି ଯେତେବେଳେ ପଶ୍ଚିମଘାଟ ପର୍ବତ ଦେଇ ଗଡ଼ିକଲା, ଆଖି ଦି'ଟା ତେଣିକି ଆପେ ଆପେ ଟାଣି ହୋଇଗଲା । ସେ ଚିରଶ୍ୟାମଳ ବନଶୋଭା, ସେ ଗିରିନିର୍ଝର, ସ୍ୱେଚ୍ଛା ବିହାରୀ ପଶୁପକ୍ଷୀଙ୍କ ଅବାଧ ବିଚରଣ ଦେଖି ମୁଁ ବଡ଼ ଅଭିଭୂତ ହୋଇ ପଡ଼ିଲି । ବାଃ, କି ଚମତ୍କାର ! ହେଲେ ଗାଡ଼ିଟା ତୀବ୍ର ବେଗରେ ଛୁଟିଛି ।

ମନ ଭିତରେ ମହା ଝଡ଼ଝଞ୍ଜା । ସେ ପ୍ରାକୃତିକ ଦୃଶ୍ୟ ଉପଭୋଗ କରିହେଉଚି କେତେବେ !

ବମ୍ବେରେ ପହଞ୍ଚିବା ପରେ ଗୋଟେ କମିତି ଉଦାସଭାବ ମନ ଭିତରେ ଖେଳିଗଲା । ଓଡ଼ିଶା ଭୂଇଁ ବହୁ ଦୂରରେ ଗ୍ଡିଆସିଲିଣି ! ପୁଣି ଫେରିବି କେବେ, କମିତି ଫେରିବି ! ଘର ଏତେ ଦୂରରେ ରହିଲାଣି । ରହୁ ଯେତେ ଦୂରରେ ସେଥିପାଇଁ ଏତେ ଅନୁଶୋଚନା କାହିଁକି । ମୁଁ ତ ସେତିକି ବାଟ ପାଖେଇ ଆସିଚି ମୋର ବହୁଆକାଙ୍କ୍ଷିତ ସେ ବିଲାତ ଦେଶର । ତେବେ ବି ଯେପରି ମନରେ ଆନନ୍ଦ ନାହିଁ, ଉତ୍ସାହ ନାହିଁ । ଯନ୍ତ୍ରଚାଳିତ କୁଣ୍ଢେଇ ପରି କଣ କରୁଚି । ଗୋଟେ କଣ ହବାକୁ ଯାଉଚି । ହଉ, ଯାହା ହଉଚି ।

ବମ୍ବେରେ ରହିବାକୁ ଆଗରୁ ବୁଝି ନେଇଥାଏ ଗୋଟିଏ ଓଡ଼ିଆ ହୋଟେଲର ଠିକଣା, Sea hotel । ସେଠି ଯାଇଁ ଜିନିଷପତ୍ର ରଖିଦବା ପରେ ମନରେ ଟିକେ ଆନନ୍ଦ ଆସିଲା । ଯାହାହଉ ଓଡ଼ିଆ ଲୋକ ଦେଖିବାକୁ ମିଳିବେ । ଓଡ଼ିଆରେ କଥା କହିବା ସମ୍ଭବ ହେବ । ଆଉ ଖାଇବାକୁ ମିଳିବ ଭାତ, ଡାଲି, ତରକାରି । ମିଳିଲା ମଧ ସେଇଆ, ଖଟା ଭଜା ସବୁ । ଏଇଟା ଯେପରି ନିରୁତ୍ସାହ ଜୀବନରେ ସାମାନ୍ୟ ଉଦ୍ଦିପନା ସୃଷ୍ଟି କରିଦେଲା ।

ଯେଉଁଦିନ ଜାହାଜ ଛାଡ଼ିବ ସେ ଦିନ ସକାଳୁ ଉଠି ହୋଟେଲର ଝରକା ଭିତରଦେଇ ଚକିତ ହୋଇ ବମ୍ବେ ବନ୍ଦରର ବାଲାର୍ଡ ପାପ୍ପାର ଆଡ଼କୁ ଚାହିଁଦେଲି । ବୁଝିଲି ଆମ ଜାହାଜ ଆସି ଠିଆ ହେଇଛୁ । ଖୁସି ହେବି କି ଦୁଃଖିତ ହେବି ଠିକ୍ କରିପାରିଲିନି । ଆଉ କେତେ ଘଣ୍ଟା ପରେ ଏ ଜାହାଜ ମତେ ଧରି ବିଲାତ ଅଭିମୁଖରେ ଚାଲିବ । ପଛରେ ରହିଯିବ ଓଡ଼ିଶା ଦେଶ, ଭାରତ ଭୂଇଁ । କେତେ କାଳ ପାଇଁ ମୋ ପ୍ରିୟ ଆତ୍ମୀୟ ଲୋକଙ୍କ ମୁହଁ କୁଆଡେ ଲୁଚିଯିବ । ଅଜଣା ଅଶୁଣା ଦେଶ ଓ ଲୋକଙ୍କ ଭିତରେ ସମୟ କାଟିବାକୁ ପଡ଼ିବ ।

ଜାହାଜଯାତ୍ରା ଏ ମୋର ପ୍ରଥମ । ଆଗରୁ ଥରେ ବିଶାଖାପାଟଣାରେ ଗୋଟିଏ ଭାରତୀୟ ଜାହାଜ ଭିତରେ ବୁଲି ତହିଁର

ସବୁ ବ୍ୟବସ୍ଥାପନ ଭିତରେ ଯେତେବେଳେ ସେ ପାଇଖାନା ଓ ଗାଧୋଇବାଘର "Gentlemen" and "Ladies" ଦେଖିଲି ଏକବାରେ ମୁଗ୍‌ଧ ହୋଇଗଲି । କି ସୁନ୍ଦର ଜାହାଜ, କି ସୁନ୍ଦର ଏହାର ବ୍ୟବସ୍ଥା । ସତେ ଯେମିତି ରାଜପ୍ରାସାଦ । କେବେ କିଣ ଏଥିରେ ବସିବାର ସୌଭାଗ୍ୟ ମିଳିବ, ସେତେବେଳେ ଭାବୁଥିଲି ।

ସେ ସୌଭାଗ୍ୟତ ଆଜି ମିଳିଛି । ତଥାପି ମନରେ ଆନନ୍ଦ ନାହିଁ ଉତ୍ସାହ ନାହିଁ । କିନ୍ତୁ କାହିଁକି ? ଯଦି ଏ ବିଲାତ ବିହାର, ସାହେବୀ କାରବାରରେ ମନନାହିଁ ତେବେ ଏତେ ଦୂର ଆସିଗଲି କାହିଁକି ? ଏତେ କୃଚ୍ଛ୍ର ସାଧନା କରୁଛି କ'ଣ ପାଇଁ ? ବାସ୍ତବିକ୍ ଏ ପ୍ରଶ୍ନଟା ଯେମିତି ମନକୁ ଗୋଳେଇ ଘାଣ୍ଟି ପକଉଥାଏ ।

ଇଂରେଜମାନେ ଏ ଦେଶକୁ ଆସିବା ଆଗରୁ ଆମ ଲୋକେ କେମିତି ଆତ୍ମନିର୍ଭରଶୀଳ ହୋଇ ଚଳୁଥିଲେ କେଜାଣି କିନ୍ତୁ ଇଙ୍ଗ୍ଲିଶ୍ ଶାସନ, ଇଙ୍ଗ୍‌ଲିଶ ଭାଷା, ଇଙ୍ଗ୍‌ଲିଶ ଆଦବ-କାଏଦା ଏ ଦେଶରେ ପଶିବାପରେ ଯାହା ଦେଖାଯାଇଛି, ଯାହା ଶୁଣାଯାଇଛି ସେଥିରୁ ମନେହେବ ଏ ଲୋକଙ୍କୁ ଯେମିତି ବିଲାତ-ସନ୍ତ୍ରାସକ-ରୋଗ ଧରିଛି । ବିଲାତ ନାଁ ପଡିଲେ, ସାହେବଙ୍କୁ ଦେଖିଲେ ଧନ୍ୟଧନ୍ୟ କରି ଉଠୁ ଆମ୍ଭେମାନେ । ସ୍ୱାଧୀନତା ମିଳିବା ଆଗରୁ ଭାରତଟା ଯିମିତି ବିଲାତଗତ ପ୍ରାଣ ହୋଇଥିଲି । ବିନା ସେ ଭୂଇଁରେ ପାଦ ପକେଇ ନ ଆସିଲେ କି ସେ ଦେଶରୁ ଦରବାରୀ ଆଦବ୍ କାଏଦା ଶିଖି ନ ଆସିଲେ ଏଠାରେ ଯେମିତି ଲୋକେ ପୂରା ଅଚଳ । ଯେ ଯେଉଁ ଅନୁପାତରେ ବିଲାତ ସହିତ ପ୍ରତ୍ୟକ୍ଷ ଓ ପରୋକ୍ଷ ସମ୍ବନ୍ଧ ରଖି ପାରିଥିଲା ସେ ସେଇ ଅନୁପାତରେ ବଡ ହୋଇପାରୁଥିଲା । ଏଦେଶରେ ବଡ ବଡ ହାକିମ, ରାଜା ମହାରାଜା ସମସ୍ତେ ଏଇ ଗୋଟିଏ ମାପରେ ଓଜନ ହେଉଥିଲେ ।

ସେ କାଳର ଲୋକଙ୍କ ଢଙ୍ଗରଙ୍ଗ କଥା ମନେପଡ଼ିଲେ ହସ ମାଡ଼େ । ଆମ ଦେଶୀ ଲୋକଗୁଡ଼ାକଙ୍କ ଭିତରୁ ଅନେକ ନିପଟ୍ଟ କଳା । ସାହେବ ଢଙ୍ଗ ଦେଖେଇ ନିରାଟ ଗ୍ରୀଷ୍ମଦିନରେ ବି ପିନ୍ଧନ୍ତି ତିନିପଟିଆ ପୋଷାକ (Three-piece suit) କୁନି କୋଟ୍, ବଡ କୋଟ୍, ପ୍ୟାଣ୍ଟ, ଟାଇ

ଇତ୍ୟାଦି । ଦେଡ଼େଇ ଦେଡ଼େଇ କହନ୍ତି କଥା, ଇଂରେଜ ନାଁଆରେ ବଙ୍ଗଳା, ତେଲଗୁ, ଓଡ଼ିଆ, ହିନ୍ଦି କି ସେମାନଙ୍କର ମିଶାମିଶି ଖେଚେଡ଼ି । ହସି ଦିଅନ୍ତି ଖାଣ୍ଟି ଗୋରା ଲୋକେ ଏ ଦେଶୀ ସାହେବଙ୍କ ବିଦେଶୀ ଠାଣି ଦେଖି । ସେଠାରୁ ଆଉରି ବଳିବ ଲାଗେ ଏମାନଙ୍କ ବ୍ୟବହାର ନିଜ ଦେଶି ଲୋକଙ୍କ ସାଙ୍ଗେ । କଥା କଥାକେ ଏମାନେ ବଡ ଜଲଦି କହି ଦିଅନ୍ତି ଡାମ୍ ସ୍ୱାଇନ୍ । ବୋଧହୁଏ ଏମିତି ବ୍ୟବହାର ତାଙ୍କ ପ୍ରଭୁମାନଙ୍କଠାରୁ ପାଆନ୍ତି । ତେଣୁ ତା'ର ପ୍ରତିଶୋଧ ନେବାକୁ ଠିକଏ ଆଉରି ଅଭଦ୍ର ଅସଭ୍ୟ ହେଇଉଠନ୍ତି ନିଜ ଦେଶ ଲୋକଙ୍କ ପାଖରେ । ଶାଶୁ ତା' ଶାଶୁଠାରୁ ଯେମିତି ବ୍ୟବହାର ପାଇଥାଏ ତାକୁ ଦେଡ଼ା ହାରରେ ଚଳେଇଦିଏ ବୋହୂ ଉପରେ ନିଜ ମନର ଅଭିମାନ ମେଣ୍ଟାଇବାକୁ ।

ଦୈବାତ୍ ଯଦି ଦେଶୀ ସାହେବ ମହାଶୟମାନ୍ତ କୌଣସି ମଫସଲ ଅଞ୍ଚଳରେ, ଗୁରଆଡେ ଗୋଟେ ଗୁଞ୍ଜନ ଖେଳିଯାଏ । ସେଠାର ସୁବିଧାନେଇ ଆରମ୍ଭ କରି ଦିଅନ୍ତି ଜୁଲୁମ୍ ଗ୍ରାମାଞ୍ଚଳର ହାକିମ ଓ ଟାଉଟରମାନେ ଚଉକିଆଠାରୁ ଆରମ୍ଭ କରି ଇଉନିୟନ ପ୍ରେସିଡେ଼ଣ୍ଟ ଓ ଥାନା ଦାରୋଗାଙ୍କ ପର୍ଯ୍ୟନ୍ତ । କେତେ ଗୃହା ଉଠେ, କେତେ ଛେଳି, କୁକୁଡା ହଣା ହୁଅନ୍ତି । କେତେ ପୋଖରୀରୁ ମାଛ ମରେ । ହାକିମଙ୍କ ଅନ୍ନାଗ୍ନି ଦିଜେ ପାଇଁ କେତେକଣ ମସୁଧା ଗୁଳେ । ଏଗୁଡା କଣ ସବୁ ଦେଶୀ ସାହେବ ଏକା ଭୋଗ କରନ୍ତି ? ତା ନୁହେଁ । ତାଙ୍କ ପାଖ ଆଖରେ ଥିବା ନନ୍ଦୀ ଭୃଙ୍ଗୀମାନେ ନିଜ ନିଜ ଭାଗ ନ ନେଇ ଗୁଡନ୍ତିନ । ଏଇ ଦେଶୀ ସାହେବ ଗୁଲିଗଲେ ଶାନ୍ତିରେ ନିଶ୍ୱାସ ମାରନ୍ତି ମଫସଲର ଗରିବ ନିଃସ୍ୱ ପ୍ରଜାଏ ।

ପିଲାଦିନର ଗୋଟେ କଥା ମନେ ପଡିଗଲା । ପଢ଼ୁଥାଏ ମୁଁ କାକଟପୁର ମାଇନର ସ୍କୁଲରେ, ଆଙ୍ଗ୍ଲୋ-ଓଡ଼ିଆ ପାଠ । ହଠାତ୍ ଦିନେ ଖବର ହେଲା ଆସୁଛନ୍ତି କଲେଟର ସାହେବ । ରହିବେ ଚକଡା କାନନଗୋଇଙ୍କ ଅଫିସ୍‌ରେ, ପରିଦର୍ଶନ କରିବେ ଆମ ସ୍କୁଲ ! ପଣ୍ଡିତଙ୍କ-ଠାରୁ ପିଲାଙ୍କ ପର୍ଯ୍ୟନ୍ତ ସମସ୍ତେ କର୍ମମୁଖର ହେଇପଡିଲେ । ହେଡମାଷ୍ଟର ଆମର ଆଶୁକବି । ଯୋଡିଦେଲେ ସାଙ୍ଗେ ସାଙ୍ଗେ ଉଦ୍‌ବୋଧନ ଗୀତିକା, ମହାମାନ୍ୟବର ଜିଲ୍ଲା କଲେଟର, ଶୁଭକ୍ଷଣେ ଆଗମନ··· ସାଙ୍ଗେ ସାଙ୍ଗେ

ଖଣ୍ଡେ ପୁରୁଣା ସିଙ୍ଗଲରିଡ୍ ହାରମୋନିୟମ୍ ଧରି ଆରମ୍ଭ ହୋଇଗଲା ସ୍ୱର ସାଧନା । ହେଲେ ମୁଁ ବଡ ବିବ୍ରତ ହୋଇପଡଥାଏ ଏଇ କଲେଟର ଶବ୍ଦଟା ନେଇ । କଣ ଏଇଟା ଇଂରାଜି ନୁହେଁ କି ଓଡଆ ନୁହେଁ । ଶୁଣିଲି ଏପରି କେତେଗୁଡିଏ ନିତାନ୍ତ ଦରକାରୀ ଇଂରେଜି ଶବ୍ଦକୁ ଏଇପ୍ରକାର ରୂପାନ୍ତରିତ କରିଛନ୍ତି ଉତ୍କଳମଣି ଗୋପବନ୍ଧୁ, କଲେଟର, ଡିପୋଟି ଇତ୍ୟାଦି । ବାଃ ବଢ଼ି ଚମତ୍କାର ରୂପାନ୍ତରିତ !

ଆଉରି ବି ବିବ୍ରତ ହୋଇପଡ଼ିଲି ଏଇ କଲେଟରଙ୍କ ପାଇଁ ହେଉଥିବା ଷୋଡ଼ଶ ଉପଚାର ପୂଜାର ବ୍ୟବସ୍ଥା ଦେଖି । କି ଧାଁଡପଡ କି ଜଞ୍ଜାଳ ଗୋଳମାଳ ! ଆମକୁ ମାଷ୍ଟ୍ରେମାନେ ବସେଇ ଉଠେଇ ଦେଉ ନ ଥା'ନ୍ତି, ଏଣିକି ଯା ତେଣିକି ଯା । ଯ୍ୟା ଆଣେ, ତା ଆଣେ ।

ପ୍ରଥମେ କଲେଟରଙ୍କ ମୁଖପାତ୍ର ଡିପୋଟି ସାହେବ ଗଜ ବାହନରେ ଆସି ପହଞ୍ଚିଗଲେ । ସାଙ୍ଗେ ସାଙ୍ଗେ ତାଙ୍କ ସନ୍ତୋଷ ପାଇଁ ନାନା ବ୍ୟବସ୍ଥା କରାଗଲା । ହବା ଉଚିତ୍ । ଜଗନ୍ନାଥଙ୍କ ପାଖରେ ପହଞ୍ଚିବା ଆଗରୁ ପ୍ରଥମେ ଗରୁଡ଼ ସ୍ତମ୍ଭରେ ତ ମୁଣ୍ଡିଆ ମାରିବାକୁ ହବ ।

କଲେଟର ସାହାବ ପରେ ମଟର ଯାନରେ ଆସିବା କଥା । ବାଟଯାକ ପୁଲିସ୍ ଚଉକିଦାର, ଦଫାଦାର କାନ୍ଧରେ ଠେଙ୍ଗା ପକାଇ ଜଗିଥାନ୍ତି, କାଳେ କେହି ଦୁଷ୍ଟ ଲୋକ ହଜୁରଙ୍କ ମଟର ଗଲାବେଳେ ରାସ୍ତାରେ ବୁଲିଯିବ କି ବଳଦଗାଡ଼ି ନେଇଯିବ । କି କୌଣସି ଅବାଧ ଗାଈଗୋରୁ କିଛି ପ୍ରତିବନ୍ଧକ ସୃଷ୍ଟି କରିବେ । ଅନେକ ଆଗରୁ ଜମିଦାର, ଇଉନିଅନ ପ୍ରେସିଡ଼େଣ୍ଟ, ସ୍ଥାନୀୟ ରାୟସାହେବ, ରାୟ ବାହାଦୂର ପଦବୀ ପ୍ରାପ୍ତ ବା ସେହି ପଦପ୍ରାର୍ଥୀ ଭଦ୍ରଲୋକ ଗୁଡ଼ିକ ସାହେବଙ୍କ ଚର୍ଚ୍ଚାର ଖାଦ୍ୟପେୟ ଉପଭୋଗ୍ୟ ଭେଟି ସାମଗ୍ରୀ ଜେଖା ଅଂଶ ମତେ ଧରି ପହଂଚି ଯାଇଥାନ୍ତି । ସେଠାର ଥାନା ଅଫିସରେ ବଡ ଭିଡ଼ ହୋଇଥାଏ । ବଡ ଚହଳ ପଡ଼ିଯାଇଥାଏ । ସତେ ଯିମିତି ଗୋଟେ ଯାନିଯାତ୍ରା, ସତେ ଯିମିତି ଗୋଟେ ଆନନ୍ଦ ଉତ୍ସବ ଆରମ୍ଭ ହୋଇ ଯାଇଛି ।

ଶେଷରେ କଲେଟର ସାହେବ ଯେତେବେଳେ ଖଣ୍ଡେ ନିହାତି ପୁରୁଣା ମଟର ଯାନରେ ପହଞ୍ଚିଯାଇ ଆମ ସ୍କୁଲରେ ପାଦ ଦେଲେ ।

ଆମେ ସେତେବେଳେ ତାଙ୍କ ଅପୂର୍ବ ରୂପ ଦର୍ଶନ କରିବାର ସୁବିଧା ପାଇଲୁ । ଆରମ୍ଭ କରିଦେଲୁ ମିଳିତ କଣ୍ଠରେ ଅବାହନ ସଙ୍ଗୀତ, ଅବଶ୍ୟ ହାରମୋନିୟମ୍ ଆମ ସ୍ୱର ଲହରୀର ଅନୁସରଣ କରୁଥାଏ । ମହାମାନ୍ୟବର ଜିଲ୍ଲା କିଲଟର···କଲଟର ଦେଖିବାକୁ ଘନକୃଷ୍ଣ, କେଶ ପୂରା ଶୁକ୍ଳ । ଦେହରେ ଅଖାପରି ଗୁଡ଼ାଏ ଲମ୍ବ ହୋଇଥାନ୍ତି । ହାତରେ ବାଡ଼ି ଖଣ୍ଡେ ଧରି ଆଣ୍ଠୁ ଜଖମ ହେଲା ପରି ଫରକଟା ଗୋଡରେ ଠିଆ ହୋଇଥାନ୍ତି । ଶୀତ ଦିନ ଆରମ୍ଭ ହୋଇଯାଇଥିଲେ ବି ପୋଷାକ ଦାଉରୁ ମୁଁହରୁ ଝାଳ ଝରି ଝରି ବହୁଥାଏ । ମୁଁ ଥାଏ ନିହାତି ମଫସଲ ପିଲା । ମୋ ପୋଷାକ ଭିତରେ ଆମ୍ବମାର୍କା ମାର୍କିନ୍ କନାର ହାଫ୍ ସାର୍ଟ ଖଣ୍ଡେ । ସେ ପୁଣି ଖରା ଶୀତ ସବୁଥିରେ ଚଳେ । ହେଲେ କେବେ ଥଣ୍ଡା ଲାଗିବା ଅନୁଭବ କରିନ । କଲଟରଙ୍କ ଏ ବେଶ-ବୋଝ ଦେଖି ମୋର ବଡ ଦୟା ହେଲା । ଭାବିଲି ଆହାହା ! ସାହେବ ହେବେ ବୋଲି କେତେ କଷ୍ଟ ପାଉଛନ୍ତି ଆମ ଦେଶ ଲୋକେ । ତେବେ କଣ ଏଇ ସାହେବ ହେବାକୁ ମୁଁ ବିଲାତ ବାହାରିଛି ? ନା, ସେ ସାହେବଗିରିରୁ କଣ ଦରକାର ? ଦେଶ ସ୍ୱାଧୀନତା ପାଇଲା । ଭାରତ ସର୍ବଭୌମ ସାଧାରଣତନ୍ତ୍ରରେ ପରିଣତ ହେଲା । ଆଉ ଏ ବିଦେଶୀ ପାଠ, ଆଦବ କାଏଦା, ଢ଼ଙ୍ଗରଙ୍ଗର ଦରକାର କଣ !

ଦେଶ ସ୍ୱାଧୀନ ହେଲେବି ବିଲାତ ମୋହ ଯିମିତି ବଢି ଯାଇଛି ଆମ ଦେଶ ଲୋକଙ୍କର । ନେଉଳକୁ ଅଫିମ ଖୁଆଇବା ଅଭ୍ୟାସ କରିଦେଲେ ସେ ବଣ ବୁଦାରେ ବୁଲିବା ଭୁଲି ବେଳା ଦେଖି ଘରକୁ ଚାଲିଆସେ ସେ ନୃଷ୍ଟ ଦ୍ରବ୍ୟକୁ ସେବା କରିବାକୁ । ଇଂରେଜମାନେ ଏ ଦେଶକୁ ତାଙ୍କ ଆଦବ କାଏଦା ଶିଖାଇ ସେମିତି ଏହାର ଆତ୍ମାଟା କିଣି ନେଇଛନ୍ତି । ଆଉ ଆମେ ଏଇ ବିଦେଶୀଙ୍କ ପାଖେ ସମର୍ପି ଦେଇଛୁ ଆମର ମନପ୍ରାଣ ସବୁ କିଛି । ଯେଉଁମାନେ ହେଲେ ଦେଶର ଅଧିନାୟକ ବା ଜନନାୟକ ସେମାନଙ୍କ ଭିତରୁ ଅନେକଙ୍କର ବିଲାତ ଓ ବିଲାତି ମୋହ ଯେମିତି ଅତି ବେଶୀ । ନିଜେ ପଛେ ବିଦେଶରେ ପାଦ ପକେଇ ନଥାନ୍ତୁ କିନ୍ତୁ ବିଦେଶୀ ପଢ଼ୁଆ, ବିଦେଶୀ ପୋଷାକଧାରୀଙ୍କ ପ୍ରତି ଏମାନଙ୍କର ଅସାମାନ୍ୟ ସମ୍ମାନ । ଏଇଟା ନିଶ୍ଚୟ ମାନସିକ ନ୍ୟୁନ ଭାବ

(Inferiority complex) । ଏ ଭାବ ବି ଆସିବା ସ୍ୱାଭାବିକ । କାରଣ ଯେଉଁମାନଙ୍କର ନିଜର ଶିକ୍ଷାଦୀକ୍ଷା ବା ଯୋଗ୍ୟତା ଯଥେଷ୍ଟ ନାହିଁ ସେମାନେ ପ୍ରକୃତ ଯୋଗ୍ୟତା କଣ ବୁଝିବେ କେଉଁଠୁ ?

ଗୋଟିଏ କଥା ମନେ ପଡ଼ିଲା । ଆମର ଜଣେ ବିଳାଷ ପ୍ରେମୀ ଜନନାୟକ ମୁଖ୍ୟମନ୍ତ୍ରୀ ଥାନ୍ତି । ହଠାତ୍ ଦିନେ ଫୋନ୍ ପାଇଲେ ପଶ୍ଚିମ ଜର୍ମାନୀରୁ ମିଃ ସ୍ୱିନ୍ ତାଙ୍କ ସଙ୍ଗେ ଦେଖା କରିବାକୁ ଆସୁଛନ୍ତି । ଆମ ମୁଖ୍ୟମନ୍ତ୍ରୀ ତ ଏ ଖବର ପାଇ ଏକଦମ୍ ଆନନ୍ଦରେ ବିଭୋର । ପି·ଏ· ମାନଙ୍କୁ ଡାକି ବାରମ୍ବାର ପ୍ରଚାର କଲେ, ତାଗିଦ୍ ଦେଲେ—ଦେଖ ପଶ୍ଚିମଜର୍ମାନୀରୁ ଜଣେ ସାହେବ ଆସୁଛନ୍ତି ମତେ ଦେଖା କରିବାକୁ । ନିଶ୍ଚୟ ଜଣେ ବୈଜ୍ଞାନିକ କିମ୍ବା ଐତିହାସିକ ହୋଇଥିବେ । ଘର-ଦ୍ୱାର ସଫାସଫି କର । ସନ୍ଧ୍ୟାବେଳେ ତାଙ୍କୁ ଗେଷ୍ଟ ହାଉସରେ ଡିନର୍ ଦେବାକୁ ହେବ । ତାପରେ କିଛି ଚିତ୍ତରଞ୍ଜନ କାର୍ଯ୍ୟକ୍ରମର ବ୍ୟବସ୍ଥା କର । ଲାଗିପଡ଼ିଲେ ପି· ଏ. ମାନେ, ଡିପାର୍ଟମେଣ୍ଟ ଗୁଡ଼ିକର ଅମଲା-ଅର୍ଦ୍ଦଳୀ ଦଳ । ସେକ୍ରେଟେରୀ ମାନେ ଏସବୁରେ ପଛରେ ପଡ଼ିବା ଲୋକ ନୁହନ୍ତି । ସେମାନେ ମଧ୍ୟ ଏ ମହାଯଜ୍ଞରେ ଆହୁତି ଦେଲେ । ଜର୍ମାନୀଭାଷା ଜାଣିଥିବା ଜଣେ ଦୁଇଜଣ ଇଞ୍ଜିନିୟରଙ୍କୁ ତଲବ ହେଲା । ମିଃ ସ୍ୱିନ୍ ଯାହା କହିବେ ତାକୁ ଓ ଡ଼ିଆରେ ତର୍ଜମା କରିବେ । ଠିକ୍ ବେଳା ହୋଇଗଲାରୁ ଆମ ମୁଖ୍ୟମନ୍ତ୍ରୀ ପିଙ୍ଗଳା ବେଶ୍ୟା ପରି ବାରମ୍ବାର ବାହାରକୁ ଆସି ଲକ୍ଷ୍ୟକରି ଯାଉଥାନ୍ତି । କାଳେ କେତେବେଳେ ସାହେବ ଚାଲିଆସିବେ । ଅବଶ୍ୟ ସେକ୍ରେଟେରିଏଟ୍ ଗେଟ୍‌ଠାରୁ ଲୋକ ଜଗା ହୋଇଥାନ୍ତି । ତଥାପି କଣ ବିଶ୍ୱାସ ଅଛି ଓଡ଼ିଆଲୋକଙ୍କ କର୍ମନିଷ୍ଠାରେ ! କେଉଁଠି କଣ ବ୍ୟାଘାତ ଘଟିଯିବ । କେତେ ସମୟ ପରେ ଜଣେ କଳା ପତଳା ଲୋକ, ଅବଶ୍ୟ ସାହେବ ଢାଞ୍ଚାରେ ପୋଷାକ ପିନ୍ଧି ଥାନ୍ତି, ଧସି ମୁଖ୍ୟମନ୍ତ୍ରୀଙ୍କ ଅଫିସରେ ପଶିଲେ । ପାର୍ଶ୍ୱଚରଯାକ ହାଁ-ହାଁ କରି ଉଠିଲେ । କିଏ ଜଣେ ଆସି ଏତେବେଳେ ଗୋଳମାଳ କଲା । ମୁଖ୍ୟମନ୍ତ୍ରୀ ସ୍ପଷ୍ଟ ମନା କରି ଦେଇଥିଲେ ସେ ଇଲେ କାହା ସାଙ୍ଗେ ଦେଖା କରିପାରିବେନି ବୋଲି । ମିଃ ସ୍ୱିନ୍ ପଶ୍ଚିମ ଜର୍ମାନୀରୁ ଆସୁଚନ୍ତି ! କିନ୍ତୁ ସେ ଆଗନ୍ତୁକ ଜଣକ ଯେତେବେଳେ ସାଗ୍ରହରେ ପ୍ରକାଶ କଲେ ଯେ ସେ ହେଉଚନ୍ତି ସେହି ମିଃସ୍ୱିନ୍ ଆମ ମୁଖ୍ୟମନ୍ତ୍ରୀ ସେତେବେଳେ ତାଙ୍କୁ ଚିହ୍ନି ପାରିଲେ । କହିଲେ କିଓ ତୁମେତ ଅମୁକ ସ୍ୱାଇଁଙ୍କ ପୁଅ । ତୁମକୁ

ଜର୍ମାନୀ ପଠାଇବାକୁ ମୁଁ ରାଜକୋଷରୁ ଟଙ୍କା ବରାଦ କରିଦେଇଥିଲି । କାରଣ ତୁମର ବାପ ମୋର ଜଣେ ଆପଣାର ଲୋକ । ତୁମେ ସ୍ୱାଇଁକୁ ସ୍ୱିନ୍ କେଉଁଦିନରୁ କଲ ?

ମୋତେ ଭାରି ହସ ମାଡ଼ିଲା । ଏଇ ବିଦେଶୀ ମୋହ-ଘୂର୍ଣ୍ଣିବାତ୍ୟାରେ ପଡ଼ି ମୁଁ ବି ବାହାରିଛି ବିଲାତ । ନହେଲେ ମୋର ପାରିପାର୍ଶ୍ୱିକ ଆଉ ପାରିବାରିକ ଅବସ୍ଥା ଯାହା ସେଥିରେ ରେଲ-ଜାହାଜ ଆଶ୍ରା କରି ମୁଁ ବାହାରି ନଥାନ୍ତି ଦରିଆପାରି । ଦରିଆପାରିର ସେ ରାଜ୍ୟ ପ୍ରତି ତ ମୋର ସେମିତି ବେଶୀ କିଛି ମମତା ନାହିଁ । ଅବଶ୍ୟ ଅନ୍ୟ ଦେଶ ଦେଖିବା କି ପାଶ୍ଚାତ୍ୟ ଦେଶର ଶିକ୍ଷା ସଭ୍ୟତା ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ହାସଲ କରିବା ପାଇଁ ମୋର ଯେ ଉତ୍ସାହ ନଥାଏ ସେମିତି ନୁହେଁ କିନ୍ତୁ ବିଦେଶ ଭ୍ରମଣ, ବିଦେଶୀ ଶିକ୍ଷା ପାଇଁ ମୁଁ ପାଗଳ ହୋଇନି । କାମ୍ୟ ଅକାମ୍ୟ ନେଇ ମୋ ଜୀବନରେ ବିଲାତ ଯିବାର କଥା ଉଠିନଥିଲା । ମୋର ଅଭିଭାବକ ଓ ପୃଷ୍ଠପୋଷକତାର ଜୋର ନାହିଁ । ବହୁଁ ଦୁଃଖ କଷ୍ଟ ସହି ଜୀବନଟା ତିଆରି କରିଛି । ଅନ୍ୟ ବଳ ନଥିବାରୁ କେବଳ ନିଜର ଯତ୍ କିଞ୍ଚିତ୍ ପ୍ରତିଭା ଉପରେ ନିର୍ଭର କରି ଆତ୍ମୋନ୍ନତି କରିବା ଓ ଜୀବନର ସବୁ ପରିସ୍ଥିତିରେ ନିଜକୁ ରକ୍ଷା କରିବାକୁ ଚେଷ୍ଟା କରୁଥାଏ । କିନ୍ତୁ ଏଥିରେ କି ଜୀବନ ଚଳେ ! ସମସ୍ତେ କହନ୍ତି ପ୍ରତିଭାର ମୂଲ୍ୟ ନିଶ୍ଚୟ ଅଛି, ଯେ ଯାହାର ହକ୍ ନିଶ୍ଚୟ ପାଇବ । କାରଣ ସେଥିପାଇଁ ସମ୍ବିଧାନରେ ବ୍ୟବସ୍ଥା ଅଛି । ହଁ, ଭାରତ ସାଧାରଣତନ୍ତ୍ର ରାଷ୍ଟ୍ର । ବିଦେଶୀ ଶାସନର ଲୋପ ପରେ ଆଉ ଏ ଦେଶରେ ଅଯଥା ବାଧା ପ୍ରତିବନ୍ଧକ କିଣ ! ଜାତି, ଧର୍ମ, ବର୍ଣ୍ଣ, ଉଚ୍ଚତା, ଲିଙ୍ଗ ନିର୍ବିଶେଷରେ ଦେଶବାସୀ ପ୍ରତ୍ୟେକ ତାଙ୍କ ନାଯ୍ୟ ଅଧିକାର ଓ ସୁବିଧା ନିଶ୍ଚୟ ପାଇବେ । ଶୁଣିବାକୁ ବେଶ୍ ଭଲ ଲାଗେ । ବଡ଼ ଉତ୍ସାହପ୍ରଦ ବି । ମାତ୍ର କାମରେ ଦେଖିଲେ ମନେ ହେବ ସବୁଟା ଖଣ୍ଡା, ବଡ଼ି, ଥୋଡ଼, ସବୁଟା ପ୍ରଗ୍ଭର । ପ୍ରକୃତରେ ଆଜିକାଲି ଅଧିକାଂଶ ଲୋକଙ୍କର ଭାଗ୍ୟ ନିଷ୍ପତ୍ତି ହେଉଛି ନିର୍ଲ୍ଲଜ ଖୋସାମତି ଧରାଧରି ହାତଗୁଞ୍ଜା ଆଦିରେ । କେଜାଣି କେଉଁଠି ବା କିଏ କାଁଭାଁ ନିଜ ପ୍ରତିଭା ବଳରେ ଉପରକୁ ଉଠୁଛି । ମୋ ଗୃହକଷ୍ଟ ଝଡ଼ମାରି ଜୀବନରେ ଯେତେବେଳେ ଦେଖିଲି ବିଲାତ ନଗଲେ ଭବିଷ୍ୟତ ଅନ୍ଧକାରମୟ, ସେତେବେଳେ ଆଗକୁ ପଛକୁ କିଛି ବିଚାର ନକରି

ନିଜର ବନ୍ଧ୍ୟା ଦୋଷ ଛୁଟାଇବାକୁ ହଠାତ୍ ଠିକ୍ କରିଦେଲ ଶରୀରଂ ବା ପାତୟେତ୍ ବିଲାତଂ ବା ଯାସ୍ୟାତ୍......

ଜାହାଜ ବମ୍ବେ ଉପକୂଳ ଛାଡ଼ିବ । ବେଳ ହୋଇପଡ଼ିଥାଏ । ଡାକବାକ ଯନ୍ତ୍ରରେ କେତେ ଥର ସତର୍କ କରାଇଦେଇ ଯେତେବେଳେ ଜାହାଜର କର୍ମକର୍ତ୍ତାମାନେ ଯାତ୍ରୀ ଉଠିବାକୁ ପଡ଼ିଥିବା ସିଡ଼ିଟା କାଢ଼ିନେଲେ ମୋର ଛାତିଟା ଧଡ଼୍ ଧଡ଼୍ କରିଉଠିଲା । ଯାଃ, ଭାରତ ଭୂମି ସହିତ ଶେଷ ସମ୍ପର୍କଟା ତେବେ ଛୁଟିଗଲା । ପରେ ପରେ ଗୋଟିଏ ବିଦାୟୀ ଶଙ୍ଖ ଧ୍ୱନି କରି ଜାହାଜ ଧୀର ମନ୍ଥର ଗତିରେ ବିଶାଳ ସମୁଦ୍ର ବକ୍ଷକୁ ଚାଲିଲା । ମୁଁ ଡେକ୍ ଉପରେ ଠିଆ ହୋଇ ଏକ ଦୃଷ୍ଟିରେ ବମ୍ବେ ବନ୍ଦର ଆଡ଼କୁ ଚାହିଁଥାଏ । କେତେ ଲୋକ ସେମାନଙ୍କର ଆତ୍ମୀୟ ସ୍ୱଜନମାନଙ୍କୁ ହାତହଲାଇ ଶେଷ ସମ୍ବର୍ଦ୍ଧନା ଜଣାଉଥାନ୍ତି । ମୋର ଆପଣାର ହୋଇ ବନ୍ଦର ଉପକୂଳରେ କେହି ନ ଥାନ୍ତି । ତଥାପି ମନେ ହେଉଥାଏ ଏ ଅଜଣା ଜନତା ସହିତ ମୋର ଯିମିତି ଗଭୀର ସମ୍ପର୍କ । ସେମାନଙ୍କଠାରୁ ଦୂର ହୋଇଯାଉଥିବାରୁ ମନ ଭିତରଟା ଯିମିତି ଦୁଃଖରେ ଭାଙ୍ଗି ପଡୁଥାଏ ।

ଆମ ଜାହାଜର ଚାରିପଟେ କେତେ ଛୋଟ ବଡ଼ ଜାହାଜ ପଇନ୍ତରା ମାରୁଥାନ୍ତି । କିଏ ଆସୁଥାନ୍ତି କିଏ ଯାଉଥାନ୍ତି । ବନ୍ଦର କର୍ତ୍ତୃପକ୍ଷଙ୍କର ବି ଗୁଡ଼ିଏ ଛୋଟ ବୋଟ୍ ଜାହାଜ-ଜାହାଜ ଭିତରେ କଣ ବୋଧହୁଏ ଯୋଗସୂତ୍ର ରଖୁଥାନ୍ତି । ପଥ-ପ୍ରଦର୍ଶକ (Pilot) ରୂପେ କେତେକଙ୍କୁ ପାଛୋଟି ଆଣୁଥାନ୍ତି । କେତେକଙ୍କୁ ସମୁଦ୍ର ଭିତରକୁ ଆଗେଇ ଦଉଥାନ୍ତି ।

ସୂର୍ଯ୍ୟାସ୍ତ ବେଳା । ହେଲେ ଅସ୍ତମିତ ରବିଙ୍କ ଗୋଲାପି କିରଣର ଚିହ୍ନବର୍ଣ୍ଣ ନାହିଁ । ଭାଦ୍ରମାସ ଆକାଶରେ ମେଘ ଗାର ହୋଇଯାଇଛି । ସବୁଟା ଘନଘୋର । ସବୁଟାକୁ ଯେପରି ବିଷାଦ ଛାୟାର କାଳିମା ଘେରି ରହିଥାଏ । କିଛି ସମୟ ପରେ ଜଳି ଉଠିଲା ଜାହାଜ ଗୁଡ଼ିକରେ ଓ ବମ୍ବେ ବନ୍ଦରରେ ଉଜ୍ଜ୍ୱଳ ବିଜୁଳି ବତି । କ୍ରମେ ନିଶାର ଘନକୃଷ୍ଣ ପରଦା ଘେରି ଆସିଲା ଚାରିଆଡ଼େ । ତାରି ଭିତରେ ଝଲସି ଉଠୁଥାଏ ଉଜ୍ଜ୍ୱଳ ଆଲୋକ । ଭାସମାନ ଜାହାଜ ଗୁଡ଼ିକ ନିର୍ମଳ ନୀଳ ସିନ୍ଧୁ ବକ୍ଷରେ ଗୋଟିଏ ଲେଖାଏ

ବିରାଟ ଆଲୋକ କୁଣ୍ଡଳୀ ସୃଷ୍ଟି କରି ଚାଲିଥାନ୍ତି । ସେତେବେଳକୁ ବୋଧହୁଏ ଶୁକ୍ଳପକ୍ଷ ୨।୩ ଦିନ ହୋଇଥାଏ । ହେଲେ ଚନ୍ଦ୍ର କାହିଁ ଆକାଶରେ ଦେଖା ଯାଉନାହାନ୍ତି । ସେ ଯେପରି ମେଘ ଅନ୍ତରାଳରେ ଲୁଚି ଯାଇଥିଲେ । ଏ ବିଦାୟ ଲଗନରେ ଚାରିଆଡେ ଯେପରି ଶୋକ ଓ ଅନୁଶୋଚନାର ଛାୟା ଖେଳି ଯାଇଥାଏ ।

ଦୂରରେ ଦେଖାଯାଉଥାଏ ଗୋଟିଏ ଜାହାଜ । କଣ ସଙ୍କେତ ଦେଇ କୁଆଡ଼େ ଚାଲିଯାଉଥାଏ, ହୁଏତ ବମ୍ବେ କି ସିଂହଳ ଆଡ଼େ । ବହୁଦିନର ବିଦେଶବାସୀ ଯାତ୍ରୀଙ୍କୁ ଧରି ଚାଲିଛି ତାଙ୍କ ଘର ଅଭିମୁଖରେ । ତାହେଲେ ସେମାନେ ଆଜି କେତେ ଆନନ୍ଦିତ ହେଉନଥିବେ । ତାଙ୍କ ଆତ୍ମୀୟ ସ୍ୱଜନମାନଙ୍କ ସାଙ୍ଗେ ମିଶିବାକୁ ତାଙ୍କ ମନ କେତେ ଆତୁର ହେଉନଥିବ । ମାତ୍ର ତାଙ୍କ ମନୋଭାବ ମୋ ମନୋଭାବ ଭିତରେ ଘୋର ପ୍ରଭେଦ । ମୁଁ ଘର ଛାଡ଼ି ଚାଲିଛି ଦୂର ଦେଶ ଉଦ୍ଦେଶ୍ୟରେ । ସେମାନେ ଫେରୁଥାନ୍ତି ଘରକୁ । ବିଦେଶ ବାସ ଯେତେ ସୁଖକର ହେଲେ ବି ବନ୍ଧୁବାନ୍ଧବ, ଆତ୍ମୀୟସ୍ୱଜନଙ୍କ ସାଙ୍ଗେ ପୁଣି ମିଳିବା ଆଶାରେ ମନ ତାଙ୍କର କେତେ ଆନନ୍ଦରେ ଉଦ୍‌ବେଳିତ ହେଉନଥିବ ! କିନ୍ତୁ ମୋ ମନର ଦମ୍ଭ-ବନ୍ଧ ଯିମିତି ଭାଙ୍ଗି ପଡ଼ୁଥାଏ ଏଇ ବିଦେଶ ଯାତ୍ରା ଧକ୍‌କାରେ ।

ଜାହାଜର ଖାଦ୍ୟପେୟ ବ୍ୟବସ୍ଥାଟା ସାହେବୀ ଡାଙ୍ଗରେ କରାଯାଏ । ବାହାର ଭୂମି ମାଡ଼ିବା ଆଗରୁ ସମସ୍ତେ ଲଞ୍ଚ୍ ଡ଼ିନର୍‌ରେ ଅଭ୍ୟସ୍ତ ହୁଅନ୍ତି ଏଇଠି । ଗୋଟିଏ ମୋଟା ତାର ଦିଆ ଯନ୍ତ୍ରରେ ଖଣ୍ଡିଏ ଲୁହା ପିଟି ଏକ ବିଚିତ୍ର ସଙ୍ଗୀତର ସୃଷ୍ଟି କରାଯାଏ ଏବଂ ତାରିଦ୍ୱାରା ଭୋଜନ ବା ଜଳଯୋଗକୁ ନିମନ୍ତ୍ରଣ କରାଯାଏ । ଏଥି ଭିତରେ ସେ ଘଣ୍ଟା ଥରେ ଅଧେ ବୋଧହୁଏ ବାଜିଯାଇଥାଏ । କିନ୍ତୁ ସେଥିପ୍ରତି ମୋର ସେପରି ନଜର ନାହିଁ । ସେଦିନ ଖରାବେଳେ ବମ୍ବେ ଓଡ଼ିଆ ହୋଟେଲରେ ପରମ ତୃପ୍ତିରେ ମାଛଭାତ ଖିଆହୋଇଥିଲା । ସେ ଯିମିତି ବର୍ତ୍ତମାନ ସୁଦ୍ଧା ମନଦେହକୁ ସତେଜ ଓ ସରସ ରଖିଥାଏ । ଅନ୍ୟ କିଛି ଖାଇବାକୁ ସ୍ପୃହା ନାହିଁ । କଣ ବା ଖାଇବି ? ଆଗରୁ ଶୁଣିଥାଏ ଜାହାଜ ଭୋଜନବ୍ୟବସ୍ଥା ସମ୍ବନ୍ଧରେ ବହୁ ଟିପ୍‌ପଣୀ । ମସଲା ନାସ୍ତି । ତେଲ ବିହୀନ ସିଝାସିଝି । ସେ କଣ ଏ ସୁଆଦଖିଆ ପାଟିକୁ ଭଲ ଲାଗିବ !

ମଝିରେ ଟିକିଏ ଯାଇ ମୋ କୋଠରୀରେ ଜିନିଷପତ୍ର ଯାହା ବିକ୍ଷିପ୍ତ ଥିଲା ତାକୁ ସଜାଡ଼ି ରଖିଦେଇଥିଲି ଏବଂ କୋଠରୀ ବନ୍ଧୁମାନଙ୍କ ସହ ପାଶ୍ଚାତ୍ୟ ରୀତିରେ କରମର୍ଦ୍ଦନ କରି ଅଭିବାଦନ ଜଣାଇଥିଲି Glad to meet you How do you do ? ବାଃ-ବାଃ ! ଆରବ ସାଗରରୁ ତ ଏତେ, ତେଣିକି ପୁଣି କେତେ ନ ହେବ !

ଏ ବନ୍ଧୁମାନେ ପ୍ରାୟ ଧନିକ ପରିବାରର । ତେଣୁ ସେମାନେ ଏ ଯାତ୍ରାକୁ ଗୋଟେ ଉତ୍ସବ ଗୋଟେ ଉନ୍ମାଦକାରୀ ଘଟଣା ମନେକରି ପୋଷାକପତ୍ର ଓ ଚାଲିଚଳନରେ ବିରାଟ ଆଡ଼ମ୍ବର ପ୍ରକାଶ କରିବାରେ ବ୍ୟସ୍ତ । କେତେକ ତାଙ୍କ ଆସବାବ ଓ ପୋଷାକ ପରିଚ୍ଛଦର ପ୍ରାଚୁର୍ଯ୍ୟ ଓ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାରେ ପଞ୍ଚମୁଖ । ଯିମିତି ଜାହାଜ ଭିତର ଗୋଟେ ବିରାଟ ସୌନ୍ଦର୍ଯ୍ୟ ପ୍ରତିଯୋଗିତା (Beauty Competition)ର ପୀଠ ହୋଇଯାଇଛି । କାହାର ସନ୍ଧ୍ୟାବେଳେ ଗାଧୋଇବା ଆଗରୁ ଅଭ୍ୟାସ ଥିଲା କି ନାହିଁ ମାତ୍ର ନୂଆ ସ୍ନାନ-ପରିଚ୍ଛଦ (Bathing gown)କୁ ଦେଖାଇବା ପାଇଁ ବାରମ୍ବାର ମହିଳାଙ୍କ ସ୍ନାନାଗାର (Ladies' ବାଟଦେଇ ପୁରୁଷଙ୍କ ସ୍ନାନାଗାର ଆଡ଼େ ଧାଇଁଲେ । ତାପରେ କିଏ ନୂଆ ମଖମଲି ଚପଲ ଆଣିଥିଲା । କିଏ ଚୁଡ଼ିଦାର ପାଇଜାମା ଆଣିଥିଲା । ସେଗୁଡ଼ିକ ପିନ୍ଧି ଉପର ଡେକ୍‌ରୁ ନିଜ କୋଠରୀ (Cabin)କୁ ଏବଂ ସେ କୋଠରୀରୁ ଡେକ୍‌କୁ ଧାଁ ଧପଡ଼ କରିବାରେ ଲାଗିପଡ଼ିଲେ । ଅଳ୍ପ କେତେଜଣ ମୋ ଭଳି ଶୁଖିଲାମୁହାଁଙ୍କୁ ଛାଡ଼ିଦେଲେ ଅନ୍ୟମାନେ ଯେମିତି ଅଳ୍ପ ସମୟ ଭିତରେ ନିଜ ବନ୍ଧୁବାନ୍ଧବ ଆତ୍ମୀୟସ୍ୱଜନଙ୍କ ବିଚ୍ଛେଦ ଭୁଲିଯାଇ ଆନନ୍ଦରେ ମାତିଉଠିଛନ୍ତି ।

ବୈଠକ୍‌ଖାନା, ଧୂମପାନ ଘର ଦେଇ ଉପର ଡେକ୍‌କୁ ଯାଉ ଯାଉ ହଠାତ୍ ଗୋଟିଏ ଘଟଣା ଦେଖି ଅଟକିଗଲି । ଜଣେ ଶ୍ୱେତାଙ୍ଗିନୀ ମହିଳା ଭାରତୀୟ ଠାଣିରେ ଶାଢ଼ି ବ୍ଲାଉଜ୍ ପିନ୍ଧି ଫୁଲ-ଚଉକିଟି ପରି ବସିଛନ୍ତି ଏବଂ ତାଙ୍କ ଚାରିପଟେ ଘେରି ବସିଛନ୍ତି ପୁରୁଷ ଭ୍ରମର ଦଳ । ହେଁ ହେଁ ହୋଇ କଣ ଭାରି ହସଗପ ଚାଲିଛି ଏବଂ ତା'ର ସାଙ୍ଗେ ଚାଲିଛି ଅନର୍ଗଳ ପାନୀୟ ପିଆ—ନାଲି, ହଳଦିଆ, ଧଳା, ଖଇରିଆ,

ଏବଂ ତା ସାଙ୍ଗରେ ଅଜସ୍ର ସିଗାରେଟ୍ ଟଣା । ସ୍ଥିର ପରିବେଷଣରେ ନେତୃତ୍ୱ ନେଇଛନ୍ତି ସେ ଗୁଜୁରାଟୀ ନନ୍ଦନ ଭୃତ୍ୟ । ସେ ବାବୁଟି ଯେ ଧନର କୁବେର ଏଇଟା ଅନ୍ଦାଜ କରିବା କାହାରି ପକ୍ଷରେ କଷ୍ଟକର ହେବନି ।

ଅନେକ ତାଙ୍କ ସହିତ ବନ୍ଧୁତା ପାତିଦେଇ ସାରିଲେଣି ଏଇ ଅଳ୍ପ ସମୟ ଭିତରେ । କିନ୍ତୁ ସମସ୍ତେ ଏକ ଲକ୍ଷ୍ୟରେ ସେ ମହିଳାଙ୍କ ମୁହଁକୁ ଚାହିଁ ରହିଥାନ୍ତି ଏବଂ ତାଙ୍କ ଲାଲ ଟହଟହ ଓଠ ଦେଇ ଯେ କେତେ ପଦ କଥା ବାହାରି ପଡ଼ୁଥାଏ ତାକୁ ଅମୃତ ପରି ପିଇଯାଉଥାନ୍ତି । ଏଥିରେ ଆହୁରି ଉତ୍ସାହିତ ହୋଇ ଜୋରରେ କଥା ଆରମ୍ଭ କରି ଦେଉଥାନ୍ତି ସେ ମହୀୟସୀ ମହିଳା । ସମସ୍ତେ ହୋ-ହୋ ହୋଇ ହସି ଉଠୁଥାନ୍ତି । ସାଙ୍ଗେ ସାଙ୍ଗେ ଏହି କ୍ଲାନ୍ତିର ଅପନୋଦନ ପାଇଁ ବରାଦ କରୁଥାନ୍ତି ସେ ଗୁଜୁରାଟୀ ନନ୍ଦନ ଆଉ କିଛି ପାନୀୟ, ଆଉ କିଛି ସିଗାରେଟ୍ । କେହି କେହି ବାହାରେ ବିନୟ ପ୍ରକାଶ କରି ସାମାନ୍ୟ ମନା କରୁଥାନ୍ତି । ପୁଣି ପାନୀୟ ଗ୍ଲାସଟା ହସି ହସି ଧରିନେଇ ସମସ୍ତଙ୍କ ସଙ୍ଗେ ସ୍ୱର ମିଶାଇ କହୁଥାନ୍ତି to our happy sea-voyage ! ଏଇ ମଦ ପିଆଟା ଯେତେ ନୀରବ ହେଲେ ବି ମଝିରେ ଚିମିଡ଼ ସୁ-ସୁ ଶୁଣା ଯାଉଥାଏ । ଆଶ୍ଚର୍ଯ୍ୟ ! ଭାରତରେ ପରା ମଦ୍ୟପାନ ନିଷିଦ୍ଧ, ଚୂରିଆଡ଼େ Prohibition ଚାଲିଛି । ତେବେ ଏ ଭଦ୍ରଲୋକଗୁଡ଼ିକ ଏ ଜିନିଷଟା ସହିତ ଏତେ ଘନିଷ୍ଠ ସମ୍ବନ୍ଧ ପାତିପାରିଲେ କିମିତି ! ଆଶ୍ଚର୍ଯ୍ୟ କଣ ? ଧନ ଓ କ୍ଷମତା ଫଳେ କିବା ଅସାଧ୍ୟ ମହୀତଳେ !

ଅନୁସନ୍ଧାନ କରି ବୁଝିଲି ସେ ଶ୍ୱେତାଙ୍ଗିନୀ ହେଉଛନ୍ତି ଶ୍ରୀମତୀ ଦେଶାଇ ସ୍ୱାମୀଙ୍କ ଗହଣରେ ଯାଉଛନ୍ତି ବାଲିଦ୍ୱୀପ । କିଏ ଏ ଦେଶାଇ, କେଉଁ କାରଣରୁ କିପରି ପରିସ୍ଥିତିରେ ଏ ଶ୍ୱେତାଙ୍ଗିନୀଙ୍କର ପାଣି ଗ୍ରହଣ କରିଛନ୍ତି ଏବଂ କେଉଁ ଉଦ୍ଦେଶ୍ୟରେ ସେ ଏହି ଗୁଜରାଟୀ ନନ୍ଦନଙ୍କ ସହିତ ଏପରି କ୍ଷୀର-ନୀର ମିଶି ଯାଇଛନ୍ତି କିଛି ଜଣାଗଲାନି । କିନ୍ତୁ ଘଟଣାଟା ଯେ ନିହାତି ରୋମାଞ୍ଚକର ଏଥିରେ ସନ୍ଦେହ ନାହିଁ । ବାଲିଦ୍ୱୀପ ଯାତ୍ରା ଆରମ୍ଭରୁ ଏପରି ଏକ ରଙ୍ଗୀନ ରସଭରା ଦୃଶ୍ୟ ବେଶ୍ ଉପଭୋଗ୍ୟ ହେଲା ।

ସେଦିନ ରାତିରେ ମୁଁ କେତେବେଳେ ସୁଖନିଦ୍ରା କି ଦୁଃଖ-ନିଦ୍ରା ଗଲି କେଜାଣି ! କିନ୍ତୁ ଆଖି ବୁଜିବା ଆଗରୁ ମୋ କାନରେ ଉର୍ଜ୍ଜ

କୋଲମ୍ୟାନ (George Colman)ଙ୍କ କବିତାର ଯେପରି ମଧୁଗୁଞ୍ଜନ ଶୁଣାଯାଉଥାଏ ।

Oh, Londn is a fine town
A very famous City
Where all the streets are paved with Gold
And all the girls are pretty.



## ଥାଆନ୍ତା ଯଦି ମୋର ବିହଙ୍ଗପକ୍ଷ............

ତହିଁ ଆରଦିନ ଅଗଷ୍ଟ ପନ୍ଦର, ଭାରତର ସ୍ୱାଧିନତା-ଦିବସ । ଦେଶରେ ଥିଲାବେଳେ ଏହି ପବିତ୍ର ଦିନର ମହାତ୍ମ୍ୟ ଉପଲବ୍ଧି କରିଥିଲି କି ନାହିଁ କେଜାଣି ! ହଁ, ମାର୍ଚ୍ଚ-ପ୍ୟାରେଡ୍, ପତାକା-ଉତ୍ତୋଳନ, ସଭା-ବକ୍ତୃତା, ବଡବଡ କଥା—ଦେଶ ଉଠିବ, ଜାତି ଜାଗିବ ଇମିତି କିଛି କଣ ମନେ ଅଛି । ହେଲେ ବାସଛଡ଼ା ହୋଇ ଯେତେବେଳେ ସମୁଦ୍ରରେ ଭାସୁଥିଲି ଆମ ସ୍ୱାଧୀନତା ଦିବସ କଥା ମନେପଡ଼ିବାରୁ ପ୍ରାଣଟା ସିମିତି ବିକଳ ହୋଇଉଠିଲା । ମନେ ପଡ଼ିଗଲା କବିଙ୍କ ଲେଖା :—

Breathes there the man with soul so dead !
Who never to himself hath said
This is my own, my native land.

*　　*　　*

କି ଆଶ୍ଚର୍ଯ୍ୟ ! ମୋ ପରି ବିଶ୍ୱନିନ୍ଦୁକ ମନରେ ଏତେ ଦେଶ-ପ୍ରେମ ! ହଁ ଏପରି ବିଚିତ୍ର ସୁଗୁଣ, ସୁକୁମାର ଚପଳତା ବେଳେ-ବେଳେ ଲୋକଙ୍କଠାରେ ଦେଖାଯାଏ । ଯେ ଆଜୀବନ କଂସେଇ ସେ ନିରୀହ ଜନ୍ତୁଙ୍କର ପ୍ରାଣ ନେଲାବେଳେ ତାର ଚକିତ ବ୍ୟାକୁଳ ମୁହଁକୁ ଚାହିଁ କେବେ କେମିତି ଚମକି ଉଠେ । ନିଷ୍ଠୁର ଡକାଏତ କାହାର ସର୍ବସ୍ୱ ଅପହରଣ କଲାବେଳେ କେଉଁଠାରେ କିଛି ଦାରୁଣ-କରୁଣ ଚିତ୍ରଦେଖି ବିବ୍ରତ ହୋଇପଡ଼େ । ହେଲେ ଏ କଳକଳ ଜଳ, ମଡ଼ମଡ଼ ଜାହାଜ ଭିତରେ ଦେଶାତ୍ମବୋଧର ମହତ୍ତ୍ୱ ପ୍ରକାଶ କରାଯିବ କିପରି ! ଏଟା ବିଦେଶୀ ଜାହାଜ । ଅନ୍ୟ କେତେ ଦେଶର ଲୋକ ଏଥିରେ ଯାଉଛନ୍ତି । ସେମାନେ କାହିଁ ଭାରତର ସ୍ୱାଧୀନତା ଦିବସ ନେଇ ବ୍ୟସ୍ତ ହେବେ ।

ବରଂ ବିରକ୍ତ ହୋଇପାରନ୍ତି । ଯାହା ହେଲେ ବି ଆମେ ଯେ କେତେଜଣ ଭାରତୀୟ ଏଠାରେ ଅଛୁ ତାଙ୍କର ନହାତି କର୍ତ୍ତବ୍ୟ ହେଲା ଦେଶର ଜାତିର ମାନ ସମ୍ମାନ ଯେମିତି ଏ ଦରିଆଭସା ଜାହାଜରେ ଅତୁଟ ରହେ ସେଥିପାଇଁ ଚେଷ୍ଟା କରିବା । ନିଷ୍ଟୟ କରିବୁ ।

ମନେ ମନେ ଗୋଟେ ବିରାଟ ଯୋଜନା ବାନ୍ଧିବସିଲି । ଠିକ୍ ଆମଦେଶର ପଞ୍ଚବାର୍ଷିକ ଯୋଜନା ପରି, କାର୍ଯ୍ୟ ଯଥାତଥା କିନ୍ତୁ କଳ୍ପନାଜଳ୍ପନା ବହୁତ । ବକ୍ତୃତା ଓ ପ୍ରଚାରର ଅତ୍ୟଧିକ— । ହଁ, ଡେକ୍ ଉପରେ ପତାକା ଉତ୍ତୋଳନ କରାଯିବ ଜଣେ ମାନ୍ୟଗଣ୍ୟ ନେତାଙ୍କ ସାହାଯ୍ୟରେ । ମାନ୍ୟଗନ୍ୟ ନେତା ! ସେ ଅପୂର୍ବ ଜୀବ ଏଠାରେ ମିଳିବେ କୁଆଡ଼ୁ ? ସେ ସମସ୍ତଙ୍କୁ ତ ଦେଶରେ ଛାଡ଼ିଦେଇ ଆସିଲି । ବାସ୍ତବିକ୍ ଆମ ଦେଶରେ ଅନେକ ଅଭାବ ଅସୁବିଧା ଥାଇପାରେ ହେଲେ ନେତା ଆଉ ବକ୍ତୃତାର ଅଭାବ ନାହିଁ । ସଭାସମିତି କଲେ କେତେ ପ୍ରକାରର କେତେ ଢ଼ଙ୍ଗର ଦେଶସେବକ, ଜନନାୟକ ମିଳିବେ ମୁଖ୍ୟ ଅତିଥି, ସଭାପତି ହେବାକୁ । ପୋଷାକ ବି କେତେ ଢ଼ଙ୍ଗର—ଖଦଡ଼ ଧୋତି-ପଞ୍ଜାବି, ବେଳେବେଳେ ତା ଉପରେ ଚଦର ବେକରେ ଗୁଡ଼େଇ ବା କାନ୍ଧରେ ଫାଳକଆ ପକେଇ, ନୋହିଲେ ଜହର ଜ୍ୟାକେଟ୍ ବା ବେକଚପା କୋଟ୍ ପିନ୍ଧି, କଳାମୁଣ୍ଡରେ ଧଳାଟୋପି ଲଗେଇ କମ୍ବା କୁଞ୍ଚକରା ସରୁ ଧୋତି ସାଙ୍ଗକୁ ଧବଳ-ନିର୍ମଳ ଖଦି-ପଞ୍ଜାବି ପିନ୍ଧି ତା ଉପରେ ଶାନ୍ତିପୁରୀ ଚଦର ପକେଇ···ବେଶ୍ ଚିତ୍ତାକର୍ଷକ ମନୋହରଏ ଏ ବେଶ । ତା ପରେ ବକ୍ତୃତା ବି କେତେ କିସମର, ରହି ରହି, ଅଟକେଇ ଅଟକେଇ, ଚିତ୍କାରକରି, ଧୀର-ମଧୁର କଣ୍ଠରେ ଖାଣ୍ଟି ଓଡ଼ିଆ ବା ହିନ୍ଦିରେ, ବେଳେବେଳେ ଓଡ଼ିଆ ଇଂରେଜୀ ମିଶା ବା ଖାଲି ଇଂରାଜୀରେ···ଆହା-ହା କୁଆଡ଼େ ରହିଲେ ସେ ଅପୂର୍ବ ଜୀବ, କୁଆଡ଼େ ରହିଲା ସେ ଅପୂର୍ବ ବେଶପୋଷାକ ଏବଂ ବକ୍ତୃତା ? ଆଉ ଲୋଡ଼ିଲେ କାହିଁଠି ସେକଥା ଚିଠି ଘେନଇ କିବା ପେଟ ବ୍ୟଥା !

ଜାହାଜ ଭିତରେ ଟିକିଏ ବୁଲିଆସିଲି । କେହି ଜଣେ ଯଦି ଖଦଡ଼ପିନ୍ଧା ଗାନ୍ଧିଟୋପିଧାରୀ ମିଳନ୍ତେ ! ଜଣେ କିଏ କହିଲା

ଉତ୍ତର ପ୍ରଦେଶର ଜେନୈକ ତୁଙ୍ଗ ନେତା ଏହି ସମୟରେ ବିଲାତଯାତ୍ରା କରି ଆମକୁ ଓ ଜାହାଜକୁ ଧନ୍ୟ କରିଛନ୍ତି । ସତେ ! ବଡ଼ ଚମତ୍କାରତ ! କିନ୍ତୁ ଶୁଣ୍ଟୁ ଶୁଣ୍ଟୁ ଜଣାଗଲା ସେ ତାଙ୍କ ଖଦଡ଼ ଭେକକୁ ଦେଶରେ ଛାଡ଼ି-ଆସିଛନ୍ତି ଏବଂ ଖାଣ୍ଟି ସାହେବୀ ପୋଷାକରେ ବିଲାତ ଯାତ୍ରା କରୁଛନ୍ତି । ବଡ଼ ଦୁଃଖର କଥା ! ଦେଶରେ ଥିଲେ ଭିତରେ ମିଲଗେଞ୍ଜି ବା ଅଣ୍ଡରଓ୍ୱାର ପିନ୍ଧିକରୁ ପଛକେ ଉପରେ ଖଦଡ଼ ପଞ୍ଜାବି ଧୋତି ବା ପ୍ୟାଣ୍ଟ ସାର୍ଟ ପିନ୍ଧନ୍ତି । ସେ ଚଳିଯାଏ କିନ୍ତୁ ପୂରା ସାହେବୀ ବେଶରେ ଆସିଛନ୍ତି ! ହଁ ନ ଆସିବେ କାହିଁକି ନିଜ ଦେଶରେ ସିନା ସେ ଭେକ ସାହାଯ୍ୟରେ ନାନା ସୁବିଧା-ସୁଯୋଗ ହାସଲ କରି ପାରନ୍ତେ ! ବିଦେଶରେ ତ ସେ ପୂରା ଅଚଳ ।

ଛାତ୍ର ଜୀବନର ଗୋଟିଏ କଥା ମନେ ପଡ଼ିଲା କଲେଜରେ ପଢ଼ିଲାବେଳେ ମୁଁ ଜଣେ ଷ୍ଟେଟକୋଟର ଛାତ୍ରନେତା ଥିଲି । ସେହି ହିସାବରେ ନାଗପୁର ଯାଇଥାଏ ବନ୍ଧୁମାନଙ୍କ ସାଙ୍ଗରେ । ସେତିକି ବେଳକୁ ମଧ୍ୟପ୍ରଦେଶରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଡ଼ାକ୍ତର ଏନ୍. ବି. ଖାରେ ଇସ୍ତଫା ଦେଇଥାନ୍ତି । କଂଗ୍ରେସର ତୁଙ୍ଗ ନେତମାନଙ୍କ ସଙ୍ଗେ ମତଭେଦ ହେବାରୁ । ସେ ରାଜନୀତିରୁ ବିଦାୟ ନେବା ଆଗରୁ ଏକ ଦୀର୍ଘ ବିବୃତି ଦେଇଥାନ୍ତି । ସେଥିରୁ ସେ ଲେଖିଥାନ୍ତି **Now I shall treat malodies and sing melodies** । ସେ ରାଜନୀତି ଛାଡ଼ି ତାଙ୍କର ନିଜସ୍ୱ ଡ଼ାକ୍ତରୀ ବ୍ୟବସାୟ ଧରିବେ ବୋଲି ଧମକ ଦେଇଥା'ନ୍ତି । ଆମ୍ଭେମାନେ ଠିକ୍ କଲୁ ତାଙ୍କୁ ଯାଇ ଦେଖା କରିବାକୁ । ବହୁତ ପଚରାପଚରି କରି ତାଙ୍କ ଘରର ଅଳ୍ପ ଦୂରରେ ପହଞ୍ଚିଗଲୁ । ଜଣେ ଭଦ୍ରଲୋକଙ୍କୁ ଖାରେଙ୍କ ଘରର ସଙ୍କେତ ପଚାରିବାରୁ ସେ କହିଲେ ଆଗ ରୋଡ଼ରେ ଯେଉଁ "ଘାସକା ବଙ୍ଗ୍‌ଲୋ" ଅଛି, ସେଇ ହେଉଛି ତାଙ୍କ ଘର । ବଙ୍ଗ୍‌ଲୋତ ବଙ୍ଗ୍‌ଲୋ, ଘାସ୍‌କା ବଙ୍ଗ୍‌ଲୋ କଣ ? ଓ ! ଗୁଳଘର । ସେଇ ଘାସକା ବଙ୍ଗ୍‌ଲୋରେ ପହଞ୍ଚି ବେଲ୍ ଟିପିଲୁ । ଜଣେ ବୟସ୍କା ମହିଳା ଆବିର୍ଭୂତା ହେଲେ । ତାଙ୍କର ମରହଟ୍ଟୀ ଧରଣର ଶାଢ଼ୀପିନ୍ଧା, ତେଜୋବନ୍ତ ରୂପ ଦେଖି ଭାବିଲୁ ସେ ନିଶ୍ଚୟ ଶ୍ରୀମତୀ ଖାରେ ହୋଇଥିବେ । ତାଙ୍କୁ ସବିନୟ ନମସ୍କାର କରି ତାଙ୍କ କୁଶଳ ଖବର ନେବା ସଙ୍ଗେ ସଙ୍ଗେ ଡାକ୍ତର ଖାରେଙ୍କ ସାଙ୍ଗେ

ଦେଖାକରିବାର ସୁଯୋଗ ଦେବାକୁ ତାଙ୍କୁ ଅନୁରୋଧ କଲୁ । ଆମ ଭିତରୁ ଜଣେ ଆଗ୍ରହର ଅତିଶଯ୍ୟ ସହ ପଚାରିଲେ, "ଆପ ମିସେସ୍ ଖାରେ ହେଁ ନା ?" ମହିଳା ଜଣକ ସାମାନ୍ୟ ହସି କହିଲେ, "ନହିଁ, ମେଁ ଖାରେ ସାହାବେକା maid servant ହୁଁ ।" କି ଆଶ୍ଚର୍ଯ୍ୟ ! ଏ ବେଶ,ଏ ଚେହେରା, ପୁଣି ଇଂରେଜିରେ କଥା କହୁଥିବା କିନ୍ତୁ maid servant ! ଓଃ ! କେଡ଼େ ବଡ଼ ଭୁଲଟାଏ ହୋଇଗଲା ! ପରେ ଡକ୍ଟର ଖାରେ ଆସିବାରୁ ତାଙ୍କ ସହିତ ମଧୁର ଆଳାପ ଆରମ୍ଭ କରିଦେଲୁ । ଦେଖିଲୁ ସେ ଖଦଡ଼ ଗୁଡ଼ ଦେଇଛନ୍ତି । ଆଶ୍ଚର୍ଯ୍ୟ ହୋଇ ପଚାରିଲୁ , ଆପଣ କଣ ଖଦଡ଼ ଗୁଡ଼ ଦେଇଛନ୍ତି ? Why should I put on that cloak for sins ! ଏଁ ଖଦଡ଼ ହେଉଛି cloak for sins, ପାପର ଆବରଣ ମାତ୍ର । କି ବିଡ଼ମ୍ବନା ! ହଉନା ଖଦଡ଼ cloak for sins ସେଇଥି ଏ ଜାହାଜରେ ଖୁବ୍ ଦରକାର୍ । ତା ନହେଲେ ମହାଭାରତୀୟ ଭାବପ୍ରକାଶ କରାଯିବ କିମିତି ! କିନ୍ତୁ କାହିଁ କେଉଁଠି ତ ଦେଖାଯାଉନି ସେ ଦ୍ରବ୍ୟ ପରିଚ୍ଛଦ । ମହା ଅସୁବିଧା ! ଅନ୍ତତଃ ଗୋଟିଏ ବେକବନ୍ଦ କୋଟ କି ଗାନ୍ଧି ଟୋପି ନ ହେଲେତ ନ ଚଳେ । ହଠାତ୍ ମନେ ପଡ଼ିଲା, ମୋ ଶଯ୍ୟା ଟ୍ରଙ୍କ୍ ଖଣ୍ଡିକରେ ଏଣୁତେଣୁ ସାଧାରଣ ଅସାଧାରଣ ଆସବାବ ଭିତରେ ମୁଁ ମୋର ପୁରୁଣା ମାଖନ ରଙ୍ଗର ବେକବନ୍ଦ କୋଟ୍‌ଟା ଆଣିଛୁ । ଏହି କୋଟ୍ ଖଣ୍ଡିକୁ ସମ୍ବଳ କରି ନିଷ୍ପତ୍ତି କରିନେଲି କେହି ଯୋଗ୍ୟ ଲୋକ ନ ମିଳିଲେ ଏ ପତାକା ଉତ୍ତୋଳନ ଗୁରୁ ଦାୟିତ୍ୱଟା ମତେ ବହନ କରିବାକୁ ପଡ଼ିବ । ଖଣ୍ଡେ ଗ୍ଲେଟ୍‌କୋଟର ବକ୍ତୃତା କରିବାକୁ ଠିକ୍ କରିନେଲି । କିନ୍ତୁ କି ଭାଷାରେ ? ଓଡ଼ିଆ କି ଇଂରେଜି ତ ଚଳିବନି । ରାଷ୍ଟ୍ରଭାଷା ହିନ୍ଦିର ଆଶ୍ରୟ ନ ନେଲେ ଏ ଜାହାଜରେ ମହାଭାରତୀୟ ଜାତୀୟତା ବଜାୟ ରଖାଯିବା ସମ୍ଭବ ନୁହେଁ । ଭାଇ ଓ ବହେନୋ !

ମନେ ମନେ ବକ୍ତୃତାର ପ୍ରଥମ ପର୍ଯ୍ୟାୟଟା ଚିନ୍ତା କରିବାକୁ ଚେଷ୍ଟାକଲି । ହେଲେ ଏଥିରେ ଯିମିତି ତ୍ରୁଟି ଗୋଳମାଳ ରହିଲା ପରି ବୋଧହେଲା । ମୋ ହିନ୍ଦି ଏଠି ଚଳିବତ ! ଆମେ ଓଡ଼ିଆ ରାଗିଲେ ହିନ୍ଦି ଗ୍ଲେବଉ । ପ୍ରେମରେ ବଙ୍ଗଳା ଭାଷୁ, ବାଧ ହେଲେ ଓଡ଼ିଆ କହୁ । ମୋ ହିନ୍ଦି ତ ସେମିତି ପୋଖତ ନୁହେଁ । ପୋଖତ କଣ ଆଦୌ ତ ହିନ୍ଦି ନୁହେଁ ।

କିଣ ଗୋଟେ ଓଡ଼ିଆ ହିନ୍ଦି ମିଶା ବଚନ ବୋଲି, ସେ କଣ ଚଳିବ ! ଅଚଳ କାହିଁ ହେବ ? ଅନେକ ଯାଗାରେ ବିଶେଷତଃ ଗୃହିଣୀ ଦପ୍ତରରେ ମୋ ଅଧୀନସ୍ଥ କର୍ମଚାରୀଙ୍କୁ ଆଦେଶ ଦେଲା ବେଳେ ଅନେକବାର ମୁଁ ହିନ୍ଦିରେ କଥା କହିଛି । କଣ୍ଠରେ କଡ଼ା ଭାବ ରଖି ହେ, ହୋ, ହୋଗା ଦେଇ ଟାଣିକରି କଥା କହିବାକୁ ପଡ଼ିବ । ଭାରତର ବିଭିନ୍ନ ଯାଗାରେ ତ ଭିନ୍ନ ଭିନ୍ନ କିସମର ହିନ୍ଦି ଚଳେ । ତେଣୁ ଯଦି କୁଠି କିଣ ଗୋଳମାଳ ରହିଯିବ ବା ବ୍ୟାକରଣ ଭୁଲହେବ ତେବେ ଏଠି କେହି ହିନ୍ଦି-ଭାଷା-ବିଶାରଦ ଥିଲେ ଏହା ଓଡ଼ିଆ ଦେଶର ହିନ୍ଦି ବୋଲି ଧରିନେବେ । ତେଣୁ ମୋ ମୂର୍ଖତା ଧରା ପଡ଼ିବାର ଆଦୌ ଭୟ ନାହିଁ ।

ଏତେବେଳକୁ ଜାହାଜଟା ଖୁବ୍ ଜୋରରେ ଦୋହଲିବାକୁ ଆରମ୍ଭ କରିଥାଏ । ଶବ୍ଦ ହେଉଥାଏ ରଟ୍‌ରଟ୍ କଟ୍‌କଟ୍ । ରାତ୍ରି ପ୍ରାୟ ଶେଷ ପ୍ରହର ହେଲେ ବି ଜାହାଜରେ କେଉଁଠୁ କୁଆଡ଼ୁ ଗୋଳମାଳ ଭାସିଆସୁଥାଏ । ଏତେ ବେଳଯାଏ ଲୋକ କ'ଣ ଶୋଇନାହାନ୍ତି ? ଶୋଇବେ କାହିଁକି ! ଏ ଜଳଯାତ୍ରାର ମଉଜଟାକୁ ପାରୁପର୍ଯ୍ୟନ୍ତ ଉପଭୋଗ ନକରି···ମୋ ଆଖିକୁ ବି ନିଦ ଆସୁନଥାଏ । କେତେବେଳେ କେମିତି ଆଖି ବନ୍ଦ ହେଲେ ସାଙ୍ଗେ ସାଙ୍ଗେ ସ୍ୱପ୍ନ । ନିଜ ଘରେ ବସି ବିଲାତ-ଯାତ୍ରାର କ'ଣ ବନ୍ଦୋବସ୍ତ କରୁଛି । ସ୍ତ୍ରୀ ଓ ପିଲାଏ ଚାରିଆଡ଼େ ଘେରି ବସିଚନ୍ତି । ମନରେ ବେଶ୍ ଆନନ୍ଦ, ମୁଁ ତେବେ ଘର ଛାଡ଼ିବି ! ସାଙ୍ଗେ ସାଙ୍ଗେ ଉତ୍ତାଳ ତରଙ୍ଗ-ଧକ୍କାରେ ଜାହାଜଟା ଖୁବ୍ ଜୋରରେ ଦୁଲୁକି ଉଠେ । ଆଖି ଖୋଲି ଦେଖେତ ମୋର ନିଭୃତ କୋଠରୀର ଉପର ସିଟ୍‌ରେ ବସି ବିହାରରୁ ଯାଉଥିବା ଡକ୍ଟର ପାଣ୍ଡେ ଗୋଟିଏ କାଚବାଟିରେ ଭକ୍ ଭକ୍ ବାନ୍ତି କରୁଛନ୍ତି । କିଣ ହେଲା ପାଣ୍ଡେଜୀ ! ତାଙ୍କୁ ହଇଜା ଧରିଲା କି ! ବିଦେଶ ଯାତ୍ରା ଆଗରୁ ତ ସମସ୍ତେ ଔଷଧପତ୍ର ଖାଇ, ଦେହ ଫୋଡ଼ାଫୋଡ଼ି କରି ଆସିଛନ୍ତି । ପାଣ୍ଡେ ତ ପୁଣି ଜଣେ ଡାକ୍ତର । ତେବେ ତାର ଏ ଦଶା କାହିଁକି ! ଉଠିପଡ଼ି ମୋର ଏଇ ଆକସ୍ମିକ କୋଠରୀ-ବନ୍ଧୁଟିଙ୍କୁ ସେବାଶୁଶ୍ରୂଷା କରିବସିଲି । ଟିକିଏ ସାଷ୍ଟ୍ରାମ ହେବାରୁ ପାଣ୍ଡେ କହିଲେ ଜାହାଜ ରୋଗ ତାଙ୍କୁ ଧରିଛି । ଧରିଛି ବୋଲି ଧରିଛି ଏକଦମ୍ ନିବିଡ଼ ଭାବରେ ଧରିଛିନା ! ଖାଲି ଭକ୍, ଭକ୍··· ···

ଜାହାଜ ରୋଗ ! ଭାରତ ସାଗରରେ ଗ୍ରୀଷ୍ମକାଳର ଗୋଟିଏ ଝଡ଼ ଆରମ୍ଭ ହୋଇ ଯାଇଥାଏ । ଜାହାଜ ଖୁବ୍ ଜୋରରେ ଦୁଲୁକୁ ଥାଏ । ତାହାକୁନେଇ ଲୋକଙ୍କର ମୁଣ୍ଡବୁଲା, ବାନ୍ତି ଆରମ୍ଭ ହୋଇଯାଇଛି । ଡେକ୍ ଆଡ଼କୁ ଟିକଏ ବୁଲିଗଲି । ଦେଖେତ ଅସମ୍ଭାଳ କାଣ୍ଡ । ଲୋକ ପଟାଳି ପରି ଗୃହଆଡ଼େ ପଡ଼ିଛନ୍ତି, ଗଡ଼ୁଛନ୍ତି । କିଏ ଚଉକି ଉପରେ ଢୁଳାଉଛି, କିଏ ଚଟାଣ ଉପରେ ହାମୁଡ଼େଇ ପଡ଼ିଚି, କାହା ହାତରେ କାଗେଜି ଲେମ୍ବୁ । କିଏ ସାଙ୍ଗରେ ସଙ୍ଗାଳି କରି ଆଣିଥିବା ବଟିକା ଗୋଟା ଗୋଟା କରି ଗିଳୁଛି । ତେଣେ ଅ-ଅ ହେଲା ବେଳକୁ ଏଣେ ଗୋଟେ ଗୋଟେ ଗୁଳିଗିଳା । ଜଣେ ଦିଜଣ ପାଖରେ ବୋତଲ ଓ ଗିଲାସ ରଖିଛନ୍ତି । ତାଙ୍କର ମଦ ହେଲା ମହୌଷଧି । ଥଣ୍ଡା, ଗରମ, ଶରଦ, କାଶ, ଝାଡ଼ାବାନ୍ତି ସବୁ ଲାଲ ପାଣିରେ ଶାନ୍ତ । ଠିକ୍ ଅଫିମଖୋର ଲୋକ କହିଲା ପରି, ସୋରିଷ ପରି ଗୁଳିଟିଏ । ସେ କଳାକୃଷ୍ଣ ଦ୍ରବ୍ୟରୁ ସେବାକଲେ ସବରୋଗରୁ ରକ୍ଷା, ସବୁ ଦୁଃଖକଷ୍ଟର ପରିସମାପ୍ତି । ମତେ ଗୋଟେ ଚିନ୍ତା ଜରି ବୁଲି ଆସିଲା । ଭାବିଲି ଏ ଭଙ୍ଗା ଦେହଟାରେ କଣ ବା ଅଛି । ନାନା ଦୁଃଖଜଞ୍ଜାଳରେ ଜୀବନଟାକୁ କୌଣସିମତେ ବଞ୍ଚେଇରଖିଥିଲି । ସ୍ୱାସ୍ଥ୍ୟବାନ୍ ବପୁବନ୍ତ ରଥୀଗୁଡ଼ିକଙ୍କର ଯେତେବେଳେ ଏ ଅବସ୍ଥା, ମୁଁ ବା କି ଛାର ! ନିଶ୍ଚୟ ମୋ ବିଚିତ୍ର ଜୀବନର ଏଇଠି ଇତିଶ୍ରୀ ଘଟିବ, ଜଳ ସମାଧି ହେବ ଏ ଜାହାଜ ରୋଗରେ ।

ସମୁଦ୍ରରେ ଭୀଷଣ ଝଡ଼ । ଲହରୀ ଗୁଡାକ ଉଠୁଥାଏ, ପଡୁଥାଏ ଖୁବ୍ ଜୋରରେ । ବିରାଟ ସମୁଦ୍ର ଭିତରେ ଏଇ ଗ୍ରେଟ କାଠ ଭେଳାଟା ଅତି ହେୟ, ଅତି ନଗଣ୍ୟ ପରି ମନେ ହେଲା, ଠିକ୍ ଯେପରି ସବୁହତ୍ ହ୍ରଦ ଭିତରେ ଗୋଟିଏ ଶୋଲ ଠିପି । ତେବେ ବି ଖର ବେଗରେ ଆଗକୁ ମାଡ଼ି ଚାଲିଥାଏ ଆମ ଜାହାଜଟି ପଶ୍ଚିମ ଦିଗନ୍ତ ଅଭିମୁଖରେ ତୀବ୍ର ଆର୍ତ୍ତନାଦ କରି, ସତେ ଯେମିତ ପ୍ରକୃତିର କରାଳ କବଳରୁ ପାଟିକରି ପଳେଇ ଯାଉଛି ଜଣେ ଦୁଃସ୍ଥ ନିରାଶ୍ରୟ ଲୋକ ଆପଣାର ଆସବାବ ଧରି ।

ଆଖି ମୋର ଅଜାଣତରେ ଯାଇପଡ଼ିଲା ପୂର୍ବ ଆକାଶରେ । ସବୁ ତ ଝାପସା, କିଛି ସ୍ପଷ୍ଟ ଭାବରେ ଦେଖାଯାଉ ନଥାଏ । କୁଆଡ଼େ

ରହିଲା ମୋର ପ୍ରିୟ ଘରଦ୍ୱାର । କୁଆଡେ ରହିଲେ ମୋର ପ୍ରିୟ ପରିବାର । ହଠାତ୍ ଯେମିତି ମନ ଭିତରଟା କୋହକୋହ କରି ଉଠିଲା, ଆଖି ଛଳ ଛଳ ହୋଇଗଲା । ସାଙ୍ଗେ ସାଙ୍ଗେ ମୁଣ୍ଡଟା ବୁଲେଇଦେଲା, କଣ ବାନ୍ତି ହବକି ! ବିବ୍ରତ ହୋଇ ପଳେଇ ଆସିଲି କାବିନ୍‌କୁ । ଜାହାଜ ରୋଗର ଏ ପୂର୍ବରାଗ ଦେଖି ମୁଁ ବଡ଼ ବିବ୍ରତ ହୋଇପଡ଼ିଲି । କଣ ହେବ କେଜାଣି ! ବିଛଣା ଉପରେ ପଡ଼ିଯାଇ ଶୋଇବାକୁ ଚେଷ୍ଟାକଲି । ଠିକଏ ନିଦ ଲାଗିଗଲା, ଉଠୁଉଠୁ ସକାଳ ୮ଟା । ତରତର ହୋଇ ଗାଧୋଇ ପାଧୋଇ ଡେକ୍ ଉପରକୁ ଗଲି । ପୂର୍ବଦିନରୁ କେତେକ ଭାରତୀୟ ବନ୍ଧୁଙ୍କୁ ଏଇ ସ୍ୱାଧୀନତା ଦିବସ ନେଇ ସତର୍କ କରିଦେଇଥାଏ । ହୁଏତ ସେମାନେ ଆଗରୁ ଯାଇ ପ୍ରସ୍ତୁତ ହୋଇସିବେଣି । ମୋର ଡେ଼ରି ହୋଇଯିବା ଅନୁଭବ କରି ନିଜ ଉପରେ ଠିକେ ବିରକ୍ତ ହୋଇଉଠିଲି କିନ୍ତୁ ଉପରେ ଯାଇ ଦେଖେତ କାହାର ଏ ବିଷୟରେ ଚିନ୍ତାଦିକ ନାହିଁ । ସମସ୍ତଙ୍କୁ ମୋଟାମୋଟି ଜାହଜ ରୋଗ ଧରିଛି । ସେଥିରେ ଘାରିହୋଇ କିଏ ଧୂଆଁ ଖିଆ ଘରେ କିଏ ଜାହାଜ ବାରଣ୍ଡାରେ, କିଏ ଡେକ୍ ଉପରେ ଢୁମାଉଛନ୍ତି । ଦଳେ କିନ୍ତୁ ଜମେଇ ଦେଇଛନ୍ତି ପାନୀୟ ଆସର । ଝଲଝଲ ଢ଼ଳଢ଼ଳ ଭାବରେ ହାତରେ ଗୋଟିଏ ଗୋଟିଏ ରଙ୍ଗୀନ୍ ରସଭରା ପିଆଲି ଧରି, ଠିକ୍ ହିନ୍ଦି ସିନେମାରେ ମାତାଲ ଭୂମିକାରେ ଅଭିନୟ କଲପରି । କଣ ଗଡଗଡ ଏଣୁତେଣୁ ଗପି ଯାଉଛନ୍ତି । ମଝିରେ ବସିଛନ୍ତି ସେ ଶ୍ୱେତାଙ୍ଗିନୀ ମହିଳା ଭାରତୀୟ ନାରୀଙ୍କ ବେଶରେ । ସେମାନଙ୍କୁ ଘେରି ରହିଛନ୍ତି ଆମର ଦ୍ୱିଟାବାବୁ ଓ ତାଙ୍କର ବନ୍ଧୁଗଣ । ବାଃ ପ୍ରାକୃତ ଦୁଃଖଶୋକ କିଛି ନାହିଁ । କି ଯାଦୁମନ୍ତ୍ର ଜାଣନ୍ତି ଏ ମହିସୂସୀ ମହିଳା ! କି ବଳିଷ୍ଠ ଶକ୍ତି ଅଛି ଏ ମଦିରା ରସରେ ! ହେଲେ ମଝିରେ ମଝିରେ ଏ ମଧୁର ପରିବେଶକୁ ବିଗାଡ଼ି ଦେଉଥାଏ କାହାର ଅ-ଅ, କାହାର ଭକ୍ ଭକ୍ ଶବ୍ଦ । ମନେ ମନେ ବଡ ବିରକ୍ତ ହୋଇ ଉଠିଲି । ଆମ ଭାରତୀୟଙ୍କର କଣ ଦାୟିତ୍ୱ ଜ୍ଞାନ କିଛି ନାହିଁ । ଏ ସ୍ୱାଧୀନତା ଦିବସ କଣ ତେବେ ବାଏଁ ବାଏଁ ଉଡ଼ିଯିବ !

ରାଗ ତମ ତମ ହୋଇ ପହଞ୍ଚିଲି ବୁରୋରେ । ଏଇଟା ଜାହାଜର ମହାଅଫିସ । ଏଇଠୁ ଆମ ଚିଠିପତ୍ର ମିଳେ । ଜାହଜରେ ଯିବା

ଆସିବାର ଯାବତୀୟ ସମ୍ବାଦ ଏଇଠାରୁ ପରିବେଷଣ କରାଯାଏ । ଏଇଠୁ ଜାହିର କରାଯାଏ ଖାଇବା ପିଇବା, ଓହ୍ଲାଇବା, ଉଠିବା ଆଦି ବିଷୟରେ ନାନା କଟକଣା । କିନ୍ତୁ ଏଠି ଯେଉଁମାନେ କାମ କରନ୍ତି ସେମାନଙ୍କର କୌଣସି କଥାରେ ଦରଦ ବୋଲି ଜିନିଷ କିଛି ନାହିଁ । ଭଲ ହେଉ ମନ୍ଦ ହେଉ ଗୁମ୍ ହୋଇ ଦରଖୋଲା କୋଠରୀଟିରେ ବସିଥାନ୍ତି । କଣ ଲେଖାଲେଖି, ଦେଖାଦେଖି କରୁଥାନ୍ତି । ଜାହାଜରେ ଯେ କେତେଗୁଡ଼ିଏ ମୂଲ୍ୟବାନ୍ ମନୁଷ୍ୟ-ଜୀବ ଯାଉଛନ୍ତି ତାଙ୍କର କେତେବେଳେ କଣ ହୋଇପାରେ ସେଥିକି ଆଦୌ ଖାତିର୍ ନାହିଁ । ଏଇ ଭଳି ମନୋଭାବ ମୁଁ ଦେଖିଛି ବଡ ଦେଉଳ ପୂଜାପଣ୍ଡାମାନଙ୍କ ପାଖରେ । ଭକ୍ତଦଳ ପ୍ରଭୁ ବଳିଆରଭୁଜ କହି ଭକ୍ତିରେ ଏକଦମ୍ ଗଦଗଦ, ଚଳଚଞ୍ଚଳ, କାଠାଅଡ଼ା ସବୁଟା ତାଙ୍କ ପାଖରେ ପବିତ୍ର । ଦେଉଳ ଭିତରେ ଯାହା ଦେଖନ୍ତି ଚିତ୍ର ବିଚିତ୍ର, ମାଟି ପଥର ସବୁଥିରେ ହାତମାରି ମୁଣ୍ଡରେ ଲଗାନ୍ତି । ତଳେ ସାଷ୍ଟାଙ୍ଗ ମୁଣ୍ଡିଆ ମାରନ୍ତି ମୁକ୍ତି ପାଇବା ଆଶାରେ । ହେଲେ ପଣ୍ଡାମାନେ ଜିନିଷ ସବୁକାମ, ପୂଜାଉଜା କରୁଥାନ୍ତି ନିତାନ୍ତ ନିର୍ବିକାର ନିତାନ୍ତ ଅନାସକ୍ତ ଭାବରେ । ମହାପ୍ରସାଦକୁ ଲୋକେ ବୈକୁଣ୍ଠ-କୈବଲ୍ୟ ବୋଲି ମନେକରି ମୁଣ୍ଡରେ ଲଗାନ୍ତି, ପାଟିରେ ଦିଅନ୍ତି । ସେହି ମହାପ୍ରସାଦରୁ ଯଦି ଟିକିଏ କେଉଁଠି ତଳେ ପଡ଼ିଥାଏ, ତାକୁ ସଭକ୍ତି ଚିତ୍ତରେ ଉଠାଇନିଅନ୍ତି । କିନ୍ତୁ ପଣ୍ଡାମାନେ ତାକୁ ଗୋଡ଼ତଳେ ମାଡ଼ିଲେ ବି ଅନୁଶୋଚନା ନାହିଁ ।

ଆଉ ଦେଖିଛି ଏ ମନୋଭାବ କୋର୍ଟ କଚେରୀରେ । ଲୋକେ କାହା ବିପକ୍ଷରେ କିଛି ନା କିଛି କଲେ, ଠିକେ ବିବ୍ରତ ହୋଇପଡ଼ନ୍ତି । ବିବେକ-ଦଂଶନ ତାଙ୍କୁ ବ୍ୟଗ୍ର ବିବ୍ରତ କରିପକାଏ । କାହାର କିଛି ଅନିଷ୍ଟ କରୁନାହିଁ ତ ! କିନ୍ତୁ କଚେରୀ ହାକିମ, ଜଣକ ପରେ ଜଣକୁ ଦଣ୍ଡ ଦେଇଯାନ୍ତି । ମନେହୁଏ ଜିନିଷ ଯାଏ ଆସେ ନଥାଏ ତାଙ୍କର ସେ ନ୍ୟାୟ ବିଚାରକଲେ କି ଅନ୍ୟାୟ ବିଚାରରେ । କାହାକୁ ଜେଲ ଦିଅନ୍ତି, କାହାକୁ ଜୋରିମାନା କରନ୍ତି, କାହାକୁ ଫାଶି ଦିଅନ୍ତି । ତାପରେ ଆଣ ଆର ଫାଇଲ୍ ।

ବନଦେବୀଙ୍କ ପାଖରେ ମହାଷ୍ଟମୀରେ କଂସେଇ ନିର୍ବିକାର ଚିତ୍ତରେ ଗୋଟିଏ ପରେ ଗୋଟିଏ ମେଣ୍ଢା ହାଣିଲା ପରି ଏହି ଭୁବେଶର କାରପେଟଦ୍ୱାର କାଗଜସବୁ ଖଣ୍ଡିକ ପରେ ଖଣ୍ଡେ ନୀରବ ନିଶ୍ଚଳ ଭାବରେ ଦେଖି ଫୋପାଡ଼ି ଦେଉଥାନ୍ତି । ସେ ଜଣେ ଦୀର୍ଘକାୟ ଲୋକ । ନାକଟା ତାଙ୍କର ଟିକିଏ ବେଶୀ ଲମ୍ବା । କଥା କହିଲା ବେଳେ ଶବ୍ଦ ଗୁଡ଼ାକ ଯେପରି ନାକ ପୁଡ଼ାରେ ବାଡ଼େଇହୋଇ ଗୋଟାଏ ବିଶିଷ୍ଟ ସ୍ୱର ସୃଷ୍ଟି କରୁଥାଏ । ରାଗିଯାଇ ତାଙ୍କୁ ହାଙ୍କିବସିଲି—କିଣ ପାଇଁ ଭାରତ ପ୍ରତି ତାଙ୍କର ଅବହେଳା, କିଣ ପାଇଁ ତାର ସ୍ୱାଧୀନତା ଦିବସ ପାଳିବାକୁ କିଛି ଚେଷ୍ଟା ନାହିଁ ? ଏତେ ଭାବପ୍ରବଣ ହୋଇପଡ଼ିଥିଲି ଯେ ଗୁଡ଼ାଏ କଥା ଏକାବେଳକେ କହିବାକୁ ଯାଇ ତରତରରେ ସବୁଗୁଡ଼ା ଗାଳି ପକେଇଲି ଭାଷା ଓ ବ୍ୟାକରଣ ପ୍ରତି ଲକ୍ଷ୍ୟ ନ ରଖି, ଅବଶ୍ୟ ଇଂରେଜିରେ । କିନ୍ତୁ ସେ ଇଂରେଜ ଭଦ୍ରଲୋକ ସବୁ ଶୁଣିଲେ କି ନାହିଁ କେଜାଣି, ମୋତେ ବୁଝେଇ କହିବାକୁ ଚେଷ୍ଟା କଲେ—ଜାହାଜଟା ତ ଭାରତରେ ନାହିଁ, ସେଟା ଏଇଲେ ଖୋଲା ସମୁଦ୍ରରେ । ଏଠି ସମସ୍ତଙ୍କର ସମାନ ଅଧିକାର । ଡେକ୍ ଖୋଲା ପଡ଼ିଛି । ବନ୍ଧୁବାନ୍ଧବମାନଙ୍କୁ ଧରି ଉତ୍ସବଟା ପାଳନ୍ତନା, ଯଦି ଚାହୁଁଛ ।

ବନ୍ଧୁବାନ୍ଧବମାନଙ୍କୁ ଧରିବି କିଣ ! ସେମାନଙ୍କ ଭିତରୁ ଅଧିକାଂଶ ତ ଧରାଶାୟୀ ସମୁଦ୍ର-ରୋଗରେ । ଆଉ କିଏ ନିଶାରେ ମଜଗୁଲ ତ କିଏ ଆମୋଦ ପ୍ରମୋଦରେ ବ୍ୟସ୍ତ । କିଏ ବା ସାଗର ସୁନ୍ଦରୀ ମହିଳାଟିଏ ଦେଖି ତାଙ୍କ ସଙ୍ଗେ ବନ୍ଧୁତା ପାତିବ ବୋଲି ପାଖ ଆଖରେ ଘରିନ୍ତି ମାରୁଛି ବିଚାର ପାଣିରେ । ହଁ, ସାଗର ସୁନ୍ଦରୀ ! ଜାହାଜରେ ଯେ କେତେଜଣ ମହିଳା ଯାଉଥାନ୍ତି ସେମାନଙ୍କ ମଧ୍ୟରୁ ଅନେକ ବିଗତ-ଯୌବନା, ଅସୁନ୍ଦରୀ, ସାଦିତ ଦେହର ସ୍ୱଳ୍ପ ବେଶଭୂଷାଟା ଖୁବ୍ ଯତ୍ନରେ ବା ଅଯତ୍ନରେ ସଜାଡ଼ିଥାନ୍ତି ପୁରୁଷ ମନକୁ ଆକର୍ଷଣ କରିବାକୁ କିନ୍ତୁ ତାଙ୍କଠାରେ ଆକର୍ଷଣୀୟ କିଛି ନଥାଏ । ହେଲେ ଅପାଳକ ରାଜ୍ୟରେ ବଜ୍ରଳ ଲକ୍ଷେ ଟଙ୍କା ! ଏମାନଙ୍କ ଅନୁଗ୍ରହାକାଙ୍କ୍ଷୀ କିନ୍ତୁ କମ୍ ନଥାନ୍ତି । ଏହି ଅପୂର୍ବ, ଅଦ୍ଭୁତ, ଅର୍ଦ୍ଧଉଲଗ୍ନ ମହିଳାମାନଙ୍କ ସ୍ନେହ-ସାନ୍ନିଧ୍ୟ

ଲାଭକର କପର ଗୃହ-ବିଚ୍ଛେଦ ସ୍ୱପତ୍ନୀ-ବିରହ ଦୁଃଖରୁ ରକ୍ଷାପାଇବେ ଅନେକେ ସେଇ ଚେଷ୍ଟାରେ ଥାନ୍ତି । ବାଃ, ବଡ଼ ବିଚିତ୍ର ବ୍ୟବସ୍ଥା ତ !

ଏହି ସମୟରେ କେହି ହାତରେ ଯନ୍ତ୍ରବାଦ୍ୟ ଧରି କଣିକଣି ଶବ୍ଦକରି ବୁଲିଗଲେ । କି ଶବ୍ଦ ଏ, କଏ ଘୁରିଘୁରି ପ୍ରଚାର କରୁଛି ? ଜଣେ କଏ ପଛରୁ ଚିତ୍କାର କରିଉଠିଲା, Breakfast ! ଏହି ଇଂରେଜୀ ଶବ୍ଦଟିର ଅର୍ଥ ସଙ୍ଗେସଙ୍ଗେ ହୃଦୟଙ୍ଗମ କରିନେଲି । ଗତ ରାତ୍ରିରେ ଯାତ୍ରୀମାନେ ଖିଆପିଆ କରିସାରି ନାନା ମନ୍ତବ୍ୟ କରୁଥିଲେ । ମୁଁ ଯେ ଖାଇବାକୁ ଯାଇନି ଏକଥା ବୁଝିପାରି ଭୋଜନାଳୟକୁ ଯାଇ ଦେଖେତ ସବୁ ଶୁନଶାନ୍ । ବାଧ୍ୟହୋଇ ଉପବାସ ରହିବାକୁ ପଡ଼ିଲା । ତେଣୁ fast ଟା break କରିବାକୁ ମନଟା ବିକଳ ହୋଇ ଉଠିଲା, ପେଟଟା ଯଦିଚ ପୂର୍ବଦିନର ସୁଚିନ୍ତା ଦୁଶ୍ଚିନ୍ତା ନେଇ ଗୋଟେ ନିରାଟ ନିଶ୍ଚେଷ୍ଟ ଅବସ୍ଥାରେ ଥିଲା ବୈଠକୀ ଧାରଣା ଦେଲାପରି । ସେଇଟା ବି ଖାଇବାର ସୁରାକ୍ ପାଇ ଆର୍ତ୍ତନାଦ ଆରମ୍ଭ କରିଦେଲା । ତେବେ କଣ ପତାକା ଉତ୍ତୋଳନ ମୋହ ଏଡ଼ି ଖାଇବାଘରେ ଆଡ଼େ ମୁହାଁଇବି ! ଖରାପ କଣ ! ପେଟ ଅପୂରା ଥିଲେ ତ କଷ୍ଟ କରିହେବନି । ଅନ୍ନଚିନ୍ତା ଚମତ୍କାର । କାତରେ ଜାଣିଥିବା କୁତଃ ?

ବ୍ରେକଫାଷ୍ଟ ଟାରେ ବସିହେ ଗିଳିଲି । ପୂର୍ବଦିନର ଉପାସକୁ ଯଥେଷ୍ଟ ଖାଦ୍ୟ ମିଳିଲା ଭାଗ୍ୟକୁ । ଯେତେ ପ୍ରକାର ଜିନିଷ ଦିଆଗଲା କଣ୍ଟା ଗ୍ରୁମ୍ବୁର ବାଧା ନମାନି ହାତ ଲଗେଇ ଚଳେଇଦେଲି ମନଇଚ୍ଛା । ପେଟଟା ଥଣ୍ଡା ହୋଇ ଯିବାରୁ, ମନଟା ପୁଣି ଅଥୟ ହୋଇ ଉଠିଲା ସ୍ୱାଧୀନତା ଦିବସ ନେଇ । ମନସ୍ଥକଲି କାହାକୁ କିଛି ନକହି ସାଙ୍ଗେସାଙ୍ଗେ ବେକଚପା କୋଟ୍‌ଟା ପିନ୍ଧି ବାହାରି ପଡ଼ିବି ଡେକ୍ ଉପରକୁ । ଯେ ଜଣେ ଦି’ଜଣ ଭାରତୀୟ ମିଳିବେ ତାଙ୍କୁ ଧରି ଏ ସ୍ୱାଧୀନତା ଦିବସ ଉତ୍ସବକୁ ସାଙ୍ଗ କରିବି । ବେଳ ଗଡ଼ିଯାଉଛି । ଆଉ ଡେରିକଲେ କଥାଟା ଅସମ୍ଭବ ହୋଇଉଠିବ । ସାଙ୍ଗେ ସାଙ୍ଗେ ବେକଚପା କୋଟ୍‌ଟା ପିନ୍ଧିବାକୁ ଆରମ୍ଭ କରିଦେଲି କିନ୍ତୁ ଏ କଣ ! ଯେତେ ଚେଷ୍ଟା କଲେ ବି ସେ କୋଟ୍‌ର ଉପର ଆଙ୍କୁଶିଟା ଆଉ ନଲାଗେ । ଟଣାଓଟରା କରି କୋଟ ଛିଣ୍ଡିବା ଉପରେ । ଏପଟ ସେପଟ

ମୁହଁ କରିବା ଫଳରେ ବେକଟା ବି କଠକଠ କଲାଣି । ହେଲେ କୋଟ୍‌ର ମୁଣ୍ଡିଟା ବନ୍ଦହୋଇ ପାରୁନଥାଏ । ଏହି ସମୟରେ ମୋର କାବିନ୍ ବନ୍ଧୁ ପାଣ୍ଡେବାବୁ କୁଆଡ଼େ ଥିଲେ ଜୋରରେ ଘର ଭିତରକୁ ପଶିଆସିଲେ । ବିକଳରେ କହିଲି, ବନ୍ଧୁ ! ଏଇଟା ଟିକିଏ ଲଗେଇଦେଲ । ପାଣ୍ଡେ କିନ୍ତୁ କିଛୁ ଶୁଣିବା ଅବସ୍ଥାରେ ନଥିଲେ । କହିଲେ, ମୋର ଆଦୌ ବେଳ-ନାହିଁ । ସମସ୍ତେ Swimming poolରେ ହାଜର ହେଇଗଲେଣି । ଜାହାଜର କେତେକ ସୁନ୍ଦରୀ ମହିଳା ସନ୍ତରଣ ପୋଷାକ ପିନ୍ଧି ପାଣିରେ ଲମ୍ଫ ଦେବା ଉପରେ । ମୁଁ କି ଆଉ ସମ୍ଭାଳି ରହିପାରିବି ? ନା, ତୁମେ ଆଉ କେମିତି ସମ୍ଭାଳିହୋଇ ପାରିବ ! ହେଲେ ଭାରତର ସ୍ୱାଧୀନତା ଦିବସଟା ପାଳିତ ହୋଇପାରୁନି ଯେ !

ବିଲାତରେ ପ୍ୟାଣ୍ଟ, ସାର୍ଟ୍‌ରେ ବୋତାମ୍ ଲଗେଇବାକୁ ଲୋକ ମିଳନ୍ତିନି ବୋଲି ସାଙ୍ଗସାଥୀମାନେ ଆଗରୁ କହିଥିଲେ । ତେଣୁ ସାଙ୍ଗରେ ଆଣିଥିବା ଗୁଳିସୂତା ଓ ଛୁଞ୍ଚି ସାହାଯ୍ୟରେ କୋଟ୍ ମୁଣ୍ଡିଟା କୌଣସି ମତେ ଚପି ସିଲେଇ କରିଦେଲି । ଲେଗ୍‌କୋଟ୍ ହୋଇ ଟ୍ରଙ୍କରେ ପଡ଼ିଥିବା କୋଟ୍‌ଟା ମୋ ଦେହକୁ ବିଚିତ୍ର ଦେଖାଗଲା । ଯାହା ଦେଖାଯାଉ, ଜାତୀୟ ପୋଷାକ ତ । ଶ୍ରେଷ୍ଠ ଜାତୀୟ ପତାକା ଖଣ୍ଡେ ଟ୍ରଙ୍କରେ ଥିଲା । ସେ ପତାକାଟା ଧରି ଉପର ଡେକ୍‌କୁ ଉଠିଗଲି ବୀର ଦର୍ପରେ । ମାଉଣ୍ଟ ଏଭେରେଷ୍ଟରେ ପତାକା ପୋତିବାକୁ ଏତେ ଉତ୍କଣ୍ଠ ହୋଇ ନଥିବେ ତେନଜିଙ୍ଗ୍ ବା ହିଲାରୀ । କିନ୍ତୁ ହବ କଣ ? ଅଧିକାଂଶ ଯାତ୍ରୀ ଯାଇତ Swimming pool ପାଖରେ ଜମିଯାଇଛନ୍ତି । କିଏ ଏଇ ଜାହାଜ-ଯମୁନାରେ ଜଳକେଳିରେ ବ୍ୟସ୍ତ । କିଏବା ଦେଖଣାହାରୀ ହେଲେ ବି ଅପୂର୍ବ ଆନନ୍ଦ ଉପଭୋଗ କରୁଛି କେବଳ ସେ ରୋମାଞ୍ଚକର ଦୃଶ୍ୟ ନେହାଉଥି କରି ।

ଆକାରରେ ଶ୍ରେଷ୍ଠ ହେଲେ ବି ଜାହାଜର ସନ୍ତରଣ ସରୋବରଟା ବେଶ୍ ଗମ୍ଭୀର, ବେଶ୍ ଲମ୍ବା ଚଉଡ଼ା ବି । ନ ହୁଅନ୍ତା କେମିତି ! ଏତ ଜଳଯାତ୍ରାର ଗୋଟିଏ ବିଶେଷ ଆକର୍ଷଣ । ତେଣୁ ଯୁ'ଙ୍କୁ ବଡ଼କରି, ଭଲକରି ନକଲେ ଚଳିବ କେମିତି ! ଯୁବକଯୁବତୀ, ଭଦ୍ରଲୋକ,

ଭଦ୍ରମହିଳା ଅନେକ ତା ପାଖରେ ଜୁଟିଯାଇଥାନ୍ତି । ଅନେକେ ତା ଭିତରେ ପଶିଯାଇଥାନ୍ତି । ବାହାରଟା ଯେମିତି ଏଇ ବୋଇତରୁ ଆରମ୍ଭ ହୋଇଯାଇଛି । ବିଭିନ୍ନ କିସମର ପହଁରା ପୋଷାକ ପିନ୍ଧି ଏମାନେ ମାତି ଉଠିଥାନ୍ତି ଜଳକେଳିରେ । ଏ ପହଁରା ପୋଷାକର ବୈଶିଷ୍ଟ୍ୟ ଏହି ଯେ ଏଗୁଡ଼ାକ ଖୁବ୍ ଶ୍ଳେଷ୍ଟ ଶ୍ଳେଷ୍ଟ ଏବଂ ଅନେକଟା ସ୍ୱଚ୍ଛ, ତେଣୁ ପିନ୍ଧିଲେ ବି ନପିନ୍ଧିବା ସାଙ୍ଗେ ସମାନ । ସାରା ଅଙ୍ଗ ପ୍ରତ୍ୟଙ୍ଗ, ସାରା ସୌନ୍ଦର୍ଯ୍ୟ ଅସୌନ୍ଦର୍ଯ୍ୟ ସବୁ ସ୍ପଷ୍ଟ ଦେଖାଯାଉଥାଏ । ନିଶ୍ଚୟ ଏ ପୋଷାକର ମାହାତ୍ମ୍ୟ ଅଛି । କେବଳ ଏହି ପୋଷାକର ସଦ୍‌ବ୍ୟବହାର ହେବ ବୋଲି ହିନ୍ଦି ଓ ଇଂଲିଶ୍ ସିନେମାରେ ବହୁ ଗାଧୋଇବା, ପହଁରିବା ଦୃଶ୍ୟ ଯୋଡ଼ାଯାଇଥାଏ । ଦେଖିଲି ସେ ଗୁଳୁଗଣ୍ଠି ନନ୍ଦନ ଆଜି ସେ ଶ୍ୱେତାଙ୍ଗିମାଙ୍କୁ । ସେମାନେ ଏତେବେଳକୁ ସେ କେଳି ସରୋବରରେ ଝାସ ଦେଇସାରିଥାନ୍ତି । ଟିକିଏ ପହଁରୁଥାନ୍ତି, ଟିକିଏ ଗିଲିବୁଡ଼ା ମାରୁଥାନ୍ତି, ପୁଣି ଉପରକୁ ଉଠିଆସି ବିକଳ ହୋଇ ଊର୍ଦ୍ଧ୍ୱକୁ ହାତ ବଢ଼ାଉଥାନ୍ତି । ଅପେକ୍ଷା କରିଥାନ୍ତି ଉପରେ କେତେକ ସହୃଦୟ ବନ୍ଧୁ ହାତରେ ଧରି ଦରପିଆ ମଦ ପିଆଲା ଓ ଦରଖିଆ ସିଗାରେଟ୍ । ତାଙ୍କ ହାତରୁ ତାକୁ ଝାମ୍ପି ଆଣି ଟିକେ ପିଇ ଦେଉଥାନ୍ତି ସେ ଲାଲ ପାଣିରୁ । ହଁ' ଶୋଷା ଟାଣି-ଦେଉଥାନ୍ତି ସେ ସିଗାରେଟ୍ ରୁ । ନୂଆ ପାଣି, ଧରିପାରେ, ତେଣୁ ଏ ପ୍ରତିଷେଧକ ବ୍ୟବସ୍ଥା !

ନୂଆ ପାଣିରେ ବି ମୁଁ ସେଦିନ ଗାଧୋଇଥାଏ । କେତେକ ବନ୍ଧୁ ଆଗରୁ ପରାମର୍ଶ ଦେଇଥାନ୍ତି, ସକାଳୁ ଗାଧୋଇଲେ ଟିକିଏ ଗରମ ପାଣି ମିଶେଇ ଗାଧୁଆ କୁଣ୍ଡର ଜଳକୁ ନଈଉଷ୍ମ କରିବାକୁ ପଡ଼ିବ । ହେଲେ ଟ୍ୟାବ୍‌ର ସେ ଗରମ ପାଣି ଯେମିତି ଟକମକ ଫୁଟୁଥାଏ । ସେ ଆଡ଼କୁ ମନ ଗଲାନି । ଦେହରେ ତ ମୋର କମ୍ ଚର୍ବି ଜମାଟ ନଥାଏ ? ଆଉ ପୁଣି ତାତିଲା ପାଣି କଣ ହେବ ! କଟୁ ନଭାବି ଭାଲ ଥଣ୍ଡା ପାଣିରେ ମୁଣ୍ଡଧୋଇ ଗାଧୋଇଲି । ଦେହଟା ମୋର ଯିମିତି ଶୀତେଇ ଉଠିଲା, ବେଶ୍ ଆରାମ୍ ଲାଗିଲା । ମନ ବି ବେଶ୍ ପ୍ରଫୁଲ୍ଲ, ଚିତ୍ତ ବି ବେଶ ହାଲୁକା ଲାଗୁଥାଏ । ନଲାଗିବ କେମିତି ଏଣେ ଦେହ ଥଣ୍ଡାକୁ ପେଟ ଥଣ୍ଡା । ହଁ, ସବୁ ପ୍ରକାର ଥଣ୍ଡା ହୋଇ ପତାକା ଉତ୍ତୋଳନ କାର୍ଯ୍ୟଟା ଶେଷ୍ କରିବି

ବୋଲି ବସିଥିଲି । କିନ୍ତୁ ମୁଁ ଏ କରୁଛି କଣ ! ମୁଁ କି ଆସି ଏ ଜଳକେଳି ପାଖରେ ହାଜର, ଅର୍ଦ୍ଧ ଉଲଗ୍ନଯୁବକ ଯୁବତୀ, ପୁରୁଷସ୍ତ୍ରୀଙ୍କ ସନ୍ତରଣ-ଶୋଭା ଦେଖିବାକୁ । ଧନ୍ୟରେ ମନୁଷ୍ୟ ପ୍ରକୃତି ! ମିଛରେ ସିନା ବିଚରା ଦୁଃଶାସନ ଓ ଦୁର୍ଯ୍ୟୋଧନଙ୍କୁ ମହାଭାରତ ପୁରାଣ ନିନ୍ଦାକରେ ସେମାନେ ଦ୍ରୌପଦୀଙ୍କୁ କୁରୁସଭାରେ ବିବସନା କଲେ ବୋଲି, ନଇଲେ ବାଟରେ ଭିକାରୁଣୀଟିଏ ଲଙ୍ଗଳା ହୋଇ ଯାଉଥିଲେ ତା ଆଖପାଖରେ ବହୁତ ଲୋକ ଜମାହୋଇ ଦେଖିବେ ସେ ବିଚିତ୍ର ଦୃଶ୍ୟ ! ସଙ୍ଗେ ସଙ୍ଗେ ମନ ନିଜ ଧିକ୍କାରରେ ଭରିଗଲା । କିନ୍ତୁ କରିବି କଣ ! ଏ ଜଳକେଳି ଜନ ସମାରୋହରୁ ତ କାହାକୁ ଟାଣିନେଇ ହେବନି ପତାକା ଉତ୍ତୋଳନ ପାଇଁ । କାହାକୁ ବା କହିବି, କିଏ ବା ଶୁଣିବ ମୋ କଥା । ହାଟର ମଧ୍ୟେ ବ୍ରହ୍ମଜ୍ଞାନ ! ଦିନ ବଢ଼ିଯାଇଥାଏ । ସୂର୍ଯ୍ୟକିରଣ ପାଣି ଉପରେ ପଡ଼ି ଚକ୍ ଚକ୍ କରୁଥାଏ । ଜମି, ତୋଟା, ଗଛ, ପାହାଡ଼ କିଛି ଆଉ କୁଆଡ଼େ ଦିଶୁନି । ଗୋଟିଏ ଚଢ଼େଇ ବି କାହିଁ ନାହାନ୍ତି ? କୁଠି ଆସି ପହଞ୍ଚିଲାଣି ଜାହାଜ ? ବମ୍ବେ ବନ୍ଦର ଛାଡ଼ିବା ପୂରା ଏକଦିନ ବି ହୋଇନି । ତେବେ ବି ମନେ ହେଉଥାଏ କେଉଁଦୂର ଦୂରାନ୍ତରରେ ଆସି ଆମେ ପହଞ୍ଚିଲୁଣି । ହଠାତ୍ ଦୂରରୁ ଉଡ଼ି ଆସିଲେ ପଞ୍ଚାଏ ଚଢ଼େଇ । ବୋଧହୁଏ ମାଛରଙ୍କା କି ସିଗଲ (Sea gaul) କି କୁଆ ହେବେ । ହୁଅନ୍ତୁ କୁଆ, କୁଆ କଣ ଚଢ଼େଇ ନୁହନ୍ତି । ଦେଶରେ ଥିଲାବେଳେ ଏଗୁଡ଼ାଙ୍କୁ କେତେ ଘୃଣା କରେନି ମୁଁ । ରାତି ନ ପାହୁଣୁ କରିବେ କେତେ କା-କା, କି କଦର୍ଯ୍ୟ ଚିତ୍କାର । ଜମା ଟିକେ ଖରା ପଡ଼ିବାଯାଏଁ ଶୁଆଇ ଦେବେନି । ଅଇଁଠା ଭାତ ଦେଖିଲେ ଆସି ବେଢ଼ିଯିବେ । ସୁବିଧା ପାଇଲେ ଘର ଭିତରେ ପଶି କୁଢ଼ୁଆଁ ସାଜିବେ । ଖାଇବା ଥାଳିରୁ କିଛି ଝାମ୍ପି ନେବେ । ଝାଡ଼ା ଫେରିବାରେ ଯାଙ୍କର ନିର୍ଦ୍ଦିଷ୍ଟ ଯାଗା କି ସମୟର ବିଗୃର ନାହିଁ । କିନିଷପତ୍ର ଲୁଗାପଟା ବାହାରେ ପଡ଼ିଥିଲେ ପାଇଖାନା ବସିବେ ତାରି ଉପରେ ।

ହେଲେ ଆଜି ତାଙ୍କୁ ଦେଖି ମୋର ତାଙ୍କ ପ୍ରତି ଅସୀମ ମମତା ଉଛୁଳିଉଠିଲା । ଯାହାହେଉ ଆମ ଦେଶର କୁଆ ତ । Our great Indian crows ! ତାଙ୍କ ସମ୍ବନ୍ଧରେ ସଗର୍ବରେ ଜଣେ ଶ୍ୱେତାଙ୍ଗ

ବନ୍ଧୁଙ୍କ ପାଖରେ ଗ୍ରେଟକାଟର ବକ୍ତୃତା ଦେବାକୁ ଆରମ୍ଭ କରିଦେଲି । ଉତ୍ତର ମିଳିଲା ସେ କୁଆ ନୁହଁନ୍ତି, କୌଣସି ସମୁଦ୍ର ପକ୍ଷୀ । ଆଖପାଖ କୌଣସି ଟାପୁରେ ରହନ୍ତି, ବାହାରିଛନ୍ତି ଦିବା ଆହାରରେ, ଗ୍ରେଟ ଗ୍ରେଟ ମାଛ କି ପାଣିପୋକ ଉଣ୍ଡି ସେବା କରିବାକୁ । ଓ ! ତେବେ ତ ସେମାନେ ବମ୍ବେ ଉପକୂଳରୁ ଆସିଥିବେ । ଶ୍ୱେତାଙ୍ଗ ଜଣଙ୍କ ଜବାବ୍ ଦେଲେ ନା, ବମ୍ବେ ତ ବହୁତ ଦୂରରେ ରହିଲାଣି । ବହୁତ ଦୂରରେ ! କେତେଟା ସାର୍କ ମାଛ ଧାଡ଼ି ଧରି ଡେଇଁ ଡେଇଁ ଯାଉଥାନ୍ତି । ତାଙ୍କ ଉପରେ ଚକର ଦେଉଥାନ୍ତି ଏଇ ଚଢ଼େଇ ସବୁ । ଉଦ୍ଦେଶ୍ୟ କଣ ! ଏମାନେ ତ ଆଉ ସାର୍କକୁ ଗିଳି ପାରିବେନି, ବରଂ ଏତେ ବଡ଼ ମାଛଙ୍କ ପାଟିରେ ପଡ଼ିଲେ ନିଜେ ହୁଏତ ଚଳି ଯୋଇଯିବେ । ସାର୍କ ଡେଇଁବା ଫଳରେ ଏଇ ସମସ୍ତରେ କେତେଟା ଗ୍ଲେଟ ମାଛ ଉପରକୁ ଲମ୍ଫଦେଲେ । ମାଡ଼ି ଆସି ତାଙ୍କୁ ମାରିନେଲେ ଏଇ ଚଢ଼େଇସବୁ ! ବାଃ ବେଶ୍ ଯୋଗସୂତ୍ର ତ !

ଓଃ ପୁଣି ସେ ବାଗ୍ମିତା ! କଣ ଏତେ ଏଣୁତେଣୁ ଭାବୁଛି, ସ୍ୱାଧୀନତା ଦିବସ କଥା କଣ ହେବ ସେ କଥା ଚିନ୍ତା ନ କରି ! ବେଳ ଗଡ଼ି ଯାଇଛି ଯେ ! ଯାହା ବ୍ୟବସ୍ଥା କରିବାର କଥା ଶୀଘ୍ର କରିବାକୁ ପଡ଼ିବ । ହଠାତ୍ ଏକ ଘଣ୍ଟା ବାଜି ଉଠିଲା, କି ଘଣ୍ଟା ! ବେଳ କେତେ ହେଲା କି ! ଏଁ ସାଢ଼େ ବାର ! ତେବେ, ତେବେ କଣ ଏ ଖାଇବା ଘଣ୍ଟା !

ଯାତ୍ରୀ ମାନଙ୍କ ଭିତରୁ ଯେଉଁମାନେ ସମୁଦ୍ର ରୋଗରେ ପଡ଼ି ଗଡ଼ୁଥିଲେ ସେମାନଙ୍କ ଭିତରୁ କେହି କେହି ଲେମ୍ବୁ ରସ ଝୁଣି ଝୁଣି, କେହି ବଟିକା ଗିଳି ଗିଳି ପ୍ରକୃତିସ୍ଥ ହୋଇ ଯାଇଥାନ୍ତି । ବାକି ଅଳପ କେତେ ଜଣ ଏକଦମ୍ ଘାଏଲା, ଖାଲି ଗୁଁ ଗୁଁ ହେଉଥାନ୍ତି । ଏଣେ ସମୁଦ୍ରରେ ଗ୍ରେଟ କାଟର ତୋଫାନ ଉଠିଥାଏ । ଜାହାଜ ହଲୁଥାଏ କଡ଼କଡ଼ ଶବ୍ଦ କରି । ହେଲେ ସେ ଘଣ୍ଟା ଶବ୍ଦ ଶୁଣି ଲଞ୍ଚ୍, ଲଞ୍ଚ୍ ବୋଲି ସମସ୍ତେ ପାଟି କରି ଉଠିଲେ ଏବଂ କୋଳାହଳ କରି ବାହାରିଲେ ଭୋଜନାଳୟ ଉଦ୍ଦେଶ୍ୟରେ । "ବଡ଼ ଦେଉଳରେ ବାଜିଲା ଘଣ୍ଟା ମାଗିଖିଆଙ୍କର ଉଠିଲା ଅଣ୍ଟା !" ଏମାନେ ତ ମାଗିଖିଆ ନୁହଁନ୍ତି, ନହେଲେ ବି ବିଲାତି ଜେଣ୍ଟଲମେନ ଆଦବ୍ କାଏଦାର କାଙ୍ଗାଳ ତ !

ଏ ପରିସ୍ଥିତିରେ ସ୍ୱାଧୀନତା ଦିବସ କଥା କିଏ ଚିନ୍ତିବ ! ଯାହାକୁ ସେ ବିଷୟ କହିଲି ସେ ବାଁ।ଖଡ଼ିଆ ଦେଇ ଖସିଲା । ଭାବିଲି ଏପରି ଅବସ୍ଥାରେ କିଛି ନ କରିବା ବରଂ ଭଲ । ତେଣୁ ଚୁପ୍ ହୋଇ ଯାବତୀୟ ଜାତୀୟତାକୁ ଗୁପ୍ତ ଭିତରେ ଗୁପିଧରି ବେକବଚପା କୋଟ୍ ଓ ଜାତୀୟ ପତାକାକୁ ଯଥାସ୍ଥାନରେ ରଖି ନିର୍ଲଜ ଭାବରେ ନିଜେ ବି ଭୋଜନାଳୟ ଅଭିମୁଖେ ବାହାରିଲି । ମାତ୍ର ଗୋଟିଏ ଦୀର୍ଘ ନିଶ୍ୱାସ ଗୁପ୍ତ ପଞ୍ଜରୀ ଦୋହଲାଇ ବାହାରିପଡ଼ିଲା । ଆରମ୍ଭଶୁରୀ, କ୍ଷମ୍ଭିଣୀ ଜମେଣ ...... ମୋର ସବୁ କାମ ଏମିତି !

ଭୋଜନାଗାରକୁ ସକାଳେ ଯେତେବେଳେ ଜଳପାନ କରିବାକୁ ଯାଇଥିଲି ସେତେବେଳେ ମେଜାଜ୍‌ଟା ପୂରା ଠିକ୍ ନଥିଲା । ବିଦେଶବାସର ପ୍ରଥମ ଧକ୍‌କା, ତାପରେ ସ୍ୱାଧୀନତା ଦିବସ ପାଳନର ଉଲ୍ଲଣ୍ଠା ! ଯୁ'ର ଘନଘଟା ଭିତରେ ଖାଲି ଉଦର ପୂରଣ ପାଇଁ ଭୋଜନ କରିଥିଲି ଅବଶ୍ୟ ବେଶ୍ କିଛି । ବେଶ୍ କିଛି ଶିଖିନେଇଥିଲି ଅନ୍ୟମାନଙ୍କୁ ଲକ୍ଷ୍ୟକରି କିମିତି ଏସବୁ ଉଦରସ୍ଥ କରିବାକୁ ହେବ । ବେଳ ଯେମିତି ବଢ଼ିବାକୁ ଲାଗିଲା ସମୁଦ୍ର ଯାନାଟା ସେମିତି ଦେହସୁଆ, ସୁଖକର ହୋଇଆସିଲା, ତା ସାଙ୍ଗେ ସାଙ୍ଗେ ଭୋକମାନାଟା ବି ବଢ଼ି ଉଠିଲା, ଫଳରେ ପଂକ୍ତି ଭୋଜନର ସମୁଦାୟ ସୁବିଧା ହାସଲ କରିହେଲା ।

ଭୋଜନାଳୟକୁ ଯାଇ ଦେଖିଲି ଟେବୁଲ ଗୁଡ଼ାକ ଖୁବ୍ ନିଖୁଣ ଭାବରେ ସଜାସଜି ହୋଇଛି । ତା ଉପରେ କଣ୍ଟା ଚାମୁଚ, ହାତ ପୋଛିବାକୁ ରୁମାଲ । ବିଭିନ୍ନ ବୋତଲରେ ବିଭିନ୍ନ ରଙ୍ଗର ରସ ଇଂରେଜୀରେ ଯାହାକୁ କହନ୍ତି ଜୁସ୍ , ସବୁ ସଯତ୍ନ ଭାବରେ ରଖାଯାଇଛି । ଦଳଦଳ ହୋଇ ସାଙ୍ଗ-ସାଥୀଙ୍କ ସହ ସମସ୍ତେ ଆସିଗଲେ, ହସ ହସ ବଦନେ ହରଷଭରେ । ପରେ ଆସି ପହଞ୍ଚିଲେ ଶ୍ରୀମତୀ ଦେଶାଇ ଏବଂ ତାଙ୍କ ସାଙ୍ଗରେ ସେଇ ଗୁଜରାଟୀ ନନ୍ଦନ ଲୁକା ଓ କେତେଜଣ ପାରିଷଦ ।

ଦେଖିବାର କଥା ଏକା ଆମ ଦେଶୀ ଲୋକଙ୍କର ବିଲାତି ଢଙ୍ଗରଙ୍ଗ ଅନୁକରଣ କରିବାର ମୋହ । ବେଶଭୂଷାରେ ଆଗରୁ ମଜାଡ଼ି ଆସିଥିଲେ, ବାଗେଇହୋଇ ବସିଲେ ଚଉକିରେ, ପୁରା ସାହେବୀ

'ଠାଣିରେ । ଟେବୁଲ ଆଦବ୍‌କାଏଦା ମାନିବାକୁ ସମସ୍ତେ ମହା ବ୍ୟଗ୍ର । ଆସ୍ତେ କଣ୍ଟା ଚାମୁଚ ଧରି ଆରମ୍ଭ କରିଦେଲେ ଭୋଜନକୃତ୍ୟ, ପାଖରେ ଠିଆ ହୋଇଥାନ୍ତି କୃଷ୍ଣକାୟ ବା ଶ୍ୱେତାଙ୍ଗ ଅର୍ଦ୍ଧାଳୀସବୁ । ଇଙ୍ଗିତ ପାଇଲେ ଚାହିଦା ମୁତାବକ ଆଣି ପରଷିଦେବେ ଚର୍ବ୍ୟ, ଚୋଷ୍ୟ, ପେୟ ।

କେତେକ ଗୋଆବାସୀ ଭାରତୀୟ ଏ ଜାହାଜର ଅର୍ଦ୍ଧାଳୀ କାମଟାକୁ ଧରିନେଇଛନ୍ତି, ଏବଂ ଗୋରା ଅର୍ଦ୍ଧାଳୀଙ୍କ ପରି ସଫାସୁତୁରା ପୋଷାକ ପିନ୍ଧି ଏ ଭୋଜନ କାରବାରରେ ସହାୟତା କରୁଥାନ୍ତି । ହେଲେ ଗୋରା ଅର୍ଦ୍ଧାଳୀ ତ ଜାଣି ଧଳା-ଚମଡ଼ାଙ୍କ ପ୍ରତି ବିଶେଷ ଧ୍ୟାନ ଦେଉଥାନ୍ତି । କଳା ଅର୍ଦ୍ଧାଳୀଙ୍କର ବି ସେଇ ଢଙ୍ଗ । ସେମାନେ ଯେମିତି ଗୋରାଲୋକଙ୍କ ସେବାରେ ନିଜକୁ ନିୟୋଜିତ କରିପାରିଲେ ଧନ୍ୟ କୃତାର୍ଥ ମନେ କରୁଥାନ୍ତି । ହେଲେ ବାହାରକୁ ଦେଖାଇ ଦେଉନଥାନ୍ତି ତାଙ୍କର ଏ ଗୋରା-କଳା ଜାତିଆଣ ଭାବ, ଯେ ଯାହା ଚାହିଁଲା ଆଣି ପରଷି ଦେଉଥାନ୍ତି ଆଗ ପଛ କରି । ଦେଖିଲି ଗୋରା ଲୋକଙ୍କଠାରୁ ଅଣଗୋରା ଆଉ ହଳଦିଆ ଲୋକଙ୍କର ସାହେବୀ ଆଦବ୍ କାଏଦା ପ୍ରତି ବେଶି ନଜର, ଯେ କେତେଜଣ ଜାପାନୀ ଓ ଚିନା ଜାତୀୟ ଲୋକଥାନ୍ତି ସେ ତ ଭୋଜନ ଟେବୁଲ ଆଦବ୍ କାଏଦାରେ ଧୁରନ୍ଧର । ବାକି ଅଡୁଆରେ ପଡ଼ୁଥାନ୍ତି ଆମ ଭାରତୀୟ ଓ ସିଂହଳୀ ଲୋକ । କଣ୍ଟା ଚାମୁଚକୁ ମହା ସଜାଗରେ ଧରୁଥାନ୍ତି ଏବଂ ଆଖପାଖ ଗୋରା ଲୋକଙ୍କୁ ଚାହିଁ ପୁଣି କଣ ସଜାଡୁଥାନ୍ତି । ଏତେ ସଜାଡୁ ସଜାଡୁ କେତେବେଳେ ଖସିପଡ଼େ ହାତରୁ ଏହି ବିଚିତ୍ର ଯନ୍ତ୍ର ଗୁଡ଼ାକ ଠନ୍ ଠନ୍ ଶବ୍ଦ କରି ପ୍ଲେଟ ଉପରେ । ଚମକି ଉଠନ୍ତି ବାବୁମାନେ । କାହା ଟେବୁଲ ଉପରେ ପାଣି ଛିଡ଼ିଯାଇଥାଏ ଗିଲାସରେ ହାତ ବାଜି, କାହା ଉପରେ ପଡ଼ିଲାଣି ଛିଟିକି ହଳଦୀ ବର୍ଣ୍ଣର ସୁପ୍ । ହସି ଉଠନ୍ତି ଆଖପାଖର ପୀତାଙ୍ଗୀ, ଶ୍ୱେତାଙ୍ଗୀ, ଶ୍ୟାମଳାଙ୍ଗୀ, କୃଷ୍ଣାଙ୍ଗୀ ମହିଳାଦଳ । ଏହି ରଙ୍ଗରସଭରା ମଧୁର ହସ ସାଙ୍ଗରେ କଣ୍ଟା ଚାମୁଚର ଠଙ୍ଗ୍-ଠଙ୍ଗ୍, ଠିଙ୍ଗ୍-ଠିଙ୍ଗ୍ ଶବ୍ଦ ମିଶିଯାଇ ଏକ ଅପୂର୍ବ ସଙ୍ଗୀତର ମୂର୍ଚ୍ଛନା ସୃଷ୍ଟି କରୁଥାଏ ।

ବଡ଼ ଅଡୁଆରେ ପଡ଼ୁଥାଏ ମୁଁ । ଆଦୌ ଏ କଣ୍ଟା ଚାମୁଚର କସରତରେ ଅଭିଜ୍ଞତା ଥିଲା ନାହିଁ ମୋର । ସମ୍ମୁଖରେ ଅପୂର୍ବ ଖାଦ୍ୟ ସାମଗ୍ରୀ ।

ପେଟରେ ଭୟାନକ ଭୋକ, ମନ ହେଉଥାଏ ଆଦବ୍ କାଏଦା ପ୍ରଭୃତି ଲୟ ନକରି ଚଳେଇଦେବି ଡାହାଣ ହାତ ଜୋରରେ, ହେଲେ ସାହାସ ପାଉନଥାଏ । ମନେ ପଡ଼ିଲା ବଗ-ଶିଆଳ କାହାଣୀ । ଶିଆଳ ନିମନ୍ତ୍ରଣ କରିଥାଏ ବଗକୁ ଦିବା-ଭୋଜନ ପାଇଁ । ବାଢ଼ିଦେଲା ଚଉଡ଼ା ଥାଳରେ ମାଂସ ଝୋଳ, ସବୁ ସିଝି ସିଝି ପାଣିପରି ହୋଇଥାଏ । ଶିଆଳ ମୁହଁ ଥୋମଣି ଲଗେଇ ଗୃହିଯାଉଥାଏ ସଡ୍ ସଡ୍ । ଅସୁବିଧାରେ ପଡ଼ିଥାଏ ବଗ, ଚଞ୍ଚୁ ମୂନରେ ଟିକିଏ ଟିକିଏ ଆସୁଥାଏ ଝୋଳ । "ତୁମେ କାହିଁ ଖାଉନ ବନ୍ଧୁ ?" ଏକଣ ତୁମର ଘର ନୁହେଁ ? ଗେଲେଇ ପଚାରିଲା ଶିଆଳ "ଆପଣ ଖାଉନାହାନ୍ତି କାହିଁକି ? କଣ ଘର କଥା ମନେ ପଡୁଚି କି !" ଗେଲେଇ ପଚାରିଲେ ମୋତେ ପାଖର ଜଣେ ବନ୍ଧୁ ମାଲହୋତ୍ରା, କହିଲି "ହଁ ମନରେ ଘର ଚିନ୍ତା ଭରିଯାଇଚି, ପେଟରେ ଭୋକ ଆଦୌ ନାହିଁ ।" ପେଟ ଏଣେ କିନ୍ତୁ ହୁହୁ ଜଳୁଥାଏ ।

ଅଧିକାଂଶ ଚଳାଇଥାନ୍ତି ଖୁବ୍ ଜୋରସୋରରେ ଗିଳିବା । କୁଠୁ ଉଠୁଥାଏ ଖିଲ୍ ଖିଲ୍ ହସ । କୁଆଁଠି ଗ୍ଳୁଥାଏ ଗଡ଼୍ ଗଡ୍ ଗପ । ହେଲେ ହାତ ବନ୍ଦ ନଥାଏ । ମେନୁକୁ ଗୃହିଁ କଣ ମାଗିନେଉଥାନ୍ତି । ପୁଣି କଣ ବୁଝି ବିଗୃରି ବରାଦ କରୁଥାନ୍ତି । କିଛି ସମୟପରେ ପୋଷ୍ଟପୋଟ୍ଟ ହୋଇ ସମସ୍ତେ ଭୋଜନ କାମ ଶେଷକରି ଉଠିପଡ଼ିଲେ । ମୁଁ କିନ୍ତୁ ବିଶେଷ ଆଗେଇ ପାରିନଥାଏ, ବାଧ ହୋଇ ଉଠିଲି । ଭାବିଲି ଆଗ୍ରୁ ଆଦବ୍ କାଏଦା ଝମେଲା, ମଣିଷ ଭଲକରି ଗଣ୍ଡେ ଖାଇପାରିଲାନି !

କ୍ରମେ ଜାହାଜ ଯାତ୍ରାଟା ଦେହସୁହା ହେଇଯାଉଥାଏ, ତା ସାଙ୍ଗକୁ ବି ହୋଇଥାଏ କିଛି ଆଦବ୍ କାଏଦା ଶିକ୍ଷା । ଏଣିକି ଖାଇବା ଟେବୁଲରେ ହାତ ଥରିବା ନାହିଁ କି କଣ୍ଟା ଗ୍ଳମୁଚ ହାତରୁ ଖସିପଡ଼ିବାର ଡର ନାହିଁ । ମୁହଁ ବଙ୍କେଇ ବାଗେଇ କଥା କହିଲାବେଳେ ବାମ ହାତରୁ ବେଶ୍ ଅନ୍ନବ୍ୟଞ୍ଜନ ଗ୍ଳମୁଚରେ ନେଇହେଉଚି । ଭାବିଲି, ଶୁ ପ୍ତ ପ୍ରଭିଭାଟା ଦେବେ କେଉଁଠି ଗୁପ୍ତ ଭାବରେ ଥିଲା, ତା' ନ ହେଲେ ମୋ ପରି ହତଭାଗାକୁ ନିଯୁକ୍ତ ଟାଣିଆଣିଥାନ୍ତା ବସନ୍ତ ଅଭିମୁଖେ ।

କ୍ରମେ ସମୁଦ୍ର ସ୍ଥିର ପଡିଲା । ଧୀର ଶାନ୍ତ ବାରିରାଶି ଉପରେ ଜାହାଜଟି ମାଡ଼ି ଗ୍ଳୁଥାଏ ଆଗକୁ । ଆଗରୁ ସମୁଦ୍ରର ଯେ ଭୟାନକ ରୂପ

ଦେଖାଯାଇଥିଲା ତା ପରିବର୍ତ୍ତରେ ପ୍ରଥମ ଥରପାଇଁ ଆଖିରେ ପଡ଼ିଲା ତାର ରମ୍ୟଶାନ୍ତ ଚେହେରା । ଦିଗ୍‌ବଳୟ ପର୍ଯ୍ୟନ୍ତ ବିସ୍ତୃତ ସାଗର ଜଳ ଯେପରି ନୀଳମେଘୀ ମଖମଲ ଗଦିପରି ପଡ଼ିଥାଏ । ତାର ଶ୍ରେଷ୍ଠ ଶ୍ରେଷ୍ଠ ଲହରୀଗୁଡ଼ିକ ଉପରେ ଝିଲମିଲ ସୂର୍ଯ୍ୟ କିରଣ ପଡ଼ି ତାକୁ ଆହୁରି ଝକ୍‌ମକ୍ କରିଦେଉଥାଏ । ଯାତ୍ରୀମାନଙ୍କର ଆଉ ସେ ଡ଼ର ଭୟ ନାହିଁ, ରୋଗ ବ୍ୟାଧି ବି ନାହିଁ । ମନେହେଉଥାଏ ଆମେ ସମସ୍ତେ ଯେମିତି ବାହାରିଛୁ ଗୋଟାଏ ବିରାଟ ଜଳକେଳିରେ । ନାନା ଆଲୋଡ଼ନ, ନାନା କଳରବ ସୃଷ୍ଟି କରି ଆଗେଇଚାଲିଥାଏ ଆମ ଜାହାଜ ଉଗ୍ର ପ୍ରେମିକ ଠାଣିରେ । ଯେପରି ସେ ସାଗରବାଳାର ବକ୍ଷ ଚିରି ଉଦ୍ଦାମ କେଳି-କଉତୁକରେ ମାତିଉଠିଛି । ତରଙ୍ଗମାଳାର ଭୀଷଣ ଗର୍ଜନ ମଧ୍ୟଦେଇ ଆର୍ତ୍ତନାଦ କରି ଉଠେ ତାର ପ୍ରେୟସୀ ଏ ଅତ୍ୟାଚାରର ପ୍ରତିବାଦ ଛଳରେ । ବିଚଳିତ ହୋଇପଡ଼େ ବିଚାରୀ ଜାହାଜ । ସାଙ୍ଗେ ସାଙ୍ଗେ ଯେମିତି ଥମିଯାଏ ତାର ଗତି । ଧୀର ସ୍ଥିର ଭାବରେ ବଡ଼ ସଂକୁଚିତ-ସଯତ ହୋଇ, ଚାଲେ ସେ ତାର ଗନ୍ତବ୍ୟ ବାଟରେ । ଭାବିଲି, ଜାହାଜ ତ କମ୍ ରସିକ ନୁହେଁ ।

ସତେ ଯେମିତି ସେ ତାର ପ୍ରିୟତମା ସାଗର-ସୁନ୍ଦରୀର ତାଡ଼ନାରେ ନିଜକୁ ପ୍ରକୃତିସ୍ଥ କରିଛି । କରିଛି ତାର ଗତିକୁ ନିୟନ୍ତ୍ରଣ, ବାରିବାଳାକୁ ସନ୍ତୁଷ୍ଟ କରିବାପାଇଁ । ଖିଲ୍ ଖିଲ୍ ହସିଉଠେ ସମୁଦ୍ର-ସାକୀ ଫେନିଳ ତରଙ୍ଗ ଛଳରେ । ଏଥିରେ ଉତ୍ସାହିତ ହୋଇ ପୁଣି ପ୍ରେୟସୀର ବକ୍ଷ ଚିରି ଖରଦର୍ପରେ ଆଗେଇ ଯାଏ ଜାହାଜ । ମନେ ପଡ଼ିଗଲା କାଳିଦାସଙ୍କ ମେଘଦୂତ କାବ୍ୟ "ରସିକ ତୁ ଜଳଦ ! କହିବି କେତେ, କାମିନୀ ପ୍ରକାଶନ୍ତି ଭାବ ସଙ୍କେତେ ।"

ଏଡ଼େନ୍ ଏଡ଼େନ୍ ! ଏଡ଼େନ୍ ପାଖେଇ ଆସିଲାଣି ! ଯାତ୍ରୀମାନେ ଯେମିତି ଆନନ୍ଦରେ ବିହ୍ୱଳ ହୋଇ ଚିତ୍କାର କରି ଉଠିଲେ । ଏଡ଼େନ୍ ଆସିଗଲାଣି ! ବାଃ କି ଚମତ୍କାର । କେତେ ଦିନପରେ ପୁଣି ମା ଧରଣୀର ଦେଖାମିଳିବ ।

ଧୀରେ ଧୀରେ ନଇଁ ଆସୁଥାନ୍ତି ସୂର୍ଯ୍ୟଦେବ ପଶ୍ଚିମ ଆକାଶରେ ସୁଦୂର ପର୍ବତମାଳା ପଛରେ । ଗଛଲତା ଭିତରୁ ବିଚ୍ଛୁରି ପଡ଼ୁଥାଏ ରଙ୍ଗୀନ୍

ଆଲୋକ । ସେଇ ରଙ୍ଗୀନ୍ ଆଲୋକ ଶାନ୍ତ ଜଳରାଶି ଉପରେ ପଡ଼ି ଝଲକି ଉଠୁଥାଏ । ଉପରେ ଛୁଟିଥାଏ ଜାହାଜ ଦେହରୁ କୋଇଲାର ଧୂଆଁ ନିର୍ମଳ ସମୁଦ୍ର ଉପରେ ଗ୍ଲାଇ ପକେଇ । ସବୁଟା ଯେମିତି ଗୋଟାଏ ଇନ୍ଦ୍ରଜାଳଭରା ବାତାବରଣ ସୃଷ୍ଟି କରୁଥାଏ । ଏଇ ସୁନ୍ଦର ସୋହାଗଭରା ବେଷ୍ଟନୀ ଭିତରେ ଆତ୍ମହରା ହୋଇ ଉଠୁଥାଏ ସୌନ୍ଦର୍ଯ୍ୟ-ବିଭୋର ମୋ ପାଗଳ ମନ । କିନ୍ତୁ······ ।

କିନ୍ତୁ ହଠାତ୍ ମନେ ପଡ଼ିଯାଏ ଘରକଥା । କଣ କରୁଥିବେ ପିଲାଏ ବର୍ତ୍ତମାନ ! ହୁଏତ ମନେ ମନେ ଭାବୁଥିବେ ମୋ ବିଦେଶ ଯାତ୍ରା ବିଷୟ । ମୁଁ କେଉଁଠି ହେବଣି, କଣ କରୁଥିବ । ମୁଁ ତ ଏତେ କଷ୍ଟରେ ମାତ୍ର ଏଡେ଼ନ୍ ଯେ ଆସିଚି । ଆଉ ତ ବିଲାତ ବହୁତ ଦୂର !

ପୂର୍ବଦିଗକୁ ଚାହିଁ ଦେଖେତ ସୁନ୍ଦର ସୁଗୋଲ ଚନ୍ଦ୍ରମା । ହଁ, ଆଜି ପୂର୍ଣ୍ଣିମା, ଗହ୍ମାପୂର୍ଣ୍ଣିମା । ଓଡ଼ିଆ ଘରେ କେତେ ଆଦର ଏ ପର୍ବର । ସହରରେ ଏହାର ମାଦକତା ବୁଝି ହୁଏନି । କେହି କେମିତି ପିଠାପଣା କରନ୍ତି କିନ୍ତୁ ମଫସଲରେ ଜମିଉଠେ ଏ ପର୍ବଟା ଖୁବ୍ ଜୋରରେ । ଗୋରୁଙ୍କୁ ଗାଧୁଆ-ପାଧୁଆ, ମଣ୍ଡା ସଜି, ବଳଭଦ୍ର ପୂଜା, ନଡ଼ିଆ ଲଡ଼େଇ । ଗାଁ-ଗଣ୍ଡାରେ ଏଇ ଦିନଟି ପାଇଁ କେତେ ସଜବାଜ । ପିଲାମାନେ ଲଡ଼େଇ ନଡ଼ିଆ କେଉଁଠି ମିଳିବ ତାର ଖବର ଯୋଗାଡ଼ କରି ମାସ ମାସ ଆଗରୁ ତାକୁ ଖୋଜି ସଜାଡ଼ି କରିରଖନ୍ତି । ପୂର୍ଣ୍ଣିମା ଦିନ ସକାଳୁ ପୋଖରୀରୁ କଇଁଫୁଲ ତୋଳି ଗୋରୁଙ୍କୁ ଗାଧୋଇଦେଇ ତାଙ୍କୁ ଫୁଲ ଓ ଅବିରରେ ବେଶକରି ଗ୍ରାଉଡ଼ିଦିଅନ୍ତି । ତା'ପରେ ଆରମ୍ଭ ହୋଇଯାଏ ଡୁ, ଡା । ନଡ଼ିଆ ଲଡ଼େଇରେ ଯେତେ ଅନ୍ୟର ନଡ଼ିଆ ଭାଙ୍ଗିବ, ସେତେ ଫାଳ ଘରକୁ ଆସିବ । ଏଣେ ବିରି, ଚାଉଳ ବଟା ଚାଲିଥାଏ । ପିଠା ହେଉଥାଏ । ପୁଣି ନଡ଼ିଆ ଆସିଲା କ୍ଷଣି କୋରି ପୂରକରି ଚାଲେ ଅଥାର କାରବାର । କେତେ ମଜାଲାଗେ ଏ ନଡ଼ିଆ ଲଢ଼େଇ କିନ୍ତୁ ନିଜ ନଡ଼ିଆ ଭାଙ୍ଗିଗଲେ ମନରେ ଭାରି ଦୁଃଖ ଆସେ । ନଡ଼ିଆ ଗୋଟାକର ବା ଦାମ୍ କେତେ ! ହେଲେ ତା ସହିତ ନିଜର ଗର୍ବ, ଦମ୍ଭ, ମାନ, ସମ୍ମାନ ସବୁ ଲାଗିରହିଥାଏ । ତେଣୁ ତା'ପରକୁ ତାପର ଗୋଟାକ ପରେ ଗୋଟେ ସଜାଡ଼ି ହୋଇ ରଖା ଯାଇଥାଏ । ଲାଗୁ ଲଢ଼େଇ କୁଁ ଯେ ଯାଉଛୁ ।

କୁଆଡ଼େ ଗଲା ସେ ଦିନ ! ସେଇ ସରଳ ଆନନ୍ଦ । ସାମାନ୍ୟ ଲାଭରେ କେତେ ସୁଖ । ଏଇଲେ ତ ଲୋଭମୋହ ଗ୍ରାସିଛି ପୂରା, ଭବିଷ୍ୟତ ଆଶାରେ ବନ୍ଧୁବାନ୍ଧବ ପ୍ରିୟପରିବାରକୁ ଛାଡ଼ି ମୁଁ ହା ଅମ୍ଭେ ହା ଚାଲିଛି ମହା ପାରାବାରରେ ସର୍ବପାଠପୀଠ ସର୍ବ ସଭ୍ୟତାର ଆଧାର ବାଲୀ ଭୂମି ଉଦ୍ଦେଶ୍ୟରେ ।

କ୍ରମେ ଚାରିଆଡ଼େ ବିଛେଇ ହୋଇଯାଇଥାଏ ନିର୍ମଳ ଚନ୍ଦ୍ରାଲୋକ । ସବୁଆଡ଼ ଯେପରି ଚକ୍ ଚକ୍ ରୂପେଲି ରଙ୍ଗ ଧରିଛି । କଣ ଭାବି ଅନେକ ସମୟ ଧରି ଚାହିଁରହେ ଛବିଳ ଚନ୍ଦ୍ର ମଣ୍ଡଳକୁ । ଏକା ଏହି ଚନ୍ଦ୍ରମା ବର୍ତ୍ତମାନ ଘର ଓ ପ୍ରିୟ ଜନମାନଙ୍କ ସହିତ ମୋର ସମ୍ପର୍କ ରଖିଛି । ଏଇ ଚନ୍ଦ୍ରକୁ ଦେଖି ସେମାନେ କି ଆନନ୍ଦ ଅନୁଭବ କରୁନଥିବେ ! ହୁଏତ ମୋ କଥା ଭାବୁଥିବେ । ବାସ୍ତବିକ ଏହି ଚନ୍ଦ୍ର-ସୂର୍ଯ୍ୟ ମାଧ୍ୟମରେ ସାରା ପୃଥିବୀରେ ଗୋଟିଏ କି ନିବିଡ଼ ସମ୍ପର୍କ ଗଢ଼ିଉଠୁଛି ।

ପରଦିନ ଖୁବ୍ ଭୋରରୁ ଉଠି ଏଡ଼େନ୍‌ରେ ଓହ୍ଲାଇବା ପାଇଁ ଯାତ୍ରୀଦଳ ସଜବାଜ ହେଉଥାନ୍ତି । ସୂର୍ଯ୍ୟୋଦୟ ପରେ ପରେ ଜାହାଜ ଲାଗିଲା ଏଡେନ୍‌ରେ । ଦୁଇ କଡ଼ରେ ଧୂସର-ଧବଳ ବର୍ଣ୍ଣର ପାହାଡ଼ ଓ ପକ୍କା ଘର । ମଝିରେ ନିର୍ମଳ ନୀଳ ଜଳ ଚକ୍‌ଚକ୍ କରୁଥାଏ । ଦୂରରୁ ଦେଖାଯାଉଥାଏ ଉଚାନୀଚ୍ଚ ରାସ୍ତା । ଆଖ ପାଖରେ କେତେ ଷ୍ଟିମର ବଡ଼ ଜାହାଜ ଅଟକିଯାଇଥାନ୍ତି । କିଏ ଯାଉଥାଏ ଭାରତ ଅଭିମୁଖରେ, କିଏ ଅଷ୍ଟ୍ରେଲିଆ କିଏ ହଂକଙ୍ଗ । କିଏ ବା ଯାଉଥାଏ ବାଲୀ ଆଡ଼କୁ ।

୭ଟା ବେଳକୁ ଜାହାଜ କର୍ମକର୍ତ୍ତାମାନେ ଲାଉଡ଼ ସ୍ପିକର ସାହାଯ୍ୟରେ 'Attention please' କହି ଘୋଷଣା କରିଦେଲେ, ଉପର ଡେକ୍‌ରୁ ଯେ ଯାହାର ଚିଠି ନେଇଯିବାକୁ । ବିକଳ ହୋଇ ଅନେକେ ଦଉଡ଼ିଲେ । କ୍ୟୁରେ ଠିଆହେଇ ନିଜ ନାଁ କୁ ବାରମ୍ବାର ଚିତ୍କାର କରି । ଯେ ଦୁଇ ଦଣ୍ଡେ ଅଧେ ଚିଠି ପାଇଲେ ସେ ମହାଆନନ୍ଦରେ ପଢ଼ୁଥାନ୍ତି ତାକୁ ଥରକୁ ଥର । କେତେଦିନ ହେଲା ଘରଦ୍ୱାର ଛାଡ଼ି ଆସିଛନ୍ତି, କିମିତି ଅଛନ୍ତି ବନ୍ଧୁବାନ୍ଧବ, ଜ୍ଞାତିସ୍ୱଜନ, ସବୁ ଖବର ଜାଣିବାକୁ ମନ ବଡ଼ ବ୍ୟାକୁଳ ହୋଇ ଉଠୁଥାଏ । ଯାହାର କିଛି ଚିଠିପତ୍ର ନଥାଏ ସେମାନେ ସହଜରେ

ନିବାଣ ହୋଇପାରୁନଥାନ୍ତି । "ଦେଖନ୍ତୁ ନା ତା ଭିତରେ ମୋର ଚିଠିଥିବ" ବୋଲି ଅନୁରୋଧ କରନ୍ତି ଜାହାଜର କର୍ମକର୍ତ୍ତାଙ୍କ ପାଖରେ, ବିରକ୍ତ ହୋଇ ଉଠୁଥାନ୍ତି ବ୍ୟୁରୋର ଉଚ୍ଚନାକା ଭଦ୍ରଲୋକ, 'ନାହିଁ କହିଲି ପରା । କେତେ ପଚାରୁଛନ୍ତି ।" ବିଚାରାମାନେ ଚୁପ୍ ହୋଇ ମନ ଦୁଃଖରେ ଫେରନ୍ତି । ଆଉ ଥାନ୍ତି ଦଳେ ବେପରୁଆ ଯାତ୍ରୀ । ସେମାନେ ଚିଠିରେ ଟିକିଏ ଆଖି ପକେଇ ଦେଇ ତାକୁ ପକେଟସ୍ଥ କରି ଚାଲିଯାଉଥାନ୍ତି ଅନ୍ୟତ୍ର ଆନନ୍ଦ ଉତ୍ସବ କରିବାକୁ । ସେମାନେ ତ ଆଗତପ୍ରାୟ ବିଳାତ ସୁଖ ମୋହରେ ଏକବାରେ ପାଗଳ ! ଘର ବା ବନ୍ଧୁବାନ୍ଧବଙ୍କ କଥା ଚିନ୍ତା କରିବାକୁ ମନ ବା ବେଳ କାହିଁ !

ଏଡ୍ରେନ୍ ଭ୍ରମଣ ବ୍ୟବସ୍ଥାରେ ଜାହାଜଟା ମୁଖରିତ ହୋଇଉଠିଲା । ଗାଧୋଇ ପାଧୋଇ ପୋଷାକପତ୍ର ପିନ୍ଧି ବାହାରି ପଡ଼ିଲେ ସମସ୍ତେ । କେତେ ଦିନର ଜଳଯାତ୍ରାପରେ ପୁଣି ସ୍ଥଳ ବିହାର । ବଡ଼ ଆନନ୍ଦର କଥା, ବାହାରିବା ଆଗରୁ ଆମ ରସିକ ବନ୍ଧୁଗୁଡ଼ିକ ଆଗୁଳିକରି କେତେ ଗିଲାସ ରଙ୍ଗିନ୍ ରସ ଉଦରସ୍ଥ କରିବାକୁ ଭୁଲିନଥାନ୍ତି । ପ୍ରାତଃ ଭୋଜନଟା ବି ସମସ୍ତଙ୍କର ଖୁବ୍ ଜୋରରେ ହେଲା । ଉତ୍ସାହର ଚରମ ହେଉଥାଏ । ଫିରିଙ୍ଗୀ ଓ ଅନ୍ୟ ଶ୍ୱେତାଙ୍ଗିନୀମାନେ ସଂକ୍ଷିପ୍ତ ପୋଷାକପତ୍ର ପିନ୍ଧି, ମୁଣ୍ଡରେ ବାନ୍ଧେଇ ସ୍କାର୍ଫ ଉଡ଼ି, ହାତ ବ୍ୟାଗରେ କିଛି ଆସବାବ ଧରି ବାହାରି ପଡ଼ିଲେ ଏଇ ଏଡ୍ରେନ୍ ଭ୍ରମଣ ଅଭିଯାନରେ । ଏଡ଼େନ୍‌ରେ ଦଲାଲି କାରବାର, ଚୋରା ବ୍ୟବସାୟ ଖୁବ୍ ଜୋରରେ ଚାଲେ । ବହୁତ ଚୋରା ଜିନିଷ ବହୁ ଦେଶରୁ ଆସି ଶସ୍ତାରେ ଏଠି କଣାବିକା ହୁଏ । ଆମ ଜାହାଜର ଯାତ୍ରୀ ବନ୍ଧୁବାନ୍ଧବୀମାନେ ସାଙ୍ଗରେ ବହୁ ଆସବାବ ଆଣିଥାନ୍ତି । ପୁଣି କିଛି କିଣିବାକୁ ବାହାରିଥାନ୍ତି ଏଡ୍ରେନ୍ । ସାଙ୍ଗରେ ବି ଧରିଥାନ୍ତି ସାଥି ସାରଥିଙ୍କୁ । ଜିନିଷପତ୍ର କଣାକିଣି ସାଙ୍ଗେ ଟିକିଏ ଆମୋଦ ପ୍ରମୋଦ ବି ଚାଲିବ । ଏଡ୍ରେନ୍‌ରେ ପାଦଦେଲା କ୍ଷଣି କେତେକ ସେଠାକାର ଦୃଶ୍ୟର ଛବି ଓ ଚିତ୍ର କିଣି ଆତ୍ମୀୟସ୍ୱଜନଙ୍କ ପାଖକୁ ପଠାଇଦେଲେ, ତା ଦେହରେ କେତେ ଧାଡ଼ି ନିଜ କଥା ଲେଖି । ଲେଖିବାର ସାରାଂଶ ହେଲା ସେ ଜାହାଜ ଯାତ୍ରାନେଇ ଏତେ ବ୍ୟସ୍ତ ଯେ ଲମ୍ବା ଚିଠି ଲେଖିବାକୁ ତାଙ୍କର ବେଳନାହିଁ । ତେବେ ସବୁ ଭଲ । ବୁଲବୁଲ, କଣାକିଣି ସାରି

ଆଖପାଖରେ ଥିବା ହୋଟେଲରେ କେତେକ ପଶିଗଲେ କିଛି ଖାଦ୍ୟପେୟ ପାଇଁ ! ଭାବିଲି ଏମାନେ ଜାହାଜରେ ଏତେ ମିଳିଥିଲେ, ଏତେ ଗିଳିଥିଲେ ପୁଣି ଏମାନଙ୍କୁ ଏତେ ଭୋକଶୋଷ ଆସିଲା କୁଆଡୁ ? ପାଖରେ ଧନ ଥିଲେ ନାହିଁ ବୋଲି ଭୋକଶୋଷ ହେବ ।

ମୁଁ କେତେଜଣ ଉଗ୍ର ବାହାରପ୍ରେମୀ ସାଥିଙ୍କ ସାଙ୍ଗ ଧରିଥାଏ । ସେମାନେ ଖାଲି ବକିଲେ, ଆସନ୍ତୁ ଏଣେ ଯିବା, ତେଣେ ଯିବା । ଯା' କିଣିବା, ତା କିଣିବା, ଏଠି ପିଇବା, ସେଠି ଖାଇବା । ଏତେ କଥାକୁ ମୋର ଧନ ବଳ କାହିଁ ? ପାଖରେ ତ ସ୍ୱଳ୍ପ ପୁଞ୍ଜି, ତା ସାହାଯ୍ୟରେ ଏତେ ମଉଜ-ମଜଲିସ୍ ଅସମ୍ଭବ । ଯେତେ ଫନ୍ଦି ହିସାବ କଲେ ବି ଗୃହଦ୍ୱାର କାଣିଚ୍ଛଏ ବି ସେଥିରେ ମେଣ୍ଟିବା ସମ୍ଭବ ନୁହେଁ । ଏସବୁ କଥା ଚନ୍ଦ୍ରାକର ମନରେ ଫୁର୍ତ୍ତି ନ ଥାଏ, କିନ୍ତୁ ସାଥିମାନେ ଧରି-ନେଇଥାନ୍ତି ମୁଁ ନିତାନ୍ତ Home-sick ଅର୍ଥାତ୍ ଘର-ରଙ୍କୁଣା, କେତେ ପ୍ରକାର ବ୍ୟଙ୍ଗ କରି କହନ୍ତି । ତାଙ୍କୁ ବାଗେଇ ଜବାବ ଦିଏ । କେତେ କଥା କହି ଭୁଲେଇଦିଏ ।

ଏଡେନ୍‌ଟା ଯେମିତି ଭାରତ ପରି ଲାଗେ । ସେଇ ଲୋକ, ସେଇ ଢଙ୍ଗରଙ୍ଗ । କୁଠି କୁଠି ହିନ୍ଦି, ଗୁଜୁରାଟୀ କଥାବାର୍ତ୍ତା ବି ଚାଲିଥାଏ । ଠାଏ ଠାଏ ଦେଖାଯାଏ ଓଟଗାଡ଼ି । ବହୁ ଆରବ ଦେଶୀୟ ଲୋକ ଯା'ଆସ କରୁଥାନ୍ତି । ସେମାନେ ମନେ ପକାଇଦେଉଥାନ୍ତି ଯେ ଏଠା ଭାରତ ନୁହେଁ, ଅନ୍ୟ ଗୋଟିଏ ରାଜ୍ୟ । ଯାତ୍ରୀଙ୍କ ଭିତରୁ କେତେଜଣ ତାଙ୍କ ମହିଳା ବାନ୍ଧବୀମାନଙ୍କୁ ସାଙ୍ଗରେ ଧରି ଏଡେନ୍ ବୁଲିବାହାରିଥାନ୍ତି ଆମୋଦ-ପ୍ରମୋଦ କରିବା ଉଦ୍ଦେଶ୍ୟରେ । କେତେ କଣାକଣି, କେତେ ହସତାମସା ଚାଲିଥାଏ । ଯେମିତି ସେମାନଙ୍କର କିଛି ଚିନ୍ତାଦିକ ନାହିଁ ।

ଦେହ‌ରେ ବଳ ପକେଟରେ ଧନ ଥାଉ କି ନାହିଁ ମନ ମୋର ମହାବିକଳ କିମିତି ଏ କେତେଘଣ୍ଟା ଭିତରେ ଏଡେନ୍‌ର ସବୁ କିଛି ଦେଖିବି । ତା' ବିଷୟରେ ସବୁ କିଛି ଜାଣିବି, କେତେଜଣ ସାଥିଙ୍କୁ ସାଙ୍ଗରେ ଧରି ଖଣ୍ଡେ ଟାକ୍‌ସିରେ ବାହାରିଲୁ ସହର ପରିକ୍ରମା କରିବାକୁ । ଡ୍ରାଇଭର ଅହମଦ ନର୍ଭର ବାଣୀ ଶୁଣାଇଦେଲା ସବୁ ଯାଗା ସୁବିଧାରେ

ଦେଖାଇ ଦେବ ସେ । ତା'ସାଙ୍ଗେ ଭଡ଼ାଟା ହାଙ୍କିଲ ବ ଖୁବ୍ ବେଶୀ । ହେଲେ ଦେଖିବାକୁ ବା କଣ ଅଛି ? ବଡ଼ ଅପରିଷ୍କାର ରାସ୍ତା । ବଜାର ଆକାରରେ ସେମିତି ବଡ଼ ନୁହେଁ । ମୋଡ଼ ମୋଡ଼କେ ଆମ ଦେଶପରି ପାନ, ସିଗାରେଟ୍ ଦୋକାନ । ତେବେ ପାନଟା ଆମ ଦେଶପରି ନୁହଁ । ସେଥିରେ ଅନ୍ୟ କେତେ ପ୍ରକାର କଣ ଲୋକେ ଦେଇ ଖା'ନ୍ତି । ପାନଟା ଦେଖି ପାଟିରୁ ଲାଳ ଗଡ଼ିଲା । ବମ୍ବେ ଛାଡ଼ିବା ଆଗରୁ ଏଥିରୁ କିଛି ଯୋଗାଡ଼ କରି ଆଣିଥିଲି ସାଙ୍ଗରେ ବାଟରେ ମନସାଧ ମେଣ୍ଟାଇବାକୁ । ସେସବୁ ଏଥି ଭିତରେ ସରିଯାଇଥାଏ । ଖିଲ ଖଣ୍ଡେ ତିଆରି କରି କାଳରେ ଯାକିଲି । ସାଙ୍ଗେ ସାଙ୍ଗେ ଘର କଥା ଦେଶ କଥା ମନ ଆଗରେ ଭାସି ଉଠିଲା । ଆଖି ଛଳ ଛଳ ହୋଇଉଠିଲା । ପୁଣି କେବେ ଫେରିବ ଘରକୁ !

ବିଲାତ ରହଣି ପାଇଁ ମୋର କିଛି ଜିନିଷପତ୍ର କିଣିବାର ଥାଏ । ବମ୍ବେରୁ ଯୋଗାଡ଼ କରିଥାଏ କେତେଟା, ବାକିତକ ଏଠୁ ନବାକୁ ପଡ଼ିବ । ବନ୍ଧୁମାନେ କହୁଥାନ୍ତି ଏଠି ସବୁ ଶସ୍ତା, କିନ୍ତୁ ଅନ୍ୟ ଯାତ୍ରୀମାନଙ୍କ କିଣାକିଣି ତୁଳନାରେ ମୋର ଗୁଣ୍ଟିଦା ଫର୍ଦ୍ଦ ଲମ୍ବା ନଥିଲା । ଅଳପ ଧନ ବିକଳ ମନ । ପଇସାକୁ ଦେଖି ସଉଦା କଲି, ମନେ ମନେ ମହା ଖୁସି । ମହା ସୁବିଧାରେ କିଛି ବ୍ୟବସ୍ଥା ହୋଇଗଲା, ହେଲେ ବିଲାତରେ ଏଥିପାଇଁ ଅନେକ ପସ୍ତେଇବାକୁ ପଡ଼ିଥିଲା । ଶସ୍ତାରେ ହୀନସ୍ଥା । ତଥାକଥିତ ଲାଇଲନ୍ ସାର୍ଟଟା ଅକାଳରେ ରଙ୍ଗଛଡ଼ା ହୋଇ କେବଳ ଗ୍ରୀଷ୍ମ କାଳରେ ଅଙ୍ଗର ଆଭରଣ ହେଲା । ଶୀତପ୍ରଧାନ ଦେଶର ସରସ ଜଳବାୟୁ ଯୋଗେ ବପୁ ଯେତେବେଳେ ମୋଟା ହୋଇଉଠିଲା ଏଡ଼େନ୍-କିଣା ପାଇଜାମା ଆଉ ପାଇଲାନି ଜଙ୍ଘକୁ । ହେଲେ କିଣିବା ଯେତେବେଳେ ଗୁଡ଼ାଏ କେତେକ ! ଟାଣିଟୁଣି କିଛିଦିନ କାମ ଚଳେଇଲି ଏଥିରେ ! କିନ୍ତୁ ଏଡ଼େନ୍‌ର ଶସ୍ତା କିଣାକିଣିଟା ବହୁଦିନ ପର୍ଯ୍ୟନ୍ତ ମନରେ ବିରକ୍ତି ସୃଷ୍ଟି କରିଥିଲା ।

ଏଡେନ୍‌ରେ ଜାହାଜ ରହେ ମାତ୍ର ଚାରିଘଣ୍ଟା । ତା'ରି ଭିତରେ ବୁଲିବୁଲି କିଣାକିଣି ସାରି ପୁଣି ଆମେ ଜାହାଜକୁ ଫେରିଆସିଲୁ । ସୂରଆଡେ ବୋଇତଭେଳା । କଳକଳା ନାଦ କରି ଉଡ଼ୁଥାନ୍ତି ଚଢ଼େଇ ଦଳ । ଆମ ଜାହାଜ ଧୀରେ ଚାଲିଲା ଲୋହିତ ସାଗର ଅଭିମୁଖରେ ।

ଦୂରରୁ ଦେଖା ଯାଉଥାଏ ଆରବ ଦେଶର ରୁକ୍ଷ ଭୂମିଖଣ୍ଡ । ଦିଗ୍‌ବଳୟ ଭେଦ କରି ଉଙ୍କିମାରୁଥାଏ ଆଫ୍ରିକା ଦେଶର ଧୂସର ପର୍ବତମାଳା । ମନରେ ଜାଗି ଉଠିଲା ଅଦ୍ଭୁତ ପରିକଳ୍ପନା । ପିଲାଦିନେ ପାଠ୍ୟ ପୁସ୍ତକରେ ଏହି ଆରବ ଆଫ୍ରିକା ଦେଶ କଥା ପଢ଼ି ମନରେ କେତେକ ବିଚିତ୍ର ଧାରଣା ଦେଖାଦେଇଥାଏ । କେମିତି ହୋଇଥିବ ଏ ରାଜ୍ୟ, କେମିତି ଏଠାର ଲୋକେ, କିନ୍ତୁ ସେ ଦେଶ ଆଜି ଏତେ ପାଖରେ । ବିଚିତ୍ର ଏ ପାଗଳ ମନର ଗତି, ଇଚ୍ଛା ହେଉଥାଏ ଟପିବି ଦୁଃଖଜଞ୍ଜାଳ ଭୁଲି ବୁଲି ବାହାରିବ ଦେଶ ଦେଶାନ୍ତର । ଥାଆନ୍ତା ଯଦି ମୋର ବିହଙ୍ଗ ପକ୍ଷ, ଲଘିଂ ଯାଉଥା ଗିରି ସମୁଦ୍ର ବକ୍ଷ……

ଜାହାଜ ଚାଲିଥାଏ । ଏଡେନ୍ ଉପସାଗର ପାରିହୋଇ ଆମେ ଲୋହିତ ସାଗରରେ ପହଞ୍ଚି ଯାଇଥାଉ । ଭାରତରେ ଏଠା ବର୍ଷାଦିନ ହେଲେ ବି ବେଳେବେଳେ ଗରମ ଲାଗେ । ହେଲେ ଏଡେନ୍‌ରେ ପହଞ୍ଚିଲା ବେଳକୁ ଏଇ ଗରମ ମାତ୍ରା ଟିକେ ବଢ଼ିଯାଇଥିଲା । ଲୋହିତ ସାଗରରେ ଏମିତି ଗରମ ହେଲା ଯେ ଏକବାରେ ବସନ-ଭୂଷଣ ଅସମ୍ଭାଳ । ଖୋଲା ଦେହରେ ସମସ୍ତେ ଯାଇ ପଡ଼ିଥାନ୍ତି ଡେକ୍ ଉପରେ । ତଥାପି ନିସ୍ତାର ନାହିଁ । କି ଆଶ୍ଚର୍ଯ୍ୟ କଥା, ଚାରିଆଡ଼େ ବିସ୍ତୀର୍ଣ୍ଣ ଜଳରାଶି । ଆମେ ସମୁଦ୍ର ମଝିରେ ଗତି କରୁଛୁ, ଏଠି ଏତେ ଗରମ କାହିଁକି ? ଦୁଇପଟେ ଥିବା ମରୁଭୂମି, ରୁକ୍ଷ ଟାଙ୍ଗର ଯାଗା ଗୁଡ଼ାକ ଏଇ ଉତ୍ତାପର କାରଣ ବୋଧହୁଏ । ନିକଟରେ ଟାଇଗ୍ରିସ୍, ଇଉଫ୍ରେଟିସ୍ ନଦୀ, ତାରି ଆଖ ପାଖରେ ତ ପୃଥିବୀର ସବୁଠାରୁ ଉଷ୍ଣତମ ସ୍ଥାନ ।

ଚାରିଆଡ଼େ ଭାସୁଥାଏ ଖଣ୍ଡ ଖଣ୍ଡ ଲୋହିତ ଶୈବାଳ । ଆଖପାଖ ଦେଇ ଚାଲିଥାଏ କେତେ ଜାହାଜ । କିଏ ଯାଉଛି ବିଲାତ ଅଭିମୁଖରେ କିଏ ଫେରୁଛି ଭାରତ । ଏଇ ନିରାଟ ଗରମଟା ଜାହାଜ ଯାତ୍ରୀଙ୍କ ପାଇଁ ଗୋଟେ ବିରାଟ ଶରୀର-ଶୀତଳ ଅଭିଯାନର ବାଟ ଖୋଲିଦେଲା । ଖୋଲା ଦେହରେ ଅନେକ ବୁଲାଚଲା ଆରମ୍ଭ କରିଦେଲେ । ତାପରେ ଚାଲିଲା ଗାଧୁଆ ପାଳି । ପାଣି କୁଣ୍ଡରେ ଯାଇ ପଡ଼ିଯାନ୍ତି ଥରକୁ ଥର । କି ଦୁଃସାହସୀ ଏମାନେ । ବିଦେଶ ଯାଉଛନ୍ତି । ଥଣ୍ଡା ଲାଗିପାରେ । ପରବାଏ କିମିତି ନାହିଁ ଏମାନଙ୍କର !

ଶ୍ରୀମତୀ ଦେଶାଇଙ୍କ ସାଙ୍ଗରେ ଏଇ ଭିତରେ ଆହୁରି ଜୋରରେ ଜମିଉଠିଥାଏ ଆମ୍ପୀପ୍ରିୟତା ଗୁଜରାଟୀ ନନ୍ଦନ ଭୁଣ୍ଟାଙ୍କର । ପ୍ରକୃତ ନାଁ ତାଙ୍କର କେଜାଣି କଣ କିନ୍ତୁ ତାଙ୍କ ସାଙ୍ଗସାଥିମାନେ ଏଇ ଭୁଣ୍ଟା ବୋଲି ଡାକନ୍ତି । ନାଁଟା ଭୁଣ୍ଟା ହେଲେ କଣ ହେବ ଦେହଟା ତାଙ୍କର ଆଦୌ ମୋଟା ନୁହେଁ । କ୍ଷୀଣ ପତଳା ଚେହେରା, ଖର୍ବକାୟ କିନ୍ତୁ ଗୁଣ କମ୍ ନୁହେଁ । ସବୁବେଳେ ସେ ପିଛୁ ଧରିଥାନ୍ତି ଶ୍ରୀମତୀ ଦେଶାଇଙ୍କର । ମତେ ବଡ଼ ହସ ଲାଗିଲା । ଏଟା ନିହାତି ବାଛୁରୀ ପ୍ରେମ ( Calf Love ) । ଶ୍ରୀଯୁକ୍ତ ଦେଶାଇ ତ ବେଶ୍ ସୁଶ୍ରୀ ଓ ବପୁବନ୍ତ । ନିଜ ରୂପ-ଗୁଣରେ ମୁଗ୍ଧ କରିପାରିଛନ୍ତି ଏହି ବିଦେଶୀ ରମଣୀଙ୍କୁ । ଭୁଣ୍ଟାବାବୁ କାହିଁ ଧରିଛନ୍ତି ତାଙ୍କ ପିଛୁ ? ହେଲେ ଶ୍ରୀଯୁକ୍ତ ଦେଶାଇ ଠିକଏ ଉଗ୍ରଲୋକ । ସ୍ତ୍ରୀକୁ ସାଉଁଲେଇବା ପରିବର୍ତ୍ତେ ଧମକାଇ କଥା କହନ୍ତି, କିନ୍ତୁ ଭୁଣ୍ଟା ମୋଟା ନ ହେଲେ କଣ ହେବ ବେଶ୍ ଗୋରା ଓ ସୁନ୍ଦର । ସେ ଯେ ଶ୍ରୀମତୀ ଦେଶାଇଙ୍କ ପିଛୁ କେବଳ ବହୁତ ଟଙ୍କା ଖର୍ଚ୍ଚ କରୁଥାନ୍ତି ତା ନୁହେଁ ସବୁବେଳେ ତାଙ୍କୁ ବହୁତ ବି ଖୋସାମତ କରୁଥାନ୍ତି । ଶ୍ରୀମତୀ ଦେଶାଇ କଥା କଥାକେ ମଧୁର କଟାକ୍ଷ ହାଣି ହସହସ ଠାଣୀରେ ସାଦର କରନ୍ତି ଏଇ ଯୁବକ ବନ୍ଧୁଙ୍କୁ । କହନ୍ତି ବି କେତେକ ମନ ମତାଣିଆ କଥା ବାବୁ ଭୁଣ୍ଟାଙ୍କ ରୂପ ଯୌବନ ଓ ରୋମାଞ୍ଚକର ଆଗ୍ରହ ବ୍ୟବହାରକୁ ପ୍ରଶଂସା କରି । କୃତ୍ୟକୃତ୍ୟ ହୋଇଉଠନ୍ତି ଏହି ଧନୀକ-ସନ୍ତାନ, ରମଣୀ-ଗଳାର ରମଣୀୟ ତୋଷାମଦ ବାଣୀରେ । ବଗିଦ ହୁଏ କେତେ ଭଳିର ରଙ୍ଗୀନ୍ ପାଜାମ୍ପା, ସବୁଟା ଯେପରି ଝଲମଲ ସୁନ୍ଦର ହୋଇଉଠେ । ପରେ ପରେ ଆରମ୍ଭ ହୋଇଯାଏ କିଛି ନା କିଛି ଖେଳ, ତାସ, କ୍ୟାରମ୍, ପିଙ୍ଗପଙ୍ଗ୍ । ଖେଳଟା କିନ୍ତୁ ହେଉଛି ଗୋଟେ ବାହାନା । ମୋଟ ଉପରେ କିଛି ଆମୋଦ ପ୍ରମୋଦ ଚାହିଁ । ଖେଳ ଆଉ ପିଆପିଇ ସାଙ୍ଗକୁ ଚାଲିଥାଏ ଅଡ୍ଡା । ଧୂଆଁ ଟଣା ଜାହାଜରେ ସୁଲଭ ମୂଲ୍ୟରେ ମିଳୁଥିବା ଦୁର୍ଲଭ ସିଗାରେଟ୍ ସାହାଯ୍ୟରେ । କଳ୍ପନାଜଳ୍ପନା ଚାଲିଥାଏ ଜାହାଜ ଯାତ୍ରାର ବାକିତକ ସମୟ କିମିତି କଟିବ । ସନ୍ଧ୍ୟାରେ, ରାତିରେ କି ରକମ ମଉଜମଜଲିସ୍ କରାଯିବ, ଜାହାଜରେ ଚାଲିଥିବା ଅନେକ ପ୍ରକାର ଜୁଆଖେଳରେ କିଏ କେମିତି ଅଂଶ ନେବ ଇତ୍ୟାଦି ।

ମୁଁ କିନ୍ତୁ ଲାଗିଥାଏ ଚିଠି ଲେଖିବାରେ ଘରକୁ । ଗଲାବେଳେ ପିଲାମାନଙ୍କୁ କହିଯାଇଥାଏ ପ୍ରତିଦିନ ମୋ ପାଖକୁ ଚିଠି ଦେବା ପାଇଁ । ଏଥି ଭିତରେ କେତେକ ଚିଠି ଆସିଥାଏ । ସେଥିରେ ସେମାନେ ଲେଖି ଦେଇଥାନ୍ତି ଘରର ଯାବତୀୟ ଜଞ୍ଜାଳ ଓ ସମସ୍ୟାର ବିବରଣୀ । ଠିକ୍ ମୁଁ ଘରେ ଥିଲେ ଯିମିତି ଗଳ୍ପ ଗୁଜବ କରନ୍ତି ସେଥିରୁ ବି କିଛି । ସତେ ଅବା ମୁଁ ତାଙ୍କ ପାଖରେ ଅଛି । ମୁଁ ଯେ ଦିନକୁ ଦିନ ତାଙ୍କ ପାଖରୁ ଦୂରେଇ ଯାଉଚି ମୋ ଦୁସ୍ଥ ଜୀବନର ଦୁର୍ବାର ଆଶା ଚରିତାର୍ଥ କରିବାକୁ ସେମାନେ ବୋଧହୁଏ ସେଇଟା ଉପଲବ୍‌ଧି କରିପାରୁନଥିଲେ । କରୁଥିବେ ଯଦି ସେମାନଙ୍କ ଦୁଃଖ ନୈରାଶ୍ୟ କେତେ ଅସହ୍ୟ ହେଉନଥିବ । ସେଥିରେ ସେମାନଙ୍କୁ ସାନ୍ତ୍ୱନା ଦେବାକୁ ଓ ନିଜ ମନର ଅଭିମାନ ମେଣ୍ଟେଇବାକୁ ସବିଶଦ ଆଦେଶ-ଉପଦେଶ, ସାନ୍ତ୍ୱନା-ଆଶ୍ୱାସନା ବାଣୀ କଲମ ସାହାଯ୍ୟରେ ଲେଖିବସେ । ତାର ପ୍ରତ୍ୟୁତ୍ତର ବି ଆସିବାକୁ ଅପେକ୍ଷା କରିଥାଏ । ଯାହା ଆସେ ବିକଳ ମନରେ ତାକୁ ତନ୍ନ ତନ୍ନ କରି ପଢ଼େ ଏବଂ ସାଇତି ରଖେ ସେ ସବୁକୁ ଗଣ୍ଠିଧନ କରି, କେତେବେଳେ ମନ ଖରାପ ହେଲେ ପୁଣି ତାର ପୁନରାବୃତ୍ତିରେ ଚିତ୍ତ-ବିନୋଦନ ପାଇଁ ।

ଜାହାଜ ସୁଏଜ୍ ଅଭିମୁଖରେ ଆଗେଇଛି । ଆଗରେ ଦେଖା ଯାଉଚି ସିନାଇ ପର୍ବତ ମାଳା । ବାମରେ ପୁରାତନ ସଭ୍ୟତାର ପୀଠ ମିଶର ଦେଶ । ଆଖି ଆଗରେ ଅତୀତ ଇତିହାସର କେତେକ କଥା ଭାସି ଉଠିଲା ।

ଏଇଠି ଏହାର ପ୍ରବଳ ପ୍ରତାପୀ ଶାସକ ଫାରୋଆମାନେ ନିର୍ମାଣ କରିଛନ୍ତି ସୁବିଶାଳ ପୀରାମିଡ୍ ମାନ । ସେମାନଙ୍କ ମତରେ ଜୀବନ ମୃତ୍ୟୁ ପରେ ନଷ୍ଟ ହୁଏନି ତେଣୁ ଆତ୍ମୀୟ ସ୍ୱଜନମାନଙ୍କ ମୃତ ଶରୀରକୁ ନାନା ତୈଳରେ ଘସିମାଜି ଏହି ପିରାମିଡ଼ ଭିତରେ କବର ଦିଅନ୍ତି ରାଜା ଓ ଧନିକ ଶ୍ରେଣୀର ଲୋକେ । ତାର ଆଖପାଖରେ ରଖିଦିଅନ୍ତି ଜୀବନଧାରଣର ଉପାଦାନ, ପଥର ଦେହରେ ଖୋଳି ଦିଅନ୍ତି ମୃତ ବ୍ୟକ୍ତିଙ୍କ ଜୀବନ-ଇତିହାସ । ଏଇଠାରେ ବୋଧହୁଏ ଆରମ୍ଭ ହୋଇଥିଲା ଗ୍ରହମାନ ମାଧ୍ୟରେ ମାସ ଗଣନା । ଏଇଠାରୁ ସଂଖ୍ୟା ଲିଖନର ପଦ୍ଧତି ଆରମ୍ଭ । ଏଇଠାରେ ଚିତ୍ରଲେଖା । (Pictograph) ସାହାଯ୍ୟରେ ପୃଥିବୀର ପ୍ରଥମ ବର୍ଣ୍ଣମାଳାର

ସୃଷ୍ଟି । ବାଃ, କି ଚମତ୍କାର ଦେଶ, କି ଅପୂର୍ବ ସଭ୍ୟତା । ହଁ, ଡାହାଣ ପଟେ ସାଉଦିଆରବିଆ, ଇସ୍ରାଏଲ, ସିରିଆ, ଇରାକ୍ ଆଦି ଦେଶ । ଏଇ ସିରିଆ ଇରାକ୍ ଦେଇ ଟାଇଗ୍ରୀସ ଓ ଇଉଫ୍ରେଟିଶ୍ ନଦୀ ପ୍ରବାହିତ । ଏଇ ନଦୀ ଦ୍ୱୟର ଉପକୂଳରେ ଗଢ଼ିଉଠିଥିଲା ପୁରାକାଳରେ ବେବିଲୋନିଆନ୍ ଓ ସୁମେରିଆନ ସଭ୍ୟତା ।

ଲୋହିତ ସାଗରଠାରୁ ନୀଳନଦୀର ତ୍ରିକୋଣଭୂମି ପର୍ଯ୍ୟନ୍ତ ପ୍ରଥମେ ସୁଏଜ କେନାଲ ଖୋଳିଥିଲେ ମିଶରର ପୁରାତନ ରାଜା ଫାରୋଆମାନେ । ଏହି ନାଳ କ୍ରମେ ବାଲିମାଡ଼ି ଅକାମୀ ହେଲା । ତା'ପରେ ଖ୍ରୀ' ପୂ: ପ୍ରାୟ ୪ର୍ଥ ଶତାବ୍ଦୀରେ ମିଶରର ତତ୍କାଳୀନ ଶାସକ ପରଶିଆନ୍ ମାନେ ଏହାକୁ ସଫା କରି କାର୍ଯ୍ୟୋପଯୋଗୀ କଲେ । ହେଲେ ପୁଣି ଏ ଅକାମୀ ହେବାରୁ ମିଶରର ପରବର୍ତ୍ତୀ ଶାସକଦଳ ମୁସଲମାନମାନେ ଏହାକୁ ସଫାକଲେ । ମାତ୍ର ପୁଣି ଏ ପୋତି ହୋଇପଡ଼ିଲା ।

ସଞ୍ଜ ବେଳକୁ ପହଞ୍ଚିଲୁ ସୁଏଜରେ । ବହୁ ପୂର୍ବକାଳରୁ ସୁଏଜ ଏକ ସହର ଥିଲା । ୧୮୪୨ ଖ୍ରୀ: ଅ: ବେଳକୁ ଯେତେବେଳେ ସ୍ଥଳପଥରେ ଅନ୍ତର୍ଜାତୀୟ ଡାକ କାରବାର ହେଲା, ସେତେବେଳେ ସୁଏଜର ଗୁରୁତ୍ୱ ବଢ଼ିଉଠିଲା । ତା'ପରେ ସୁଏଜ କେନାଲ । ଏହି ବନ୍ଦରରେ ଜାହାଜ ଅଟକିବା ଆଗରୁ ଦେଖିଲୁ ତୀବ୍ର ବେଗରେ ମାଡ଼ି ଆସୁଛନ୍ତି କେତେ ଡଙ୍ଗା । କେତେକରେ ଇଞ୍ଜିନ୍ ଲାଗିଛି, କେତେକ ଚାଲିଛି କେବଳ ଆହୁଲାରେ । ଭିତରେ ଜଳୁଛି ଖୁବ୍ ତେଜସ୍କର ପ୍ରଦୀପ । ଜଳରାଶି ପ୍ରାୟ ଶାନ୍ତ-ଶୀତଳ । ତା' ଉପରେ ସାଲୋକ ଭ୍ରାମ୍ୟମାଣ ନଉକାଗୁଡ଼ିକ ଗୋଟିଏ ବିଚିତ୍ର ଦୃଶ୍ୟ ସୃଷ୍ଟି କରୁଥାନ୍ତି । ଅଳ୍ପ ଦୂରରେ ଜାହାଜର ଦୁଇପଟେ ଦେଖା ଯାଉଥାଏ ବୈଦ୍ୟୁତିକ ବତୀମାଳା । ଜାଗାଟା ଯେମିତି ବେଶ୍ ମନୋରମ ଲାଗିଲା । ମନେ ହେଲା ଆମେ ଯେମିତି ଗୋଟେ କୌଣସି ଇନ୍ଦ୍ରଜାଲଭରା ପରୀ ରାଇଜରେ ଆସିପହଞ୍ଚିଛୁ । ପିଲାଦିନର ଆରବୀୟ କାହାଣୀଗୁଡ଼ିକ ମନରେ ଯେମିତି ଜୀବନ୍ତ ହୋଇ ଉଠିଲା ।

ଜାହାଜ ଚାଲିଛି କି ବନ୍ଦ ଅଛି ବୁଝିବା କଷ୍ଟକର । ହେଲେ ଦେଖିଲୁ ଆମ ଚାରିପଟେ ଘେରି ଗଲେଣି ସେଇ ନଉକା ଦଳ । କେତେ ପ୍ରକାର କାଁ ଭାଁ ଶବ୍ଦ, କେତେ ବିଚିତ୍ର ଚିତ୍କାର !

ପୂର୍ବାହ୍ନରେ ଝଡ଼ବର୍ଷା ହୋଇଥାଏ। ତାର ଦାଉରୁ ଜାହାଜକୁ ରକ୍ଷା କରିବାକୁ ପାଲ ଟେକା ଯାଇଥାଏ ଡେକ୍ ଗୃହପଟେ। ହଠାତ୍ ଦେଖିଲି ତାର ତଳେ ଟେକ କେତେଟା ବିରାଟ ନାଲିଆ ଦାଢ଼ିଆ ମୁହଁ ଆମକୁ ସମ୍ବୋଧନ କରି କଅଣ କହୁଛନ୍ତି। ସାଙ୍ଗେ ସାଙ୍ଗେ ଦେହ ଶୀତେଇ ଉଠିଲା। ଆମେ ବୋଧହୁଏ ଦଳେ ଡକାୟତଙ୍କ ହାବୁଡ଼େ ପଡ଼ିଗଲୁ। ମନେ ପଡ଼ିଲା, ପୂର୍ବକାଳର ଜଳଦସ୍ୟୁଙ୍କ କଥା। ବିରାଟ ଜଳରାଶି ମଧ୍ୟରେ କୁଆଡ଼ୁ ପଶିଆସି କରନ୍ତି ଜାହାଜକୁ ଆକ୍ରମଣ। କାବୁ କରି ଦିଅନ୍ତି ସାଙ୍ଗେ ସାଙ୍ଗେ ଯାତ୍ରୀଦଳଙ୍କୁ। ତା' ପରେ ଆରମ୍ଭ କରି ଦିଅନ୍ତି ଲୁଟ୍‌ତରାଜ, ନାରୀଧର୍ଷଣ, ନର-ଧର୍ଷଣ ! ଏଠି କି ପ୍ରକାର ଧର୍ଷଣ ହେବ !

ପାଲ ଟେକ ଦେଖେତ ଓଡ଼ିଶା ଦେଶର କେଳାନାଟ କାରବାର। ଘୋଡ଼ା ବାଉଁଶରେ ଚଢ଼ି କେତେ ଖେଳ ଦେଖାନ୍ତି, କେତେ ରଙ୍ଗରସ ଆରମ୍ଭ କରନ୍ତି ବାଉଁଶରାଣୀ ଓ ନାଟୂଆ କେଳା। ଲୋହିତ ରଙ୍ଗର ଆରବୀୟ ଲୋକଗୁଡ଼ାକ ସେହିପରି କେତେ କଣ ପେଡ଼ିପୋଟଳା ଧରି ଜୁଟିଯାଇଚନ୍ତି। ସେମାନଙ୍କ ଚେହେରା ଅଳ୍ପେ ଅଧିକେ ପୁରୀ ଲୋକନାଥପଦା ପାଣ୍ଡମାଙ୍କଡ଼ଙ୍କ ନଗ୍ନାଙ୍ଗର ରଙ୍ଗ ପରି ଦେଖାଯାଉଥାଏ। ଠିକ୍ ପାଣ୍ଡମାଙ୍କଡ଼ଙ୍କ ପରି ଏମାନେ ଜାହାଜ କାନ୍ଥ ବାଡ଼ରେ ଉଠି ଆସୁଥାନ୍ତି। ତାଙ୍କ ଡଙ୍ଗାର ପାଲ ଖୁଣ୍ଟରେ ବା ଆହୁଲକୁ ପାଣିରେ ପୋତି ସେଥିରେ ଚଢ଼ି ବା ସିଡ଼ି ପକାଇ ଉପରକୁ ଉଠି ଦୁମ୍‌ଦୁମ୍ ଭୁଷ୍‌ଭାଷ୍ ପଶିଆସୁଚନ୍ତି ଆମ ଜାହାଜ ଭିତରକୁ। କଥା କଣ ? କିଏ ଏମାନେ ? କାହିଁକି ଏମିତି ମାଡ଼ିଆସିଲେ ? ଏ ଉତ୍କଣ୍ଠା ଆଉ ବେଶୀ ସମୟ ରହିପାରିଲା ନି। ନିଜର ମୂର୍ଖତା ପ୍ରକାଶ ପାଇବ ବୋଲି କାହାକୁ କିଛି ପଚାରିଲିନି। କିନ୍ତୁ ଜାହାଜ ଯାତ୍ରୀଙ୍କ କଥାରୁ ବୁଝିଲି ସେମାନେ ଆସିଚନ୍ତି ତାଙ୍କ ଜିନିଷପତ୍ର ଆମକୁ ବିକିବାକୁ। ଓ ! ସତେ ନା ! ସେମାନେ ଖଣ୍ଡେ ଖଣ୍ଡେ ପଟି ପକାଇ ପାଡ଼ି ଦେଲେ ତାଙ୍କ ସରଞ୍ଜାମ ସବୁ। କିଛି ଚମଡ଼ାର, କିଛି କିଛି ଥାଏ ଖଜୁରୀ ପତ୍ରର, ପଥର, ଘାଗୋଡ଼ାର କେତେ ଚିଜ। ଆସ ନିଅ, ଭାରତ ଆରବ ଭାଇ-ଭାଇ ନାସର ନେହରୁ ଭାଇ-ଭାଇ। ଖୁବ୍ ଆଦର ଅଭ୍ୟର୍ଥନାରେ ଯାତ୍ରୀଙ୍କୁ ଆହ୍ୱାନ କଲେ। ସତେ ଯିମିତି ମାଗଣା ଦେବେ। କିନ୍ତୁ ଦାମ୍ ହାଙ୍କୁଥାନ୍ତି ଖୁବ୍ ବେଶୀ।

ଡେକ୍ ସାରା ଘୃ ଘୃ କରି ଉଠିଲା । ଗୋଟେ ଯିମିତି ହାଟ କି ଯାତ୍ରା ଲାଗିଛି । ଖୁବ୍ ଗୋଳ ଚହଳ ପଡ଼ିଯାଇଥାଏ । ଏଣୁ ବେପାରୀଙ୍କୁ ବେଢ଼ି ଯାଇ ଯାତ୍ରୀମାନେ ଦେଖାଦେଖି କଣାକଣିରେ ଲାଗି ପଡ଼ିଥାନ୍ତି । ସୁଏଜରେ ପହଞ୍ଚିବା ପରେ ବିଳାତ ଅଭିମୁଖୀ ଯାତ୍ରୀଦଳଙ୍କର ଆନନ୍ଦ ଉଲ୍ଲାସ ଆଉ ଗୋଟିଏ ପର୍ଦ୍ଦା ଉପରକୁ ଉଠିଯାଇଥାଏ । ସୁଏଜ ଯଦି ଆସିଗଲା ଲଣ୍ଡନ ବା ଆଉ କେତେଦୂର ! ତେଣୁ ସମସ୍ତେ ଏ କଣାକଣି ପର୍ବ ନେଇ ମାତି ଉଠିଲେ । ମୁଁ ଡେକ୍ ଉପରେ ବୁଲି ଦେଖୁଥାଏ ଚୌରଆଡ଼ର ସୁନ୍ଦର ଶୋଭା । ଗୋଟାକ ପରେ ଗୋଟେ ଜାହାଜ ଚାଲି ଆସୁଥାଏ ସୁବିସ୍ତୃତ ସାଗର ଭିତରୁ ଏହି ପୋତାଶ୍ରୟକୁ । କୃଷ୍ଣପକ୍ଷ ରାତିରେ ଆଲୋକ-ଉଦ୍ଭାସିତ ଜାହାଜଗୁଡ଼ିକ ବେଶ୍ ମନୋରମ ଦିଶୁଥାଏ ପାଖ ଭୂମି ଖଣ୍ଡରେ ଧାଡ଼ି ଧାଡ଼ି ବିଜୁଳି ଆଲୋକ ଗୋଟାଏ ରଙ୍ଗୀନ୍ ବାତାବରଣ ସୃଷ୍ଟି କରିଥାନ୍ତି । ହଠାତ୍ କଣ ଭାବି ପୂର୍ବ ଦିଗକୁ ଚାହିଁଲି । ଅବଶ୍ୟ କୁଁଠା ପୂର୍ବଦିଗ ଜାହାଜର ସେ ଅବସ୍ଥିତିରୁ ଜାଣିବା ସମ୍ଭବପର ନୁହେଁ । ତେବେ ମନେ ମନେ ଭୂଗୋଳ ଇତିହାସରୁ ନାନା କଥା ଚିନ୍ତା କରି ଭାରତ ଭୂମିର ଅବସ୍ଥିତି ଠିକ୍ କରିନେଲି । ସାଙ୍ଗେ ସାଙ୍ଗେ ହାୟ ହାୟ କରି ଉଠିଲା ମନ ଭିତରୁ କିଏ । ବର୍ତ୍ତମାନ କଟକରେ ବାଜିଥିବ ରାତି ନଅ । ପିଲେ କିଏ ଶୋଇପଡ଼ିବେଣି । କେହି କେହି ହୋଇ ଉଠିଥିବେ ତନ୍ଦ୍ରାତୁର । ଦୁଏତ ଦିନର ପଢ଼ାପଢ଼ି ବୁଲାବୁଲି ପରେ ରାତିର ନିଦବେଳା ବେଳାରେ ପକେଇଥିବେ ମୋ କଥା । କୁଁଠି ମୁଁ ଥିବି, କେବେ ଫେରିବି । ଦେହଟା କମିତି ଅବଶ ହୋଇଉଠିଲା । ବିକଳ ହୋଇ ପଶିଲି ଧୂମପାନ ଘରେ ଟିକିଏ ବସି ଆରାମ କରିବି ବୋଲି । ଆଖି ପଡ଼ିଗଲା ପାଖ ପାନାଗାରରେ । ଶ୍ରୀମନ୍ତ ଦେଶାଇ ଓ ମାଷ୍ଟର ଭୁଞ୍ଜା ମନୋରଞ୍ଜନ ପାଇଁ ବନ୍ଧୁବାନ୍ଧବଙ୍କ ଗହଣରେ ଚଳେଇଚନ୍ତି ପିଇବା ପର୍ବ, ବାଁ ହାତରେ ଜ୍ୱଳନ୍ତ ସିଗାରେଟ, ଡାହାଣ ହାତରେ ରଙ୍ଗୀନ୍ ମଦିରା ପାତ୍ର କିଏ ବା ଠିକ୍ ଏହାର ଓଲଟା ରୀତିରେ ଏ ଆସର ଚଳେଇଥାନ୍ତି । କେତେ ଖୁସି ଗପ, କେତେ ଥଟ୍ଟା ପରିହାସ ! ବାରମ୍ବାର ଏଇ ଘଟଣା ଦେଖି ମନରେ ନାନା ପ୍ରକାର ସନ୍ଦେହ ଜାଗିଉଠିଲା । କଣ ଏ କଥା ? ଶ୍ୱେତାଙ୍ଗିନୀ ହେଲେ ବି ସୁଶ୍ରୀ ସ୍ୱାସ୍ଥ୍ୟବାନ୍ ଭାରତୀୟ ଶ୍ରୀଯୁକ୍ତ ଦେଶାଇଙ୍କୁ

ବିବାହ କରିଛନ୍ତି । ସ୍ୱାମୀ ସ୍ତ୍ରୀ ଦୁହେଁ ସ୍ୱଦେଶରେ କି ବିଦେଶରେ କୁଆଁଡ଼ି ରୋଜଗାର କରି ଚଳୁଛନ୍ତି ବେଶ୍ । ତେବେ ଏ ହସହସ ସୁନ୍ଦରୀ ମହିଳାଟି ଢଳି ପଡ଼ୁଛନ୍ତି ଏ ଛଣକାପୁ ସୁଶ୍ରୀ ଯୁବକ ଆଡ଼କୁ କାହିଁକି ? ରାଧାନାଥଙ୍କ ଲେଖା ମନେ ପଡ଼ିଗଲା—ବଳିଷ୍ଠର କରେ କର ଛନ୍ଦିବାକୁ ପ୍ରୟାସୀ ସଦା ସୁନ୍ଦରୀ...... । ତେବେ ଏ ଅବଳିଷ୍ଠ ପ୍ରତି ଏ ଶ୍ୱେତାଙ୍ଗିନୀ ବାଳାଙ୍କର ଏତେ ମମତା କାହିଁକି ? ତେବେ କଣ ଗୁଜରାଟୀ ନନ୍ଦନଙ୍କର ଅକଳନ୍ତି ଧନ, ବେପରବାଏ ଖର୍ଚ୍ଚ ଏହାର କାରଣ ! ଏକ ଲୟ ଏକ ମନରେ ତାଙ୍କ ଗତିବିଧିକୁ ଲକ୍ଷ୍ୟ କଲି । ସବୁଠା ଯେମିତି ଅର୍ଥପୂର୍ଣ୍ଣ, ସବୁଠା ପଛରେ ଯିମିତି ଗୋଟିଏ ଗୁପ୍ତ ଆଭାସ ଥାଏ । ବର୍ତ୍ତମାନ ବୋଲି ନୁହେଁ । ସେମାନଙ୍କୁ ଦେଖିଲା ଦିନୁ ମୁଁ ତାଙ୍କ ଗତିବିଧି ପ୍ରତି ଭାରି ସନ୍ଦେହୀ । ଅନ୍ୟ କାମ ଭିତରେ ସେମାନେ କୁଆଡ଼ି ବସିଲେ କଣ କଲେ ଏହାର ଯିମିତି ଠିକନଥି ହିସାବ ରଖୁଥାଏ । କଣ ଏ କଥା ! ଯାଙ୍କ ପାଇଁ କାହିଁ ଏତେ ମୁଣ୍ଡବ୍ୟଥା । ମନେ ହେଲା ମଥାଟା ଏଥିରେ ଘୂରିବାର କାରଣ ମଣିଷ ମନର ସେଇ ଚିରନ୍ତନ ଅଭ୍ୟାସ, ବ୍ୟଭିଚାର ଓ କୁକର୍ମ ଅନୁସନ୍ଧାନର ପ୍ରବୃତ୍ତି । ନା ଏ ଗାଳ୍ପିକ ମନ ତାର ଖୋରାକ ଖୋଜୁ ଖୋଜୁ ଏମାନଙ୍କ ଉଦ୍ଭଟ ପ୍ରେମ କାରବାରରେ ମଜ୍ଜି ଯାଇଚି ! ସେ ଯାହା ହେଉ, କଥାଟା କଣ ବୁଝାଯାଉ ।

କଥା ପ୍ରସଙ୍ଗରେ ବନ୍ଧୁମାନଙ୍କ ପଚାରି ବୁଝିଲି ଶ୍ରୀମତୀ ହେଉଛନ୍ତି ଜଣେ ଜର୍ମାନ୍ ମହିଳା କାଏ'କହିଲ୍ ନା ଇଟାଲିୟୁ । ଅଳ୍ପ ବୟସରେ ସେ ପ୍ରଣୟ ପର୍ବ ଆରମ୍ଭ କରିଥିଲେ ତାଙ୍କର ସମ ବୟସର ଜଣେ ଯୁବକ ସହିତ । ଏହାର ପରିଣାମରେ ବିଚାରି ମହିଳାଙ୍କୁ ନାନା ଦୁଃଖ ନର୍ଯ୍ୟାତନା ସହିବାକୁ ପଡ଼ିଲା, କିନ୍ତୁ ସମ୍ବନ୍ଧଟା ବିବାହରେ ପରିଣତ ହୋଇପାରିଲାନି । କାଏ କହିଲ୍ ନା, ହୋଇଥିଲା । ଏଇ ହୋଇଥିଲା ନ ହୋଇଥିଲା ନେଇ ନାନା ଯୁକ୍ତିତର୍କ, ବାଦବିବାଦ ଚାଲିଲା । ସେ ଯାହା ହେଉ ଏହାର କେତେ ସମୟ ପରେ ଶ୍ରୀଯୁକ୍ତ ଦେଶାଇ ପାଠ ପଢ଼ିବାକୁ ଜର୍ମାନୀ ଗଲେ । ସେ ଶ୍ରୀମତୀ ଦେଶାଇଙ୍କ ସମ୍ପର୍କରେ ଆସି ତାଙ୍କ ସରଗରମ ପ୍ରେମରେ ନର୍ଦ୍ଦୀତ ଭାବରେ ପଡ଼ିଗଲେ । ପଡ଼ିଗଲେ ଯେ ଆଉ ଉଠି ପାରିଲେନି ତାଙ୍କୁ । ଶ୍ରୀଯୁକ୍ତ ଦେଶାଇ ଜର୍ମାନୀରୁ ଡିଗ୍ରୀ କ'ଣ ହାସଲ କଲେ କି ନାହିଁ

କେଜାଣି କନ୍ଲୁ ସାଙ୍ଗରେ ଧରି ଫେରିଲେ ଏବଂ ଶ୍ୱେତାଙ୍ଗିନୀ ପ୍ରେୟସୀଙ୍କୁ ଏବଂ ଭାରତରେ ତାଙ୍କୁ ପୁରା ଶାସ୍ତ୍ରୀୟ ମତରେ ବିବାହ କଲେ । ଏବଂ ଶାସ୍ତ୍ରୀୟ ମତଟା ଭାରତରେ ସବୁ କଥାରେ ଚଳେ । ବିବାହ, ବ୍ରତ ଓ ପର୍ବ ପର୍ବାଣୀଠାରୁ ଆରମ୍ଭ କରି ନାନା ଉଦ୍ଭଟ କାମ ସବୁଟା ଶାସ୍ତ୍ରୀୟ ମତରେ କରାଯାଏ । ପୂଜାଉଜା କରି ମନ୍ତ୍ର ପଢ଼ିଲେ ଯାହା ଯେଉଁଠି ଦୋଷ ତ୍ରୁଟି, ପାପ କଳଙ୍କ ଥାଏ । ସବୁ ପବିତ୍ର ହୋଇଯାଏ ।

ସନ୍ଧ୍ୟାରେ ଆରମ୍ଭ ହେଲା ନାଚର ଆସର ଖୁବ୍ ଯୋରସୋରରେ । ଆଗରୁ ଯେ ଏ ପର୍ବ ଘଟି ନଥିଲା ତା ନୁହେଁ । ହେଲେ ସେଦିନ ଖୁବ୍ ସରଗରମ ହୋଇ ଉଠିଥିଲା ଏ ଆୟୋଜନ । ଜାହାଜ ରମଣୀ ଭିତରେ ଯେ ଯାହା ସଙ୍ଗରେ ଆତ୍ମୀୟତା ପାଉଥିଲେ ତାଙ୍କୁଇ ସଦ୍ ବ୍ୟବହାର କରି ଘୂରି ଘୂରି ନାଚିଲାଗିଲେ । କି ଆନନ୍ଦ, କି ଉନ୍ମାଦନା ! ମଝିରେ ମଝିରେ ଚାଲିଥାଏ ପିଆପିଇ ପର୍ବ । କେତେ ଯେ ମଦ ଉଡ଼ୁଥାଏ, ତା କଳ୍ପନା କରିହେବନି । ଭାବିଲି ଜାହାଜରେ ଏଥିରୁ ଇମିତି କେତେ ବୋଝେଇ ହୋଇ ଆସିଛି କି । ଏତ ମୁଁ ପ୍ରକାର ପିଆପିଇ ଚାଲିଛି ପାଣି ହେଇଥିଲେ ସମୁଦ୍ର ବି ଶୁଖିଆସନ୍ତାଣି ।

ଏତେ ବଡ଼ ସୁଖମୟ ପରିସର ଭିତରେ ରହି ବି ମୋତେ କାହିଁକି କିଛି ଭଲ ଲାଗୁନଥାଏ । ବାରମ୍ବାର ଚିନ୍ତା ଓ ଚେଷ୍ଟା କରୁଥାଏ ଏମାନେ ଯିମିତି ବିଲାତ ଯାତ୍ରା ଆନନ୍ଦରେ ନିଜକୁ ଭସେଇ ଦେଇଚନ୍ତି ମୁଁ ବି ସେମିତି ମାତି ଉଠିବି । ହେଲେ ପାରୁ ନ ଥାଏ । କେତେଜଣ ବନ୍ଧୁ ଖେଳିବାକୁ, ନାଚିବାକୁ ଆମନ୍ତ୍ରଣ କରିବା ସାଙ୍ଗେ ସାଙ୍ଗେ ସାମାନ୍ୟ ମଦିରା ଯାଚିଲେ । ମନା କରିପାରିଲି ନି । ଯା'ମ ଏତେ ଚିନ୍ତା କାଳିକି ? ଏତେ ଲୋକ ଯାକୁ ପିଇ କଣ ଆନନ୍ଦରେ ଭରପୁର ହୋଇଯାଇଚନ୍ତି । ଯଦି ଏ ଅମୃତଚକ୍ର କାଣିଚୁଏ ସେବା କରି ଟିକିଏ ମାନସିକ ଝଡ଼ ଝଞ୍ଜାରୁ ରକ୍ଷା ମିଳିପାରେ ତେବେ ମନ୍ଦ କଣ ! ହେଲେ ଗୋଟିଏ ଅସୁବିଧା, ମାଦକଦ୍ରବ୍ୟର ମୋ ଦେହ ସହିତ ଯେମିତି ଅନନୁକୂଳ ସମ୍ବନ୍ଧ । ପିଲାଦିନେ ଟିକେ ସଉକରେ ଭାଙ୍ଗ ଖାଇ ଦେଇଥିଲି, ସେକାଳର ଅଧଲିଏ ଓଜନର ଗଞ୍ଜେଇ ହେବ ମାତ୍ର । ହେଲେ ସାଙ୍ଗେ ସାଙ୍ଗେ ଘୋର ନିଶା ଝାଙ୍କି ଦେଲା । କେତେ ସମୟ ପରେ ବାନ୍ତି ଆରମ୍ଭ ହୋଇଗଲା । ବିଦାନ

ଠିକ୍ କରି ଔଷଧ ବିବାଦ କଲେ ଗ୍ରାମର ଭେଷକରତ୍ନମାନେ । ତେନ୍ତୁଳି ରସ, ଲବଙ୍ଗ ପାଣି, କେହି କେହି ବିଗାଡ଼ି ବିଷ୍ଟା ସେବନର ସୁବିଧି ଦେଲେ । ଇଃ ! ସେଇ ଦିନଠୁଁ ପ୍ରଲୋଭନ ଯେତେ ଥିଲେ ବି ନିଶା ଦ୍ରବ୍ୟ ଆଡ଼କୁ ମନ ଦିଏନି । ମଦ କଥା ଗୁଡ଼, ସେଠା ତ ମୋ ଦେହରେ ଆଦୌ ଯିବନି । ଏମିତି କଣ ବୁଝେଇ ସୁଝେଇ ବନ୍ଧୁମାନଙ୍କୁ ମନା କରିଦେଲି । ଜଣେ କିଏ ବାହାପିଆ ବନ୍ଧୁ ଥିଲେ କହିଲେ "ଗ୍ରାଙ୍ଗ ଅଫିମ କଥା କଣ କହୁଚ ! ପିଲାଦିନେ ଥରେ ମୁଁ ଗ୍ଡ଼' ଖାଇ ଦେଇଥିଲି ଯେ ସେ ନିଶା ତ ମତେ ଦି ଦିନ ଯେ ନ ଗୁଡ଼େ । ହେଲେ ଆଜକାଲି ସବୁ ନିଶା ଦେହସୁହା ହୋଇଗଲାଣି । ଚଳେଇଲେ ସବୁ ଚଳିବ । ତା ପରେ ତ ଏ ଖାଣ୍ଟି ବିଲାତି ମାଲ । ଏଥିରେ ଡର ଭୟ ଆଦୌ ନାହିଁ । ବେଶ୍ ମଜା ଲାଗିବ । ଭଲ ଭୋକ, ଭଲ ନିଦ ହେବ ।" ଶେଷରେ ମୁଁ ଲୋଭ ସମ୍ବରଣ କରିପାରିଲିନି । ଉତ୍ସାହରେ ଟିକିଏ ମାତ୍ର ପିଇଦେଲି । ହେଲେ ମଜାଟା କିଛି ବୁଝିପାରିଲିନି । ପାଟିକୁ ଆଦୌ ସୁଆଦ ଲାଗୁନ-ଥାଏ । ଦେହ ବା କି ଫଳ ପାଇଲା କେଜାଣି । ହେଲେ ମୁଣ୍ଡ ଯେଉଁ ଘରକୁ ସେଇ ଘର ।

ପରଦିନ ସକାଳେ ଜାହାଜ ଚାଲିଲା ସୁଏଜ ନାଳ ଦେଇ । ହଁ ଠିକ୍ ଗୋଟିଏ ନାଳ ତ ! ଅବଶ୍ୟ ଟିକିଏ ଚଉଡ଼ା । ଗ୍ଟେଟ ନଈଟିଏ ପରି ଦେଖାଯାଉଥାଏ । ତା'ରି ଭିତରେ ଧାଡ଼ି ଧରି ଚାଲିଥାନ୍ତି ଜାହାଜ ସବୁ । ବେଶ୍ ସୁନ୍ଦର ଦେଖାଯାଉଥାଏ ।

୧୭୯୮ ଖ୍ରୀ: ଅ:ରେ ନେପୋଲିୟନ ପୁଣି ଥରେ ଏହି ନାଳକୁ ଖୋଳାଇବାକୁ ଇଚ୍ଛା କରିଥିଲେ । କିନ୍ତୁ ତାଙ୍କ ଇଞ୍ଜିନିୟରମାନେ ଏହା ଅସମ୍ଭବ ବୋଲି କହିବାରୁ ତାହା କାର୍ଯ୍ୟରେ ପରିଣତ ହୋଇପାରିନଥିଲା । ଫ୍ରାନସର ବିଖ୍ୟାତ ଇଞ୍ଜିନିୟର ଫର୍ଡିନାଣ୍ଡ ଲେସେପସ୍ ୧୮୩୯ ମସିହା ବେଳକୁ ଏହି ନାଳର ପୁନଃ ପରିକଳ୍ପନା କରନ୍ତି ଏବଂ ୧୮୫୪ ଖ୍ରୀ: ଅ:ରେ ସୁଏଜ କେନାଲ କମ୍ପାନୀ ଗଢ଼ାଯାଏ । ୧୦ ବର୍ଷର ଅକ୍ଲାନ୍ତ ପରିଶ୍ରମ ଓ ବହୁ ବ୍ୟୟ ଫଳରେ ୧୮-୧୧-୧୮୬୯ରେ ଫ୍ରାନସର ସାମ୍ରାଜ୍ଞୀ ଇଉଜେନିଙ୍କ ଦ୍ୱାରା ଏହି ନାଳ ଉଦ୍‌ଘାଟିତ ହେଲା । ଏହାର

ଲମ୍ବ ପ୍ରାୟ ୧୦୦ ମାଇଲ, ଚଉଡ଼ା ୨୦୦ ଫୁଟ । ଏଥିରେ ୪୬,୦୦୦ ଟନ୍ ପର୍ଯ୍ୟନ୍ତ ଓଜନର ଜାହାଜ ଯିବାଆସିବା କରିପାରେ ।

ସୁଏଜ ନାଳରେ ଗଲାବେଳେ ଦୁଇ କଡ଼ର ଦୃଶ୍ୟ ବେଶ୍ ସୁନ୍ଦର ଦେଖାଯାଏ । ଅବଶ୍ୟ ଅନେକ ଯାଗାରେ ଖାଲି ନୀରସ ମରୁପ୍ରାନ୍ତର । ମଝିରେ ମଝିରେ ଖଜୁରୀ ଗଛ । ସେଥିରେ କାନ୍ଧ କାନ୍ଧ ନାଲି ପାଚିଲା ଫଳ ଝୁଲୁଥାଏ । ସ୍ଥାନେ ସ୍ଥାନେ ଶସ୍ୟକ୍ଷେତ୍ରର ଶ୍ୟାମଳିମା କାଗଜରେ ଚିତ୍ର ହେଲାପରି ଦେଖାଯାଉଥାଏ । କେଉଁଠି କେଉଁଠି ଲୋହିତ ବର୍ଣ୍ଣର ବୁର୍ଖାଧାରିଣୀ ଆରବ ରମଣୀମାନେ ଦେଖାଯାଉଥାନ୍ତି । ଜାହାଜ ଧୀର ମନ୍ଥର ଗତିରେ ଚାଲିଛି । ସଞ୍ଜବେଳକୁ ଜାହଜ ପହଞ୍ଚିଲା ପୋର୍ଟ ସୟୁଦରେ । ସୁଏଜରେ ଯେ ବିପଣୀ, ଯେ ବେପାରୀମାନଙ୍କୁ ଦେଖିବାକୁ ମିଳିଥିଲା । ସେଇମାନଙ୍କପରି ପୁଣି କେତେ ଦଳ ଜୁଟିଗଲେ ଏଠି ।

ଜାହାଜ ବନ୍ଦ ହେବା ସଙ୍ଗେ ସଙ୍ଗେ ରସିକ ବନ୍ଧୁମାନେ ବାହାରି ପଡ଼ିଲେ ସହରକୁ ନୃତ୍ୟଗୀତ ଉପଭୋଗ କରିବାକୁ । ଆଶ୍ଚର୍ଯ୍ୟ କଥା ! ଏତେ ଆଦରରେ ଯେଉଁ ମହିଳାମାନଙ୍କ ସହିତ ମମତା ପାତିଥିଲେ ଏ ଅଭିଯାନରେ ସେମାନଙ୍କୁ ସାଙ୍ଗରେ ନେଲେନି । ନିଜ ରୁଚି ଅନୁସାରେ କେତେଜଣ ବନ୍ଧୁଙ୍କୁ ଧରି ସାନ୍ଧ୍ୟ ବିହାରରେ ବାହାରିପଡ଼ିଲେ । ଆରବ ଦେଶର ନୃତ୍ୟଗୀତ ଉପଭୋଗ କରିବାର ଇଚ୍ଛା ମୋର ଅନେକ ଦିନରୁ ଥିଲା । ତେଣୁ ମୁଁ ବି ବାହାରିପଡ଼ିଲି ମନ ଅରମାନ ମେଣ୍ଟାଇବାକୁ, ଚିତ୍ତବିନୋଦନ କରିବାକୁ । କମିତି ଏ ଆରବ ଦେଶ, କ'ଣ ଏଥିର ବୈଚିତ୍ର୍ୟ !

# ରଙ୍ଗୀନ୍ ଅଧର ରଙ୍ଗୀନ୍ ସୁରା

ପୁରାତନ ଇତିହାସର ପୀଠସ୍ଥଳୀ ରହସ୍ୟମୟ ଆରବ ଭୂମିର ଶୀର୍ଷ ସ୍ଥଳରେ ଅବସ୍ଥିତ ପୋର୍ଟ ସଇଦ ସହର ! ମିଶର ସଭ୍ୟତାର ପ୍ରତୀକ ନୀଳ ନଦୀ ଅଳ୍ପ ଦୂରରେ ପ୍ରବାହିତ । ସେହି ଡେଉଡ଼ିନ୍, ବୁଢ଼ୀ ପିରାମିଡ୍ ଓ ଖଜୁରୀ ବିଖ୍ୟାତ ଏ ଦେଶରେ ପାଦ ଦେଲାକ୍ଷଣି ଦେହଟା ମୋର ଶିର୍ ଶିର୍ କରିଉଠିଲା । ବଡ଼ ବିଚିତ୍ର ବଡ଼ ମହାନ୍ ଏ ରାଜ୍ୟ ! କେତେ ଯୁଗ ତଳର କଥା । ପ୍ରାୟ ଖ୍ରୀ: ପୂ: ୧୦,୦୦୦ ବର୍ଷ ହେବ । ପୃଥିବୀର ଅଧିକାଂଶ ଦେଶ ଯେତେବେଳେ ଅଜ୍ଞାନ ଅନ୍ଧକାରରେ ବୁଡ଼ି ରହିଥାନ୍ତି, ସେତେବେଳେ ବି ଏଦେଶ ବହୁ ଦିଗରୁ ସଭ୍ୟ ଓ ଉନ୍ନତ ଥିଲା । ଚିତ୍ରଲିପି (Pictograph) କାଗଜର ପୂର୍ବ ପୁରୁଷ ପାପିରସ ନାଡ଼ (Papyrus reeds), କାଠି କଲମ (Reed pen) ଆଦି ଏହିଠାରୁ ସୃଷ୍ଟି । ଏହିଠାରେ ମିଶରୀୟମାନେ ବିରାଟ ପିରାମିଡ୍ ମାନ ତୋଳି ତାହାର ତଳେ ସଯତ୍ନେ ପୋତି ରଖିଚନ୍ତି ତାଙ୍କର ବିଖ୍ୟାତ ପୂର୍ବ ପୁରୁଷଙ୍କୁ । ତେବେ କେମିତି ଏ ଦେଶ ! କପରି ଏହାର ବର୍ତ୍ତମାନର ଅବସ୍ଥା । ଦୋକାନ ବଜାରର ସାଜସଜ୍ଜା ଅନେକଟା ଭାରତପରି । ରାସ୍ତା ଗଳି ମଧ୍ୟ ସେମିତି ମଇଳା । ସ୍ଥାନେ ସ୍ଥାନେ ଅଳିଆ ଗଦା ଜମା ହୋଇଚି । ଲୋକଗୁଡ଼ାକଙ୍କ ଚେହେରା ବେଶଭୂଷା ଟିକେ ଫରକ୍ । ରୂପ ନାଲି ନାଲି, ଗେରୁଆ ଗେରୁଆ । କିନ୍ତୁ ରାସ୍ତାଘାଟଗୁଡ଼ିକ କଟକ କଲିକତାର କେତେକ ଅଂଶ ପରି ମନେ ହେଲା । ଯାହା ଟିକେ ପାର୍ଥକ୍ୟ ଜଣାପଡ଼ୁଥିଲା ଭଜା ଚିନାବାଦାମର ଦୋକାନଗୁଡ଼ିକ ଦେଖି ସେ ଦେଶଟା ଭାରତପରି ଲାଗିଲା । ହେଲେ ବନ୍ଧୁମାନେ ସହସ୍ର ସରସ ବିବରଣୀ ଦେଇଥାନ୍ତି ପୋର୍ଟସଇଦର । ଏଠି ଖାଲି ରଙ୍ଗୀନ୍ ଅଧର ରଙ୍ଗୀନ୍ ସୁରା ! ସତେ !

ଖୋଜି ଖୋଜି ପହଞ୍ଚିଲୁ ଏକ ନୃତ୍ୟ ମନ୍ଦିରରେ । ମନରେ ଅପୂର୍ବ ଉତ୍କଣ୍ଠା କେମିତି ହୋଇଥିବ ସେମାନଙ୍କର ନୃତ୍ୟଠାଣୀ, କେମିତି ହୋଇଥିବ ତାଙ୍କର ମନୋରଞ୍ଜନର ପରିବେଶ । ସେସବୁ ଦେଖିବା

ଆଗରୁ ମନରେ ଭାସିଉଠିଲା ନୀଳ ନଦୀ କୂଳର ରମଣୀୟ ଦୃଶ୍ୟ, ଅଦେଖା ଛବିର ମନଗଢ଼ା ପରିକଳ୍ପନା । ମୋର କଳ୍ପନାକୁ ରୂପାୟିତ କରିଦେଉଥାନ୍ତି ସାଙ୍ଗରେ ଥିବା ରସିକ ବନ୍ଧୁଦଳ କେତେ ରଙ୍ଗରସ-ଭରା ଗେମାଞ୍ଚକର କାହାଣୀର ଅବତାରଣା କରି । ଦୂରରୁ ବାଦ୍ୟଗୀତର ଲହରୀ ଭାସି ଆସୁଥାଏ । ହେଲେ ତାଳ ଓ ଛନ୍ଦରୁ ମନେ ହେଲା ସବୁଟା ଯେମିତି ପାଶ୍ଚାତ୍ୟ ଢାଞ୍ଚାରେ ଗଢ଼ା । କିନ୍ତୁ ପରେ ପରେ ମନକୁ ବୋଧ ଦେଇ ଭାବିଲି ପାଶ୍ଚାତ୍ୟ ସଭ୍ୟତାର ତ ଉତ୍ପତ୍ତି ଅନେକଟା ଏଇ ଦେଶରୁ ! ତେଣୁ ଏମାନଙ୍କର ନୃତ୍ୟବାଦ୍ୟ ଅଲଗା ଢଙ୍ଗର ହେବ କାହିଁକି ?

ଭିତରେ ପଶି ଦେଖି ତ ଅଦ୍ଭୁତ ଦୃଶ୍ୟ ! ଦଳେ ମିଶରୀୟ ରୂପସୀ ରସିକ ଆଗନ୍ତୁକମାନଙ୍କ ସହିତ ମିଶି ନାନା କେଳି କଉତୁକରେ ମାତି ଉଠିଛନ୍ତି । ରଙ୍ଗୀନ୍ ସୁରାର ଚାଲିଛି ଅସ୍ତୁଉଡ଼ ସୁଅ । ତା ସାଙ୍ଗେ ଚାଲିଛି ବଲ୍ ଡାନ୍ସ ବା ଅନ୍ୟ ସିମିତି କିଛି ଉଦ୍ଭଟ ନୃତ୍ୟ । ଚାରିଆଡ଼େ ଖୁବ୍ ହସଖେଳ କୌତୁକ-କୋଳାହଳ ଜମିଉଠିଛି । ଜଣେ ତରୁଣୀ ମିଶରୀୟ ମହିଳାଙ୍କୁ ଧରି ନୃତ୍ୟ ରଙ୍ଗରେ ମାତି ଉଠିଛନ୍ତି ଜଣେ ବୁଢ଼ା ସାହେବ । କେହିଆମି କଣ ଏତେ ଦୂର ଯାଇପାରେ ! ବିଚରା ଭଦ୍ରଲୋକ ମଦ ନିଶାରେ ବୋଧହୁଏ ସେ କଣ କରୁଛନ୍ତି ସେ କଥା ବୁଝିପାରୁ ନଥାନ୍ତି । ନୋହିଲେ ଏତେ ଲୋକଙ୍କ ଆଗରେ ଏଡ଼େ ନିର୍ଲଜ ଭାବରେ ଅଙ୍ଗଭଙ୍ଗୀ କରି ଜଣେ ରମଣୀଙ୍କ ସହିତ ଉଦ୍ଭଟ ନାଚ ତାମସାରେ ମାତି ଉଠିଥାନ୍ତେ କିମିତି !

ମାତି ଉଠୁଥାନ୍ତି ବି ମୋର ବନ୍ଧୁମାନେ ଏଇ ରଙ୍ଗରସରେ । କ୍ଷଣକ ଭିତରେ କ୍ଷୀରନୀର ପରି ମିଶିଗଲେ ଏଇ ଆନନ୍ଦ ଉତ୍ସବରେ । ଥରକୁଥର ବରାଦକରି ଦେଇଥାନ୍ତି ସୁରା ଗିଲାସକୁ ଗିଲାସ । ପାଖରେ ବସିଥିବା ସାକୀଙ୍କ କୋଳକୁ ଢଳି ପଡ଼ୁଥାନ୍ତି ନିହାତି ପ୍ରେମିକ ଠାଣିରେ । ନିହାତି ପ୍ରେମିକା, ପ୍ରେୟସୀଙ୍କ ପରି ବ୍ୟବହାର କରୁଥାନ୍ତି ଏହି ମହିଳାଦଳ । ବଡ଼ ବିଚିତ୍ର ଏହି ମହିଳାମାନଙ୍କର କ୍ଷମତା ଓ ଅଭ୍ୟାସ । ସବୁ ଆଗନ୍ତୁକମାନଙ୍କ ସହ ଖୁବ୍ ଆତ୍ମୀୟତା ଓ ଉନ୍ମାଦନା ସହ ମାତିଉଠୁଥାନ୍ତି କେଳି କଉତୁକରେ । ଚାଲିଥାଏ ପାଉଣ୍ଡର କାରବାର

ଖୁବ୍ ଜୋର୍‌ସୋର୍‌ରେ । ଖଣ୍ଡକୁ ଖଣ୍ଡ ନୋଟ୍ ଖସି ପଡ଼ୁଥାଏ ନାଗରମାନଙ୍କ ହାତରୁ, ମଦ୍ୟଘର ଦାମ୍ ବାବତକୁ ବା ରୂପସୀମାନଙ୍କ ମନ ତୋଷିବାକୁ । ତାପରେ ଚାଲେ ନାଚ । ଧେତ୍ତ କ ଢ଼ଆଁ ! ଘାଲୁ ବାଡ଼ ଧରି ନାଚିଲାପରି ଗୋଟାକୁ ଗୋଟା ମହିଳାଙ୍କୁ କୋଳାଗ୍ରତ କରି ଚାଲିଲାଥାନ୍ତି ନାଚ ଧଇଁସଇଁ ହବା ଯାଏ । ତା'ପରେ ଏ କ ଭୟାନକ ମଉଜ ! ଏ କ ମହାତୃଷ୍ଣା ! ମୁଁ ପଡ଼ିଥାଏ ମହା ଅଡୁଆରେ, ବଲ୍ ନାଚ ତ ମୋ ଚଉଦ ପୁରୁଷରେ କେହି ନାଚିନ । ବନ୍ଧୁମାନଙ୍କ ଅନୁରୋଧରେ ଅବଶ୍ୟ ଟିକେ ଲାଲ ପାଣି ତୁଣ୍ଡରେ ଦେଲି ସତ କିନ୍ତୁ ସାଙ୍ଗେ ସାଙ୍ଗେ ଧରି ନେଲା ନିଶା । ବଡ଼ ଅଡୁଆରେ ପଡ଼ିଗଲି । ପୁରୀରେ ଆମର ଆଜ ଯାହା ଥାଉକ ନଥାଉ ଅଛନ୍ତି ବଳୀୟାର ଭୁଜ ଶ୍ରୀ ଜଗନ୍ନାଥ ଏବଂ ତାଙ୍କର ଅସଂଖ୍ୟ ଯାନଯାତ୍ରା ସହିତ ଲାଗି ରହିଥାଏ ଅସଂଖ୍ୟ ମେଳା, ମଉଚ୍ଛବ । ତା ସାଙ୍ଗରେ ବେଶ୍ ଚାଲେ ପିଆପିଇ ଭାଙ୍ଗର । ଯାହାର ପୁରୀ ଧାମରେ ନାମ ପାଚକପାଣି । ପୁରୀରେ ଏଇ ପାଚକ ପାଣି ଯେମିତି ତିଆରି କରନ୍ତି ତାର ମୋହ ଛାଡ଼ିବା କଷ୍ଟ । ସେଥିରେ ଜାଇଫଳ ନାଗେଶ୍ୱର ଫୁଲ ଆଦି ବିଭିନ୍ନ ସୁବାସିତ ଫଳଫୁଲ ସାଙ୍ଗରେ ବାଦାମ୍ ପେସ୍ତା ବଟାଯାଏ ଏବଂ ତା ସାଙ୍ଗରେ ଶର୍କରାର ଶୀତଳ ଅବତାର ନବାତ ବା କନ୍ଦ ଦିଆଯାଇ ସୁମଧୁର କରାଯାଏ । ଚିନ ନୁହେଁ, ସେଗୁଡ଼ାକ କେଉଁଠି ଗରମ । ପିଇବାକୁ ଭାଙ୍ଗଟା ବିଶେଷରେ ଖରାଦିନେ ବେଶ୍ ଆରାମ ଲାଗେ । କିନ୍ତୁ ଏ ବିଲାତି ମଦ ତଣ୍ଟିକୁ ପୋଡ଼ି ଦେଲାପରି ଜଣାଯାଉଛି । ସ୍ୱାଦ କ ବାଜେ । କିନ୍ତୁ ନିଶାଟା ଭାରି କଡ଼ା । ସେ ନିଶାରେ ଧାରିହୋଇ ହୋଇ ମତେ ଚାରିଆଡ଼ ଅନ୍ଧାର ଦେଖାଯାଉଥାଏ । କିନ୍ତୁ ମୁହଁରେ ଦମ୍ଭ ଦେଖାଇ ବନ୍ଧୁମାନଙ୍କୁ କହିଲି ବେଶ୍ ଭଲ ଲାଗୁଚି ତ ! ବନ୍ଧୁମାନଙ୍କର କିନ୍ତୁ ମତେ କଣ ଭଲ ଲାଗିଲା ନ ଲାଗିଲା ସେ କଥା ଶୁଣିବାକୁ ବେଳ ନ ଥାଏ । ସେମାନେ ମାତି ଉଠିଥାନ୍ତି ଏ ମିଶ୍ରବିଦ୍ୟ ଯୁବତୀମାନଙ୍କ ସହିତ ପ୍ରେମ କାରବାରରେ । କୁଣ୍ଢାକୁଣ୍ଢି, ଜାକାଜକି, ଚେଲି ଠାପରା ଖୁବ୍ ଜୋରରେ ଚାଲିଥାଏ । ପ୍ରେମିକାମାନଙ୍କର ମନ ନେବାକୁ କିଛି ଅର୍ଥ ତାଙ୍କ ହାତକୁ ଗୁଞ୍ଜି ଦେଉଥାନ୍ତି । ଏଥିରେ କୃତ୍ୟକୃତ୍ୟ ହୋଇ ଯୁବତୀମାନେ ଖିଲ୍‌ଖିଲ୍ ହସି ତାଙ୍କ ଆଡ଼କୁ ଢଳିପଡ଼ିଥାନ୍ତି । ମଦ ନିଶାରେ ମସଗୁଲ ହୋଇ ବନ୍ଧୁମାନେ ଟାଣି ଆଣୁଥାନ୍ତି ଏହି ପ୍ରେମିକାମାନଙ୍କୁ କୋଳକୁ ।

କରନ୍ତି କେତେ ଗେଲ, ଦିଅନ୍ତି କେତେ ଅଭଦ୍ର ଇଙ୍ଗିତ, ଯୁବତୀମାନେ ଖେଁ ଖେଁ ହସି ଉଠନ୍ତି । କିନ୍ତୁ କନ୍ୟାତି ବେହୁମିସ୍ତାର ହୋଇ ନିଜକୁ ସମର୍ପି ଦେଉନଥାନ୍ତି ଏଇ ଆଗନ୍ତୁକ ନାଗରିକମାନଙ୍କ ପାଖରେ । ସବୁଷ୍ଟା କରୁଥାନ୍ତି କିନ୍ତୁ ସବୁଷ୍ଟାରେ ଯେପରି ପୁରା ସାବଧାନ । ଏଇ କେଳି କଉତୁକ ଯେମିତି ଉଗ୍ର ପ୍ରୀତି ବା ବସା ପ୍ରୀତିରେ ପରିଣତ ନ ହୁଏ । ସେମାନଙ୍କର ଅସଲ ଉଦ୍ଦେଶ୍ୟ ହେଲା ସାମାନ୍ୟ ଅଙ୍ଗଦାନ କରି, ଅସାମାନ୍ୟ ବେଢ୍ୱଆମିର ଆଶ୍ରୟ ନେଇ କିଛି ପାଉଣ୍ଡ ହାସଲ କରିନବା ।

ଦୁଇଜଣ ସୁନ୍ଦରୀ ଯୁବତୀ ମୋ ଦୁଇ କଡ଼ରେ ବସିଯାଇ ମୋ କୋଡ଼କୁ ଢଳି ପଡ଼ିଲେ ଅପୂର୍ବ ଠାଣିରେ । କିଛି ଦିଅ, କିଛି ମଉଜ କର, ମତେ ଯେମିତି ସେମାନେ ଇଙ୍ଗିତ ଦେଲେ । ପୁଣି ଚନ୍ଦନ ଯାତ୍ରାରେ ବିଭିନ୍ନ ମଠରେ ଯେଗା ଘରମାନଙ୍କରେ ଗୋଟିପୁଅ ନାଚ ହୁଏ । ଶ୍ରେଷ୍ଠ ଶ୍ରେଷ୍ଠ ସୁନ୍ଦର ପୁଅମାନେ ଝିଅମାନଙ୍କ ପରି ବେଶ ହୋଇ ଆଖିରେ କଳା, ନାକ, କାନରେ ଗହଣା, ମୁଣ୍ଡରେ ସିନ୍ଥି ସିନ୍ଦୁର ଦେଇ ଗୀତ ବୋଲି ନାଚନ୍ତି, କେମିତ ଠାଣିରେ ଆଖି ମାରନ୍ତି, କେତେ ପ୍ରକାର ଅଙ୍ଗଭଙ୍ଗୀ କରନ୍ତି । ଏମାନଙ୍କୁ ଦେଖିବା ପାଇଁ ଲୋକେ ପାଗଳ । କେତେ ରସିକ ଭାଙ୍ଗ ପିଇ ମଲ୍ଲୀମାଳ ପକେଇ ଆଗରେ ବସନ୍ତି । ଗୋଟି ପୁଅମାନେ ତାଙ୍କ ପାଖକୁ ଲାଗିଯାଇ କିଛି ମାଗୁଣି କରନ୍ତି । ଇମିତି ଦେଖିଛି ଦିଲ୍ଲୀ ପ୍ରଭୃତି ସହରରେ ସଙ୍ଗୀତ ଆସରମାନଙ୍କରେ ଯୁବତୀମାନେ ଗୀତ ବୋଲି ପଇସା ମାଗନ୍ତି । ଏଥିରେ ନାଗରଦଳ ଆତ୍ମହରା ହୋଇ ଉଠନ୍ତି । ସାଙ୍ଗେ ସାଙ୍ଗେ ବାହାର କରନ୍ତି, ନୋଟ୍, ଟଙ୍କା, ଅଧଲି, ସୁଉକି । କୌତୁକ କରିବା ଆଶାରେ ସେସବୁ ରଖନ୍ତି ଦେହର ବିଭିନ୍ନ ଅଙ୍ଗରେ । ତାକୁ ବିଭିନ୍ନ ଠାଣିରେ ଟାଣି ନଅନ୍ତି ଏହି ନାଟ ପିଲାମାନେ ବା ଗାୟିକା ଯୁବତୀମାନେ । ମୋତେ ସେ ପରିସ୍ଥିତିଟା ସେମିତି ଲାଗିଲା । ହେଲେ ଏତେ ରଙ୍ଗରସ କରିବାକୁ ଏ ପାଖରେ ପାଉଣ୍ଡ କାହିଁ ? ଯୁବତୀମାନଙ୍କର ମୋ ପ୍ରତି ବେଶୀ ନଜର ଦେବାକୁ ବେଳ ନଥିଲା । ମୋର ବିତୃଷ୍ଣା, ଥତମତ ଭାବ ଦେଖି ସେମାନେ ଅନ୍ୟ ଆଡ଼େ ଦୃଷ୍ଟି ପକାଇଲେ । ସାଙ୍ଗେ ସାଙ୍ଗେ ଅନ୍ୟ ରସିକମାନେ ତାଙ୍କୁ ଟାଣିନେଲେ । ପୁଣି ଗ୍ଲାଲା ପିଆପିଇ, ପାଉଣ୍ଡ ଦେଣ ନେଣର କାରବାର ।

ଆମେ ଜାହାଜକୁ ଫେରିଲାକ୍ଷଣି ବନ୍ଧୁମାନେ ହିସାବପତ୍ର ଆରମ୍ଭ କରିଦେଲେ । ଏ ଏତେ ଦେବ, ସେ ସେତେ ଦେବ । ଅବଶ୍ୟ ପ୍ରତ୍ୟେକେ କିଛି କିଛି ସ୍ୱତନ୍ତ୍ର ଖର୍ଚ୍ଚ କରିଥିଲେ । ବାକୀ କେତେ ସାଧାରଣ ଖର୍ଚ୍ଚ ହୋଇଥିଲା । ମୋଠାରୁ ଆଗରୁ ଦୁଇ ପାଉଣ୍ଡ ଖଣ୍ଡେ ନେଇଥିଲେ । ତା ବାଦ୍ ଆଉ କିଛି ଦେବାକୁ ପଡ଼ିଲା । ଭାବିଲି, ବାଃ ! ଏମାନେ ପିଇଲେ ଏମାନେ ନାଚିଲେ, କେତେ ରଙ୍ଗରସ କଲେ କିନ୍ତୁ ମୋତେ ଦେବାକୁ ପଡ଼ିଲା ଟିକସ୍ । ଏମିତି କେତେ ଟିକସ୍ ଦବାକୁ ପଡ଼େ । ଗୃହର ଜୀବନରେ ପିଅନମାନଙ୍କୁ କିଛି ବଜାର ସଉଦା କରିବାକୁ ଦେଲେ ସେମାନେ ସୁବିଧା ଦେଖି କିଛି ମାରିନିଅନ୍ତି । ସେ ହେଲା ପିଅନ ଟିକସ । ଘର ଗୃହିଣୀ ବଜାରହାଟ କରିବାରେ କିଛି ମାରେ । ଏ ହେଲା ଗୃହିଣୀ ଟିକସ । ଆରବଦେଶର ନାଚ ଦେଖିବାରେ ଯେତିକି ଅଯଥା ଖର୍ଚ୍ଚହେଲା ତାକୁ ନାଚ ଟିକସ ବା ଆମୋଦକର କହିବା !

ଏଇ ତେବେ ପୋର୍ଟସୟଦ, ମିଶର ସଭ୍ୟତାର ପୀଠସ୍ଥଳୀ ନୀଳନଦୀର ପଲ୍ଲୀପ୍ରାନ୍ତିସମୃଦ୍ଧ ଭୂମିଖଣ୍ଡର ଶୀର୍ଷ ସହର । କଣ ଯୁରୋପ'ର ଅଭିନବତ୍ୱ । କଣ ମିଶର ସଭ୍ୟତାର ପରିଚୟ ! ନା ସବୁଟା ଯେମିତି ପାଶ୍ଚାତ୍ୟ ପ୍ରାଦୁର୍ଭାବରେ କଳୁଷିତ ସଂକ୍ରମିତ ହୋଇଉଠିଛି । ମନଟା ବଡ଼ ଖରାପ ହୋଇଗଲା । କେତେ କଣ ଦେଖିବାର ଆଶା କେତେ କଣ ଶିଖିବାର ଆଗ୍ରହ ସବୁ ଫସର ଫାଟିଗଲା । ତଥାପି ମନ ମାନୁନଥାଏ, ପୁଣି ବିକଳ ହୋଇ ଖୋଜୁଥାଏ ସେ ମିଶର ଭୂମିକୁ । କେତେ କଣ ମନେ ମନେ କଳ୍ପନା କରୁଥାଏ । କିମିତି ସବୁ ସେ ପିରାମିଡ୍ କେମିତି ସେ ନୀଳନଦୀ ! କଣ ବିଶେଷତ୍ୱ ଅଛି ଏ ରାଜ୍ୟରେ ଯାହାବଳରେ ଦିନେ ଏହା ଆଦିମ ସଭ୍ୟତାର ପୀଠ ହୋଇଥିଲା । ଏ ଦେଶରେ ବୁଲି ଏହାର ବିଭିନ୍ନ ବିଖ୍ୟାତ ସ୍ଥାନ, ଲୋକମାନଙ୍କର ଚାଲିଚଳନ, ରୀତିନୀତି ସବୁଟା ତନ୍ନତନ୍ନ କରି ଦେଖିବାକୁ ମନ ଯେପରି ବିକଳ ।

ଜାହାଜ ଚାଲିଥାଏ ଭୂମଧ୍ୟସାଗର ଦେଇ । ପାଣିର ରଙ୍ଗ ଯିମିତି ବଦଳିଯାଇଛି । ଲୋହିତ ସାଗରର ଜଳ ଈଷତ୍ ଧୂସର ପରି ମନେହୁଏ । ସ୍ଥାନେ ସ୍ଥାନେ ରକ୍ତାଭ ଶୈବାଳ ଭାସୁଥିବାରୁ ଏ ଯେପରି ସାମାନ୍ୟ

ଲୋହିତତରଙ୍ଗ ଧରିଛି । ତେଣୁ ବୋଧହୁଏ ଏହାର ନାମ Red Sea ଲୋହିତସାଗର । କିନ୍ତୁ ଭୂମଧ୍ୟସାଗର ଜଳ ଗାଢ଼ନୀଳ ।

କୌଣସି ଭୂମିଖଣ୍ଡର ଦେଖାନାହିଁ । ନିରେଖି ଚାହେଁ ମୁଁ ଚାରିପଟର ଦିଗ୍‌ବଳୟକୁ ଆଡ଼କୁ । ଇଉରୋପର କେଉଁ ଭୂମି ବା ଆଫ୍ରିକାର ସ୍ଥଳଭାଗ ଦେଖାଯାଉଥିବ । ନା, କିଛି ନାହିଁ, ଖାଲି ଜଳ ଜଳ ଚାରିଆଡ଼େ ଜଳ ।

ଆଖି ଆଗରେ ଭାସିଉଠିଲା କେତେ ଅଜ୍ଞାତ ଇତିହାସର ଚିତ୍ର । ଏହି ଭୂମଧ୍ୟସାଗରର ଉପକୂଳ ଅଞ୍ଚଳ ଦିନେଥିଲା ମହା ସଭ୍ୟତାର ମୂଳପୀଠ । ଏହାର କୂଳରେ ଅବସ୍ଥିତ ଗ୍ରୀସ୍, ଯହିଁରେ କି ବହୁକାଳ ପୂର୍ବେ ଏକ ଅପୂର୍ବ ସଭ୍ୟତା ଗଢ଼ିଉଠିଥିଲା । ଏଠି ଦିନେ ଅନ୍ଧକବି ହୋମରଙ୍କର କବିତାବଳୀ ଚାରିଆଡ଼େ ଖେଳାଇଦେଇଥିଲା ଆନନ୍ଦର ହିଲ୍ଲୋଳ; ଖେଳାଇଦେଇଥିଲା ଇଲିଅଡ଼୍‌ର ସେ ଅପୂର୍ବ କାହାଣୀ ।

ଗ୍ରୀସ୍‌ସ୍ଥ ଟ୍ରୟ ରାଜ୍ୟର ରାଜକୁମାର ପାରିସ୍ ସ୍ପାର୍ଟାର ରାଜପରିବାରରେ ଅତିଥି ହୁଅନ୍ତି । ସ୍ପାର୍ଟାର ରାଜା ଏହି ମହାମାନ୍ୟ ଅତିଥିଙ୍କର ଯଥୋଚିତ ଆଦର ଅଭ୍ୟର୍ଥନା କଲେ । କିନ୍ତୁ ଏହି କୃତଘ୍ନ ଅତିଥି ମହିମାପୂତାର ପ୍ରତିଦାନରେ ଶତ୍ରୁତା କରି ସ୍ପାର୍ଟାର ପରମାସୁନ୍ଦରୀ ରାଜରାଣୀ ହେଲେନ୍‌ଙ୍କୁ ଅପହରଣ କରିନେଇ ଟ୍ରୟ ପଳାଇଗଲେ । ଫଳରେ ଟ୍ରୟ ଓ ସ୍ପାର୍ଟା ରାଜବଂଶ ମଧ୍ୟରେ ଲାଗେ ତୁମୁଳ ଯୁଦ୍ଧ । ସ୍ପାର୍ଟାର ପ୍ରବଳ ଆକ୍ରମଣକୁ ଟ୍ରୟ ୧୦ ବର୍ଷଯାଏ ସମ୍ଭାଳି ନିଏ । ଶେଷରେ ସ୍ପାର୍ଟାର ସୈନ୍ୟସାମନ୍ତ ପଳାଇ ଯିବାର ଛଳନାକରି ଜାହାଜରେ ବସନ୍ତି । କିନ୍ତୁ ସେମାନେ ପ୍ରାଚୀର ବେଷ୍ଟିତ ଟ୍ରୟ ରାଜ୍ୟ ପାଖରେ ଗୋଟିଏ ବିରାଟ କାଠଘୋଡ଼ା ଛାଡ଼ିଦେଇ ଯାଇଥାନ୍ତି । ଟ୍ରୋଜାନ୍‌ମାନେ ସାରଦର୍ପରେ ଏହି ଘୋଡ଼ାକୁ ଟାଣି ଟ୍ରୟ ଭିତରକୁ ନିଅନ୍ତେ ସେଥିରୁ ବାହାରନ୍ତି ଲୁଚି ରହିଥିବା ସ୍ପାର୍ଟାର ସୈନ୍ୟଦଳ । ସେମାନେ ଟ୍ରୟ ଉପରେ ନିର୍ମମ ଆକ୍ରମଣ ଚଳାନ୍ତି । ଅନ୍ୟ ସୈନ୍ୟମାନେ ଏଥିରେ ଯୋଗଦିଅନ୍ତି । ଶେଷରେ ଟ୍ରୟକୁ ଧ୍ୱଂସକରି ଉଦ୍ଧାର କରନ୍ତି ହେଲେନ୍‌ଙ୍କୁ ।

କଥାଟା ଠିକ୍ ଆମ ରାମାୟଣର କାହାଣୀ ପରି । କିନ୍ତୁ କାହିଁ ସେ ଗ୍ରୀସ୍‌ଦେଶ ? କାହିଁ ଦେଖାଯାଉନି ତ ! ଲକ୍ଷ୍ୟ କରୁଥାଏ କେଉଁଠି କେଉଁ ଦେଶ ପଡ଼ିବ । କିନ୍ତୁ କାହିଁ କୌଣସି ଦେଶତ ଆଖି ସାମନାରେ ଆସୁନି । ବେଳେ ବେଳେ ଯେ ଭୂମିଖଣ୍ଡ ଦେଖାଯାଉଥାଏ ସେ କେଉଁ ଦେଶ ବୋଲି କିମିତି ଜାଣିବି ! ସବୁତ ସମାନ । ପୁଣି ଯେ ଭୂମିଖଣ୍ଡ ଦେଖାଯାଉଛି ସେ କୌଣସି ସମୁଦ୍ରଟାପୁ ହୋଇଥିବ । ହେଲେ ମାନଚିତ୍ର ଦେଖି ଏହି ସାଗରର ଉପକୂଳରେ ଥିବା ଦେଶର ଅବସ୍ଥିତି ମନେ ମନେ କଳ୍ପନା କରି ନଏ ଓ ସେ ଦିଗକୁ ନିରେଖି ଚାହେଁ । ଯଦି ସେ ଦେଶମାନଙ୍କ ସମ୍ବନ୍ଧରେ କିଛି ସୁରାକ୍ ମିଳିବ । ବେଳେ ବେଳେ ଘୋଟି ଆସେ ବିରାଟ ମେଘଖଣ୍ଡ । ଚାରିଆଡ଼ ଅନ୍ଧାର ଧୂସର ହୋଇଉଠେ । ଋତୁର ଯେପରି ପରିବର୍ତ୍ତନ ଘଟୁଛି । ପାଗ ଯିମିତି ବଦଳି ଯାଇଛି । ହଠାତ୍ ଆକାଶ ମଣ୍ଡଳରେ ଦେଖାଦିଏ ବିରାଟ ଇନ୍ଦ୍ରଧନୁ ନିର୍ମଳ ଜଳରାଶିକୁ ଚୁମ୍ବି । କି ସୁନ୍ଦର ଏ ପରିବେଶ, କି ମନମୁଗ୍ଧକର ଏ ବାତାବରଣ !

ଦିନଯାକ କଟିଗଲା ଚାରିଆଡ଼କୁ ଚାହିଁ ଚାହିଁ । ଭୂମଧ୍ୟସାଗର ମଧ୍ୟରେ ଓ ଉପକୂଳରେ ଥିବା ଦେଶଗୁଡ଼ିକୁ ଚାହିଁବାରେ ଇମିତି ବ୍ୟାକୁଳତା ଯେ ଖାଇବା ପିଇବାରେ ମନ ନଥାଏ । କେବଳ ଡେକ୍‌ର ଏପଟେ ସେପଟେ ବସି ଏଣେ ତେଣେ ଚାହୁଁଥାଏ । ସଞ୍ଜ ନଇଁ ଆସିବାରୁ ଦେହ ଟିକେ ଶୀତେଇ ଉଠିଲା । ଡେକ୍ ଉପରେ ଖଣ୍ଡେ ଚଉକିରେ ବସିପଡ଼ି କଣ ଭାବୁଥାଏ । ଆଖି ପଡ଼ୁଥାଏ ସୁବିସ୍ତୃତ ଜଳରାଶି ଉପରେ । ଚାଲିଥାନ୍ତି ଅଗଣିତ ଜାହାଜ ବିଭିନ୍ନ ଦିଗରେ ଉଦ୍‌ବେଳିତ ଜଳମାଳାକୁ ବେଗଶୀଳ ଓ ରଙ୍ଗମୟ କରି ।

ମେଘୁଆ ଆକାଶରେ ଝାପ୍‌ସା ଜହ୍ନ ଚାରିଆଡ଼େ ଖେଳେଇ ଦେଇଥାଏ ଝିଲିମିଲି ଧୂସର ଆଲୁଅ । ରସମୟ ହସ ଗପରେ ବ୍ୟସ୍ତଥାନ୍ତି ଶ୍ରୀମତୀ ଦେଶାଇ ଓ ଶ୍ରୀମାନ ଭୁଟ୍ଟା ବନ୍ଧୁମାନଙ୍କ ଗହଣରେ । ରଙ୍ଗୀନ୍ ସୁରାର ବାରମ୍ବାର ଆସ୍ୱାଦ ବେଳେ ବେଳେ ଶ୍ରୀମାନ୍ ଭୁଟ୍ଟାଙ୍କୁ ବେସୁରା କରୁଥାଏ । ଏଥି ଭିତରେ ଜାହାଜରେ ଗୋଟେ ଗୁଜବ ଖେଳି ଯାଇଥାଏ ।

ଏ ଗୁଜରାଟୀ ନନ୍ଦନ ଭୁଇଁଆ ଓ ଜର୍ମାନ୍ ମହିଳା ଶ୍ରୀମତୀ ଦେଶାଇଙ୍କୁ ନେଇ । ବିଦେଶୀ ପତ୍ନୀଙ୍କର ଏଇ ପ୍ରେମ କାରବାରରେ ବିବ୍ରତ ହୋଇଉଠିଥାନ୍ତି ଶ୍ରୀଯୁକ୍ତ ଦେଶାଇ । ଥରେ ଅଧେ ବି କଳିଗୋଳ ହେଲାଣି । ସେମାନେ ଦୁହେଁ ଆଉ ଏକ ସଙ୍ଗରେ ଖିଆପିଆ କରୁ ନାହାଁନ୍ତି । ଶ୍ରୀମତୀ ଦେଶାଇଙ୍କର ଯାବତୀୟ ଭଲ ମନ୍ଦ ବୁଝୁଥାନ୍ତି ଶ୍ରୀମାନ୍ ଭୁଇଁଆ । ଏଥି ଭିତରେ ଜାହାଜସ୍ଥ ଦୋକାନରୁ ବହୁବିଧ ମନୋହର ଜିନିଷ କିଣି ଏଇ ଅକସ୍ମାତ୍ ବାନ୍ଧବୀଙ୍କୁ ଭେଟି ଦେଇଥାନ୍ତି । ଜଣେ ଅଧେ ସ୍ପଷ୍ଟ କହି ଦେଇସାରିଲେଣି ଯେ ଗୁଡ଼ପଣ ସୁନିଶ୍ଚିତ । କଥାଟା ବଡ଼ ବେଆଡ଼ା ଲାଗିଲା । ଏଇଥିପାଇଁ କଣ ଗୁଜରାଟୀ ନନ୍ଦନଙ୍କ ବାପମା ବନ୍ଧୁବାନ୍ଧବ ବମ୍ବେ ବନ୍ଦରରେ ଏତେ ଗୁଡ଼ାଏ ନଡ଼ିଆ ବାଳ ଦେଇଥିଲେ ।

ଥଣ୍ଡା ପବନରେ ନିଦ ଲାଗି ଆସୁଥାଏ । ମୁଣ୍ଡରେ ଆସିଯାଉଥାଏ କେତେ ଘରବାହାରର କଥା । ଇତିହାସ ଭୂଗୋଳର କେତେକ ଅଧ୍ୟାୟ । ହଠାତ୍ ମନେହେଲା ଜାହାଜଟା ଯେମିତି କାନ୍ଦୁଛି । କିନ୍ତୁ କାହିଁକି ? ଦୁର୍ବାର ଲୁହଧାର ଏକ ବିରାଟ ଝରଣାପରି ସେ ଭାସମାନ ଯନ୍ତ୍ରର ବୁକୁ ବିଦାରି ଝରି ପଡ଼ୁଥାଏ ପାରାବାର ବକ୍ଷରେ । ଦୁଃଖରେ ଥରି ଉଠୁଥାଏ ତାର ମନପ୍ରାଣ ! ବିକଳ ଆର୍ତ୍ତନାଦରେ କମ୍ପି ଉଠୁଥାଏ ଚତୁର୍ଦ୍ଦିଗ । ସାଇଁ ସାଇଁ ଶବ୍ଦ ବ୍ୟାପି ଯାଉଥାଏ ଜଳପବନରେ । ଦୂର ଦିଗନ୍ତର ମରୁପାହାଡ଼ ଯିମିତି ଆର୍ତ୍ତନାଦ କରି ଉଠୁଥାନ୍ତି ଜାହାଜର ଏ ବୁକୁଫଟା କାନ୍ଦ ସାଙ୍ଗରେ ତାଳ ମିଶାଇ । ହେଲେ କାହିଁକି ?

ଓ, ଭୂମଧ୍ୟସାଗର ! ଯୁଗ ଯୁଗ ଧରି ଚେଷ୍ଟା କରିଆସିଛି ପ୍ରବଳ ପ୍ରତାପୀ ବ୍ରିଟାନିଆ ଏହାକୁ ଦଖଲ କରିବାକୁ । କେତେ ଯୁଦ୍ଧ କେତେ ଚକ୍ରାନ୍ତ, ଏହି ସାଗରକୁ ଅକ୍ତିଆରିକରିବାକୁ ବେପାର-ବାଣିଜ୍ୟର ପ୍ରସାର ଓ ବିଶାଳ ସାମ୍ରାଜ୍ୟର ସୁରକ୍ଷା ପାଇଁ କେତେ ଚେଷ୍ଟା । ହେଲେ କିଛି ଫଳ ହୋଇନି । ପୃଥିବୀ କ୍ଷମତା ଗନ୍ଧାଘରର ତୋରଣ ଏ ଭୂମଧ୍ୟସାଗର ଚିରଦିନ ପାଇଁ ପରସ୍ୱ ହୋଇରହିଲା । ଏଥିରେ କି ଧୈର୍ଯ୍ୟ ରହିପାରେ କୌଣସି ଇଂରେଜର ! ତେଣୁ ତାଙ୍କ ଜାହାଜ ଯେତେବେଳେ ଏହି ସାଗର ଉପରଦେଇ ଯାଉଥାଏ ତାର ବା ମନ ସମ୍ଭାଳି ହେବ କିମିତି । ସେଥିପାଇଁ ସେ କାନ୍ଦ କୁହେଇ ଅସମ୍ଭାଳ ।

ମୋଟ କଥା, ଜାହାଜର ବେଗ ବଢ଼ିଯାଇଥାଏ ଅତ୍ୟଧିକ ଭାବରେ । ଥରକୁ ଥର ସତର୍କ ଶବ୍ଦକରି ସେ ଆଗେଇ ଚାଲିଥାଏ । ଅଗଷ୍ଟ ୨୬ ତାରିଖ ସୁଦ୍ଧା ଆମେ ଆସି ମାଲ୍‌ଟା ଦ୍ୱୀପ ପାଖରେ ପହଞ୍ଚିଯାଇଥାଉ । ସମୁଦ୍ର ଯେପରି ଶାନ୍ତ । ବହୁପକ୍ଷୀ ଆକାଶ ମାର୍ଗରେ ଯା'ଆସ କରୁଥାନ୍ତି । ମନେହେଲା ଆମ ଉଭୟ ପାର୍ଶ୍ୱରେ ସ୍ଥଳଭାଗ ପାଖେଇ ଆସୁଛି । ହଁ, ଡାହାଣ ପଟେ ଇଟାଲି ଓ ସିସିଲି, ବାମପଟେ ଲିବିଆ, ଟ୍ୟୁନିସିଆ ଆଦି ଦେଶ । ସବୁଟା କମିତି ଅଲଗା ଅଲଗା ଲାଗୁଥାଏ । ବେଶ୍ ଥଣ୍ଡା ପକାଇଲାଣି ତ ! ସେ ଲୋହିତସାଗରର ଗରମ କୁଆଡ଼େ ଗଲା !

ମାଲ୍‌ଟା ଦ୍ୱୀପ ଟପି ଜାହାଜ ଚାଲିଥାଏ ଜିବ୍ରାଲଟର ଅଭିମୁଖରେ । ଉଭୟପଟର ଭୂମିଖଣ୍ଡମାନ କ୍ରମେ କରିଆଣୁଥାନ୍ତି ଏହି ବିସ୍ତୃତ ସାଗରକୁ ଅଣଓସାରିଆ । ମନେ ହେଉଥାଏ ଆମେ ଯିମିତି ଏକ ସୁସଜ୍ଜିତ ରଙ୍ଗ ଅଙ୍ଗନର ତୋରଣ ଆଡ଼କୁ ମାଡିଚାଲିଚୁ । ବେଶ୍ ଖୁସି ଲାଗୁଥାଏ । ଖାଲି ବେଳେ ବେଳେ ଘର ଓ ପିଲାଙ୍କ କଥା ମନେ ପଡ଼ି ଟିକିଏ ଅସ୍ୱସ୍ତିକର ମନେହେଉଥାଏ । ନୋହିଲେ ଭାରି ମଜ୍ଜା ଲାଗୁଥାଏ । ବିଲାତ ପାଖେଇ ଆସୁଛି । ସେହି ଚିର ଆକାଂକ୍ଷିତ ଦେଶକୁ ଦେଖିବାକୁ ମନ ଯିମିତି ବିକଳ ହୋଇଉଠିଲାଣି । ମାନସପଟରେ ଝାପସା ହୋଇଯାଉଥାଏ ଆତ୍ମୀୟ-ସ୍ୱଜନ, ଦେଶ-ରାଜ୍ୟର ଚିନ୍ତା ।

ଆଗରେ ସାର୍ଡ଼ିନିଆ ଓ କର୍ସିକା ଦ୍ୱୀପ । ଏହି ଛୋଟ କର୍ସିକା ଦ୍ୱୀପରେ ଜନ୍ମ ଗ୍ରହଣ କରିଥିଲେ ପ୍ରବଳ ପ୍ରତାପୀ ନେପୋଲିୟନ । ନିହାତି ଛୋଟ ଅବସ୍ଥାରୁ ଉଠି କେତେ ଉପରକୁ ଯାଇନଥିଲେ ସେ ନିଜ ଶକ୍ତି ଓ ପ୍ରତିଭା ବଳରେ । କିନ୍ତୁ ଶେଷରେ ପରାଜିତହୋଇ ଆଟଲାଣ୍ଟିକ ସାଗରସ୍ଥ ସେଣ୍ଟହେଲେନା ଦ୍ୱୀପକୁ ନିର୍ବାସିତ ହେଲେ । ତାଙ୍କ ଶେଷ ଜୀବନ ସାଙ୍ଗକଲେ ମହା ଦୁଃଖ ଓ ନିର୍ଯାତନା ମଧ୍ୟରେ । ଯାହା ଆଦେଶରେ ସାରା ଇଉରୋପ ଏପରି କି ସାରା ପୃଥିବୀ କମ୍ପି ଉଠୁଥିଲା ସେ ଜୀବନରେ ଉତ୍ତର କାଳରେ ତାଙ୍କ ସ୍ତ୍ରୀ ଓ ପିଲାଙ୍କୁ ଦେଖିବା ସୁବିଧା ପାଇଲେନି । ଓଃ ! କି ଅଧଃପତନ, କି ଦୁଃଖ ! ଆଜି,ହୁଏତ ତାଙ୍କ ଦୁଃଖ-ନିଶ୍ୱାସ ସାରା ଆଟାଲାଣ୍ଟିକ ଓ ଭୂମଧ୍ୟସାଗର ଜଳପବନକୁ ଆଲୋଡ଼ିତ କରୁଚି । ତୁମେ ଭୁଲକଲ ନେପୋଲିୟନ ତୁମେ ଭୁଲକଲ ! ମହାଶକ୍ତିଶାଳୀ

ଓ ପ୍ରତିଭାବାନ୍ ହେଲେ ବି ତୁମେ ଜଣେ ମଣିଷ । ଏତେଟା ଉଚ୍ଚାଶା କରିବା, ଏତେଟା ନିଜ ଶକ୍ତି ଉପରେ ନିର୍ଭର କରିବା ଠିକ୍ ହେଲାନି ।

ଜିବ୍ରାଲଟରର ପାଖେଇ ଆସିଲାରୁ ଥଣ୍ଡା ମାତ୍ରା ବଢ଼ିଗଲାପରି ଜଣାଗଲା । ତେଣୁ ଯାତ୍ରୀମାନେ କାଢ଼ିଲେ ତାଙ୍କର ଗରମ ପୋଷାକ । ହଁ, ଏବେ ବସନ୍ତ ଯାତ୍ରୀପରି ଜଣାଗଲେ । ଗରମ ପ୍ୟାଣ୍ଟ୍ କୋର୍ଟ ଟାଇ ପିନ୍ଧି ପୂରା ସାହେବ ପାଲଟି ଗଲେ । ଆଗରୁ ଗରମ ହେଉଥିବାରୁ ଏ ଶୀତ ପୋଷାକ ଗୁଡ଼ାକର ସଦ୍‌ବ୍ୟବହାର କରିହେଉନଥିଲା । ମଧ୍ୟାହ୍ନ ଓ ରାତ୍ରି ଭୋଜନ-ଗୃହ, ଜଳପାନ ଆସର, ନାଚ-ଖେଳ ଆଖେଡ଼ାଗୁଡ଼ିକ ଆହୁରି ଜୋରରେ ଜମି ଉଠିଲା । ସୂର୍ଯ୍ୟ ରତରତ ହେଲାବେଳକୁ ଜାହାଜ ପହଞ୍ଚିଲା ଜିବ୍ରାଲଟରରେ । ପାହାଡ଼ ଉପର କୋଠାଗୁଡ଼ାକ ଅସ୍ତରାଗରେ ଝଲସି ଉଠୁଥାନ୍ତି । ପାଣିରେ ସାର୍କଗୁଡ଼ାକ ଏହି ରକ୍ତିମ ସୂର୍ଯ୍ୟାଲୋକରେ ଧାଇଁ ବୁଲୁଥାନ୍ତି ଏପଟ ସେପଟ । ପଶ୍ଚିମ ଦିଗରେ ଫୁଟି ଉଠୁଥାଏ କି ଅପୂର୍ବ ଶୋଭା । ନାଲି, ହଳଦୀ, ସବୁଜ, ବାଇଗଣି ଇମିତି କେତେ ରଙ୍ଗର ସମାବେଶ । ସତେ ଯେପରି କିଏ ଚିତ୍ର ଆଙ୍କିଦେଇଛି ଆକାଶ ମଣ୍ଡଳରେ । ଜିବ୍ରାଲଟର ମଧ୍ୟଦେଇ ଜାହାଜ ଗଲାବେଳେ ଗୋଟେ ଚିମିତି ଅଜ୍ଞାନିକ କୌତୁହଳ, ଉଚ୍ଛ୍ୱସିତ ଉତ୍କଣ୍ଠା ମନଭିତରେ ଖେଳିଗଲା । ଜିବ୍ରାଲଟର ଭୂମଧ୍ୟସାଗର ଓ ଆଟଲାଣ୍ଟିକ ମହାସାଗର ମଧ୍ୟରେ ଥିବା ଦ୍ୱାରଦେଶ, ଯାହାକୁ ଦଖଲ କରିବାକୁ କେତେ ଯୁଦ୍ଧ, କେତେ ଷଡ଼ଯନ୍ତ୍ର ହୋଇନି । ମହାବୀର ନେପୋଲିୟନ ଏହାର ଦଖଲ ପାଇଁ କରିଥିଲେ କେତେ ଚେଷ୍ଟା ।

ଜିବ୍ରାଲଟରର ପାହାଡ଼ ପୂରାକାଳରୁ ବିଦିତ । ଏହାକୁ ହରକୁଲ-ଅସ୍‌ର ସ୍ତମ୍ଭବୋଲି କହନ୍ତି । ବହୁପୂର୍ବେ ଏହାକୁ ପୃଥିବୀର ପଶ୍ଚିମ ଉପାନ୍ତ ବୋଲି ଲୋକେ ମନେକରୁଥିଲେ । ୭୧୧ ଖ୍ରୀ: ଅ:ରେ ମୁରବର ଟାରିକ୍ ଏହାକୁ ଦଖଲ କରନ୍ତି । ତେଣୁ ଏହାକୁ ଟାରିକ୍ ପାହାଡ ବୋଲି କୁହାଯାଏ । ଏଥିପାଇଁ ମୁର୍ ଓ ସ୍ପେନୀୟ ଲୋକଙ୍କ ଭିତରେ ବହୁ କଳହ ଜାତ ହୋଇଛି ଏବଂ ବହୁବାର ମଧ୍ୟ ଏହାର ଦଖଲ ହସ୍ତାନ୍ତରିତ ହୋଇଛି । ଏହି ପାହାଡ ପାଖ ବନ୍ଦରରେ ସାଧାରଣତଃ ଯୁଦ୍ଧ ଜାହାଜ

ଗୁଡ଼ିକ ଆଶ୍ରା ନଅନ୍ତି । ଏଥିକୁ କେତୋଟି ଜାହାଜ ଯିବା ଆସିବାର ଜିବ୍ରାଲଟରର ପାରହେବା ପରେ ଦେଖିଲୁ । ପାହାଡ଼ ଶିଖରରୁ ଆଲୋକ ଶିଖାଦ୍ୱାରା ଜାହାଜଗୁଡ଼ିକୁ ସଙ୍କେତ ଦିଆଯାଉଥାଏ । ଦେହ ଭିତରଟା ଯିମିତି ଶୀତେଇ ଆସିଲା । କି ଭୟାନକ ଲାଗୁଛି ଏ ଯାଗା ।

କିନ୍ତୁ ଆଗକୁ ଚାହିଁ ଦେଖିଲି ଜାହାଜ ଯିମିତି ହସୁଚି ଠୋ ଠୋ ହୋଇ । ହେଲେ କାହିଁକି ଏ ହସ ? ହସିବନି ! ଜାହାଜ ଜିବ୍ରାଲଟର ଟପି ଆଟଲାଣ୍ଟିକ୍ ଆଡ଼କୁ ମୁହାଁଇଲାଣି ଯେ ! ଏହି ଆଟଲାଣ୍ଟିକ ମହାସାଗର ଇଂଲଣ୍ଡ ଦେଶର ଚିର ଲୀଳା-ସ୍ଥଳୀ । ଏହାରି ଭିତରେ ତାର ଅବସ୍ଥିତି ଏବଂ ଏହାରି ଭିତର ଦେଇ ତାର ବହୁ ଶ୍ରେଷ୍ଠ ବଡ଼ ଜାହାଜଭେଳା ବେହାର କରୁଛନ୍ତି । ଏହାରି ଭିତର ଦେଇ ଜାହାଜ ଯିବ ତାର ପୀଠସ୍ଥଳୀ ଲଣ୍ଡନକୁ । ତେଣୁ ଏ ଆନନ୍ଦ !

ମହାବୀର ନେପୋଲିୟନ ଏହି ଆଟଲାଣ୍ଟିକ ସାଗରରେ ବ୍ରିଟିଶ ନୌଶକ୍ତିର ପ୍ରାଧାନ୍ୟ ଧ୍ୱଂସ କରିବାକୁ କି ଆପ୍ରାଣ ଚେଷ୍ଟା କରିନଥିଲେ ! ହେଲେ ପାରିଲେନି । ଅଦୂରରେ ରହିଚି ଟ୍ରାଫଲଗାର ଯେଉଁଠି ବ୍ରିଟିଶ ବୀର ନେଲସନ୍ ଫରାସୀ ଓ ସ୍ପେନୀୟ ମିଳିତ ନୌବାହିନୀଙ୍କୁ ପରାସ୍ତକରି ଚିରଦିନ ପର୍ଯ୍ୟନ୍ତ ଆଟଲାଣ୍ଟିକ ସାଗରକୁ ରଖିଗଲେ ଇଂରେଜମାନଙ୍କ କବଳରେ ।

ଦୂରରେ ଦେଖାଯାଉଥାଏ ପର୍ତ୍ତୁଗାଲର ଗୋଟିଏ ସହର କି ଗାଁ । ଆଖ ପାଖର କେତେ ଶ୍ରେଷ୍ଠ ବଡ କୋଠା ପାହାଡ଼ିଆ ଭୂମିର ଗଛପତ୍ର ଭିତରୁ ବେଶ୍ ସୁନ୍ଦର ଦିଶୁଥାଏ । ଛୁଟାଛୁଟି କରୁଥାଆନ୍ତି କେତେ ସାନ ସାନ ଜାହାଜ । ବୋଧହୁଏ ମତ୍ସ୍ୟଜୀବୀମାନେ ତାଙ୍କ ବ୍ୟାପାରରେ ବ୍ୟସ୍ତ । କିମ୍ବା ଉପକୂଳ ରକ୍ଷୀ ପଦ୍ମନ୍ତରୀ ମାରୁଚନ୍ତି ଅବୈଧ ଆମଦାନି ରପ୍ତାନିକୁ ରୋକିବା ପାଇଁ ।

ଜିବ୍ରାଲଟର ପରେ ଯାଗଟା ପୁଣି ଯିମିତି ବଦଳି ଗଲା । ଖୁବ୍ ଥଣ୍ଡା । ଆକାଶ ପୁଣି ମେଘାଚ୍ଛନ୍ନ । ମନରେ ମହା ଆନନ୍ଦ ଯେ ଚିର ଆକାଙ୍କ୍ଷିତ ବିଲାତ ଭୂମି ଆଉ ବେଶି ଦୂରରେ ନାହିଁ । ଯାତ୍ରୀଦଳ ଯିମିତି ଜାଗି ଉଠିଲେ । କିଏ ବେଶଭୂଷା କିଏ ଆସବାବ ସଜାଡ଼ ସୁଜାଡ଼

ନେଉଥାନ୍ତି । କିଏ କରୁଥାନ୍ତି ମସୁଧା ତାଙ୍କ ବାନ୍ଧବୀମାନଙ୍କ ସହିତ ବିଲାତ ଗଲେ କିମିତି ସୁଖ ସୁବିଧାରେ ବିହାର କରିବେ ।

ମୁଁ ଡେକ୍ ଉପରେ ବୁଲୁଥାଏ ଗୁରିଆଡ଼କୁ ଗୁହିଁ । ହଠାତ୍ ଦେଖିଲି ଶ୍ରୀମତୀ ଦେଶାଇ ଓ ଶ୍ରୀମାନ୍ ଭୁଞ୍ଜା ଲଗାଲଗି ହୋଇ ବାଇନାକୁଲାର ସାହାଯ୍ୟରେ ଚତୁର୍ଦ୍ଦିଗର ଦୃଶ୍ୟ ଦେଖିବାରେ ବ୍ୟସ୍ତ । କେତେ ଛବି ଉଠଉଥାନ୍ତି କ୍ୟାମେରାରେ । ମନରେ ଗୋଟେ ସନ୍ଦେହ ଜାଗି ଉଠିଲା । ବିଲାତ ତ ପାଖେଇ ଆସିଲାଣି । ସେଠି ପହଞ୍ଚିଲାକ୍ଷଣି ଯେ ଯାହା କାମରେ ଯିବେ । ଆଉ ପୁଣି କାହା ସାଙ୍ଗେ କେବେ ଦେଖାହେବ ତାର ଠିକଣା ନାହିଁ । ଏପରି ଅବସ୍ଥାରେ ଏମାନଙ୍କର ଘନିଷ୍ଠତା ଯେ ପର୍ଦ୍ଦା ପରେ ପର୍ଦ୍ଦା ବଢି ଗୁଲିଚି ଏହାର ପରିଣତି କଣ ? ଏମାନେ କଣ ଆଉ ଅଲଗା ହେବେନି !

ବମ୍ବେ ଉପସାଗର ବଡ଼ ଚଞ୍ଚଳ, ଉଦ୍‌ବେଳିତ ଏହାର ତରଙ୍ଗ ମାଳା । ସାଗରର ରୂପ ପୁଣି ଯିମିତି ବଦଳି ଯାଉଚି । ଭୂମଧ୍ୟ ବା ଲୋହିତ ସାଗରର ଧୀର ଶାନ୍ତ ଭାବ ଆଉ ନାହିଁ । ପୁଣି ଆସିଚି ଭାରତ ମହା ସାଗରର ଭୀଷଣ ଓ ଦୁର୍ବାର ରୂପ । ଏଇ ସେ ଜଳରାଶି ଯେ ଇଂଲଣ୍ଡ ଉପକୂଳକୁ ବି ସ୍ପର୍ଶ କରୁଚି । ଗୁରିଆଡ଼େ ଘନ କୁହୁଡ଼ି । ସବୁଠା ଯେମିତି ଝାପସା ଝାପସା । ପକ୍ଷୀଦଳ ଗୁରିଆଡ଼େ ପର୍ଯ୍ୟନ୍ତ ମାରୁଥାନ୍ତି ।

ଗୋଟାକୁ ଗୋଟା ଜାହାଜ ଏପଟେ ସେପଟେ ଗୁଲିଥାନ୍ତି । କେତେ ବିପଣୀ କେତେ ଯାତ୍ରୀଦଳ ଧରି ସେମାନଙ୍କର ଗନ୍ତବ୍ୟ ମାର୍ଗରେ । ଇଉରୋପ ଆମେରିକା ମଧ୍ୟରେ ଥିବା ଏହି ସାଗରଟି କେଡ଼େ ମହତ୍ୱସ୍ଥାନ୍ କେଡ଼େ ସୁବିଖ୍ୟାତ । ଗୋଟିଏ ପଟେ ଏକ ମହାନ୍ ସଭ୍ୟତା ଓ ସଂସ୍କୃତିର ପୁଣ୍ୟପୀଠ ଫ୍ରାନ୍‌ସ ଓ ଜର୍ମାନୀ ପ୍ରଭୃତି । ଅନ୍ୟପଟେ ସୁବିସ୍ତୃତ ଆଟଲାଣ୍ଟିକ ସାଗର । ଅନ୍ୟ ପାର୍ଶ୍ୱରେ ସମୃଦ୍ଧ, ବିଖ୍ୟାତ ଆମେରିକା । ସମ୍ମୁଖରେ ଖାଲି ବ୍ରିଟିଶ ଲୋକଙ୍କ ବାସସ୍ଥଳୀ ବିଲାତ । ବିଲାତ ଏହି ବିରାଟ ସମୁଦ୍ର ଭିତରେ ଯେମିତି ଜମେଇ ରହିଚି । ବହୁ ବାଣିଜ୍ୟ ତରୀ ବହୁ ରଣ ତରୀ ଛଆରି କରି ସମୁଦ୍ର ପଥରେ ହୋଇଚି ମହା ଶକ୍ତିଶାଳୀ । ଗୁରିଆଡ଼େ ସ୍ଥାପନ କରିଥିଲା ସାମ୍ରାଜ୍ୟ ଓ ଉପନିବେଶ । ବିଭିନ୍ନ ଦେଶ ସହିତ ବେପାର-

ବାଣିଜ୍ୟ କରି ହୋଇଛି ସମୃଦ୍ଧ । ପ୍ରଥମ ମହାସମରରେ ଯାହା ଦେଖାଗଲା ଜର୍ମାନୀ ଆଦି କେନ୍ଦ୍ର ଶକ୍ତିମାନେ ସବୁ ଦିଗରୁ ଥିଲେ ବଳୟାନ୍ । କିନ୍ତୁ ଯୁଦ୍ଧରେ ଜିତିଲେ ମିତ୍ର ଶକ୍ତିମାନେ ପ୍ରଧାନତଃ ବ୍ରିଟିଶ ନୌବାହିନୀ ବଳରେ । *

ବାଲାଟ ପାଖେଇ ଆସିବାରୁ ମୋର ସହଗାମୀ ଯାତ୍ରୀଦଳ ଯେମିତି ଉଦ୍‌ବେଳିତ ହୋଇ ଉଠିଥାନ୍ତି, ଆଖ ପାଖ ଫେନାୟିତମାନ ତରଙ୍ଗମାଳା ସହିତ ତାଳ ଦେଇ । ସୁଦୂର ପଛର ନୀଳ ଜଳ ସତେ ଅବା କେଉଁ ଛନ୍ଦରେ ହୁଗୁଳି ପଡ଼ିଥାଏ, ଅସମ୍ଭାଳ ଭାବରେ ଉଠୁଥାଏ ପଡ଼ୁଥାଏ । ତାରି ଉପର ଦେଇ ଲୀଳାମୟ ଭଙ୍ଗୀରେ ଜାହାଜ ମାଡ଼ିଚାଲୁଥାଏ ଆନନ୍ଦ ଉଚ୍ଛ୍ୱାସରେ । ଜାହାଜରେ ଥିବା ପୁରୁଷ-ସ୍ତ୍ରୀ ପୁଅ-ଝିଅ ଯେମିତି ମତୁଆଲା ହୋଇ ଉଠିଥାନ୍ତି । କେତେ ହସ-ପରିହାସ କେତେ ମଉଜମଜଲିସ୍ ! ହେଇଟି ଦେଖାଯାଉଛି ବାଲାଟ, ସମସ୍ତେ ଚିତ୍କାର କରି ଉଠିଲେ, ସତେ ଅବା ପଥଶ୍ରାନ୍ତ ଯାତ୍ରୀଦଳ ଶ୍ରୀମନ୍ଦିରର ନୀଳଚକ୍ର ଦେଖିଲାକ୍ଷଣି ଆବେଗଭରା ସଭକ୍ତି ଚିତ୍କାର କରିଉଠିଲେ, ଜୟ ଜଗନ୍ନାଥ ! ଜୟ ଚକାଡ଼ୋଳା ! ମୋର ଚିରସନ୍ତପ୍ତ ମନଟା ଯେମିତି ଗୁମୁରି ଉଠିଲା ସୁଦୂର ଆଉ ଏକ ଆନନ୍ଦମୟ ପରିବେଶର ସଂଘାତକ ସଂସ୍ପର୍ଶରେ । ଆହା-ହା ! ବାଲାଟ ।

ବିଶେଷ ଭାବରେ ମୁଁ ଲକ୍ଷ୍ୟ କରୁଥାଏ ଶ୍ରୀମତୀ ଦେଶାଇ ଓ ଶ୍ରୀମାନ୍ ଭୁଟ୍ଟାଙ୍କ ଗତିବିଧି । କଣ କରିବେ ଏ ବିଚରା, ବିଚାରୀ ଦୁଇଟି ! ଜଳ ଯାତ୍ରାର ଏଇ କେତୋଟା ଦିନ ଭିତରେ ସେମାନେ ତ ପ୍ରେମ ବିପଣୀଟା ଇମିତି ଜୋର୍ ସୋର୍‌ରେ ପାତିଦେଲେ । ଶେଷରେ ତାକୁ ଜଳାଞ୍ଜଳି ଦେବେ କେମିତି ! ନା ଏସବୁ ଛଳନା ! ଏସବୁ ଯଦି ଛଳନା ଜୀବନରେ ବା ପୃଥିବୀରେ ଆଉ ସତ୍ୟ କଣ ! ହେଲେ ସେମାନେ ଯେମିତି କିଛି ବୁଝୁନାହାନ୍ତି । ତାଙ୍କ ବାଟ ଯିମିତି ଅସରନ୍ତି, ତାଙ୍କ ସମ୍ପର୍କ ଯିମିତି ଅତୁଟ୍‌ଣ୍ଡା । ପାନୀୟ ଘରେ ହେଉ ବା ଡେକ୍ ଉପରେ ହେଉ ମହାନନ୍ଦରେ ବିହାର କରୁଥାନ୍ତି । ମହାପ୍ରେମ ସୋତରେ ନିଜ ନିଜକୁ ଭସେଇ ଦେଉଥାନ୍ତି । ମିଷ୍ଟର ଦେଶାଇ ଯିମିତି ଆଜି ତୃତୀୟ ପୁରୁଷ । ତାଙ୍କ ଦେଖା ଦର୍ଶନ ତ ନାହିଁ । କୁଆଡ଼େ ପଳେଇଲେ ନା ସମୁଦ୍ରରେ ଝାସଦେଲେ !

ଆଗେଇ ଆସୁଚି କର୍ଣ୍ଣୱାଲ, ବିଲାତର ଦକ୍ଷିଣ ପଶ୍ଚିମ ଉପକୂଳରେ ଟାଙ୍ଗର ଭୂମି । ଦୂରରୁ ଦିଶେ ତାର ଶ୍ୟାମଳ ଧବଳ ରୂପ ସମୁଦ୍ର ଧାରେ ଧାରେ । ଉଡ଼ି ବୁଲୁଥାନ୍ତି ଦଳ ଦଳ ପକ୍ଷୀ । ସମୁଦ୍ର ଜଳଟା ଯିମିତି ନୀଳବର୍ଣ୍ଣ । ଦୂରରୁ ବିଲାତ ଭୂମିକୁ ଦେଖିଲେ ମନେ ହୁଏ ସତେ ଅବା ବିଳାସିନୀ ବିଲାତବାଳା ଅଳସଭରା ଅଙ୍ଗକୁ ଖଣ୍ଡିଏ ବିରାଟ ଶାଢ଼ୀରେ ଢାଙ୍କି ମନ ଉଲ୍ଲାସରେ ପାଦ ଦୁଇଟିକୁ ଯୋଡ଼ି ସାଗର ଜଳରାଶି ଭିତରକୁ ଠେଲି ଦେଇଚି କେଳି ଠାଣିରେ । ମନେ ପଡ଼ିଗଲା କେଉଁଠୁ ଧାଡ଼ିଏ ଦିର ପାଶୋରା କବିତା, ଧରଣୀ ମଣ୍ଡନା ଶୋଇଛୁ···ଧେତ୍ ବିଲାତ ପେ ! ଏଠି ପୁଣି ବାଳା, ବିଳାସ, ଶାଢ଼ୀ, କେଳି, ଏସବୁ କଣ ! ଏହିପରି କଳ୍ପନାରେ କେଉଁଠି କଣ ଯିମିତି ତ୍ରୁଟି ରହିଯାଉଥାଏ । ସାଙ୍ଗେ ସାଙ୍ଗେ ମନରେ ଆସୁଥାଏ ଗୋଟାଏ କେମିତି ଅଜଣା ଅସନ୍ତୋଷ । ନା, ଏଣିକି ଆସିଲି ସ୍କାର୍ଟ-ବ୍ଲାଉଜ ମିଷ୍ଟର-ମିସେସ୍, ଲର୍ଡ଼-ଲେଡ଼ି, ହାଉ-ଡ଼ୁ-ଇଉ-ଡ଼ୁ······ଙ୍କ ଭିତରେ ! ପୁରା ସହର ଭାଷା ଟିକିଏ ମନେ ପଡ଼ିଗଲା ।

ବିଲାତ ଭୂଇଁ ପାଖରେ ଆସି ପହଞ୍ଚିବାରୁ ମୋ ମନରେ ଯେତିକି ଆନନ୍ଦ, ଘର ଓ ପରିବାରଠାରୁ ଦୂରେଇ ଆସିଥିବାରୁ ସେତିକି ଦୁଃଖ । ତେଣୁ ଯେତିକି ସରସ ଭାବ ମନରେ ଜାଗି ଉଠୁଥାଏ ସାଙ୍ଗେ ସାଙ୍ଗେ ଢ଼ାଙ୍କି ଦେଉଥାଏ ମନ ଆକାଶରେ ଦୁଃଖ ବଉଦ । ଏଇ ଦୁଃଖସୁଖ ଭାବ ନେଇ ତରତରରେ ସ୍ତ୍ରୀ ଓ ପିଲାଙ୍କ ପାଖକୁ ଖଣ୍ଡେ ଚିଠି ଲେଖିଲି । ତାର ଶେଷରେ ଉପସଂହାର କଲି, ଆଉ ଚିନ୍ତା କଣ ! ମୁଁ ଯେ ବିଲାତ ମାଟି ଛୁଇଁବା ଉପରେ ।

ବହୁ ସମୟଧରି ବିଲାତର ଉପକୂଳକୁ ମନ ପୂରେଇ ଦେଖିଲି । ଶୋଭା କି ଅଶୋଭା କିଛି ନାହିଁ । କଣ ଦେଖାଯାଏ ଏହି ଟାଙ୍ଗର ଭୂମି ବିଲାତଟା ଦୂରରୁ ! ସତେ ଯିମିତି ଗୋଟେ ଜନଶୂନ୍ୟ ଟାପୁ, ଗୋଟିଏ ଧୂସର ପାହାଡ଼ିଆ ଯାଗା । ହେଲେ ସମୁଦ୍ର କୂଳର ଘରଗୁଡ଼ିକ ଉପରେ ଆଖି ପଡ଼ିଗଲେ ସାଙ୍ଗେ ସାଙ୍ଗେ ମନରେ ଏହା ସମ୍ବନ୍ଧରେ ଗୋଟେ ବଡ଼ ଧାରଣା ଜାଗି ଉଠେ । ବଡ଼ ବିଭବଶାଳୀ, ଶକ୍ତିମାନ୍ ଲୋକ ଏମାନେ । ଗରିବ ଭାରତ ବା ଓଡ଼ିଶା ଭୂଇଁର ଅଭାବ ଅନାଟନ ଏମାନଙ୍କର ନାହିଁ । ମହା ଆନନ୍ଦ ବିଳାସରେ ଦିନ କାଟୁଛନ୍ତି । ଏମାନଙ୍କୁ ଡାଇଲି କରି ଲଭ କଣ !

ରାତ୍ରରେ ଏ ଉପକୂଳଟା ଦିଶେ ଖୁବ ସୁନ୍ଦର । ନାଳ ନାଳ ବିଜୁଳି ବତି ! ବାଇନାକୁଲାର ଦେଇ ଦେଖିଲେ କେତେ ଯାନବାହାନ କେତେ ଜନ-ସମାଗମ ଉପରେ ଆଖିପଡ଼େ । ଆକାଶରେ ବହୁ ଉଡ଼ାଜାହାଜ ଯିବା ଆସିବା କରୁଥାନ୍ତି । ହେଲେ କେବଳ ନାଲି ନେଳି କେତୋଟି ଆଲୁଅ ଛଡ଼ା ଆଉ କିଛି ଦେଖା ଯାଉନଥାଏ । ସତେ ଯିମିତି କେତୋଟି ଭ୍ରାମ୍ୟମାଣ ତାରକା ।

ଉପକୂଳର ଶ୍ରେଷ୍ଠ ଟାପୁଗୁଡ଼ିକ ବି ରାତ୍ରରେ ଖୁବ୍ ସୁନ୍ଦର ଦିଶେ । ନୀଳ ଜଳର ବେଷ୍ଟନୀ ଭିତରେ ବିଜୁଳି ଆଲୁଅରେ ଝକ୍‌ମକ୍ ଏ ଯାଗାଗୁଡ଼ାକ ବେଶ୍ ଚମତ୍କାର ଦୃଶ୍ୟ ସୃଷ୍ଟି କରୁଥାନ୍ତି ! କିନ୍ତୁ କଣ ଯୁ'ା ଭିତରେ ଅଛି ! ଲୋକେ ଏଠି କିମିତି ଚଳନ୍ତି କିଏ ଜାଣେ ? ଯାହା ହେଉ, ସମୁଦ୍ରର ଜଳ ଗୋଟିଏ ବିରାଟ ପରିଖା ପରି ବନ୍ଦରକୁ ଘେରି ରହିଚି ଏବଂ ଶତ୍ରୁ ଆକ୍ରମଣରୁ ଅନେକଟା ତାକୁ ନିରାପଦ ରଖିଚି । ଏହି ସମୁଦ୍ର ଯୋଗେ ତାର ବିରାଟ ନୌବାହିନୀ ଏବଂ ଏହି ନୌବାହିନୀ କରିଚି ତାକୁ ଏକ ବିରାଟ ଶକ୍ତି । ସମୁଦ୍ର ଧାରର ଜନବସତିମାନଙ୍କରେ ଓ ବେଳା ଭୂଇଁର ସ୍ଥାନେ ସ୍ଥାନେ ବିପୁଳ ବିଜୁଳି ଆଲୁଅ ଦେଖାଯାଉଥାଏ ଗୋଟାଏ ବିରାଟ ରୋଷଣୀ ପରି । ଗଛଲତା ଭିତରେ ଓ ସମୁଦ୍ର ଜଳର ଆଖ ପାଖରେ ଏହା ବେଶ୍ ଏକ ମନୋରମ ପରିସ୍ଥିତି ସୃଷ୍ଟି କରୁଥାଏ । ସୁରିଆଡ଼େ ଖେଳଯାଉଥାଏ ମହାଗୋଳ, ମହା କୋଳାହଳ ଯାନବାହାନର ଚଳାଚଳ ଓ ଲୋକସମାଗମ ହେତୁ ।

ମହା କୋଳାହଳ ବି ଆରମ୍ଭ ହେଇଯାଇଥାଏ ଆମ ଜାହାଜରେ । ସମସ୍ତେ ବି ବ୍ୟଗ୍ର ହୋଇ ଉଠିଥାନ୍ତି ବନ୍ଦର ଭୂମିରେ ପାଦ ଦେବାକୁ । ବ୍ୟଗ୍ର ହୋଇ ଉଠିଥାନ୍ତି ଆମର ଶ୍ରୀମାନ୍ ଭୂଷା ଓ ଶ୍ରୀମତୀ ଦେଶାଇ ଚିର ପ୍ରେମାସକ୍ତ ଦମ୍ପତି ପରି । କେତେ କଣ କଳ୍ପନା ଜଳ୍ପନା କରୁଥାନ୍ତି । କେତେ କଣ ସଜଡ଼ା ସଜଡ଼ି କରୁଥାନ୍ତି । ତେବେ ଯୁ'ଙ୍କ ଉଦ୍ଦେଶ୍ୟ କଣ ? ଅବଶ୍ୟ ମହତ୍ ନୁହେଁ । ଏମାନେ କଣ ପରସ୍ପରକୁ ଛାଡ଼ିବେନି । ବେଳେ ବେଳେ ଦେଖା ଯାଉଥାନ୍ତି ଶ୍ରୀଯୁକ୍ତ ଦେଶାଇ ହେଲେ ସେ ଯିମିତି ଗୋଟେ ବିରାଟ ପ୍ରଶ୍ନବାଚକ ଚିହ୍ନ, ଗୋଟେ ଅନିଶ୍ଚିତ ଆତ୍ମା ପରି ମନେ ହେଉଥାନ୍ତି ।

ବିଲାତର ଗଙ୍ଗା-ଯମୁନା-ସରସ୍ୱତୀ ଥେମସ୍ ନଦୀର ମୁହାଣ ଅଭିମୁଖରେ ଆଗେଇଥାଏ ଆମ ଜାହାଜ । ସକାଳେ ଲାଗିବ ଟିଲବରି ବନ୍ଦରରେ । ସେଠାରୁ ସମସ୍ତେ ନିଜ ନିଜ ଗନ୍ତବ୍ୟ ସ୍ଥାନକୁ ଯିବେ । ରାତିରେ ବିଦାୟ ଆସରଟା ଖୁବ୍ ଜୋରରେ ଜମିଉଠିଲା । ଯେଉଁମାନେ ଏଇ କେତେ ଦିନ ଜାହାଜ ଭିତରେ ଏକାଠି ରହି ବିରାଟ ବନ୍ଧୁତ୍ୱ ପାତିଥିଲେ ତାକୁ ବିସର୍ଜନ ଦେଲେ ମାତ୍ର କେତୋଟି ଗିଲାସ ସୁରା ପାନକରି । ଉଚ୍ଚସ୍ୱରରେ କହି ଉଠୁଥାନ୍ତି To our friendship, to our ଜଳଯାତ୍ରା । କେହି କେହି ପରେ କେମିତି ଦେଖାହେବ, ବିଲାତରେ କିମିତି ଆହାର ବିହାର ଚାଲିବ ତାର ମସୁଧା କଲେ । ଯେଉଁମାନେ ଏକାଠି ରହିବେ ସେମାନେ ତାଙ୍କ ଘରକରଣା ବ୍ୟବସ୍ଥା ଏଇଠୁ ଆରମ୍ଭ କରିଦେଲେ ।

ଜଳଯାତ୍ରା ଏଇଠୁ ଶେଷ ହୋଇଯିବ । ଜାହାଜରୁ ଓହ୍ଲାଇ ପୁଣି ସ୍ଥଳ ଭାଗରେ ଯିବା ଆସିବା କରିବାକୁ ପଡ଼ିବ ! କଣ ଦରକାର ! ଇମିତି ଯଦି ଜାହାଜରେ ବସି ବିଭିନ୍ନ ସାଗର ଦେଇ ବୁଲିବାର ସୁବିଧା ମିଳନ୍ତା କେଡ଼େ ଚମତ୍କାର ନ ହୁଅନ୍ତା ! ପୁଣି ସେଇ ଗାଡ଼ି-ମଟର ଭିଡ଼, ଲୋକ ଚଳାଚଳରେ ଗୋଳମାଳ ......ମନରେ ମୋର ଯିମିତି ସେଥିରେ ଆଗ୍ରହ ନାହିଁ । କେତେ ଦିନ ହେଲା ସୁବିସ୍ତୃତ ସାଗରମାନଙ୍କର ଶ୍ୟାମକାନ୍ତ ଦୃଶ୍ୟ ପ୍ରାଣରେ ଏକ ଶାନ୍ତ ଶୀତଳ ଅଞ୍ଜନ ବୋଳିଦେଇଥାଏ । ଭାଗ୍ୟ ହୋଇଥିଲେ ରୁଚି ଅନୁକୂଳ......ମୁଁ ଜମା ଜାହାଜରୁ ଓହ୍ଲାନ୍ତିନି । ବୁଲି ଆସନ୍ତି, ଆମେରିକା, କାନାଡ଼ା, ଜାପାନ, ଅଷ୍ଟ୍ରେଲିଆ ଆଦି ଦେଶରେ ପ୍ରଶାନ୍ତ ମହାସାଗର, ଆଟଲାଣ୍ଟିକ୍ ମହାସାଗର, ଭାରତ ମହାସାଗର ଦେଇ । ଆଉ ସୁମେରୁ ସାଗର କୁମେରୁ ସାଗରକୁ ଛାଡ଼ିବି କାହିଁକି ! କି ଚମତ୍କାର ! କଲମ୍ବସ୍, କି ଭାସ୍କୋଡ଼ାଗାମା କି ହକିନସ୍ କି ହଡ୍‌ସନ୍ କି ଡ୍ରେକ୍ କେହି ଏତେ ଉଚ୍ଚାଶା ପୋଷିନଥିବେ । ଖାଲି ଭାବ-ପ୍ରବଣତା ! ଟିଲବରି ବନ୍ଦରରେ ତ ଓହ୍ଲାଇବାକୁ ପଡ଼ିବ । ଉପରୁ ଦେଖିଲି ବନ୍ଦରକୁ ଲାଗି ରେଲଷ୍ଟେସନ । ଟ୍ରେନ୍ ଲାଗିଯାଇଥାଏ । ଯାତ୍ରୀମାନେ ଯିବେ ଲଣ୍ଡନକୁ । ତେଣୁ ଅଧିକାଂଶ ଟିକେଟ୍ କରି ଦେଇଥାନ୍ତି । ଜାହାଜରେ କେତେକେ ଅବଶ୍ୟ କହିବୁଲିଥାନ୍ତି ଯେ ତାଙ୍କ ପାଇଁ ସ୍ୱତନ୍ତ୍ର ଗାଡ଼ି ଧରି ଆସିବେ ତାଙ୍କ ବନ୍ଧୁବାନ୍ଧବ କି ଆତ୍ମୀୟଜନ ମହାସମାରୋହରେ ତାଙ୍କୁ ପାଛୋଟି ନେବାକୁ । ଧନିକମାନଙ୍କର ତ ଚମତ୍କାର

ନାସ୍ତି । ସେମାନେ ଟାକ୍‌ସି କରି ସିଧାସଳଖ ଚାଲିବେ ଲଣ୍ଡନ ସହରର କୌଣସି ପ୍ରସିଦ୍ଧ ହୋଟେଲକୁ । ମୋର ଯେଉଁ ବନ୍ଧୁ ଓ ସହକର୍ମୀମାନେ ବିଲାତରେ ଥିଲେ ସେମାନେ ମତେ ଆସି ଟିଲବରିରେ ଭେଟିବେ ବୋଲି ଆଗରୁ ଲେଖିଥିଲେ । ତେବେ କେତେବେଳେ କେଉଁ କଥା ! କିଏ ଆସିବେ କି ନାହିଁ ମନରେ ମହା ସନ୍ଦେହ । ତେଣୁ ମୁଁ ବି ସେ ଅମୂଲ୍ୟ ଦ୍ରବ୍ୟ ଟ୍ରେନ୍ ଟିକେଟରୁ ଖଣ୍ଡେ କିଣି ପକେଟରେ ସଯତ୍ନେ ସାଇତି ରଖିଥାଏ । ଯଦି କାହା ସାଙ୍ଗରେ ଦେଖା ନ ହୁଏ ତେବେ ସେ ଟିକେଟ୍ ମହାପ୍ରଭୁଙ୍କୁ ଆଶ୍ରା କରି କୌଣସି ମତେ ଲଣ୍ଡନ ସହରରେ ପହଞ୍ଚିହେବ ।

ଦେଖିଲି ଜାହାଜରୁ ଆମ ଜିନିଷପତ୍ର ଗୁଡ଼ାକ କପିକଳ (crane) ସାହାଯ୍ୟରେ ଓହ୍ଲା ଚାଲିଛି । ତାକୁ ସ୍ୱୟଂ ଚାଳିତ (Automatic) ଗ୍ରେଟ ମାଲବୁହା ଗାଡ଼ି (Trolley) ରେ ଧରି ଧାଁଧପଡ଼ି କରୁଚନ୍ତି ପୋର୍ଟର ବା ସାହେବ କୁଲିମାନେ । ଆମ ଦେଶପରି ମୁଣ୍ଡରେ ଧରି ପିଠିରେ ପକେଇ ବୋହି ନନେଲେ ବି ଶ୍ୱେତକାୟଙ୍କ ଏ କୁଲିକାମ ଦୃଶ୍ୟଟା ବେଶ୍ ଉପଭୋଗ୍ୟ ହେଲା ।

ତା' ପରେ କଷ୍ଟମସ୍ ଅର୍ଗଳୀ ପାର ହେବା କଥା । ମୁଁ ଏ ଯେଉଁ ଅପୂର୍ବ ଦ୍ରବ୍ୟ ଗୁଣ୍ଡି ଗୁଡ଼ିକୁ ଆଦି ଧରିଆସିଚି, ତାକୁ ଯେତେ ସାବଧାନତା ସହ ବହୁ କନା କାଗଜରେ ମୋଡ଼ିମାଡ଼ି ଗୁଡ଼େଇ ଟ୍ରଙ୍କ ଭିତରେ ରଖିଲେ ବି ତାର ତୀବ୍ର ସୁବାସ, ମହକ ଉଚ୍ଛୁଳିପଡୁଚି । ସେଥିରେ ଧରା ପଡ଼ିଯିବା ସୁନିଶ୍ଚିତ । ଏଇ ଡରରେ ବାଟରେ ମନେ ମନେ ଭାବୁଥିଲି ଏ ସବୁ ଦରିଆକୁ ଫିଙ୍ଗିଦେଇ ଶାନ୍ତିରେ ନିଶ୍ୱାସ ମାରିବି । କିନ୍ତୁ ଯେଉଁ ବନ୍ଧୁମାନଙ୍କ ପାଇଁ ସେ ଅପୂର୍ବ ପଦାର୍ଥ ଆଣିଚି ସେମାନେ କେତେ ଆଶା ଆନନ୍ଦ ନେଇ ଅପେକ୍ଷା କରିନଥିବେ । ତାଙ୍କୁ କଣ କହି ଆଶ୍ୱାସନା ଦେବି ! ଇମିତି କେତେ କଣ ଭାବି ଡେକ୍‌ରେ ଯେଉଁଠି ମୋ ଟ୍ରଙ୍କ୍‌ଟା ଥୁଆ ହେଇଥିଲା ସେଠିକି ଦୌଡ଼ିଗଲି ଦେଖିବାକୁ ଘଟଣା କଣ । ସ୍ୱା' ଭିତରେ ତାକୁ କେହି ଖୋଲିଖୋଲି କରି ନହାନ୍ତି ତ !

କିନ୍ତୁ ବୁଝିଲି ସେ ସବୁ କଷ୍ଟମସ୍ ଅଫିସ ଅଭିମୁଖରେ ଯାତ୍ରା କରି ସାରିଲେଣି । ଓଃ ! ଏତେ ଶୀଘ୍ର ! ଏବେ ପୁଣି କଣ କରାଯିବ ?

ବେଳ ହେଲାରୁ ଜାହାଜର କର୍ମକର୍ତ୍ତାମାନେ ଓହ୍ଲାଇବାକୁ ଯାତ୍ରୀମାନଙ୍କୁ ନିର୍ଦ୍ଦେଶ ଦେଲେ । ଜାହାଜରୁ ବାହାରି ଆମ୍ଭେମାନେ କଷ୍ଟମସ୍ ଅଫିସ୍ ଆଡ଼କୁ ଆଗେଇଗଲୁ । ହେଲେ ସେଠାରେ କି ଭିଡ଼ ! ଲୋକବାକରେ ଘରିଆଡ଼ ଭରିଯାଇଥାଏ । ଅନେକ ଟ୍ରଙ୍କ ସୁଟକେଶ୍ ଆସି ଥୁଆ ହୋଇ ଗଲାଣି । ସଁ ସଁ ହୋଇ ମାଡ଼ି ଆସୁଥାନ୍ତି ବିଲାତର କୁଲିଦଳ । ସ୍ୱୟଂକ୍ରିୟ ଲିଫ୍ଟ ଯାନଗୁଡ଼ିକରେ ଲୋଡ୍ ହୋଇ ଯାଉଥିବା ଜିନିଷପତ୍ର ଧରି ପୁଣି ସଁ ସଁ ହୋଇ ରେଲଷ୍ଟେସନ ଆଡ଼କୁ ଚାଲିଯାଉଥାନ୍ତି । ଯେଉଁମାନେ ଏ ଯମାଳୟରୁ ଉଦ୍ଧାର ପାଉଥାନ୍ତି ସେମାନେ ସଗର୍ବରେ ବାହାରି ଯାଉଥାନ୍ତି । ସହଯାତ୍ରୀମାନେ କହୁଥାନ୍ତି ଏ ସାହେବ କୁଲିମାନେ ବେଶ୍ ଶୃଙ୍ଖଳା ସହିତ କାମ କରନ୍ତି । କେହି ସଙ୍ଗରେ ନ ଥିଲେ ବି ଯେଝା ଜିନିଷ ଖୁବ୍ ସାବଧାନତାସହ ଏମାନେ ନେଇଯାନ୍ତି ଲକ୍ଷ୍ୟ ସ୍ଥଳକୁ । ଭୁଲ ଭଟକା କିଛି ନାହିଁ, ଚୋରି ଠକାମି ନାହିଁ । ହବନ ! କୁଲି ହେଲେବି ଏମାନେ ମହାମାନ୍ୟ ସାହେବ ! ଏମାନେ ଯେଉଁ ପୋଷାକ ପିନ୍ଧିଥାନ୍ତି ସେ ଅବଶ୍ୟ ଟିକିଏ ମଇଳା, ଟାଇ ବୋଲି ଯେଉଁଟା ବେକରେ ଝୁଲୁଥାଏ ସେଗୁଡ଼ା ଖଣ୍ଡିଏ ଖଣ୍ଡିଏ କଳା କନା ପରି ଜଣାଯାଉଥାଏ । ସମସ୍ତେ ପ୍ରାୟ ବୁଢ଼ା । କାହିଁ ଟୋକାଦଳ କୁଆଡ଼େ ଗଲେ କି ? ଛିଃ ସେମାନେ ଏ ଗ୍ଲେଟ କାମ କରିବେ ! ବୁଢ଼ାମାନେ ସିନା ଜୀବିକା ଉପାର୍ଜନର ଅନ୍ୟ ବାଟ ନଦେଖି ଏ କୁଲିଗିରି ଧରିଚନ୍ତି । ଶୁଣିଲି ଏମାନେ ବେଶ୍ ପଇସାପତ୍ର ରୋଜଗାର କରନ୍ତି । କଟାଳ କରିବା ଦରକାର ନାହିଁ । ଯତ୍ରୀମାନେ ନିୟମ ଅନୁସାରେ ତାଙ୍କର ଯେ ପ୍ରାପ୍ୟ ତା’ ବାଦେ ଅଧିକ କିଛି ବକ୍‌ସିସ୍ (Tips) ଦିଅନ୍ତି । ମୋଟା ବକ୍‌ସିସ୍ ଯୁଆଁଙ୍କର ପ୍ରାପ୍ୟ । କେତେ ସନ୍ତୋଟପଣିଆ ଓ ସାବଧାନତା ସହକାରେ ଏମାନେ ଯାତ୍ରୀଙ୍କୁ ସାହାଯ୍ୟ କରୁଚନ୍ତି । ଭାବିଲି ଆମ କଟକ, କଲିକତାରେ ବି କୁଲିମାନେ କମ୍ ସାହାଯ୍ୟ କରନ୍ତିନି ଯାତ୍ରୀମାନଙ୍କୁ ।

ଗୋଟାଏ କଥା ମନେପଡ଼ି ଭାରି ହସ ମାଡ଼ିଲା । କଲିକତାରେ ରହି ଭାରତ ସରକାରଙ୍କ ପ୍ରେସ୍‌ରେ ଟ୍ରେନିଂ ନେଉଥାଏ । ଦୁଇଦିନିଆ ଛୁଟି ପଡ଼ିଲା । ତେଣୁ ମୋର ପରିବାରଙ୍କୁ ସଙ୍ଗେଇବା ପାଇଁ କଟକ ଆସିବାକୁ ଠିକ୍ କଲି । ଉପର କ୍ଲାସରେ ଯିବାକୁ ପାଖରେ ଟଙ୍କା

ନଥାଏ । ତେଣୁ ତୃତୀୟ ଶ୍ରେଣୀ ଏକମାତ୍ର ଆଶ୍ରୟ । ମୋ’ ସାଙ୍ଗେ ବାହାରିଥାନ୍ତି ମୋର ଜଣେ ସୁଦକ୍ଷ କର୍ମଗୁରୁଙ୍କ ପୁତ୍ର ଶ୍ରୀମାନ୍ ପ୍ରଫୁଲ୍ଲ ଚନ୍ଦ୍ର । ସେ ମୋଠାରୁ ବୟସରେ ବହୁତ ଶ୍ରେଷ୍ଠ ହେଲେ ବି ମୋ କଲିକତା ରହଣି ଭିତରେ ମୋର ଖୁବ୍ ଘନିଷ୍ଠ ହୋଇ ଉଠିଥାଏ । ମୋତେ ବହୁତ ସାହାଯ୍ୟ ବି କରୁଥାଏ । ସେ ଜଣେ ବଡ଼ ଚତୁର ସୌଖୀନ୍ ମେଜ୍‌ଜଦର ଯୁବକ । ବହୁଦିନ ଧରି କଲିକତାରେ ରହିଥିଲି । ତେଣୁ ପୋଖତ କଲିକତିଆ ସେ । ହାବଡ଼ା ଷ୍ଟେସନରେ ତ ମହାଭିଡ଼ । ତୃତୀୟ ଶ୍ରେଣୀରେ କପରି ଉଠିବା ! ପ୍ରଫୁଲ୍ଲ କହିଲି କିଛି ଚିନ୍ତା ନାହିଁ । କୁଲିକି କିଛି ପଇସା ଅଧିକ ଦେଲେ, ସେ ମହା ସୁବିଧାରେ ଗାଡ଼ିରେ ବସାଇଦେବ । ତାହା ହିଁ ହେଲା । ହାବଡ଼ା ଷ୍ଟେସନରେ ଗୋଟିଏ କୁଲିକୁ ସବୁକଥା ବୁଝେଇ ଠିକ୍ କରୁଚୁ ଏହି ସମୟରେ ମହା ଗୋଳମାଳ ଶୁଣାଗଲା । କୁଲି ଆମର ସାମାନ୍ୟ କନିଷ୍ଠ ଦ’ଖଣ୍ଡ ଧରି ଦୌଡ଼ିଲା । ଶତ କଣ୍ଠରେ ଶୁଣାଗଲା— ଗାଡ଼ି ଆସିଲା, ଗାଡ଼ି ଆସିଲା । ମାନେ ଗାଡ଼ି ଯେଉଁ ପ୍ଲାଟ୍‌ଫର୍ମରୁ ବାହାରିବ ସେଠିକି ପଶେଇଲା । ଖୁବ୍ ପାଟିତୁଣ୍ଡ, ଧାଁଧପଡ଼ ଚାଲିଥାଏ । କୁଲି ଦୌଡ଼ୁଥାଏ, ଆମେ ତା’ ପଛେ ପଛେ ଦୌଡ଼ୁଥାଉ । କିଛି ସମୟ ପରେ ଦେଖିଲୁ କୁଲିର ଦେଖାନାହିଁ । ସାଙ୍ଗେ ସାଙ୍ଗେ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲା ! ମହା ବ୍ୟତିବ୍ୟସ୍ତ ହେଇ ଦୌଡ଼ୁଥାଉ । କେଶବାସ ଅସମ୍ଭାଳ । ଆଉ ବି ଶହ ଶହ ଲୋକ ଦୌଡ଼ୁଥାନ୍ତି । ପରେ ପରେ ଗାଡ଼ି ପ୍ଲାଟ୍‌ଫର୍ମ ଭିତରକୁ ପଶେଇବାକୁ ଆରମ୍ଭ କଲା । ଆମେ ଧାଉଁଥାଉ । କେତେ ପଡ଼ାପଡ଼ି ଧକ୍‌କାଧକ୍କି ହେଲେ ବି ପରବାଏ ନାହିଁ; କିନ୍ତୁ କୁଆଡ଼େ ? ସେ କଥା କିଏ ପଚାରୁଚି ? ସମସ୍ତେ ଖାଲି ଦୌଡ଼ୁଚନ୍ତି । କିନ୍ତୁ କୁଲି ଗଲା କୁଆଡ଼େ ? ପ୍ଲାଟ୍‌ଫର୍ମ ଗୁଡ଼ି ଆଉ ଥୋଡ଼ାଏ ବି ଆଗକୁ ଚାଲିଗଲୁଣି, ହଠାତ୍ ଦେଖିଲୁ ଆମ କୁଲି ଗୋଟେ ଡବା ଭିତରେ ଠିଆହୋଇ ଫଳଭରା ବିରାଟ ଆମ୍ବଗଛ ଶୀର୍ଷ ଦେଶରେ ରହି ହନୁମାଙ୍କଡ଼ ଦାନ୍ତ ନିକୁଟିଲା ପରି ମୁହଁ କରୁଛି । ସ୍ୱର୍ଗସମ୍ପଦ ମିଳିଗଲା ଆମକୁ । ଯାହାହଉ ତେବେ ଜାଗାଟା ଠିକ୍ କରି ନେଇଚି । ଏଥିଭିତରେ କୁଲି ସମ୍ବନ୍ଧରେ ନାନା ଦୁଶ୍ଚିନ୍ତା ମନରେ ଉଠିଥାଏ । ତା’ର ନମ୍ବରଟା ମନେ ରଖିନୁ ! ଯଦି ଆମ କନିଷ୍ଠ

ନେଇ କୁଆଡ଼େ ପଳାଏ, ଏପରି କଦର୍ଯ୍ୟ ଚିନ୍ତା ପାଇଁ ନିଜକୁ ଶତ ଧିକ୍କାର କଲୁ । ଛିଃ, ଛିଃ କୁଲି ହେଲା ବୋଲି କ'ଣ ସେ ସଚ୍ଚୋଟ ହୋଇ ପାରେନା ! ଦଧୀଚି ଯୁଧିଷ୍ଠିରଙ୍କ ଦେଶ ଆମରି ।

କୁଲି ହ୍ଵର୍ଣ୍ଣୀରେ ସମ୍ଭାଷଣ କଲା, ଗୃହଆସନ୍ତୁ ଭିତରକୁ । ସଗର୍ବ ମନରେ ଓ ସହର୍ଷ ବଦନରେ ଆମେ ବି ଗାରଦର୍ପରେ ଆଗେଇଗଲୁ । କିନ୍ତୁ ଗାଡ଼ିମୁହଁ ଏକଦମ୍ ଯାମ୍ । ଯୁବକ ଯୁବତୀ, ବୁଢ଼ା ବୁଢ଼ୀ, ପିଲାଛୁଆ ତାଙ୍କର ସାମାନ୍ୟ ଅସାମାନ୍ୟ ଆସବାବ ଧରି ସମସ୍ତେ ଏକ ସଙ୍ଗରେ ଭିତରକୁ ଧସେଇ ପଶିବାକୁ ଚେଷ୍ଟା କରୁଥାନ୍ତି । ଭେଦାଭେଦ ଏକଦମ୍ ନାସ୍ତି । ଭାବିଲି ଏଇ ଯାଗାଟା ସାମ୍ୟବାଦର ଚରମ ନମୁନା; ପ୍ରକୃତ ପୀଠ । କେହି କାହା ଅଧିକାର ଗ୍ରାହ୍ୟ କରୁନାହାନ୍ତି, କେହି କାହାକୁ ଅଧିକ ସୁବିଧା ଦେଉନ । ସମସ୍ତେ ମୁହାଁଇଚନ୍ତି ଭିତରକୁ । ହେଲେ ଚର୍ମମାଂସର ଦେହ ଖଣ୍ଡିକ ଚାହିଁ ଚାହିଁ ଡାକୁଥାଏ ଗୃହଆଡ଼ର ଗୃପରେ । କେତେଜଣଙ୍କର ପାଟିତୁଣ୍ଡ, ବାକବଚସା ବି ଆରମ୍ଭ ହୋଇଯାଇଥାଏ । କିଏ କାହା ଉପରକୁ ହାତ ଉଠେଇଲାଣି ତ କିଏ ଚିତ୍କାର କଲାଣି, କାହାର ସାର୍ଟ ଛିଣ୍ଡିଲା ତ କାହାର ଗଣ୍ଠିଲି ଗାଏବ୍ । ହେଲେ ଏକଦମ୍ ଏକ ବଳୟାର । ସମସ୍ତଙ୍କର ସମାନ ଅଧିକାର, କିଏ ଗ୍ରାହ୍ୟ କରୁଛି ବା କାହାକୁ ? ସମସ୍ତେ ଭିତରକୁ ଠେଲପେଲ ପଶୁଥାନ୍ତି । ବାପରେ ବାପ ! ଏ କି ଭିଡ଼, ଏତ ମହାବାରୁଣୀ ମେଳାକୁ ବଳିଗଲା ।

ମହାକଷ୍ଟରେ ଭିତରେ ପଶି ଯେତେବେଳେ କୁଲି ଦଖଲ କରିଥିବା ଯାଗାଟିରେ ପ୍ରଫୁଲ୍ଲ ଓ ମୁଁ ଖୁନ୍ଦାଖାନ୍ଦି ହେଇ ବସିଗଲୁ ମନରେ ଅପୂର୍ବ ଆନନ୍ଦ । ନିଜର ପାରିବାରିଗଣ ନେଇ ଆପଣା ଆପଣା ଭିତରେ ପ୍ରଶଂସା ବିତରଣ କରିବାଟିରେ ଲାଗିପଡ଼ିଲୁ । କୁଲିକୁ ବେଶ୍ ପଇସା ଦେଇ ଆମେ ତା' ପ୍ରଶସ୍ତିରେ ଗଁ ଗଁ ହୋଇ ଉଠିଲୁ । ସେତେବେଳକୁ ବି ପୁଣି ଲୋକ ଉଠିବାକୁ ଉଠୁଥାନ୍ତି ଯଦିଚ ସେଠି ସୋରିଷ ପକାଇବାକୁ ଛିଟିଲେ ଜାଗା ନ ଥାଏ । ହେଲେ ଆମ ମନରେ ମହାଖୁସି । ଆମେ ତ ଆମ ଜାଗା ଦଖଲ କରିସାରିଚୁ । ଆଉ କିଏ ଆସିଲେ କେତେ, ନ ଆସିଲେ କେତେ !

କେତେ ସମୟ ପରେ ପକେଟ୍ ବରଣ୍ଡି ବାରୁ ଦେଖିଲି ମୋ ପଇସାଥଳୀ କି ଝରକଲମ ନାହିଁ । ମହା ଦୁଃଖ ! କିଏ କଲା ଏ ଦୁଷ୍କର୍ମ ! ପକେଟ୍ ମାରିଦେଲା ଏ ଗୋଳମାଳରେ !

ସାଙ୍ଗେ ସାଙ୍ଗେ ମହା ସନ୍ଦେହ ମନରେ ଜାଗି ଉଠିଲା । ସେ କୁଲି ସାଙ୍ଗରେ ଆମେ ଯେତେବେଳେ କଥାବାର୍ତ୍ତା କରି ସବୁ ଠିକ୍‌ଠାକ୍ କରୁଥିଲୁ ସେ ଆମ ଜିନିଷ ଧରି ବାହାରିବା ଆଗରୁ କାହାକୁ ଯିମିତି କ'ଣ ସୁଚକ ଦେଉଥିଲା । ତେବେ କ'ଣ ସେ କୁଲି କାହା ସାଙ୍ଗରେ ଷଡ଼ଯନ୍ତ୍ର କରି ଏ ବିପଦ ଘଟେଇଲା ! ବିଶ୍ୱାସରେ ବିଷ ! ଯାହାକୁ ଆଶ୍ରାକଲୁ ସେ ପୁଣି ତଣ୍ଟି କାଟିଲା । ହେଲେ ସେ କୁଲିଟା ତ ମହା ଖାଣ୍ଟି ଲୋକପରି ଜଣାଯାଉଥିଲା । ଯାହାହେଉ କିଛିକ ଯିବା ତ ନିଶ୍ଚିତ, ଆଉ ଚିନ୍ତାକଣ ! ଭାଗ୍ୟକୁ ଟିକଟ୍ ଦ'ଖଣ୍ଡି ପ୍ରଫୁଲ୍ଲ ପାଖରେ ରହିଯାଇଥାଏ । ତା' ପାଖରେ ବି କିଛି ପଇସା ଥାଏ । ତେବେ ରକ୍ଷା !

ଯେତିକି ଯୋର୍‌ରେ ଗାଡ଼ି ଆଗେଇଲା ଆମ ମନରେ ଆନନ୍ଦ ମାତ୍ରା ସେତିକି ବଢ଼ିଚାଲିଲା । ରାତି ପ୍ରାୟ ବାରଟା । କଲିକତା ଛାଡ଼ିବା ପ୍ରାୟ ୪ ଘଣ୍ଟା ହୋଇଯାଇଥାଏ । ପ୍ରଫୁଲ୍ଲକୁ ପଚାରିଲି କାହିଁ ଖଡ଼ଗପୁର ତ ଏପର୍ଯ୍ୟନ୍ତ ହେଲାନି । ସେ ତ ରେଲଯାତ୍ରାରେ ପୋଖତ । କହିଲା ଆସିନଥିଲେ ଆସିବ ଏତେ ଚିନ୍ତା କାହିଁକି, ଆରାମରେ ଶୋଇପଡ଼ନ୍ତୁ । ଆଗରେ ଜଣେ ସୁଶ୍ରୀ ମହିଳା ବସିଥାନ୍ତି । ସେ ଆମ କଥା ଶୁଣି ତାଙ୍କ ସ୍ୱାମୀ କି ଆତ୍ମୀୟ କିଏ ସାଙ୍ଗରେ ଥିଲେ ତାଙ୍କୁ ମଧୁଗୁଞ୍ଜନରେ କହିଲାପରି ମନେହେଲା । ଏପଟେ ଖଡ଼ଗପୁର କୁଆଡ଼ୁ ଆସିବ ! ମହିଳା ଅବଳା ତାଙ୍କ କଥାକୁ ଅବଜ୍ଞା ନେଇରେ ଆଡ଼େଇ ଦେଇ ମୁଁ ସୁଖ-ନିଦ୍ରା ଗଲି । ସେତେବେଳକୁ ପ୍ରଫୁଲ୍ଲ ଢୁଙ୍ଗୁଡ଼ି ମାରିବା ଆରମ୍ଭ କରି ଦେଇଥାଏ ।

ରାତି ପ୍ରାୟ ପାହାପାହା ଆସିଲାଣି । ହଠାତ୍ ନିଦ ମଳମଳ ହୋଇ ଅଳ୍ପ ଦୂରରେ ବସିଥିବା ଜଣେ ଜାଗ୍ରତ ବୃଦ୍ଧଙ୍କୁ ଖଣ୍ଡିଆ ହିନ୍ଦିରେ ପଚାରିଲି ବାଲେଶ୍ୱର ଷ୍ଟେସନ ଗଲାଣି କି ନାହିଁ ? ଭଦ୍ରଲୋକ ଜଣେ ବୟସ୍କ ବଙ୍ଗାଳି, ଟିକିଏ ବିଚଳିତ ସ୍ୱରରେ ପଚାରିଲେ କୁଆଁଡ଼େ ଯିବେ କି ?

ଆନନ୍ଦଗଦଗଦ କଣ୍ଠରେ କହିଲି କଟକ । ଏ ଗାଡ଼ିତ ପୁରୁଣ୍ଡିଆ ଯିବ । ଏଁ ! ପୁରୁଣ୍ଡିଆ ଯିବ ? ସର୍ବନାଶ ! ତେବେ କଣ ଭୁଲ ଗାଡ଼ିରେ ବସିଗଲୁ ! ପ୍ରଫୁଲକୁ ଉଠେଇ ଏ ଦୁଃସମ୍ବାଦ ଦେଲି । ସେ ହଠାତ୍ ବିଶ୍ୱାସ କଲାନି । କିନ୍ତୁ ମୁଁ ଆଉ ଜଣେ ଦୁ'ଜଣକୁ ପଚାରିପଚାରି କରି ବୁଝିଲି ସତରେ ମହାଭୁଲ, ଆମେ ଯୁଁ ଥିରେ ବସିଚୁ ସେ କଟକ ଯିବନି, ଯିବ ବିହାରର ପୂର୍ଣ୍ଣିଆ ଆଡ଼େ । ପିଲାଦିନେ ପ୍ରାଥମିକ ଭୂଗୋଳ ଏକଦମ୍ ମୁଖସ୍ଥ କରି ଦେଇଥିଲି । ସାଙ୍ଗେ ସାଙ୍ଗେ ପୂର୍ଣ୍ଣିଆର ଅବସ୍ଥିତି ଆଖି ଆଗରେ ଭାସି ଉଠିଲା । ହାୟ ଭଗବାନ ! କଟକ ରହିଲା କୁଆଡ଼େ ଆମେ ଯାଉଚୁ କୁଆଡ଼େ !

ବଡ଼ ହତୋତ୍ସାହ ଭାବରେ ପର ଷ୍ଟେସନରେ ଓହ୍ଲାଇପଡ଼ିଲୁ । ବହୁ ଦରଦ ଦେଇ ଆମ ଦୁଃଖର କାହାଣୀ ସେଠାର ଷ୍ଟେସନ ମାଷ୍ଟରଙ୍କୁ କହିଲୁ । ସେ ନିର୍ଭର ବାଣୀ ଶୁଣେଇ କହିଲେ, କିଛି ଚିନ୍ତା ନାହିଁ । ଟିକେଟ୍ କରି ନଅନ୍ତୁ । ଆଉ କେତେ ଘଣ୍ଟା ପରେ ଆସାନ୍‌ସୋଲ ଗାଡ଼ି ଆସିବ ସେଥିରେ ବସି ଚାଲିଯିବେ । ଆହା-ହା କି ସଦୁପଦେଶ, କି ସାହାଯ୍ୟ ! ସତକୁ ସତ ଯେତେ ଘଣ୍ଟା ଭିତରରେ ଆସାନ୍‌ସୋଲ ଗାଡ଼ି ଆସିବାର କଥା ତାଠାରୁ ଚଡ଼ିଏ ଭିତରରେ ଷ୍ଟେସନ୍‌ରେ ପହଞ୍ଚିଲା । ଟିକେଟ୍ କରି ଗାଡ଼ିରେ ବସିଲୁ । ମୁଁ ବାଟଯାକ ଆମ ଡବାର ଜଣକପରେ ଜଣକୁ ଥରକୁ ଥର ପଚାରୁଥାଏ, ଏ ଗାଡ଼ି କଟକ ଯିବ ତ ! ସମସ୍ତେ ସଦମ୍ଭରେ କହୁଥାନ୍ତି ହଁ ଯିବ । ସତରେ ସେ ଗାଡ଼ି କଟକରେ ପହଞ୍ଚିଲା କିନ୍ତୁ ତା'ପରଦିନ । ମାନେ ଆମେ ଯେଉଁଦିନ ସନ୍ଧ୍ୟାରେ କଲିକତା ଫେରିବା କଥା ସେହି ସକାଳେ । ମନ କଷ୍ଟରେ ପ୍ରଫୁଲକୁ କହିଲି, ଘରକୁ ଯିବା କେତେବେଳେ; ପୁଣି ଷ୍ଟେସନ୍‌କୁ ଆସିବା କେତେବେଳେ ! ପ୍ରଫୁଲ୍ଲ କହିଲା ଘରକୁ ନ ଯାଇ ଏଇଠୁ ଫେରିଗଲେ ହୁଅନ୍ତା ନ ! ବାଃ ! ତେବେ କଲିକତାରୁ ଆସିଥିଲେ କାହିଁକି !

ସେମିତିକା ବାହାଦୁର କୁଲି ଏମାନେ ନୁହନ୍ତି ତ ! ନା, ଏମାନେ ଯେତେହେଲେ ସାହେବ ! ଗୋରାଚମରେ ଆମ୍ଭମାନଙ୍କର ଅଗାଧ ବିଶ୍ୱାସ ! ଯାହାର ଜିନିଷପତ୍ର ଚେକ୍ ହୋଇଗଲା ସେ ଯମ ଦ୍ୱାରରୁ ତ୍ରାହି ପାଇଲା ପରି ପରମ ଆନନ୍ଦରେ ପୋର୍ଟରଙ୍କ ସାହାଯ୍ୟରେ ଜିନିଷପତ୍ର ଧରି ମହାଦର୍ପରେ

ବାହାରିଯାଉଥାଏ । ଯାହାଙ୍କର ଜିନିଷ ଅଟକ ଥାଏ ବା ଯାହାକୁ କୌଣସି ନିୟମ ଭଙ୍ଗକରିଥିବା ହେତୁ ଜୋରିମାନା ହୋଇଥାଏ ସେମାନେ ମୁହଁ ସୁଖାଇ ଠିଆ ହୋଇଥାନ୍ତି । ଗୋଟାଏ କଥା ମୁଁ ଲକ୍ଷ୍ୟ କରୁଥାଏ, ଏହି କଷ୍ଟମସ୍ କର୍ମଚାରୀଙ୍କ କାର୍ଯ୍ୟ-ତତ୍ପରତା ଓ ଚତୁରତା । ଖୁବ୍ ଶୀଘ୍ର ଜିନିଷଗୁଡ଼ିକ ଚେକ୍ କରୁଥାନ୍ତି କିନ୍ତୁ ଯେଉଁଠି ଅଟକିଯାଉଥାନ୍ତି ସେଠି କିଛିନା କିଛି ତ୍ରୁଟି ବା ଖିଲାପ୍ ଥାଏ । ଶୁଣିଥାଏ ସେମାନଙ୍କ ପାଖେ ନାନା ସୂକ୍ଷ୍ମ ଯନ୍ତ୍ରପାତି ଥାଏ ଯାହା ସାହାଯ୍ୟରେ ସେମାନେ ସାନ ଫରୁଆଟିକରେ ସାତବାନ୍ଧୁଣି ଦେଇ କିଛି ଜିନିଷ ରଖିଥିଲେ ବି ଧରିନେବେ । କେତେଟା ଯନ୍ତ୍ରପାତି ଅବଶ୍ୟ ଥିଲି କିନ୍ତୁ ତାଙ୍କ ପାଖରେ ଇମିତି ବିଶେଷ କିଛି ସୂକ୍ଷ୍ମ ଆସବାବ ଥିଲି ପରି ତ ଜଣାପଡ଼ିଲି ନି । ତେବେ ସବୁ ନିଷିଦ୍ଧ ଜିନିଷ ଧରୁଚନ୍ତି କିମିତି ! ବୋଧହୁଏ ନିଜ ଅଭିଜ୍ଞତା ଓ ତୀକ୍ଷ୍ଣ ଦୃଷ୍ଟି ଫଳରେ । ଛାତି ଭିତରଟା ମୋର ଯିମିତି ଧଡ଼୍ ଧଡ଼୍ କରିଉଠିଲି । ଯଦି ମୋ ଗୁଣ୍ଡି, ଗୁଡ଼ାଖୁ ଧରିବେ······ମନେ ମନେ ମୁଁ ମୋର କୁଅଭ୍ୟାସଗ୍ରସ୍ତ ବନ୍ଧୁମାନଙ୍କ ଉପରେ ରାଗି ଉଠିଲି । ଏମାନେ ବିଲାତରେ ପାଠ ପଢ଼ିବାକୁ ଆସିଚନ୍ତି ନା ଗୁଣ୍ଡି ଗୁଡ଼ାଖୁ ବ୍ୟବହାର କରିବାକୁ ଆସିଚନ୍ତି !

ଆଗରୁ ବହୁ ବିଜ୍ଞ ବନ୍ଧୁଙ୍କଠାରୁ ମାଳତିଶିକ୍ଷା ମିଳିଥାଏ, ଫିଟ୍‌ଫାଟ୍ ହୋଇ ବାହାରିଯିବ, ମୁହଁରେ କୌଣସି ଶୋଚନାର ଚିହ୍ନନଥିବ । ଫିଟ୍‌ଫାଟ୍ କଥା କହିଯିବ, ତେବେ କଷ୍ଟମସ୍ ଘାଟି ସହଜରେ ପାରି ହୋଇଯିବ । ଗୋଦରା ନିଜ ଗୋଡ଼କୁ ଚାହିଁ ନିଜ ସୌନ୍ଦର୍ଯ୍ୟର କଳନା କଲାପରି ମୁଁ ନିଜ ଚେହେରାକୁ ଟିକେ ଚାହିଁଦେଲି । ମୁଁ ବିଲାତ ଯିବି ବୋଲି ବାରମ୍ବାର ଦରଜୀକୁ କହି ଭଲେ ଗରମ ପୋଷାକ ତିଆରି କରାଇଥାଏ । ତାକୁ ବହୁ ଯତ୍ନରେ ପିନ୍ଧି ମନେ ମନେ ଭାବୁଥାଏ ମୁଁ ତ ବେଶ୍ ସାର୍ଟ ଦେଖାଯାଉଚି । କିନ୍ତୁ ପରେ ପରେ ଅନ୍ୟମାନଙ୍କୁ ଦେଖି ବଡ଼ ବୀତସ୍ପୃହ ହୋଇପଡ଼ିଲି । ନା, ମୋର ପୋଷାକ ଓ ଚେହେରା ସେତେ ଭଲ ଦିଶୁନି ତ ! ଏହା ସାହାଯ୍ୟରେ ମୁଁ ଏ କଷ୍ଟମସ୍ ବୈତରଣୀ ପାରି ହୋଇପାରିବିନି । ମୋ ପୋଷାକ ବଡ଼ ବେଆଡ଼ା ଓ କୋଡ଼ରା ଦେଖାଯାଉଚି ସୁନ୍ଦରଆଡ଼ର ଚକ୍ ଚକ୍ ଝକ୍ ଝକ୍ ବିଲାତି ବେଶଭୂଷା ଆଗରେ । ବେଆଡ଼ା ବି ଦେଖାଯାଉଥାଏ ମୋ ଶ୍ୟାମଳ ଚେହେରା

ଶ୍ୱେତାଙ୍ଗମାନଙ୍କ ନିକଟରେ । ପାଖରେ ଦର୍ପଣ ନଥିଲେ ବି ନିଜ ମୁହଁର ଆକାର ପ୍ରକାର ନେଇ ଗୋଟିଏ ମୋଟାମୋଟି ଧାରଣା କରିନେଇଥିଲି । ନରହନ୍ତା ଆସାମୀ କଟେରା କାଠଗଡ଼ାରେ ଠିଆ ହେଲାପରି ଦିଶୁଥିବି ! ହେଲେ ଏ ଦୁଃଖରୁ ଉଦ୍ଧାର ପାଇବି କିପରି !

ବିଲାତ ଭୂଇଁ ଛୁଇଁଲାକ୍ଷଣି ଶୀତର ମାତ୍ରାଟା ବେଶ୍ ଅନୁଭୂତ ହେଉଥିଲା । ମୋର ତଥାକଥିତ ଗରମ ପୋଷାକର ଉତ୍ତାପ ଯିମିତି ଯଥେଷ୍ଟ ନୁହେଁ । ଛାତି ଭିତରୁ ଉଠୁଥାଏ ମଧ୍ୟ କମ୍ପନ, ମେଲେରିଆ ପୋଖତ ହେଲେ ଯେପରି ଦେହ ଥରକୁଥର କମ୍ପିଆସେ । କଷ୍ଟମସ୍ ଅର୍ଗଲୀ ଶନ୍ତ୍ରାରେ ସେଇଟା ଯିମିତି ଆହୁରି ବଢ଼ିଉଠିଲା । କୁଆଡେ଼ ଗଲେ ସେ ବହୁମୂଲ୍ୟ ବନ୍ଧୁମାନେ ଯାହାଙ୍କ ପାଇଁ ଆଜ ମହାଅଷ୍ଟମୀ ବୋଦାଠାରୁ ମୋ କଷ୍ଟ ବଳିପାଉଚି । ଚୁରିଆଡେ଼ ଆଖି ପକେଇଲି । ହେଲେ କାହାରି ଖୋଜ ଖବର ନାହିଁ ! ଛିଃ, ଛିଃ, ଏଇ ସେମାନଙ୍କର ଦାୟିତ୍ୱ ଜ୍ଞାନ । ମୁଁ ଆଜ ସେମାନଙ୍କ ପାଇଁ ଯେ କି କଷ୍ଟ ଅନୁଭବ କରୁଚି କି ଦୁଃଖ ସହୁଚି ସେଇଟା ଟିକିଏ କଳ୍ପନା କରିପାରିଲେନି !

କ୍ରମେ ଆଗେଇ ଆସୁଥାନ୍ତି ମୋ ଆଡକୁ କଷ୍ଟମସ୍ ଅଫିସର ଦଳ । ମୋ ଛାତିଟା କ୍ରମେ ବେଶି ଧଡ଼୍ ଧଡ଼୍ ହେବାରେ ଲାଗିଥାଏ । ଓଃ ! ପାଖେଇ ଆସିଲେ ତ ଯମଦୂତ ! ଟିକିଏ ସାହାସ ବାନ୍ଧି ଏ ସୁଗନ୍ଧ ସାମଗ୍ରୀ ନେଇ କଷ୍ଟମସ୍ କର୍ମଚାରୀଙ୍କୁ କଣ କହିବି ସେଇଟା ମନ ଭିତରେ ଅଭ୍ୟାସ କରିନେଲି । କଣ କରିବି ଏ ଗୁଣ୍ଡି ଗୁଡାଖୁ ନେଇ ! ଦୈବାତ୍ ଆଖି ପଡ଼ିଗଲା କବାଟର କାଚ ଆବରଣ ଆରପଟେ କାହାରି ପରିଚିତ ମୁହଁ ଉପରେ, ହେଲେ ଠିକ୍ କରିପାରିଲିନି କିଏ ସେ ମହାତ୍ମା ଏଇ ଅସମୟରେ ଦେଖାଦେଲେ । ଏକରେ ତ ସୂର୍ଯ୍ୟାଲୋକର ଅଭାବ, ଦୁଇରେ ମୋଟ କାଚ ମଧ୍ୟଦେଇ ଦିଶୁଥାଏ ଗୋଟିଏ ଝାପ୍ସା ଛାଇ । ତେବେ ମତେ ଯିମିତି ଇନ୍ଦ୍ର ସମ୍ପଦ ମିଳିଗଲା । ଦେହରେ ଜୀବନ ପଶିଲା । ତେବେ କିଏ ଆସିଚନ୍ତି । ଶକ୍ତିବାବୁ ନା ସୁରବାବୁ ନା ଶ୍ରୀକାନ୍ତ ବାବୁ ନା ସମସ୍ତେ !

ଏଥିଭିତରେ ବାହାରେ ଆଉ କେତେଜଣ ପରିଚିତ ବନ୍ଧୁଙ୍କ ମୁଖମଣ୍ଡଳ ଦିଶିଯାନ୍ତେ ଛାତି ଭିତରଟା ଗୁମୁରିଉଠିଲା । ଏତେବେଳକୁ

ଏହି ସମାଳସ୍ଥ କଷ୍ଟମସ୍ ଘରର ପାରିଷଦମାନେ ଆସି ଯୁଟିଯାଇଥାନ୍ତି ମୋ ପାଖରେ । ମୋ ଉପରେ ଔଦାର୍ଯ୍ୟକ୍ ଆଖି ପକେଇ ଟ୍ରଙ୍କରେ କଣ ଅଛି ପଚାରି ଦଅନ୍ତେ ମୁଁ ଆଗରୁ ମନେ ମନେ ଅଭ୍ୟାସ କରିଥିବା ଏକ ଗ୍ରେଟ ଭାଷଣ ଦ୍ରୁତ ବେଗରେ ଆରମ୍ଭ କରିଦେଲି । ସେମାନେ ତ ଅବାକ୍ । ଯାହା କହିଲି ତାର ସାରାଂଶ ହେଲା ସେମିତି କିଛି ସାଙ୍ଗରେ ଆଣିନି । ଯାହା ବେଶଭୂଷା ଅଛି ତାହା ବିଲାତ ଶୀତକୁ କିଛି ନୁହେଁ, ପାଠ ପଢ଼ିବାକୁ ଆସିଚି । ତେଣୁ କିଛି ବହିପତ୍ର ଅଛି । ଆଉ ଅଛି············

ଏତକ କହି ଅଟକି ଗଲି । ସାର ପୁରୁଷମାନେ ଓଠାରି ପଚାରିଲେ ଆଉ କଣ ଅଛି ? S-S-S-some Indian spices, some stationery articles to be given as presents to our friends and relations here ······

କିଛି ଭାରତୀୟ ମସଲାମସଲି, ସାମାନ୍ୟ କିଛି ମନୋହାରୀ ଜିନିଷ ବନ୍ଧୁମାନଙ୍କୁ ଉପହାର ଦେବାକୁ ।

Have you any tobacco with you ?

ତୁମ ପାଖରେ ତମାଖୁ ଅଛି ?

ମାଇଲା ! ଗୁଣ୍ଡି ବୋଇଲେ ତ ତମାଖୁ । ଅଭିଜ୍ଞତାରୁ ବୋଧହୁଏ ଜାଣିଯାଇଚନ୍ତି । ସାହାସ ବାନ୍ଧି ନା କହିଦେବି ବୋଲି ବସିଥିଲି ପୁଣି ଭାବିଲି ଯଦି ଖୋଲିବେ ସବୁତ ଜାଣିପିବେ । ତେଣୁ ସସ୍ମିତ ବଦନରେ ମୁଲାୟମ୍ କଣ୍ଠରେ ଅଶ୍ୱତ୍ଥାମା ହତଃ ନରେବାଗୁଞ୍ଜରେବା ଢଙ୍ଗରେ କହିଲି—Tobacco ! No, our Indian spices········· ମାନେ ଗୁଣ୍ଡି ଗୁଡ଼ାଖୁ······

ଅଦାଜିକ ମୂଲ୍ୟ ?

ନଗଣ୍ୟ ! କହି ଟ୍ରଙ୍କଟା ଖୋଲି ବସିଲି । ପ୍ରକୃତରେ ଖୋଲୁନଥାଏ । କାରଣ ତା ଭିତରେ ଥିବା ଗୁଣ୍ଡି ଗୁଡ଼ାଖୁର ଇମିତି ଖୁସ୍‌ବୋଇ ବାହାରୁଥାଏ ଯେ ବଚାରିମାନେ ନାକରେ ରୁମାଲ ଦେବା ଆରମ୍ଭ କରିଦେଇଥାନ୍ତି । ଜଣେ ଥରେ ଅଧେ ବ ଛିଙ୍କିଲେଣି । ସବୁଟା ଖୋଲି ଦେଲେ ଅବସ୍ଥା ଅସମ୍ଭାଳ ହୋଇପଡ଼ିବ । ମୋ ଆସବାବର

ବୈନ୍ୟ, ମୋ ରୂପ ଓ ପୋଷାକ ପଛରେ ପ୍ରତିଫଳିତ ହେଉଥିଲି କି ଜାଣେ ସେମାନେ ସବୁ ଉତ୍କଣ୍ଠା ଭଙ୍ଗି କହିଲେ, All right, go ! ଠିକ୍ ଅଛୁ ଯାଅ । ତାଙ୍କ ଆର୍ଶୀବାଦର ନମୁନା ସ୍ୱରୂପ ଟ୍ରଙ୍କ ଉପରେ ଗୋଟେ ସାଙ୍କେତିକ ଚିହ୍ନ କାଟି ଦେଲେ । ଓହୋ ରକ୍ଷା ! ଗୋଟେ ସ୍ୱସ୍ତିର ନିଶ୍ୱାସ ମାରିଲି ଏବଂ ବନ୍ଧୁମାନଙ୍କଠାରୁ ବାହାବା ପାଇ ତାଙ୍କ ଅପୂର୍ବ ଜିନିଷ ତାଙ୍କୁ ସମର୍ପି ଦେଇପାରିବି ଏଇ ଆଶାରେ ମନ ଉତ୍ଫୁଲ ହୋଇଉଠିଲା । ତେଣୁ ଜଣେ ପୋର୍ଟରକୁ ଧରି ସେ ଯମାଳୟରୁ ବାହାରିପଡ଼ିଲି । ବାହାରେ ବନ୍ଧୁମାନେ ଅପେକ୍ଷା କରିଥିଲେ । ତାଙ୍କୁ ଦେଖିବା ମାତ୍ରେ ମନପ୍ରାଣ ଆନନ୍ଦରେ ବିଭୋର ହୋଇଗଲା । ସାଙ୍ଗେ ସାଙ୍ଗେ ଓଡ଼ିଆରେ କେତେ କଣ କହିଗଲି । ସାତ ସମୁଦ୍ର ପାରି ହୋଇ ବିଲାତ ଦେଶରେ ନିଜ ମାତୃଭାଷାରେ ଲଗାମଛଡ଼ା କଥାବାର୍ତ୍ତା କରିବାର ସୁଯୋଗ ମିଳିବାରୁ ମହା ଆନନ୍ଦ ! ବାଟଯାକ ଇଂଲଣ୍ଡରେ ଓ କେଉଁଠି କମିତି ହିନ୍ଦି ବା ବଙ୍ଗଳାରେ କଥାବାର୍ତ୍ତା ଚାଲିଥିଲା । ତେଣୁ ଓଡ଼ିଆ ପୁଅ ଓଡିଆ କଥା କହିବାର ସୁବିଧା ପାଇବାରୁ ମହାଖୁସି !

ଆଗରୁ ତ ଟ୍ରେନ୍‌ରେ ଯିବାପାଇଁ ପ୍ରସ୍ତୁତ ଥିଲି । ମାତ୍ର ବନ୍ଧୁମାନେ ଠିକ୍‌କରି ଆଣିଥାନ୍ତି ଏକ ମଟରଯାନ । ଆସିଥାନ୍ତି ଶକ୍ତିବାବୁ ଓ ସୁରବାବୁ ଏବଂ ଅଗ୍ରଜାଧିକ ଶ୍ରୀଯୁକ୍ତ ନାରାୟଣ ଷାଠିଆଙ୍କ ପୁଅ ପ୍ରଣବ ଓ ସେମାନଙ୍କର ସାରଥୀ ଶ୍ରୀକାନ୍ତବାବୁ । ଗାଡ଼ିକୁ ଯିବାକୁ ସେମାନେ ମତେ ସଶ୍ରଦ୍ଧ ଅନୁରୋଧ କରିପକାଇଲେ । କହିଲି ରେଲରେ ଯିବାପାଇଁ ଟିକେଟ୍‌ଟା କରିଥିଲି ।......

: ତାକୁ ଛୋଡ଼ିଦିଅନ୍ତୁ ।

: ତଥାସ୍ତୁ ।

ମହାଆନନ୍ଦରେ ଗାଡ଼ିରେ ବସି ଆଗେଇଲୁ । ଅସମ୍ଭାଳ ହୋଇ ଚାଲିଲା ପରସ୍ପର ସହିତ ଦୁଃଖସୁଖର କଥାବାର୍ତ୍ତା । ସେମାନେ ଏକ ନିଃଶ୍ୱାସରେ କହି ଉଠିଲେ ବିଲାତରେ କିପରି ଚଳୁଚନ୍ତି । ମୁଁ କହିଚାଲିଲି କଟକରେ ତାଙ୍କ ବନ୍ଧୁ ପ୍ରିୟଜନମାନେ କମିତି ଅଛନ୍ତି । ସେମାନଙ୍କ ଭିତରୁ କିଏ ବୋଧହୁଏ ମୋର ମାଛ ପ୍ରତି ଅସୀମ ମମତା ଥିବା କଥା

ଜାଣିଥିଲେ । କହୁଥିଲେ ଏଠି ବଡ଼ିଆ ହେବଙ୍ଗ୍ ମାଛ ଅପର୍ଯ୍ୟାପ୍ତ ମିଳୁଚି । ସୁନ୍ଦିଲେ ମାଛଭାତ ପ୍ରତ୍ୟହ ବନ୍ଦୋବସ୍ତ ହେଇପାରେ ।

ସତେ ! ତେବେ ଚିନ୍ତା ଆଉ କ'ଣ ? ଗାଡ଼ି ଦ୍ରୁତ ବେଗରେ ଆଗେଇଥାଏ । ରାସ୍ତା ଦୁଇ କଡ଼ରେ ବହୁ କୋଠାବାଡ଼ି । ତା' ସାମନାରେ ସୁନ୍ଦର ସୁନ୍ଦର ବଗିଚା······କହିଲି, ଲଣ୍ଡନ ତେବେ ଆରମ୍ଭ ହେଇଗଲା ?

ଉତ୍ତର ମିଳିଲା—

ନା, ଏ ଲଣ୍ଡନ ନୁହେଁ । ଏତ ସହରତଳିର ବସ୍ତି ଅଞ୍ଚଳ ! କି ଆଶ୍ଚର୍ଯ୍ୟ ! ଏ ବସ୍ତି ଅଞ୍ଚଳ !

ସହରତଳି ବସ୍ତି ଅଞ୍ଚଳ ଯଦି ଇମିତି, କମିତି ହେଇଥିବ ଲଣ୍ଡନ ସହର ! ଚାରିଆଡ଼ର ଆନନ୍ଦମୟ ପରିବେଶ ଭେଦକରି ମନରେ ଉଠିଲା ଏକ ଦୀର୍ଘ ଶୋକୋଚ୍ଛ୍ୱାସ । ସେଇ ପୁରୁଣା ରୋଗ ! କୁଆଡ଼େ ରହିଲା ଆମର ସେ ନାଳନର୍ଦ୍ଦମା ବହୁଳ କଟକ ନଗରୀ, ସେ ଉଠା ଖିଲିପାନ ଦୋକାନ । ସେ ଷ୍ଟ୍ରେଟ ଷ୍ଟ୍ରେଟ ଗୁହାରି, ବରା, ପକୋଡ଼ି ହୋଟେଲ, ମୋର ସେ ହସ-କାନ୍ଦର ଘର, ମୋର ପ୍ରିୟ ପରିବାର ! ହେଲେ ଏ ଦୁଃଖ ଭାବଟା ଯେପରି ସାଙ୍ଗେ ସାଙ୍ଗେ କୁଆଡ଼େ ଉଭେଇଗଲା । ବିଲାତ ଦେଖିବାର ମୋହ ଯେପରି ତାକୁ କୁଆଡ଼େ ଘୁଞ୍ଚିଦେଲାଣି । ଚାରିଆଡ଼କୁ ଚାହିଁ ସବୁଟା ପିମିତି ପିଇଯାଉଥାଏ । କେତେ କ'ଣ ପଚାରୁଥାଏ । କ୍ରମେ କୋଳାହଳମୟ ରାସ୍ତା ଆଗେଇ ଆସିଲା । ଗାଡ଼ି ବସ୍ ଏପଟେ ସେପଟେ ଦୌଡ଼ୁଥାନ୍ତି । ରାସ୍ତା କଡ଼ରେ ଚାଲିଥାନ୍ତି ଲୋକମାନେ ? ଆଜିକାଲିକା ଯାନ୍ତ୍ରିକ ସଭ୍ୟତାର ଏଇ ଗୋଟିଏ ରୂପ, ସବୁଠାରେ ସବୁ ଦେଶରେ । କେଉଁଠି ଟିକିଏ ଧୀର ମନ୍ଥର ଗତି ନାହିଁ । ଖାଲି ଅଣନିଃଶ୍ୱାସୀ ଦୌଡ଼·········ସବୁଟା ଯେପରି ଗୋଟାଏ ଜୀବନ ଯାତ୍ରାର ଅସ୍ଥିର ସଂଗ୍ରାମ ।

କ'ଣ ଭାବୁଚନ୍ତି ? କ'ଣ ଘରକଥା ?

ବନ୍ଧୁମାନେ ଥଟ୍ଟାକରି ପଚାରିଲେ ।

କହିଲି ନା, ଘରକଥା ପାଶୋରି ଦେଲଣି। ଦେଖୁଚ ଲଣ୍ଡନ ସହରକୁ।

ଧୈର୍ଯ୍ୟ ଧରନ୍ତୁ କେତେ ଦେଖିବେ।

ସତେ !

ହଁ, କେତେ ଭଳି, କେତେ ଢଙ୍ଗର······

ଲଣ୍ଡନ ସହର ତେବେ ଆରମ୍ଭ ହୋଇଗଲାଣି ?

ବନ୍ଧୁମାନେ କ୍ଷଣକ ପାଇଁ ନିରୁତ୍ତର। ତା'ପରେ କିଏ କହିଲା ହଁ କିଏ କହିଲା ନାହିଁ। କିଏ କହିଲା ଲଣ୍ଡନ ସହର କେଉଁଠି ଆରମ୍ଭ କେଉଁଠି ଶେଷ କହିହେବନି। ସବୁଆଡ଼େ ତ ଲଣ୍ଡନ।

ମନେ ମନେ ଭାବିଲି, ଏ କିମିତିକା କଥା ! ଲଣ୍ଡନ ସହରକୁ ଖୋଜି ବାହାର କରିବାକୁ ହେବ ନା !

ନାନା ହସକୌତୁକ ଭିତରେ ମୋ ମନ ଯେମିତି କୌଣସି ଏକ ଅଜଣା ଚିନ୍ତାରେ ବ୍ୟଥିତ ହୋଇ ଉଠୁଥାଏ। କ'ଣ ଏ ଚିନ୍ତା ! ବିଖ୍ୟାତ ବିଲାତ ଭୂଇଁରେ ପାଦଦେବା ସଙ୍ଗେ ସଙ୍ଗେ ଘରକଥା, ଦେଶକଥା ପ୍ରାୟ ଭୁଲିଯାଇଥାଏ। ତେବେ ଚାରିଆଡ଼ର ବଡ଼ ବଡ଼ କୋଠା, ଜନଭିଡ଼, ଜିନିଷଭରା ବିପଣୀ, ସୁନ୍ଦର ଚିକ୍ ଚିକ୍ ରାସ୍ତା, ଲୋକମାନଙ୍କର ପୋଷାକ ପରିଚ୍ଛଦର ଆଡ଼ମ୍ବର ଦେଖି ଗୋଟାଏ ନିହାତି ନ୍ୟୂନଭାବ ମୋତେ ଘେରିଯାଇଥାଏ। ଆମ ଦେଶ ଆମ ଲୋକଙ୍କ ତୁଳନାରେ ଏମାନେ କେତେ ବଡ଼, କେତେ ଧନୀ। ଭାରତର ବଡ଼ ବଡ଼ ସହର ଯଥା—ବମ୍ବେ, କଲିକତା, ମାନ୍ଦ୍ରାଜ, ଦିଲ୍ଲୀ ମୁଁ ଦେଖିଚି; କିନ୍ତୁ ଏ ଲଣ୍ଡନ ସେମାନଙ୍କ ତୁଳନାରେ କେଡ଼େ ବିରାଟ, କେତେ ବିଭବଶାଳୀ !

ପାଶ୍ଚାତ୍ୟ ସଭ୍ୟତା ବୋଲି ଆମେ ଯାହା ଜାଣୁ ସେ ଆରମ୍ଭ ହୁଏ ଗ୍ରୀକ୍‌ମାନଙ୍କଠାରୁ। ସେମାନଙ୍କଠାରୁ ରୋମ୍ୟାନ୍‌ମାନେ ସେହି ସଭ୍ୟତାକୁ ଆଣି ତା'ର ପ୍ରସାର ଓ ଅଭିବୃଦ୍ଧି କଲେ। ରୋମ୍ୟାନ୍ ସାମ୍ରାଜ୍ୟର ପତନ ପରେ ପାଶ୍ଚାତ୍ୟ ଦେଶଗୁଡ଼ିକ ବହୁକାଳ ଏକ କଠିନ ଶୃଙ୍ଖଳା ମଧ୍ୟଦେଇ ଗତିକଲେ। ସେମାନଙ୍କ ପ୍ରଗତିରେ ଅନେକ

ବାଧା ପ୍ରତିବନ୍ଧକ ଦେଖାଦେଲା । ତା’ପରେ ବହୁଶତାବ୍ଦୀ ଅନ୍ତେ କୁପର ନିକସ୍, ଗାଲିଲିଓ, ନିଉଟନ୍‌ଙ୍କ ପରି ମହାମନୀଷୀମାନେ ଦେଖାଦେଲେ । ସେମାନେ ଏକ ନୂଆ ସଭ୍ୟତା, ନୂଆ ଜଗତର ପରିକଳ୍ପନା କଲେ । ସ୍ୱାଧୀନ ଚିନ୍ତାର ବାଟ ଖୋଲିଗଲା । ୧୮ଶ ଶତାବ୍ଦୀରେ ଯାନ୍ତ୍ରିକ ବିପ୍ଳବର ସୂତ୍ରପାତ ହେଲା, ବିଭିନ୍ନ ପ୍ରକାର ଶକ୍ତିର ସୂତ୍ର ମିଳିଗଲା । ସାଭେରି ଓ ନିଉକମ୍‌ମ୍ୟାନ୍ ପମ୍ପ ଇଞ୍ଜିନ୍ ଉଦ୍ଭାବନ କଲେ । ଓ୍ୱାଟ୍ ବାଷ୍ପୀୟ ଶକ୍ତି ପ୍ରୟୋଗର ବାଟ ଦେଖାଇଲେ । ଏହି ବାଷ୍ପୀୟ ଶକ୍ତି କୋଇଲା ଖଣି, ରେଲ ଓ ଜାହାଜରେ ବ୍ୟବହାର କରାଗଲା । ତା’ପରେ ଆସିଲା ବିଦ୍ୟୁତ୍ ଶକ୍ତି, ଇଣ୍ଟରନାଲ କମ୍ବଷ୍ଟନ୍ ଇଞ୍ଜିନ୍, ଗ୍ୟାସ୍ ଟରବାଇନ୍ ଜେଟ୍ ଇଞ୍ଜିନ୍, ରକେଟ୍ ଇତ୍ୟାଦି । ପୁଣି ଆସିଲା ଆଣବିକ ଶକ୍ତି । ଏହିସବୁ ଶକ୍ତି, ସୁବିଧାର ସାହାଯ୍ୟରେ ପାଶ୍ଚାତ୍ୟ ସଭ୍ୟତା ଗଢ଼ିଉଠିଲା, ବଢ଼ିଉଠିଲା । ଆମେ ଏସବୁରେ ପଛରେ ପଡ଼ିଗଲୁ । ଏବେ ସ୍ୱାଧୀନତା ପ୍ରାପ୍ତିପରେ ଭାରତ ଏହି ଯାନ୍ତ୍ରିକ ବିପ୍ଳବ, ଏହି ଶକ୍ତି-ବିପ୍ଳବ ଆରମ୍ଭ କରିଛି; କିନ୍ତୁ ପାଶ୍ଚାତ୍ୟ ଜଗତ ବହୁ ଶତାବ୍ଦୀ ଧରି ଏଥିରେ ଆମଠାରୁ ଖୁବ୍ ଆଗେଇଯାଇଛି । ଆମେ ତାକୁ ସହଜରେ ଧରିପାରିବୁ ବା ତା’ର ସମକକ୍ଷ ହେବୁ କିପରି ! ତେଣୁ ଆମକୁ ଧାଇଁବାକୁ ପଡ଼ିବ, ଦଉଡ଼ିବାକୁ ପଡ଼ିବ । ଦଉଡ଼ୁଛୁ ତ ! ମୁଁ ବି ଦଉଡ଼ି ଆସିଛି ଏହି ବିଲାତବାସୀଙ୍କ ଯାନ୍ତ୍ରିକ କୌଶଳ ଓ ବୈଷୟିକ ଚତୁରତାରୁ ଯତ୍‌ସାମାନ୍ୟ ଜ୍ଞାନ ଆହରଣ କରିବାକୁ । କେତେକାଳ ଏ ଧାଁଧପଡ଼ ଚାଲିବ ! କେବେ ବିଲାତ, ଜର୍ମାନୀ, ଆମେରିକା ପରି ଭାରତ ଶିଳ୍ପସମୃଦ୍ଧ ହେବ, ଆଧୁନିକ ବୈଷୟିକ ଜ୍ଞାନ ହାସଲ କରିପାରିବ ସେଇ ହେଉଛି ଆମ ଜନନାୟକମାନଙ୍କର ଚିନ୍ତା !

ଏଇ ତେବେ ବିଲାତ ! ଏଇମାନେ ବିଲାତବାସୀ ! ଯୁଗ ଯୁଗ ଧରି ଏମାନେ ପୃଥିବୀର ବହୁ ଅଂଶରେ ଆଧିପତ୍ୟ ବିସ୍ତାର କରି ସେମାନଙ୍କୁ ଶୋଷଣ କରିଛନ୍ତି । ତେଣୁ ଏ ବିଭବ, ଏ ଢଙ୍ଗ, ଏ ରଙ୍ଗ ! ହେଲେ ଏ ରଙ୍ଗ ରହିଲେ ହେଲା ! ଅନେକଟା ତ ମିଳେଇ ଗଲାଣି, ମଉଳି ଆସିଲାଣି । ତେବେ ବି ଏ ବିଲାତ । ବହୁ ଶକ୍ତି-ସମ୍ପଦର ଗନ୍ତାଘର ବିଲାତ !

●

## ଗାଁ ପରିମଳ ଧୋବା ଭୁଠରୁ

ଉତ୍ତର ଲଣ୍ଡନରେ ୨୩୫ ନମ୍ବର କାମ ଡେନ୍ ରୋଡ୍ । ସେଇଠି ଆମ ବନ୍ଧୁମାନେ ବାନ୍ଧିଥାନ୍ତି ବସା । ତିନ ମହଲା କୋଠା, ବେସ୍‌ମେଣ୍ଟ୍‌କୁ ଧରିଲେ ଚାରି ମହଲା । ଜିନିଷପତ୍ରତକ ଗାଡ଼ିରୁ ଓହ୍ଲାଇ ବନ୍ଧୁମାନେ ନିଜେ ଧରି ଘର ଭିତରକୁ ନେଲେ । ଏଠି ଆଉ କୁଲି, ରିକ୍‌ସାବାଲା ନାହାଁନ୍ତି ଯେ ଉଠା, ରଖା କରିବେ; ବେଳେବେଳେ ରାଗରେ, ଖାଉିରେ ଦୋଅକ୍ଷର ସମ୍ବୋଧନ କରି । ସବୁଟା ନିଜେ କରିବାକୁ ହେବ । ବାହାର ଘର ଦେଇ ଭିତରକୁ ପଶିଯାଉଛି, ହଠାତ୍ ଗୋଟେ ପଗୁ ଗନ୍ଧ ଆସି ନାକରେ ବାଜିଲା । ଦେଖିଲି ୬ । ୭ଟା ଡ୍ରମରେ କାଗଜପତ୍ର ଆଦି ଯାବତୀୟ ମଇଳା ଭର୍ତ୍ତି ହୋଇଛି । ପ୍ରବେଶ ଦ୍ୱାରରେ ଏ ପ୍ରକାର ପୂର୍ଣ୍ଣକୁମ୍ଭ ରଖାଯାଇଛି କାହିଁକି !

ଅନ୍ୟ ପଟେ ଗୋଟିଏ ମିଛା ପାଇଖାନା, ଆଉ ବାକି ଯାଗାତକ ବହୁତ ପୁରୁଣା ପୁରୁଣି ଜିନିଷରେ ଭର୍ତ୍ତି । ଆମ ଓଡ଼ିଶାରେ ଅନେକ ବ୍ରାହ୍ମଣ ଶାସନ ଏପରିକି ଅନ୍ୟ ଜାତି ଲୋକଙ୍କ ଗାଁରେ ଦେଖିଛି, ସାମନାରେ ଗୋରୁ ଗୁହାଳ, ଭିତରେ ମଣିଷ ରହିବା ଘର । ଏଠି ତ କଣ ସେଇ ବ୍ୟବସ୍ଥା । ସିଏ ଯେତେ ସଭ୍ୟ ହେଉନା କାହିଁକି ଦେହର ମଇଳା ବା ଅନ୍ୟାନ୍ୟ ଅଳିଆକୁ ସଫା କରିବା ଗୋଟେ ବିରାଟ ସମସ୍ୟା । ତାକୁତ ପୁଣି କେଉଁଠି ସାଇତି ରଖି ତାର ବିସର୍ଜନ କରିବାକୁ ପଡ଼ିବ । ଗାଁର ପରିମଳ ଧୋବା ଭୁଠରୁ । ଲଣ୍ଡନ ପରିମଳ ଆମ basement ଘରୁ ଅନୁଭବ କରିବା ପରେ ମନଟା କମିତି ଖଟା ଧରିଗଲା । ଏଇ ତେବେ ଲଣ୍ଡନ !

କାମଡେନ୍ ରୋଡ଼ରେ ଅପେକ୍ଷାକୃତ ଜନ ସମାଗମ କମ୍, ଘରଭଡ଼ା ଟିକିଏ ଶସ୍ତା । ତେଣୁ ଭାରତୀୟ, ପାକିସ୍ଥାନ ଓ ଆଫ୍ରିକାନ୍ ଲୋକେ ଏ ପଟେ ରହନ୍ତି ବହୁତ । ରାସ୍ତାଗୁଡ଼ିକ ଲଣ୍ଡନର ଅନ୍ୟ ରାସ୍ତାପରି ଚଉଡ଼ା । ଉଭୟ ପଟେ ପଦଯାତ୍ରୀଙ୍କ ପାଇଁ ପଦପଥ (footpath)ର ବ୍ୟବସ୍ଥା । ମୋର କିମିତି ଖାଇବା ପିଇବାରେ ମନ ନଥାଏ । ସାଙ୍ଗେ ସାଙ୍ଗେ ବାହାରକୁ ଆସି ଘରଆଡ଼ ଟିକିଏ ଚଲାଖି ଦେଖିନେଲି । ପ୍ରତି ଘରର ସାମନାରେ ଖଣ୍ଡିଏ ଖଣ୍ଡିଏ ଖୋଲା ଯାଗା । କେହି ସେଥିରେ କିଛି ବଗିଚା କରିଥାନ୍ତି, କିଏ ରଖିଥାନ୍ତି ତାକୁ ଫାଙ୍କା । ସେଥିରେ ଏଣୁ ତେଣୁ ଅନାବନା ଗଛ ଭର୍ତ୍ତି । ରାସ୍ତା କଡ଼ରେ ଠାଏ ଠାଏ କେତେ ବଡ଼ ବଡ଼ ଗଛ ଥାଏ । କଣ ତା’ ନା କେଜାଣି ! ଠିକ୍ ଆମ ଦେଶର ଶିମୁଳି ଗଛ ପରି ଦେଖାଯାଉଥାଏ । ଆଉ ଥାଏ କେତେକ ଛୋଟ ଛୋଟ ଗଛ ବୁଦା । ସେଥିରେ ବିଭିନ୍ନ ରଙ୍ଗର ଫୁଲ । ତାକୁ କିଏ ଲଗାଇଥାଏ କି ଆପେ ଆପେ ଉଠିଥାଏ କେଜାଣି ? ହେଲେ ଖୁବ୍ ସୁନ୍ଦର ଦିଶୁଥାଏ । ଭାବିଲି ବିଲାତର ଗଛପତ୍ର ଏମାନେ । ହେଲା ବା ସେ ଜଙ୍ଗଲୀ ବା ଅରମା, ଅସୁନ୍ଦର ଦିଶିବ କମିତି ! ହୁଏତ ସେଠି ଠିଆ ହୋଇ ଏମିତି ସବୁ କଣ ଦେଖୁଥାନ୍ତି, ଏଣୁ ତେଣୁ କଣ ଭାବୁଥାନ୍ତି ଆଉ କେତେବେଳେ ଯାଏ । କିନ୍ତୁ ପଛରୁ କିଏ ଜଣେ ବନ୍ଧୁ ଡ଼ାକିଲେ କଣ ଇମିତି ସବୁ ପିଇ ଯାଉଚନ୍ତି, ଚାଲନ୍ତୁ ଆଗ ଖାଇବା । ଖାଇବା କଥା ଶୁଣିଲାକ୍ଷଣି ପେଟ ଭିତରଟା କିମିତି ଭୋକରେ କଁ କଁ କରି ଉଠିଲା । ହଁ, ଖାଇବାଟା ତ ଆଗ ଦରକାର । ଜାହାଜରେ ଯାହା ଗଣ୍ଡେ ପେଟରେ ପଡ଼ିଥିଲା, ତା ପରେ ତ ଆହାର ନାସ୍ତି । ତେଣୁ ଆଗ ସେ ବ୍ୟବସ୍ଥାଟା କରାଯାଉ । “ଆତ୍ମ ସନ୍ତୋଷେ ମହାସିଦ୍ଧି ଜାଣିବ ଏହୁ ମହାବିଧି ।”

ତା’ ପରେ କୋଚ୍ ବାହାନରେ ବାହାରିଲୁ ରସେଲ ସ୍କୋୟାର୍ । କୋଚ କହିଲେ ଘୋଡ଼ାଗାଡ଼ି ନୁହେଁ, ବସ୍, ହେଲେ ସେଗୁଡ଼ାକ ଟ୍ରାମ୍ ଗାଡ଼ି ପରି ଇଲେକ୍ଟ୍ରିକ୍‌ରେ ଚାଲେ । ରଙ୍ଗ ପ୍ରାୟ ନାଲି, ସେଥିରୁ ଗୋଟାକ ପରେ ଗୋଟାଏ ତା’ ସାଙ୍ଗକୁ ଦୁଇ ତାଲା ବସ ବି ଚାଲିଥାନ୍ତି । ସେଇ କାମଡେନ୍ ରୋଡ଼ ଦେଇ ଉତ୍ତର ଷ୍ଟ୍ରିଟ ପଥରେ ଯାଉଥିବା କୋଚଟିଏ ଆସି ଘାଟିରେ ପହଞ୍ଚିବାରୁ ବନ୍ଧୁମାନେ ଲୀଳାୟିତ ଭଙ୍ଗୀରେ ଉପରକୁ

କୁଦାମାର ଉଠିଗଲେ । ଆଉ ଯେ କେତେଜଣ ସେଠି ଅପେକ୍ଷାରେ ଥିଲେ ସେମାନେ ବି ଉଠିଲେ । ହେଲେ ମୁଁ ମହା ସାବଧାନତାସହ ଧୀରେ ଧୀରେ ଉପରକୁ ବଢେଇଲି । କଣ କରିବି ! ଏ ତଆଁତେଇଁ କାମରେ ମୋର ବିଶେଷ ଅଭ୍ୟାସ ନଥିଲା । ଦ୍ୱିତୀୟତରେ ଲଣ୍ଡନର ପ୍ରଥମ କାଲୁଆ ପରିଶଟା ଦେହକୁ ଟିକିଏ ଜଡ଼ କରି ଦେଇଥିଲା । ତା'ପରେ ମୁଁ ଟିକେ ସବୁ କଥାରେ ବିଶେଷ ସାବଧାନ । ସାବଧାନ ଗଛରେ ପରା ମେହୁଆ ଫଳେ । ପଡ଼ାପଡ଼ି ଯାହାହେଉ ଅନ୍ତତଃ ପୈତୃକ ପ୍ରାଣଟାକୁ ତ ସ୍ୱଦେଶକୁ ଫେରାଇ ନେବାକୁ ପଡ଼ିବ ।

ପହଞ୍ଚିଲୁ ରସେଲ ସ୍କୋୟାରର ଏକ ଭାରତୀୟ ଭୋଜନାଳୟରେ । ନାମରେ ଭାରତୀୟ କିନ୍ତୁ ପ୍ରକୃତରେ ପାକିସ୍ଥାନୀ । ବିଲାତରେ ସାଧାରଣତଃ ଭାରତୀୟ ଓ ପାକିସ୍ଥାନୀଙ୍କୁ ଭାରତୀୟ ବୋଲି କହନ୍ତି । ବିନା ପରିଚୟ ନ ଦେଲେ କାହାକୁ ପାକିସ୍ଥାନୀ କାହାକୁ ଭାରତୀୟ ବୋଲି ବୁଝିବା କଷ୍ଟକର । କାରଣ ଚେହେରା ଆକୃତି ବ୍ୟବହାରରେ ସମସ୍ତେ ଏକା । ପାକିସ୍ଥାନୀ ହୋଟେଲଗୁଡ଼ିକ ନିଜକୁ ଭାରତୀୟ ବୋଲି ପରିଚୟ ଦବାରେ ସୁବିଧା ଅଛି । କାରଣ ଭାରତୀୟ ଗ୍ରାହକ ପାକିସ୍ଥାନୀ ଗ୍ରାହକଙ୍କଠାରୁ ଢ଼େର ବେଶୀ । ଏଠି ଯାବତୀୟ ଭାରତୀୟ ଖାନାପିନା ମିଳେ, ପଲାଉ, କୁର୍ମା, ଭାତ ରୁଟି ଡ଼ାଲି ତରକାରୀ ଆଦି । ବନ୍ଧୁମାନଙ୍କ ବିଚାର ଅନୁସାରେ ଆସିଲା ପରିଟା ଓ କୁରୁମା । ତା' ପରେ ଆସିଲା କଣ୍ଟା ଚାମୁଚର ପାଳି । ହାତ ଲଗାଇ ଖାଇବାର ଯାବତୀୟ ସ୍ୱାଧୀନତା ଥିଲେ ବି ଦେଖିଲି ବନ୍ଧୁମାନେ ଏଇ ମୁନିଆ, ଦାନ୍ତୁଆ ଯନ୍ତ୍ର ଧରି କସରତ ଚଲେଇଛନ୍ତି ଖାଣ୍ଟି ସାହେବୀ ଢଙ୍ଗରେ । ଭାବିଲି ବିଲାତି ମାଟି କ୍ୟା ନ କରେ କାମ ! ଗୋବରମାଟି ମାଟି ଉପରେ ଚେକା ପକାଇ କଂସାରେ ପଖାଳ ଖାଇବା ଲୋକଗୁଡ଼ାକ ଏତେ ଉଗ୍ର ସାହେବ ପାଲଟିଯାଇଛନ୍ତି । ଏତେ କଷ୍ଟ ନକଲେ କଣ ଚଳନ୍ତାନି ।

ଦେଶରେ ଥିଲାବେଳେ ମୋର କଲେଜ ସହପାଠୀ ବିଲାତ ଫେରନ୍ତା ଡକ୍ଟର ବ୍ରଜବନ୍ଧୁ ମିଶ୍ରଙ୍କ ଘରକୁ ସାନ୍ଧ୍ୟ ଭୋଜନର ନିମନ୍ତ୍ରଣ ପାଇ ଯାଇଥିଲି । ସେଠି ଦେଖିଲି ଏ କଣ୍ଟା ଚାମୁଚ କହାଣି ବନ୍ଧୁ ! ଅନେକ

ଏମିତ ବିଲାତ ଗୁଡ଼ାଇଲଣି, ପୁଣି ଏ ବିଭ୍ରାଟ କାହିଁକି ? ବନ୍ଧୁ, ବଡ଼ ବୁଦ୍ଧିମାନ୍ ଲୋକ, ଗୋଟିଏ ବିନା ନିୟମରେ ବିନା ସୂତ୍ରରେ ଅଙ୍କ କଷନ୍ତିନ । କହିଲେ ହାତରେ ଯାବତୀୟ ସଂକ୍ରାମକ ଜୀବାଣୁ ଲାଗିଥାନ୍ତି । ସବୁବେଳେ ବିଶୋଧକ ସାବୁନରେ ହାତ ଧୋଇବା ତ ସମ୍ଭବ ନୁହେଁ । ହେଲେ କଣ୍ଟା ଚାମୁଚକୁ ଥରେ ଟେକିଲ ପରେ କୌଣସି ଜୀବାଣୁନାଶକ ଔଷଧ ପାଣିରେ ପକେଇଦେଲେ, ଯେତେବେଳେ ଇଚ୍ଛା ସେତେବେଳେ ତାକୁ କାଢ଼ି ବ୍ୟବହାର କରିପାରିବ । ବାସ୍ତବିକ୍ ବଡ଼ ଉପାଦେୟ ବ୍ୟବସ୍ଥା ତ ! ତା ନହେଲେ ସାହେବମାନେ ଯାଙ୍କୁ ଆଶ୍ରା କରିଥାନ୍ତେ ।

ଏଇ କଣ୍ଟା-ଚାମୁଚ ପର୍ବ ଦେଇ ଯେ ମୋତେ ବିଲାତ ଶିକ୍ଷା ସାରିବାକୁ ହେବ ଏ କଥା ମୁଁ ଜାଣିଥିଲି । ଆଗରୁ ଜାହାଜରେ ଏ ବିଚିତ୍ର ଯନ୍ତ୍ରଗୁଡ଼ାକ ସହିତ କସରତ୍ ବି ଆରମ୍ଭ କରିଥିଲି । ବିଶେଷ ପୋଖତ ନ ହେଲେ ବି ଅନେକଟା ପାରଙ୍ଗମ ହୋ'ଇ ଉଠିଛି ବୋଲି ଭାବି ମନେ ମନେ ଆତ୍ମଗୌରବ ଅନୁଭବ କରୁଥିଲି । ହେଲେ ସବୁଟା ଯିମିତି ପାଶୋର ଯାଇଥିଲା । କଣ୍ଟା ଚାମୁଚ ଧରିବାରୁ ପୁଣି ସେ ଥତମତ ଅବସ୍ଥା, ପୁଣି ସେଇ ହରବର ଭାବ ଫେରି ଆସିଲା । କଣ୍ଟା ସାହାଯ୍ୟରେ ବାଁ ହାତରେ ମାଂସ ଖଣ୍ଡକୁ ଜବତ୍ କରି ଧରି ଡାହାଣ ହାତରେ ଛୁରୀ ନେଇ କାଟିଲା ବେଳକୁ ବାଁ ହାତ ହଲିଯାଏ । ତେଣୁ ମାଂସ କର୍ତ୍ତନ ସହଜରେ ସୁବିଧାରେ ହୋଇପାରେନି । ଏବ୍ୟ ପରିଟା ମାଂସ ତରକାରୀ ଆଗରେ ଥୁଆ ହୋ'ଇଥାଏ । ଭୋକରେ ପେଟ ଚିତ୍କାର କରୁଥାଏ । ଜିଭରୁ ଲାଳ ବୋହିବା ଉପରେ । ବନ୍ଧୁମାନେ ଏ କଣ୍ଟା ଚାମୁଚରେ ବେଶୀ ପାରଙ୍ଗମ ନହେଲେ ବି ପାରିଲାପଣ ଦେଖେଇ ଖାଇବା ଚଳେଇଥାନ୍ତି । ତାଙ୍କ ଠକ୍ ଠକ୍, ଠଣ୍ ଠଣ୍ କାରବାର ଭିତରେ ମଧୁର କଣ୍ଠରେ ମତେ କହିଲେ, ଖାଆନ୍ତୁ ଖାଆନ୍ତୁ ଆପଣଙ୍କୁ ଭୋକ ହେଉଥିବ । ଭୋକତ ହେଉଛି ନିଶ୍ଚୟ । କିନ୍ତୁ —

ଭାବିଲି ଏଠି ତ ସାହେବ କେହି ନାହାନ୍ତି । ସମସ୍ତେ ଭାରତ ବା ପାକିସ୍ଥାନର ଲୋକ । ଏଠି ହାତ ଲଗେଇ ଖାଇଲେ ଖରାପ କ'ଣ ? ବନ୍ଧୁ ମାନେ ଟିକିଏ ମୋ ସମ୍ବନ୍ଧରେ ହୀନ ଧାରଣା କରିପାରନ୍ତି । ତା କରନ୍ତୁ ।

ଉଦର ଶାନ୍ତି ପାଇଁ ଏ ସାମାନ୍ୟ ଅସମ୍ମାନଟା ବରଦାସ୍ତ କରାଯାଇପାରେ । ହଠାତ୍ ଦେଖିଲି ଭୋଜନକାରୀଙ୍କ ଭିତରୁ କେହି କେହି କଣ୍ଟାଲଗା ମାଂସର ସଦ୍‌ବ୍ୟବହାର କରିବାକୁ ଯାଇ ହାତ ଲଗେଇ ଦେଇଚନ୍ତି ତା ଦେହରେ । ହଁ, ସେଇ ହେଉଚି ପ୍ରକୃତ ପନ୍ଥା । କର୍ତ୍ତବ୍ୟ କରିବାରେ ଲୋକ ନିନ୍ଦାକୁ ଡରିଲେ ଆଗେଇବ କିମିତି ! ମୁଁ ବି ହାତ ଲଗେଇ ଖାଇବା ଆରମ୍ଭ କରିଦେଲି । ଟିକିଏ ହସ ମାଡ଼ିଲା, ଭାବିଲି ମୋ ପରି ଅଯୋଗ୍ୟ ଲୋକ ଆଉ ଅଛନ୍ତି ଦୁନିଆଁରେ ! ଏତେ ଏ କଣ୍ଟା-ଚାମୁଚ ବିଦ୍ୟାଟା ଅଭ୍ୟାସ କଲି । ପୁଣି ସେ ହାତଛଡ଼ା ହୋଇଗଲା । ଏଇ ସାମାନ୍ୟ କାମଟି ତ ସୁରୁଖୁରୁରେ କରି ପାରିଲିନି, ତେବେ ସାହେବ ହେବି କିମିତି ! ନିଜ ପ୍ରତିଭା ପ୍ରକାଶ କରିବାକୁ ଯାଇ ସମସ୍ତଙ୍କୁ ଶୁଣେଇ କହିଲି, ପ୍ରାକୃତିକ କଣ୍ଟା ଚାମୁଚ ଥାଉ ଥାଉ ଏ ଧାତୁ-ନିର୍ମିତ କଣ୍ଟା ଚାମୁଚର ଦରକାର କ'ଣ ! ଅନ୍ୟମାନେ ହସି ଉଠିଲେ !

କାଳକ ମୁଁ ଭାବପ୍ରବଣ । ଲଣ୍ଡନର ଏ ନୂଆ ପରିବେଶରେ ଇମିତି ବିହ୍ୱଳ ହେଇପଡ଼ିଲି ଯେ ମୋର ନିଜସ୍ୱ ଦୁଃଖଚିନ୍ତାଗୁଡ଼ାକ ପ୍ରାୟ ପାଶୋର ହେଇଆସିଲା । ଚାରିଆଡ଼େ ଯାହା ଦେଖୁଥାଏ ସେଥିରେ ମନପ୍ରାଣ ଢ଼ାଳିଦେଉଥାଏ । ନୂଆ ନୂଆ ଅଭିଜ୍ଞତା ଆହରଣ କରିବାରେ ମସ୍ତ ହୋଇ ଉଠିଲି । ହେଲେ ଏଣେ ତେଣେ ବୁଲିବୁଲି କରି ନାନା ଯାଗା ଦେଖି ରାତିକୁ ଯେତେବେଳେ କାମଡେ଼ନ୍ ଘୋଡ଼ ବସାରେ ପହଞ୍ଚି ବିଛଣା ଧରେ ଆଖି ଦି'ଟା ଛଳ ଛଳ ହୋଇ ଉଠେ । ସେ ଧୂଳିଶା ଭୂତଟା ପୁଣି ମୋତେ ଚାପିଧରେ । ପୁଣି ସେଇ ପୂର୍ବ ଚିନ୍ତା, କୁଆଡ଼େ ଆସିଲି, କୁଆଡ଼େ ଆଇଲି, କଣ କରିବି ଇତ୍ୟାଦି ।

ଶକ୍ତିବାବୁ, ସୁରବାବୁ ଓ ମୁଁ ଏକାଠି ମେସ୍ କରିଥାଉ । ସେମାନେ ମୋ ଆଗରୁ ସେଠାକୁ ଯାଇଥାନ୍ତି । ମୁଁ ପହଞ୍ଚିବା ପରେ ସେମାନଙ୍କ ମନରେ ଆନନ୍ଦ ଆଶ୍ୱାସନା ଜାଗିଉଠିଲା । ମୋର ଯିବାର ଦେଶ ଓ ଘର ଛାଡ଼ିବା ଅନେକ ଦିନ ହେଇଯାଇଥାଏ ତାଙ୍କୁ ଲାଗୁଥାଏ ସତେ ଯିମିତି ମୁଁ ସାଙ୍ଗେ ସାଙ୍ଗେ ତାଙ୍କ ବନ୍ଧୁବାନ୍ଧବ, ଜ୍ଞାତିସ୍ୱଜନଙ୍କ ଗହଣରୁ ଯାଇଚି । ମୋର ମାଧ୍ୟମ ଦେଇ ସେମାନେ ଯିମିତି ପାଉଥାନ୍ତି

ତାଙ୍କ ପ୍ରିୟଜନମାନଙ୍କ ସହିତ ପୁନର୍ମିଳନର ଆନନ୍ଦ । କେତେ ଖିଅ ଧରି କେତେ କଥା ଉଠାଉଥାନ୍ତି । ମୁଁ ତାର ଉତ୍ତର ଦେଉଥାଏ । ହେଲେ ଏ ଦୁଃଖଭରା କାହାଣୀର ଯିମିତି ଶେଷ ନାହିଁ । କେତେ ଦିନ କେତେ ରାତି ଧରି ଗପିଲେ ବି ସେ ଯିମିତି ନସରେ ।

ଥରେ କିଣ କିଛୁ କିଛୁ ବନ୍ଧୁମାନେ ଆରମ୍ଭ କଲେ ତାଙ୍କ ବିଲାତ ଆସିବା ପ୍ରଥମ ଅନୁଭୂତି କଥା । ଚିର ଆକାଙ୍‌କ୍ଷିତ ଏଇ ଲଣ୍ଡନ ସହରରେ ପହଞ୍ଚିବା ପରେ ଯିମିତି ତାଙ୍କର ଆସିଗଲା ମାନସିକ ଓ ଶାରୀରିକ ଜଡ଼ତା । ଜ୍ଞାତି ସ୍ୱଜନଙ୍କୁ ଛାଡ଼ିଯିବା ଦୁଃଖରେ ବହୁକାଳ ଯେମିତି ସେମାନେ ଅଭିଭୂତ ହୋଇପଡ଼ୁଥିଲେ । ରାତିରେ ଜମା ନିଦ ଆସେନି । ବିଲାତର ପାମାପ୍ତ ଭୋଜନରେ ମନ ରସେନି । ଅପେକ୍ଷା କରୁଥାନ୍ତି ଚିଠି ଯନ୍ତ୍ର ପରି । ମନର ଅଭିସାଧ ମେଣ୍ଟାନ୍ତି ଘରକୁ ଗୁଡାଏ ଚିଠିପତ୍ର ଲେଖି । ରାତିରେ ଦେଖାନ୍ତି କେତେ ବିଚିତ୍ର ସ୍ୱପ୍ନ । ସାତ ସମୁଦ୍ର ପାରି ହୋଇ ପୁଣି ଫେରି ଆସିଚନ୍ତି ତାଙ୍କ ଜ୍ଞାତି ସ୍ୱଜନଙ୍କ ଗହଣକୁ । କି ମନଭରା ଆନନ୍ଦ ! କି ପ୍ରାଣଥରା ସୁଖ । କିନ୍ତୁ ସାଙ୍ଗେ ସାଙ୍ଗେ ନିଦ ଭାଙ୍ଗିଯାଏ । ସାଙ୍ଗେ ସାଙ୍ଗେ ପୁଣି ଘୂରିଆସେ ବିଦେଶବାସର ଦୁଃଖ । ସେମାନଙ୍କୁ ସାନ୍ତ୍ୱନା ଦେବାକୁ ମୁଁ କରୁଥାଏ ମୋର ଚିରଅଭ୍ୟସ୍ତ ହାସ୍ୟଭରା, ବ୍ୟଙ୍ଗମୂଳକ ଟିପ୍‌ପଣୀ । କିନ୍ତୁ ଏହି ସରଳ ସହଜ କଥାଭାଷାର ଧାରେ ଧାରେ ଯିମିତି ବ୍ୟଥାଭରା ଦୀର୍ଘଶ୍ୱାସ ମିଶି ରହିଥାଏ, ଆଖିରୁ ଅଜାଣତରେ ଲୁହ ଦୁଇଟୋପା ବୋହି ପଡ଼େ । ମନେ ପଡ଼ିଯାଏ Charles Lambଙ୍କର ସେ ବିଖ୍ୟାତ ଉକ୍ତିଟି— We are all martyrs but try to jest lest we may weep.

ମୁଁ ମଧ୍ୟ ପ୍ରଥମେ ପ୍ରଥମେ ସେଇ ଦୁଃସ୍ୱପ୍ନ ବା ସୁସ୍ୱପ୍ନ ଦେଖିଲି, ଠିକ୍ ସୈନିକର ସ୍ୱପ୍ନ ( Soldier's dream) ପରି । ପ୍ରିୟ ପରିବାରଙ୍କୁ ବହୁ ଦୂରରେ ନିଜ ଘରେ ଛାଡ଼ି ଯୁଦ୍ଧକ୍ଳାନ୍ତ ସୈନିକ ଶୋଇପଡ଼ିଲା ତାର ଅମସୃଣ ତୃଣ ଶଯ୍ୟାରେ । କୌଣସି ଦେଶର ସେନା-ଛାଉଣୀ ମଧ୍ୟରେ । ଆଖପାଖରେ ମୃତାହତଙ୍କ କରୁଣ ଚିତ୍କାର ଶୁଣାଯାଉଥାଏ । ନିଦରେ ଆଖି ଦୁଇଟା ବନ୍ଦ ହେବା ଆଗରୁ ତାର ବ୍ୟଥିତ ମନରେ ଜାଗି ଉଠିଲା ବନ୍ଧୁ ପ୍ରିୟଜନଙ୍କ ସରସ ସୁନ୍ଦର ରୂପ ଓ ତାଙ୍କ ସହିତ ଜଡ଼ିତ କେତେ ଅପାଚସୋରା ସ୍ମୃତି ! ସ୍ୱପ୍ନ ରାଇଜର କାଉଁରି ପରଶରେ ସେ ଦେଖିଲା ପୁଣି

ସେ ଫେରିଯାଇଛି ତାର ଚିର ମଧୁମୟ, ଚିର ଆନନ୍ଦଦାୟକ ଘରକୁ । ବିଚ୍ଛେଦରେ କେତେ ଦୁଃଖ, ମିଳନରେ କେତେ ଆନନ୍ଦ ! ପ୍ରିୟା, ପ୍ରିୟ ପରିଜନ କାକୁତି ମିନତି କଲେ ଆଉ ଘର ଛାଡ଼ି ଫେରି ନଯିବାକୁ । ସେ ଭାବାବେଗରେ ପ୍ରତିଶ୍ରୁତି ଦେଲା, ନା ସେ ଯିବନି ତାଙ୍କୁ ଛାଡ଼ି । ସମସ୍ତଙ୍କ ମୁହଁରେ ଫୁଟି ଉଠିଲା ହସର ସୁନେଲି ଗନ୍ଧ । ପ୍ରିୟା ନୟନରୁ ବିଚ୍ଛୁରିପଡ଼ିଲା ଅଶ୍ରୁଜ ପ୍ରସ୍ରବଣ । କିନ୍ତୁ ନିଦ୍ରା ଭଙ୍ଗରେ ସମସ୍ତ ସୁଖସ୍ୱପ୍ନ ଉଭେଇଗଲା । ସକାଳ ହେଲାରୁ ସେ ଦେଖିପାରିଲା ପୁଣି ସେଇ ଯୁଦ୍ଧ ଭୂମି, ପୁଣି ସେ ହୃଦୟବିଦାରକ କୋଳାହଳ, ପୁଣି ସେ ହାଣକାଟର ଭୟଙ୍କରୀ ଲୀଳା ।

"Me thought from the battle field's
dreadful array ?
Far far I had roamed on desolate track.
It was autumn and sunshine shown the way
To the home of my fathers that
welcomed me back.
I fled to the pleasant fields traversed
so often
In life's morning march when my
bosom was young.
× × × ×
Then pledged we on the wine cup and
fondly swore
From my home and weeping friends
never to part.
My little ones kissed me a thousand times
o'er.
And my wife sobbed aloud in fullness of
her heart
stay, stay with us, rest thou art weary and
worn
But sorrow returned with the drawing of
the morn."
× × ×

ମୋଟାମୋଟି ମୋର ବି ସେଇ ଅବସ୍ଥା । ଶେଷରେ ଯେତେବେଳେ ଗଡ଼ ଯେତେ କଣ୍ଡ଼ ଲେଉଟାଇଲେ ବି ନିଦ ଆସେନି । ବହୁଚେଷ୍ଟା ପରେ ଆଖି ବୁଜିଲାକ୍ଷଣି ଦେଖେ ସ୍ୱପ୍ନ ହଠାତ୍ ପଳାଇ ଯାଇଚି ଘରକୁ । ଘରଆଡ଼େ ଆନନ୍ଦର ଜୁଆର । ସମସ୍ତେ ମହାଖୁସି । ତା'ପରେ ମନେ ପଡ଼ିଯାଏ ବିଲାତ ଶିକ୍ଷା ନସାରି ଚାଲିଆସିବା ଠିକ୍ ହୋଇନି । ପୁଣି ଯିବାକୁ ହେବ କିନ୍ତୁ ତା' କିମିତି ସମ୍ଭବ ! ପୁଣି ପାଉଣ୍ଡ ଆଉ ପାସ୍‌ପୋର୍ଟର ବ୍ୟବସ୍ଥା କ'ଣ ସହଜ ! ସାଙ୍ଗେ ସାଙ୍ଗେ ନିଜକୁ ଶହ ଧିକ୍କାର କରିବସେ । ବିରକ୍ତ ହୋଇ ଉଠିପଡ଼େ । ନିଦ ମଳମଳ ଆଖିରେ ଚାରିଆଡ଼କୁ ଠିକିଏ ଦେଖିନିଏ । ମୁଁ ପ୍ରକୃତରେ କେଉଁଠି ? ଆଉ କିଛି ନ ହେଲେ ବି ବେସ୍‌ମେଣ୍ଟର ସେ ପରିଚିତା ବାସ୍ନା କବାଟ ଫାଙ୍କରେ ଶିର ଶିର ଖସିଆସି ନାକକୁ ସୂଚାଇଦିଏ—ଏ ୨୩୫ ନମ୍ବର କାମଡ଼େନ୍ ରୋଡ଼୍ । ସତେତ ! ତେବେ ଠିକ୍ ଅଛି ।

ପ୍ରତିଦିନ ଭୋରରୁ ଉଠିପଡ଼ି ନିତ୍ୟକର୍ମ ସାରେ । ସବୁଦିନ ଗାଧୋଇବା କଥା ତ ନାହିଁ । ବନ୍ଧୁମାନେ ଅଣ୍ଡା, ପାଉଁରୁଟି, ମାଖନ ଆଣି ରଖିଥାନ୍ତି । ସେଥିରେ ଜଳପାନ ଚଳେ । ଆଉତ ଘରକଥା ନାହିଁ । ଚା'ପାଣି ବା ଟେବୁଲ ପାଣି ହେବ । ଥାଳରେ ସଜାଇ କରି ବାଢ଼ିଦେବେ ଖାଇବାକୁ ଶ୍ରୀମତୀ ବା ପୂଜାରୀ । ବରାଦ ଥିବ ଲୁଚି, ଦେଉଳ ଡାଲି କି ପରଠା ଆଉ ସନ୍ତୁଳା ! ବନ୍ଧୁମାନେ ଏଥି ଭିତରେ ପାଚକ କାମଟା ନିଜେ ନିଜେ କରିବାକୁ ଅଭ୍ୟାସ କରିଦେଇଥାନ୍ତି । ମୁଁ ମଧ୍ୟ ନିଜର ପାରିବାପଣ ଦେଖାଇ ତାଙ୍କୁ ସେଥିରେ ସାହାଯ୍ୟ କରେ ।

ଶ୍ରୀମାନ ଶକ୍ତି ପ୍ରସାଦଙ୍କର ଚା' ପାନରେ ସ୍ପୃହା ନ ଥାଏ । କିନ୍ତୁ ସୂର୍ଯ୍ୟନାରାୟଣ ଏଥିରେ ଅଦ୍ୱିତୀୟ । ଏହାର ନମୁନା ସେ ବସାରେ ପହଞ୍ଚିବା ମାତ୍ରେ ପାଇଥିଲି । ସୂର୍ଯ୍ୟନାରାୟଣଙ୍କର ବିଛଣା ଚାରିପଟେ ଅନେକ ଚା' କପ୍ ସାମାନ୍ୟ ପୁରୁଣା ପଚ୍ଚ ଚା' ପାଣି ସହ ପଡ଼ିଥାଏ । ଗୋଟି ଗୋଟିକରେ ପୋଡ଼ା ସିଗାରେଟ୍‌ର ଭଗ୍ନାଂଶ, ତା'ର ପାଉଁଶ ଓ ପାନ ଶିଠା ଇତ୍ୟାଦି । କଥାଟା ହଠାତ୍ ବୁଝି ପାରିଲିନି । କିନ୍ତୁ ଶକ୍ତିବାବୁ ବୁଝେଇଦେଲେ ଯେ ଏଟା ସୁରିର ଅଭ୍ୟାସ । ଯେତେବେଳେ ଦରକାର ଚା' ଖାଏ । କିନ୍ତୁ ସାଙ୍ଗେ ସାଙ୍ଗେ କପ୍ ପିଆଲା ଧୋଇବାକୁ କେହି ନାହିଁ, ଦରକାର ବି ହୁଏନି । ଯେତେବେଳେ ପୁଣି ଦରକାର ହୁଏ ଗୋଟିଏ

ସେଥିରୁ ସଫାକରି କାମ ଚଳାଯାଏ । ତା'ପରେ ପୁଣି ସେ ସେଠି ପଡ଼ିରହେ ତାର ପାଳି ଆଉଥରେ ଆସିବାଯାଏ । ବାଃ ଚମତ୍କାର ବ୍ୟବସ୍ଥା ତ ! ଏ ମୋତେ ଗୋଟିଏ ନିଖୁଣ ଶ୍ରମ-ସଞ୍ଚୟୀ ଯୋଜନା ପରି ମନେହେଲା । ଯେ କେତେଖଣ୍ଡ କପ୍ ପିଆଲା ଅଛି ଏବଂ ଯେଉଁ ହାରରେ ସେମାନେ ଚା' ଲାଗି ହେଉଛନ୍ତି, ତାକୁ ସବୁ ସାଙ୍ଗେ ସାଙ୍ଗେ ଧୋଇଲେ ବହୁତ ପରିଶ୍ରମ । ତେଣୁ ଆବଶ୍ୟକ ମତେ କପ୍-ମାର୍ଜନ କାର୍ଯ୍ୟ ହେଉଛି । ମନ୍ଦ କ'ଣ !

ସୁରବାବୁଙ୍କ ପ୍ରତିଭାର ଆଉ କେତୋଟା ନମୁନା ବି ଆମ ବସାରେ ଦେଖିବାକୁ ମିଳୁଥାଏ । ମୁଁ ଯେ ଗୁଣ୍ଡି, ଗୁଡ଼ାଖୁ ତାଙ୍କପାଇଁ ଘରଠୁ ନେଇକରି ଯାଇଥିଲି ତାର ସଦ୍‌ବ୍ୟବହାରର ସୂଚନା କ୍ରମେ ଚାରିଆଡ଼େ ବିଛୁରି ପଡ଼ୁଥିଲା ! କାନ୍ଥ, କବାଟ, ଝରକାରେ ଚୂନ ଖଇରର ଦାଗ ଭରିଯାଇଥାଏ । କେଉଁଠି ଗୁଡ଼ାଖୁର କପୂଦଂଶ କାଗଜ ଖଣ୍ଡିକରେ ପଡ଼ିଥାଏ ।

ଖଣ୍ଡିଏ ଟେବୁଲ ଉପରେ ରଖାଯାଇଥାଏ ପାନଭଙ୍ଗାର ଯନ୍ତ୍ରପାତି ଓ ଆସବାବ । ବାସ୍ତବିକ୍ ସୁରବାବୁଙ୍କ ଆସର ବଡ଼ କୌତୂହଳପୂର୍ଣ୍ଣ ମନେହେଲା । ମୋଟାମୋଟି ଆମ କ୍ୟାମ୍ପରୋଡ଼ ବସାଟା ଓଡ଼ିଆଙ୍କ ବ୍ୟସନ ବିଳାସର ଗୋଟାଏ ପ୍ରଦର୍ଶନୀ ବା ଯାଦୁଘର ପରି ମନେ ହେଉଥାଏ ।

ଗୋଟିଏ ଘଟଣା ! ମୁଁ କଲିକତାରେ ପହଞ୍ଚିବାର ଅନେକ ଦିନ ପରେ ଆମ ବସାରେ ଗୋଟିଏ ଚୋରି ହେଲା । ଶ୍ରୀକାନ୍ତବାବୁ ଘରକୁ ଆସିବାକୁ କିଛି ଜିନିଷପତ୍ର କିଣି ରଖିଥାନ୍ତି ସାଙ୍ଗରେ ଆଣିବେ ବୋଲି । କେହି ଜଣେ ଦୁର୍ଦ୍ଦାନ୍ତ ଘର ଭିତରେ ପଶି ସେସବୁକୁ ଚୋରିକରି ନେଇଗଲା । ପୋଲିସ୍‌ଙ୍କୁ ଖବର ଦିଆଯିବାରୁ ସେମାନେ ସାଙ୍ଗେ ସାଙ୍ଗେ ଆସି ବୀର ଦର୍ପରେ ପହଞ୍ଚିଗଲେ । କିନ୍ତୁ ଘର ଭିତରେ ଏ ଗୁଣ୍ଡି, ଗୁଡ଼ାଖୁ, ଚୂନ, ଖଇର ଆଦି ଦେଖି ଏକବାରେ ବିବ୍ରତ ଓ ସ୍ତମ୍ଭୀଭୂତ ହୋଇଗଲେ । ଏସବୁ କ'ଣ, କୁଆଡ଼ୁ ଆସିଲା ଇତ୍ୟାଦି ବାକ୍ୟବାଣ ପ୍ରୟୋଗ କରିବାକୁ ଆରମ୍ଭ କରିଦେଲେ । କୌଣସି ବିଷାକ୍ତ କି ବିସ୍ଫୋରକ ଦ୍ରବ୍ୟ ବୋଲି ଭାବିଲେ କି ଏହା ପଛରେ କିଛି ଷଡ଼ଯନ୍ତ୍ର ଅଛି ବୋଲି ସନ୍ଦେହ

କଲେ, କେଜାଣି ସାଙ୍ଗେ ସାଙ୍ଗେ ଗୁଡ଼ିପିଡ଼ି ହୋଇ ପଳେଇଗଲେ । ଫଳରେ ପୋଲସ୍ ଅନୁସନ୍ଧାନ ବାଏଁ ବାଏଁ ଉଡ଼ିଗଲା ।

ସବୁଦିନ ରାତି ପରେ ସୁରବାବୁ ସବୁଗରେ ମୋତେ ପାନ ଖଣ୍ଡିଏ ପରଷି ଦିଅନ୍ତି । ସ୍ୱର୍ଗସୁଖ ମିଳିଯାଏ । ଜନ୍ମଭୂମିର ଘର-ପରିବେଶ କ୍ଷଣକ ପାଇଁ ଆସି ମନକୁ ସରସ କରିଦିଏ । ସାଙ୍ଗରେ ଯାହା ଜିନିଷପତ୍ର ଗୁଣ୍ଡି, ଗୁଡ଼ାଖୁ, ଆଚାର ଆଦି ଆକାରରେ ଆଣିଥିଲି ତାକୁ ଲଣ୍ଡନରେ ପହଞ୍ଚିବା ମାତ୍ରେ ଉପସ୍ଥିତ ବନ୍ଧୁମାନଙ୍କୁ ବାଣ୍ଟି ଦେଇଥିଲି । ବାକି ଯାହା ଥିଲା ସେତକ ଯଥା ସ୍ଥାନରେ ପହଞ୍ଚେଇ ଦେବାର ବ୍ୟବସ୍ଥା ହେଲା । ମୋର London School of Printingରେ ପାଠ ପଢ଼ିବାର କଥା । ସେଇଟା ଖୋଲିବାକୁ କିଛିଦିନ ବାକିଥାଏ । ତେଣୁ ବୁଲାବୁଲି ପାଲଟା ଯୋଗରେ ଚାଲିଲା ।

ଲଣ୍ଡନର ଚାରିଆଡ଼େ ବୁଲି ଦେଖିବାକୁ ମନ ବିକଳ ହେଉଥାଏ । ଭାବିଲି କେତେଟା ଭଲ ଯାଗା ଆଗ ଦେଖିପକାଏ, ଯଥା—ପିକାଡ଼ିଲି ସର୍କସ ( Piccadilly Circus ), ଲଣ୍ଡନ ଯାଦୁଘର ( London museum ), ବକିଂହାମ୍ ପାଲେସ୍ ( Bunkingham palace ) ଓ୍ୱେଷ୍ଟ ମିନଷ୍ଟର ଆବି ( Westminister Abbey ) ପାର୍ଲିଆମେଣ୍ଟ ହାଉସ୍ ( Houses of parliament ), ସେଣ୍ଟ ପାଲସ୍ କାଥେଡ୍ରାଲ (St. Pauls cathedral) ଇତ୍ୟାଦି । ବନ୍ଧୁମାନେ କହିଲେ ଏକାଦିନକେ ଏତେଆଡ଼ ଯିବା ସମ୍ଭବ ନୁହେଁ । ତେଣୁ କଥା ହେଲା, ବସ୍ ବା କୋଚ୍ (trolley bus)ରେ ବସି ରାସ୍ତାରେ ରାସ୍ତାରେ ଚାରିଆଡ଼େ ଗୋଟେ ପରିକ୍ରମା କରିଯାଉ । ପରେ ଗୋଟି ଗୋଟି ସବୁ ଭଲ କରି ଦେଖାଯିବ । ଶୁଣି ଆଶ୍ଚର୍ଯ୍ୟ ହେଲି ଯେ ଯଦିଓ ବନ୍ଧୁମାନେ ମୋର ଅନେକ ଆଗରୁ ବିଲାତ ଆସିଥିଲେ ସେମାନଙ୍କ ଭିତରୁ ଅଧିକାଂଶ କେବଳ ଲଣ୍ଡନର ରାସ୍ତାରେ ଯିବା ଆସିବା କରିବା ଛଡ଼ା କୌଣସି ବିଖ୍ୟାତ ସ୍ଥାନ ବା ଅନୁଷ୍ଠାନ ଦେଖିନାହାନ୍ତି । କେବଳ ସେମାନେ ନୁହନ୍ତି ଯେତେକ ବିଲାତ ଆସନ୍ତି ସେମାନଙ୍କ ଭିତରୁ ଅଧିକାଂଶଙ୍କର ଏଇ ଅବସ୍ଥା । କି ବିଚିତ୍ର ! ଯାହାପାଇଁ ଏତେ ପ୍ରାଣପାତ ତାକୁ ପୁଣି

ଏତେ ହତାଦର ! ଖାଲି ହତାଦର। ନୁହେଁ ପୂରା ଅବଜ୍ଞା ଦୃଷ୍ଟିରେ ଏସବୁ ଦେଖୁଥାନ୍ତି ସୁରବାବୁ । ହାତରେ ଖଣ୍ଡେ କଣ ବହି, କାନରେ ପାନ, ଓଠରେ ଅର୍ଦ୍ଧଦଗ୍ଧ ସିଗାରେଟ୍‌କୁ ଗୃପିଧରି ସନ୍ଦେହିସ୍ ତାଙ୍କ ଆସନରେ ବସି ମାଡଗିଷା ଦେଲା ପରି କହନ୍ତି, କଣ ଏତେ ସବୁ ଜଞ୍ଜାଳରୁ ମିଳିବ ! ବିଲାତ ଆସିଚ, କଣ ଟିକିଏ ପାଠ ପଢ଼ି ପାଡ଼ି ଦେଶକୁ ଫେରି । ବାସ୍, ତା'ପରେ ସେ ନୀରବ ରହନ୍ତି । ଆମେ ବୁଲି ବାହାରୁ ।

ଶ୍ରୀଯୁକ୍ତ ରାଧାନାଥ ମିଶ୍ର ସପରିବାରରେ ଆମ ବିଖ୍ୟାତ ବାସଭବନର ଉପର ମହଲାରେ ଥାନ୍ତି । ତାଙ୍କର ସୁନ୍ଦର ଓ ଅଳିଅଳି ପିଲାଗୁଡ଼ିଙ୍କୁ ଦେଖି ସେମାନଙ୍କ ପ୍ରତି ମୋର ପ୍ରଗାଢ଼ ସ୍ନେହ ମମତା ଜାଗି ଉଠିଥାଏ । ସତେ ଯେମିତି ସୁଦୂର କଟକ ସହରରେ ଛାଡ଼ି ଯାଇଥିବା ମୋ ପୁଅ ଝିଅଙ୍କ ରୂପ ମୁଁ ସେମାନଙ୍କ ଭିତରେ ଦେଖୁଥିଲି । ରାଧାନାଥ ବାବୁ ଓ ତାଙ୍କ ଶ୍ରୀମତୀ ମଝିରେ ମଝିରେ ଆମ ସାଙ୍ଗରେ ଯୋଗ ଦେବାରୁ ଆମ ଭ୍ରମଣପର୍ବଗୁଡ଼ାକ ବେଶ୍ ମନୋରମ ଅଭିଯାନରେ ପରିଣତ ହେଲା ।

ଲଣ୍ଡନ ଦେଖିବାକୁ ମୋ ମନ ଭାରି ବ୍ୟାକୁଳ ହୋଇଉଠିଥାଏ ଏ ପ୍ରଥମ ପରଶ, ପ୍ରଥମ ଅଭିଜ୍ଞତା, ପ୍ରଥମ ପ୍ରଣୟ ପରି ମୋତେ ଅଥୟ କରି ପକାଉଥାଏ । ଦିନେ ଦଳବାନ୍ଧି ବୁଲି ବାହାରିଥାଉ । ମନରେ ମୋର ମହାନନ୍ଦ । ଆଗରୁ ବସ୍‌ଷ୍ଟାଣ୍ଡରେ କେତେକ ଲୋକ ଧାଡ଼ି ଧରି ଠିଆ ହୋଇଥାନ୍ତି । ଆମେ ବି ସେଥିରେ ଯୋଗ ଦେଲୁ । ଦେଖିଲି କ୍ୟୁ କାଏଦାଟା ଲଣ୍ଡନରେ ବେଶ୍ ଚଳେ । ଆମ ଆଗରୁ ଯେଉଁମାନେ ଷ୍ଟାଣ୍ଡରେ ପହଞ୍ଚି ଯାଇଥିଲେ ସେମାନେ ଧାଡ଼ିରେ ଠିଆ ହୋଇ ଖବର କାଗଜ କି ଅନ୍ୟ କୌଣସି ଉପନ୍ୟାସ ବା ପତ୍ରପତ୍ରିକା ପଢ଼ୁଥାନ୍ତି । ହେଲେ ସମସ୍ତେ ନୀରବ । କେହି କାହାକୁ କିଛି କହୁ ନାହାନ୍ତି । ବଡ଼ ଆଶ୍ଚର୍ଯ୍ୟ ! ଏତେଗୁଡ଼ିଏ ଲୋକ ଏକାଠି ଏତେ ସମୟ ରହୁଚନ୍ତି ହେଲେ କେହି କାହାକୁ ପଦେ କିଛି କହୁନାହାଁନ୍ତି । ଆମଦେଶ ହୋଇଥିଲେ ପାଟି ଗୁଣ୍ଡି ହସ ଗପରେ ଜାଗା ଉଚ୍ଛୁଳି ପଡ଼ୁଥାନ୍ତା । ଖାଲି ବସ୍ ଷ୍ଟାଣ୍ଡରେ ଲୋକଙ୍କ ମନୋଭାବ ଇମିତି ନୁହେଁ—ଟିଉବ ଟ୍ରେନ୍, ଟାକ୍ସି, ବସ୍ ଯେଉଁଥିରେ ହେଉବ ବୃଦ୍ଧ ବୃଦ୍ଧା, ଯୁବକ ଯୁବତୀ, ବାଳକ ବାଳିକା ଯାହାକୁ ଦେଖିବ

କାହା ହାତରେ ଖବର କାଗଜ, ପତ୍ରପତ୍ରିକା ଥାଏ ତ କାହା ହାତରେ କିଛି ନାହିଁ । ହେଲେ ସମସ୍ତେ ଗୁମ୍ ହୋଇଥିବେ । କେତେବେଳେ କମିତି ସାଙ୍ଗସାଥୀ ଥିଲେ ତାଙ୍କୁ ପଦେ ଅଧେ କଣ କହନ୍ତି । ପୁଣି ସେ ପୂର୍ଣ୍ଣବାକ୍ୟ ନୁହେଁ, ଖଣ୍ଡିଆ ଏବଂ ଅସ୍ପଷ୍ଟ । ମନ ମୋର ପ୍ରଥମେ ବିକଳ ହୋଇ ଉଠିଲା, କେଉଁଠି ସୁବିଧାରେ ଜଣେ ଇଂରେଜ ଲୋକଙ୍କୁ ପାଇଲେ ତାଙ୍କ ସାଙ୍ଗେ କଥାବାର୍ତ୍ତା ଜମେଇ ଦେବାକୁ ଏବଂ ତାଙ୍କର ମନୋଭାବ ବୁଝିବାକୁ । କଣ ସେମାନଙ୍କ ଚିନ୍ତାଧାରା, ପୃଥିବୀର ବିଭିନ୍ନ ସମସ୍ୟା ସମ୍ବନ୍ଧରେ ତାଙ୍କର ମତାମତ କଣ ! କିନ୍ତୁ କ'ଣ ହେବ, ଆରବ ଦେଶର ମମିଙ୍କ ପରି ଏମାନେ ଯେ ନୀରବ ନିଶ୍ଚଳ । ମୁଁ ଭାବ ବିହ୍ୱଳ ହୋଇ କେତେ କଣ ଗପିଯାଏ । କିନ୍ତୁ ଉତ୍ତର ନାସ୍ତି । କେତେବେଳେ କିଏ ଟିକିଏ ହସି ଦିଅନ୍ତି । ଅକାଳ ମେଘରେ ବିଜୁଳି ପରି କ୍ଷଣକ ପାଇଁ ସେ ଦେଖାଦେଇ ଉଭେଇଯାଏ । ସେମାନଙ୍କର ଏତାଦୃଶ ସଙ୍କୁଚିତ ଚୁପ୍‌ଚାପ୍ ଭାବ ଦେଖି ଭାବିଲି ଏମାନଙ୍କ ସଙ୍ଗେ ଚଳିବା ମହାକଷ୍ଟ । ପଦେ ଅଧେ ଖୋଲି କଥାବାର୍ତ୍ତା ବି କରୁନାହାନ୍ତି । ବାକ୍ୟ ବ୍ୟୟରେ ଏତେ କୃପଣ ଏମାନେ !

ଗୋଟିଏ ନାଲି ଦୋତାଲା ବସ୍‌ରେ ବସି ସହର ପରିକ୍ରମାରେ ବାହାରିଥାଉ । ଅଳ୍ପ ଦୂରରେ କ୍ୟାମଡ଼େନ୍ ଟାଉନ୍ । ଲଣ୍ଡନ ସହର ଭିତରେ ଇମିତି ଗୋଟିଏ ଟାଉନ୍ ରହିବାର ଅର୍ଥ ବୁଝିହେଲାନି । ଭାବିଲି ବୋଧହୁଏ ଯେତେବେଳେ ଲଣ୍ଡନ ସହରର କଳେବର ବଢ଼ି ଗଲା ଏବଂ ଆଖପାଖର ଅଞ୍ଚଳ ଏଥିରେ ମିଶିଗଲା ସେଥିରେ ଥିବା ଛୋଟ ସହର ଗୁଡ଼ିକର ନାଁ ସେମିତି ରହିଗଲା ।

କଥା ଉଠିଲା କ୍ୟାମଡ଼େନ୍ ଟାଉନରେ ଓହ୍ଲାଇ ମାଟିତଳ ରେଲ ଗାଡ଼ି (Under ground train)ରେ ଯିବାକୁ । ମୁଁ କହିଲି ସେ ସୁଡ଼ଙ୍ଗ ଭିତରେ ଯାଇ ଲାଭ କଣ ? ସେଥିରେ ତ ସହର ଦେଖା ହୋଇପାରିବନି । ବରଂ ଲଣ୍ଡନର ପାତାଳପୁରୀ ପରେ ଦେଖାଯିବ । ଆଜି ଦେଖାଯାଉ ଏ ଜନପଦ । ସେଇକଥା ହେଲା । Oxford Street, Piccadilly Circus, Charing Cross ଆଡ଼େ ବୁଲିଲୁ । ଖାଲି ଆଖି ପକେଇଦବା କଥା । Oxford street

ରେ ବହୁତ ସୁନ୍ଦର ସୁନ୍ଦର ଦୋକାନ, ସେଠି ବହୁ ପ୍ରକାର ଜିନିଷ ବିକ୍ରୀ ହୁଏ, ବହୁ ଲୋକ ରୁଣ୍ଡ ହୁଅନ୍ତି, ଏପରି ସରସ ବର୍ଣ୍ଣନା ବନ୍ଧୁମାନଙ୍କଠାରୁ ଶୁଣି ମନ ହଉଥାଏ ଓହ୍ଲାଇ ଚଞ୍ଚିଏ ଟିକେ ନେତ୍ର ପବିତ୍ର କରିଦେଇ ଆସିବି କି ! କିନ୍ତୁ ଏକାଦିନେ ଏତେସବୁ କିଣ ସମ୍ଭବ ! ହେଲେ Piccadilly Circus ଠାରେ ମନ ଆଉ ସମ୍ଭାଳି ହେଲାନି । କଥା ହେଲି ସେଇଠାରେ ଓହ୍ଲାଇ ଖିଆପିଆର ବ୍ୟବସ୍ଥା କରିବୁ । ସେଠି ଟିକିଏ ବୁଲିବୁଲି କରି, Hyde Parkକୁ ଯିବୁ । ନିଶ୍ଚୟ, ନିଶ୍ଚୟ । ଟିକିଏ Hyde Park ଦେଖି ଆସିବା ନା ! ମୁଁ ଉଚ୍ଛ୍ୱସିତ ଆନନ୍ଦରେ କହିଲି । ଇନ୍ଦ୍ରପୁରୀକୁ ଆସି ନନ୍ଦନ କାନନର ମୋହ କିଏ ଛାଡ଼େ !

Piccadilly Circus ବୋଲି ଯାହାକୁ କହନ୍ତି ସେଟା ଖଣ୍ଡେ ଖୋଲା ଗୋଲେଇ ଜାଗା । ମଝିରେ ଗୋଟିଏ ଚଉତରା ବା ପିଣ୍ଡୀ। ଚଉତରା ଉପରେ ଗୋଟିଏ ପକ୍କା ଖୁମ୍ବ । ଖୁମ୍ବ ଉପରେ ଗୋଟିଏ ପରୀ, ପରୀ ହାତରେ ଗୋଟିଏ ଧନୁଶର । ମୁଁ ପଚାରିଲି କଣ ଏ ପିକାଡ଼ିଲିର ମାହାତ୍ମ୍ୟ ! ଏଁ ପିକାଡ଼ିଲି ! ପିକାଡ଼ିଲି ଲଣ୍ଡନର ଗୋଟେ ବଡ଼ ବଢ଼ିଆ ଜାଗା । ହେଲେ କଣ ଏ ବଡ଼ ବଢ଼ିଆ କିଛି ବୁଝିପାରିଲିନି । ଦେଖିଲି, ଚାରିପଟେ ଅନେକ ରାସ୍ତା ବିଭିନ୍ନ ଦିଗକୁ ଯାଇଛି । ଜାଗାଟିର ଚାରିପଟେ ବହୁତ ବଡ଼ ବଡ଼ କୋଠା । କୋଠା ଦେହରେ ବିଭିନ୍ନ କିସମର ବିଭିନ୍ନ ରଙ୍ଗର ବିଜ୍ଞାପନ ମେଡ଼ ବା ବୋର୍ଡ଼, ନିଅନ ଆଲୁଅ ସମ୍ବଳିତ କେତେ ଲେଖା, କେତେ ଛବି ! ପିକାଡ଼ିଲି ପିକାଡ଼ିଲି ବୋଲି ଆଗରୁ ବାରମ୍ବାର ପ୍ରବାସୀ ବନ୍ଧୁମାନଙ୍କ କଣ୍ଠରୁ ଶୁଣିଥିଲି । ପ୍ରକୃତରେ ସେମିତି କିଛି ବିଶେଷତ୍ୱ ସେଠାରେ ଦେଖିଲିନି । ଖଣ୍ଡେ ଗୋଲେଇ ଜାଗା । ଚାରିଆଡ଼େ ଏତେ ଜନାକୀର୍ଣ୍ଣ, ଏତେ କୋଠାବାଡ଼ି ଓ ଏତେ ଆସବାବର ଦୋକାନ ଯେ ଜାଗାଟାର ପ୍ରକୃତ ରୂପରେଖ ବୁଝି ହୁଏନି । କେତେ ବସ୍ କେତେ ଟ୍ୟାକ୍ସିରେ ଲୋକ ଆସି ଓହ୍ଲାଇ ପଡୁଥାନ୍ତି । ପୁଣି କେତେ ଲୋକ ଚାଲିଯାଉଥାନ୍ତି । ଯାନଗୁଡ଼ିକର ଯିବା ଆସିବା ଶବ୍ଦ ଲୋକଙ୍କର କୋଳାହଳ ଚାରିଆଡ଼କୁ ମୁଖରିତ କରିଦିଏ । ମୁଣ୍ଡ ଯିମିତି ବାଉଳା ହୋଇଯାଉଥାଏ । ଗୋଟିଏ କଥା ଲକ୍ଷ୍ୟ କଲି । ସମସ୍ତେ ଯିମିତି ଖୁବ୍ ତରତର, କିଏ କୁଆଡ଼ୁ ଆସି ଚାଲିଯାଉଥାନ୍ତି । ଆଖି ପାଖରେ

ବହୁତ ଦୋକାନବଜାର । ମୁଁ ଚାରିଆଡ଼କୁ ଚାହିଁ ଆଁ କରି କଣ ଗିଳିଯାଉଥାଏ । ଦେଖିଲି ଅନେକ କଳା ଲୋକ ଭାରତୀୟ, ଆଫ୍ରିକାନ୍ ଏ ଗହଳିରେ ମିଶି ଏଣେ ତେଣେ ଯାଆସ କରୁଛନ୍ତି । କେତେ ଜଣ ଓଡ଼ିଆ ଦେଖା ହେଲେ । ସେମାନଙ୍କ ସାଙ୍ଗରେ ବହୁତ ଦୁଃଖସୁଖ କଥାବାର୍ତ୍ତା ହେଲୁ । କେବେ ଆସିଲେ ? କେବେ ଯିବେ ? ଓଡ଼ିଶା ଖବର କଣ ? କୁଁଠି ଖିଆପିଆ କରୁଛନ୍ତି ? ଇମିତି କେତେ କ'ଣ । ଲଣ୍ଡନ ସହରର ଏ ବିଖ୍ୟାତ କେନ୍ଦ୍ର ଯାଗାରେ ଏତେ ଗୁଡ଼ିଏ ଓଡ଼ିଆ, ଏତେ ଗୁଡ଼ିଏ ଅନ୍ୟ ଭାରତୀୟଙ୍କୁ ଦେଖି ବଡ଼ ବିଚିତ୍ର ଲାଗିଲା । ଏଠି ଏକା କାହିଁକି ! ଯୁଆଡ଼େ ଯାଅ ଭାରତୀୟ ପଲ ପଲ । ତେବେ ଏହାକୁ ସାହେବଙ୍କ ଦେଶ ବିଲାତ କାହିଁକି କୁହାଯିବ !

ଗୋଟିଏ କଥା ହଠାତ୍ ମନେ ପଡ଼ିଗଲା । ପୁରୀ ଜିଲ୍ଲା କାକଟପୁରରେ ମାଇନର ପଢ଼ୁଥାଏ । ରହୁଥାଏ ସ୍କୁଲ ହଷ୍ଟେଲରେ । ହଷ୍ଟେଲରେ ଖିଆପିଆ ବଡ଼ ଖରାପ । ଭାତ ନହାତି ମୋଟା, ଧାନ ମିଶା । ଡାଲି କଞ୍ଚା ପାଣି, ତାର ରୂପ ଅନେକଟା ପତଳା ପେଜରେ ହଳଦୀ ପଡ଼ିଲେ ଯିମିତି ଦିଶେ ସେମିତି । ସ୍ୱାଦ ଅତି କଦର୍ଯ୍ୟ । ଠାଏ ତରକାରୀ ହୁଏ । ସେ କଥାକୁ ବାଇଗଣ ଖଡ଼ା ମିଶି ଇମିତି ଗୋଟେ ଘଣ୍ଟା ପାଗ ଧରିଥାଏ ଯେ ତାକୁ ପାଟିରେ ଦେଲେ ଖଟା, ମିଠା, ପିତା, କଷା କେତେ ପ୍ରକାର ସ୍ୱାଦ ବାହାରେ କହୁ ତୋଳ ହୁଏନି । ତେଣୁ ଅଧିକାଂଶ ପିଲାଏ ଘରୁ ଘିଅ, ବଡ଼ି, ଖଟା ଇତ୍ୟାଦି ଆଣି ପେଟରା ବା ଟ୍ରଙ୍କରେ ରଖିଥାନ୍ତି । ଖାଇବାବେଳେ ସେଥିରୁ କିଛି କିଛି ଧରି ବା ଚକଟା, ଭରତାର ଯୋଗାଡ଼ କରି ଠାପାଣିକୁ ବିଦେଜକରନ୍ତି । ମୋ ପକ୍ଷରେ ଘରୁ ଏ ପ୍ରକାର କିଛି ଆୟୋଜନ କରିବା ସମ୍ଭବ ହେଉନଥାଏ । ହେଲେ ମେସ୍ ବ୍ୟବସ୍ଥା ସାଙ୍ଗକୁ କିଛି ଚକଟାଚକଟି ନହେଲେ ତ ପଥ୍ୟ ନଚଳେ । ତେଣୁ ବଜାରରୁ କିଛି ଗୋଲ ଆଳୁ କିଣି ପେଟରାରେ ରଖିଥାଏ । ଖାଇବାର କିଛି ସମୟ ଆଗରୁ ସେଥିରୁ ଗୋଟିଏ ଦିଟି ଧରି ରୋଷେଇ ଘରକୁ ଯାଏ ଏବଂ ପୂଜାହାରୀ ମହାଶୟଙ୍କୁ ବହୁ ଖୋସାମତ କରି ସେତିକ ଦଗ୍ଧ କରେ । ପରେ ପରେ ଲୁଣ ଲଙ୍କା ସାହାଯ୍ୟରେ ଗୋଟେ ରୁଚିକର ଚକଟା କରି ଭୋଜନପଥ ସୁଗମ କରେ । ଦିନେ ଇମିତି କେତେଟା ସିଦ୍ଧ ଆଳୁରୁ

ପୋଷାକ କାଢ଼ି ଲୁଣ ଲଙ୍କା ସହିତ ମନ୍ଥନ କରୁଚ ଦେବାରୁ ହେଡମାଷ୍ଟର ମହାଶୟ ଅଦୂରରେ ଦେଖାଦେଲେ। ମତେ ଚୁଲି ପାଖରେ ଇମିତି କର୍ମବ୍ୟସ୍ତ ଥିବାର ଦେଖି ପଚାରିଲେ "କରେ, କଣ କରୁଚୁ କ ?"

ଆଜ୍ଞା ବିଲାତିଆଳୁ ଚକଟୁଚି।

ମୁଁ ଅବଲମ୍ଵେ ଉତ୍ତର ଦେଲି। କ୍ଲାସ୍‌ରେ ଚଞ୍ଚଳ ଉତ୍ତର ଦେବାର ଅଭ୍ୟାସଟା ମୋର ଥିଲା। ତେଣୁ ସାଙ୍ଗେ ସାଙ୍ଗେ ହେଡ୍‌ମାଷ୍ଟରଙ୍କୁ ଜବାବ୍ ଦବା ମୋ ପକ୍ଷରେ ଅସମ୍ଭବ ହେଲାନି। କିନ୍ତୁ ହେଡ୍‌ମାଷ୍ଟର ସାଙ୍ଗେ ସାଙ୍ଗେ ହସିଉଠିଲେ। କହିଲେ "ବିଲାତିଆଳୁ କଣରେ ଆଳୁ ତ କହିବୁ।"

ହେଡମାଷ୍ଟର ଏତକ ବ୍ୟଙ୍ଗଭରା କଣ୍ଠରେ କହି ଚାଲିଗଲେ। ହେଲେ ତାଙ୍କ ଉକ୍ତିର ମାହାତ୍ମ୍ୟ ମୁଁ ହୃଦୟଙ୍ଗମ କରିପାରିଲିନି। ମଫସଲରେ ଅଧିକାଂଶ ଲୋକ ଗୋଲଆଳୁକୁ ବିଲାତିଆଳୁ କହନ୍ତି। ସ୍କୁଲରେ ବି ଅନେକେ ଏ ଭାଷା ବ୍ୟବହାର କରନ୍ତି। ତେଣୁ ମୋର ବିଲାତି ଆଳୁ ବୋଲି କହିବା ଇମିତି କଣ ପ୍ରମାଦପୂର୍ଣ୍ଣ ହେଲା ଯେ ହେଡମାଷ୍ଟର ମହୋଦୟ ମୋ ପରି କୁଞ୍ଚି ଛୁଆର କଥାରେ ଏପରି ତାଚ୍ଛଲ୍ୟମୟ ଉକ୍ତି ପ୍ରୟୋଗ କଲେ, ହସି ଉଠିଲେ। ମନ କଥା ମନରେ ଥାଏ। ବେଳେ ବେଳେ ହେଜ ପଡ଼ିଲେ ହସ ଲାଗେ ! ଏଥିରେ ଏପରି ବିଚିତ୍ର କଥା କଣ ରହିଲା ! ଗୋଲଆଳୁ ତ ଆଗରୁ ଆମ ଦେଶରେ ହେଉନଥିଲା। ଆମର ଥିଲା କନ୍ଦଆଳୁ। ଗୋଲଆଳୁ କେଉଁଠି ଚାଷ ହେଉନାରୁ ବିଲାତକୁ ଗଲା। ସେଠାରୁ ଆସିଲା ଭାରତକୁ। ନାଁ ପାଇଲା ବିଲାତି ଆଳୁ। କିନ୍ତୁ ଏହି ଆଳୁର ଚାଷ ଓ ପ୍ରଚାର ଆମ ଦେଶରେ କ୍ରମେ ଏତେ ହେଲା ଯେ ସେ ଅନେକ ଦିନରୁ ତାର ବିଲାତିତ୍ୱ ହରାଇଛି। ତେଣୁ ଏ ବିଲାତି ଆଳୁ ଖାଲି ଆଳୁରେ ପରିଣତ ହେଲାଣି। ସୁଦୂର ଲଣ୍ଡନ ସହରରେ ମୁଁ ଯେତେବେଳେ ଏତେ ଓଡ଼ିଆ ଏତେ ଭାରତୀୟ ଦେଖିଲି ମୋର ମନେ ହେଲା ବିଲାତ ଆଉ ବିଲାତ ହେଉନାହିଁ। ବିଲାତି ବାଇଗଣ, ବିଲାତି ଆଳୁ ପରି ଏହା ବୋଧହୁଏ ସ୍ଵୀୟ ବିଲାତିତ୍ୱ ଅନେକ ଦିନରୁ ହରାଇଛି।

ଯାହାହେଉ ଏ ସୁଦୂର ଜନଗହଳଭରା ପିକାଡ଼ିଲିରେ ଆମ ଦେଶର ଲୋକଙ୍କୁ ଦେଖି ବିଶେଷ ଆନନ୍ଦ ଲାଗିଲା । ବନ୍ଧୁମାନେ ତାଙ୍କ ପାରିଲାପଣ ଦେଖାଇବାକୁ ଯାଇ ଏଣେତଣେ ଧାଇଁବୁଲିଲେ । ମୁଁ ମଧ୍ୟ ମନ୍ତ୍ରମୁଗ୍ଧ ସର୍ପ ପରି ତାଙ୍କ ପିଚ୍ଛା ଧରି ନସରପସର ଧାଉଁଥାଏ, ଯିମିତି ପ୍ରଭୁଭକ୍ତ ଯାତ୍ରୀମାନେ ପୁରୀରେ ପଣ୍ଡାଙ୍କ ଆଶ୍ରୟ ନେଇଥାନ୍ତି ।

ଏଇ ପିକାଡ଼ିଲିଟା ବଡ ଚୋକ ଯାଗା, ଲଣ୍ଡନ ସହରର ହୃଦୟସ୍ଥଳୀ ବା କେନ୍ଦ୍ରସ୍ଥାନ, ଯଦି ଏପରି ଏକ ବହୁଦୂରପ୍ରସାରୀ, ନିର୍ଦ୍ଦିଷ୍ଟସୀମାବିହୀନ ଏକ ବିରାଟ ଜନପଦର କେନ୍ଦ୍ର ବୋଲି ଗୋଟାଏ କିଛିଥାଏ । ମୁଁ ଚାରିଆଡ଼କୁ ବଡ଼ ଉତ୍ସାହ ସହ ଚାହୁଁଥାଏ । କେତେ କଣ ମନେ ରଖୁଥାଏ । ଭାବୁଥାଏ ସବୁଆଡେ ବୁଲି ଯେଉଁଠି ଯାହା ସୁନ୍ଦର ସୁନ୍ଦର ଯାଗା ଅଛି ତାକୁ ଆଖି ପୂରେଇ ଦେଖିଯିବି । କିନ୍ତୁ କାହିଁ ? ଇମିତି ଅପୂର୍ବ ବା ଆଶ୍ଚର୍ଯ୍ୟଜନକ କିଛିତ କେଉଁଠିନାହିଁ । ଅବଶ୍ୟ ଦୋକାନ-ବଜାର, ଘରଦ୍ୱାର, ରାସ୍ତା-ମଇଦାନର ରୂପ ଭାରତ ଅପେକ୍ଷା ବହୁଗୁଣରେ ଉଜଧରଣର । ସଫା ସୁନ୍ଦର ଚକ୍ ଚକ୍ । ସେଥିରେ ବା ଏପରି ଆଶ୍ଚର୍ଯ୍ୟ ହବାର କ'ଣ ଅଛି ! ଯେଉଁ ବିଲାତ ଯୁଗ ଯୁଗ ଧରି ବହୁରାଜ୍ୟରେ ସାମ୍ରାଜ୍ୟ ବିସ୍ତାର କରି ତାର ଧନରତ୍ନ ଲୁଟି କରି ଆଣିଛି ଓ ସେହି ସମ୍ପଦରେ ନିଜର ଶ୍ରେଷ୍ଠ କଳେବରକୁ ଭରପୁର କରିଛି ବିପୁଳ ସମ୍ପଦରେ, ସେ ଯେ ସୁନ୍ଦର ଓ ସମୃଦ୍ଧ ହେବ ଏଟା ତ ସ୍ୱାଭାବିକ । ତେବେ ବି ମୋ କାଙ୍ଗାଳ ମନରେ କି ଅଭିସାଧ ଥାଏ କେଜାଣି ଖାଲି ଚାରିଆଡ଼କୁ ବିକଳ ହୋଇ ଚାହିଁଯାଉଥାଏ, କେଉଁଠି କଣ ଦର୍ଶନୀୟ ସ୍ଥାନ ଅଛି ତାକୁ ଦେଖିବାକୁ ।

ପେଟଟା ଏତେବେଳକୁ ଭୋକରେ ବିପ୍ଳବ ଆରମ୍ଭ କରିଦେଲାଣି । ଆଉ କେଉଁଥିରେ ମନ ଲାଗୁନି । ଯେତେ ଯାହା ଶସ୍ତା ସୁବିଧାରେ ଖାଇଲେ ସେ ତ ଅବିଳମ୍ବେ ଉଡ଼ି ହୋଇଯାଇ ପୁଣି ଭୋକ ଆରମ୍ଭ ହୋଇ ଯାଉଚି । ଯାହା ଖାଇଲେ ପୁଣି ଭୋକ । ଏତେ ବୁଲାଚଲା, ତାପରେ ଥଣ୍ଡା ଜଳବାୟୁରେ ମଣିଷ-କଳ ଚଳିବାକୁ ହେଲେ ତ ଖାଦ୍ୟ,–ବୋଇଲା ଟିକେ ବେଶୀ ଦରକାର । ସକାଳେ ଭଲକରି ତାପର୍ଯ୍ୟ ଭୋଜନ ପକେଇଥିଲି । ଏଇ ବୁଲାବୁଲି ଭିତରେ ବିସ୍କୁଟ୍, କେକ୍, କାଉବରୀ

ଚକୋଲେଟ୍ ଆଦି କିଛି ଉଦରସ୍ଥ କରିଥାଏ । ତେବେ ବି ଭୋକ । ମହାକ୍ଷୁଧା ! ପୁଣି କିଛି ଖାଇବା ଦରକାର କିନ୍ତୁ କେଉଁଠି ? କୌଣସି ବଡ ହୋଟେଲକୁ ଯିବା ସମ୍ଭବ ନୁହେଁ କାରଣ ମହାସୁଲଟା ସେଠି ବେଶୀ ପଡ଼ିବ । ତାକୁ ତ ସ୍ୱଳ୍ପ ସମ୍ବଳ ସାହାଯ୍ୟରେ ତୁଲେଇହବନି । ତେବେ ପୁଣି ଉପାୟ ? କଣ ଭାରତ ହୋଇଛି ଯେ କେଉଁ ଗ୍ରେଟକୋଟ ହୋଟେଲରେ ପଶିଯାଇ ଅଳ୍ପ କିଛି ପଇସାରେ ଭାତ ଡାଲି ଓ ଆଉ ସମାନ୍ୟ କିଛି ସାକସବ୍‌ଜିରେ ଚଳାଇ ଦେଇହେବ । ବନ୍ଧୁମାନେ ଆଗରୁ ଏ ସମସ୍ୟାର ସମାଧାନ କରି ଶିଖିଥାନ୍ତି । କହିଲେ, କୌଣସି ରେଷ୍ଟୁରାଁକୁ ଯାଇ କିଛି ସାଣ୍ଡଉଇଚ୍ ଆଉ ଚା'ରେ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା କରିଯାଉ । ପରେ ସନ୍ଧ୍ୟାକୁ ବସାକୁ ଫେରିଲେ ଦେଶେଇବାସ କରି ଭୂରି ଭୋଜନ କରିଯିବ । କଥାଟା ବେଶ୍ ମନକୁ ପାଇଲା । ସାଣ୍ଡଉଇଚ୍ ନା'ଟା ଭାରତରେ ଶୁଣିଛି । କଲିକତାର କୌଣସି ବଡ ହୋଟେଲରେ ଏଥିରୁ ଥରେ ଅଧେ ଖଣ୍ଡେ ଦି'ଖଣ୍ଡ ଚାଖିଛି । ମନଟା ଫିକା ପଡ଼ିଗଲା । ତାକୁ ଖାଇ କ'ଣ ପେଟର ଅରମାନ ମେଣ୍ଟେଇହେବ । ବନ୍ଧୁମାନେ ବୋଧହୁଏ ମୋ ମନର ଭାବଟା ବୁଝିଯାଇଥିଲେ । କହିଲେ ମନ୍ଦ ନୁହେଁ । ମୋଟା ମୋଟା ପାଉଁରୁଟି ଦୁଇଫାଳ ଭିତରେ କିଛି ଗୋ ମାଂସ, ବା ଘୁଷୁରି ମାଂସ ଆଉ ଟିକେ କଞ୍ଚା ପନିପରିବା ମିଳିବ । ଯଦି ଏଥିକି ଆପତ୍ତି ଥାଏ ମାଛ ସାଣ୍ଡଉଇଚ୍ ଖାଇପାରନ୍ତି । ସେଥିରୁ ଦି'ଟା ଖାଇନେଇ ଚା' ବା କଫି କପେ ପିଇଦେଲେ ଚଳିଯିବ । କୁନ୍ଥେଇ ଜବାବ୍ ଦେଲି, ହଉ ।

ଶସ୍ତା ରେଷ୍ଟୁରାଁ ଖୋଜାଖୋଜି ଆରମ୍ଭ ହୋଇଗଲା । ଏତେବେଳକୁ ମତେ ପରିସ୍ରା ମାଡ଼ିଥାଏ । ଚାରିଆଡ଼କୁ ଆଖି ବୁଲେଇ ଚାହିଁଲି କୁଠି "Gentlemen ଏବଂ ladies ଲେଖାଅଛି । ଲଣ୍ଡନର ଏ ବ୍ୟବସ୍ଥାଟି ବେଶ୍ ସୁନ୍ଦର । ସବୁଆଡ଼େ ମଝିରେ ମଝିରେ ବିଶେଷତଃ ଖୁବ୍ ଜନଗହଳି ଯାଗାମାନଙ୍କରେ ପରିସ୍ରାଖାନା ଓ ପାଇଖାନାର ବ୍ୟବସ୍ଥା । ଏସବୁ ନଥିଲେ ଲୋକେ ଯେ କି ହଇରାଣରେ ପଡ଼ନ୍ତେ ତାହା କଳ୍ପନା କରିହେବନି । ମନେ ପଡିଗଲା ଆମ ଓଡ଼ିଶା ରାଜ୍ୟର ପ୍ରସିଦ୍ଧ ନଗରୀ କଟକର କଥା ବିଶେଷତଃ ବାଲୁବଜାର, ଚୌଧୁରୀ ବଜାର, ବକ୍ସିବଜାର, ପ୍ରଭୃତିରେ ଯାହା ଘଟେ । ସେଠାରେ ଲୋକ ସମାଗମ କିଛି କମ୍ ନୁହେଁ । ଅଣଓସାରିଆ, ବଙ୍କାଟଙ୍କା ରାସ୍ତା । ସେଥିରେ ସାଇକେଲ ଚଢାଳୀ,

ରିକ୍‌ସା ବାଲା, ପାଦଚଲାଳୀ ରାସ୍ତାର କୌଣସି ନିୟମ ମାନିବାକୁ ନାରାଜ । ଟ୍ରକ୍, ବସ୍, ଜିପ୍, ମଟର ଓ ଫଟ୍‌ଫଟିରେ ଭିଡ଼ ଖୁବ୍ । ରାସ୍ତାର ଅନେକ ଅଂଶ ଚକ୍‌କା । ତାର ଦାଡ଼ ଗୁଡିକ କିନ୍ତୁ କଚ୍ଚା । ସେଥିରେ ନାଳ ନର୍ଦ୍ଦମା ଥାଏ । ସ୍ଥାନେ ସ୍ଥାନେ ମାଟି, କାଦୁଅ ବା ଅଳଆ ଜମା ହୋଇଥାଏ । ଫୁଟ୍‌ପାଥ ବୋଲି କିଛି ନାହିଁ । କିନ୍ତୁ ରାସ୍ତା କଡ଼ରେ ବସିଯାଇଥାନ୍ତି ବହୁ ବେପାରୀ ତାଙ୍କ ବେପାର ବଣିଜ ନେଇ । ବହୁ ଉଠା ଦୋକାନ ବି ରାସ୍ତା କଡ଼ରେ ତାଙ୍କ ସ୍ଥାୟୀ ଆସର ଜମାଇଦିଅନ୍ତି । ଫଳରେ ଏ ଜାଗା ମାନଙ୍କରେ ଜନସମାଗମ ଓ ଚଳପ୍ରଚଳ ବଡ଼ ବିଚିତ୍ର ସମସ୍ୟା ସୃଷ୍ଟି କରେ । ସମସ୍ତେ କମିତି ଠେଲାଠେଲି ହୋଇ ଗୁଁ ଗାଁ, ଫୁଁ ଫାଁ ଶବ୍ଦରେ ଆଗ ପଛକୁ ଗୁଳିଥାନ୍ତି । ବେଳେବେଳେ କିଛି ଦୁର୍ଘଟଣା ଘଟିଲେ ବା କୌଣସି ଗୋଳମାଳ ଲାଗିଲେ ଅବସ୍ଥା ଆହୁରି ଖରାପ ହୋଇଉଠେ । ଏଇ ଜନଗହଳି ଭିତରେ ଯାଉ ଯାଉ ହଠାତ୍ ଯଦି କାହାକୁ ଝାଡ଼ା ବା ପରିସ୍ରା ମାଡ଼ିଲା ତେବେ ତ ଅବସ୍ଥା ସାଂଘାତିକ । କୌଣସି ନିର୍ଜନ ବା ଜନଶୂନ୍ୟ ରାସ୍ତାରେ ସୁବିଧା ଦେଖି ଅବିଦ୍ୟା କରାଯାଇପାରେ; କିନ୍ତୁ ଏତେ ଲୋକଙ୍କ ଆଗରେ ! ପରିସ୍ଥିତିଟା ବଡ଼ ବିରକ୍ତିକର ମନେହୁଏ । ତାପରେ ନିଦକୃଳ ନାଳକଡ଼ କଥା କହିଲେ ନସରେ । ସକାଳ ସନ୍ଧ୍ୟାରେ ରାସ୍ତା କଡ଼ରେ ନାଳ ଦାଡ଼ରେ ଲୋକେ ଝାଡ଼ା ପରିସ୍ରା କରନ୍ତି । ଯାତାୟାତ କରୁଥିବା ଲୋକଙ୍କ ଆଗରେ ବେପରୁଆ ଭାବରେ ବସିଯାନ୍ତି ସ୍ତ୍ରୀ ପୁରୁଷ, ଯୁବକ ଯୁବତୀ, ବାଳକ ବାଳିକା ପେଟ ସଫାକରିବାକୁ । ଇଃ, କି ଖରାପ କଥା ! ବସନ୍ତର ମଳୟ ପବନ ସ୍ପର୍ଶରେ ବର୍ଷାକାଳର ବାରିପାତରେ ଏ ସ୍ଥାନ ଗୁଡ଼ିକର ମଳ-ମୂତ୍ର ଏପରି କଦର୍ଯ୍ୟ ମଳିନ ଗନ୍ଧ ସୃଷ୍ଟି କରେ ଯେ ନାକରେ କଣ ମେଞ୍ଚାଏ ରୁମାଲ କି ଲୁଗା ନମାଡ଼ିଲେ ସେ ବାଟେ ଯିବା ଅସମ୍ଭବ । କଟକର ରାସ୍ତାରେ ଯଦି କୁଆଡ଼େ ଯାଉଥିବ ତେବେ ଆଖି ବୁଜିଲେ ବି ଯଦି ନାକ ଖୋଲା ଥିବ ତେବେ ଏଇ ସହରର ମଳିନ ଗନ୍ଧ ସାହାଯ୍ୟରେ ଜାଣିପାରିବ, କେଉଁ ବାଟଦେଇ ଯାଉଚ ।

ତେଣୁ ଲଣ୍ଡନର ସ୍ଥାନେ ସ୍ଥାନେ ଏ "Gentlemen Ladies" ବ୍ୟବସ୍ଥାଟା ମନକୁ ବେଶ୍ ପାଇଲା । ସେଥିରୁ ଗୋଟିକରେ ଯଥାବିଧି ପ୍ରାକୃତିକ କୃତ୍ୟ ସାରି ମନ ଆନନ୍ଦରେ ଗୋଟିଏ ଷ୍ଟ୍ରିଟକାଟର

ରେଷ୍ଟୁରାଁରେ ପଶିଲି ବନ୍ଧୁମାନଙ୍କ ଗହଣରେ । ଗୋଟିଏ ଲମ୍ବା ଘରଟିଏ, ଗୋଟିଏ ମୁଣ୍ଡରେ ଚା' ଓ କଫିର ଗୋଟିଏ ଷ୍ଟେନଲେସ୍ ଷ୍ଟିଲର କୁଣ୍ଡ ଦୁଇଟି, କେତେଟା କପ୍, ପିଆଲା ଓ ଚାମୁଚ । ଆଉ ଗୋଟାଏ ବଡ଼ କାଚ ଜାରରେ ଚିନି ବଟୀ । ଏଇ ସରଞ୍ଜାମ ପାଖକୁ ଲାଗି ଗୋଟିଏ ଝରକା । ଝରକାର ସେପଟେ ଗୋଟେ ଗୋଟିଏ କୋଠରୀ ତା ଭିତରେ ଜଣେ ସୁଶ୍ରୀ ଯୁବତୀ ସାଣ୍ଡଉଇଚ୍ କେକ୍ ଆଦିର ପସରା ସଜାଡ଼ି ବସିଥାନ୍ତି । ଏପଟେ ଚା' ଘଣ୍ଟି ପାଖେ ଜଣେ ବୟସ୍କ ଲୋକ ସଜାଗ ଥାନ୍ତି । ଅଭ୍ୟାଗତମାନଙ୍କ ବରାଦ ଅନୁସାରେ ଖାଦ୍ୟ ପରଷି ଦେଉଥାନ୍ତି । ଘର ଭିତରେ କାନ୍ଥ ଦାଡ଼କୁ ଲାଗି ଅଣଓସାରିଆ ଟେବୁଲଟିଏ ଲମ୍ବା ହୋଇପଡ଼ିଛି ଏବଂ ତା ପାଖରେ ବସିବା ପାଇଁ ଗଦିଦିଆ ଟୁଲ ପଡ଼ିଛି । ଦେଖିଲି କେତୋଟି ଟୁଲରେ ବସିଛନ୍ତି କେତେ ଜଣ ଯୁବତୀ ଅଭିସାରିକା ବେଶରେ । ସେମାନଙ୍କ ଭିତରୁ କେତେକଙ୍କ ପାଖରେ ଜଣେ ଜଣେ ପ୍ରଣୟୀ କିନ୍ତୁ ଏ ପ୍ରଣୟୀମାନେ ଯେ ସମସ୍ତେ ଯୁବକ ନୁହନ୍ତି ଏକଥା ନିଶ୍ଚିତ ।

ପେଟ ଜ୍ୱାଳାରେ ମୁଁ ବିକଳ ହେଉଥାଏ ସତ । କିନ୍ତୁ ଏସବୁ ଘଟଣା ଦେଖି ଆଁ କରି ଗୋଟେ ଟୁଲରେ ବସିପଡ଼ିଲି । ବନ୍ଧୁମାନେ ଇଙ୍ଗିତ ଦେଲେ ଖାଦ୍ୟପେୟ ନିଜେ ଯାଇ ନେଇଆସିବାକୁ । ହଠାତ୍ ମନେ ପଡ଼ିଗଲା ପୂର୍ବର ଆଲୋଚନାଟା । ପ୍ରଥମେ ଯେଉଁ ଦିନ ବିଲାତରେ ପହଞ୍ଚିଗଲି ସେଦିନ ସଞ୍ଜବେଳା ରସେଲ ସ୍କୋୟାରରେ ଥିବା ଭାରତୀୟ ଭୋଜନାଳୟରେ ଆମ ଦେଶ ପଦ୍ଧତି ଅନୁଯାୟୀ ଖିଆପିଆ ହୋଇଥିଲା । ଦେଖିଲି ଅନେକ ସୁନ୍ଦର ସୁଶିକ୍ଷିତ ଭାରତୀୟ ବା ପାକିସ୍ତାନୀ ନିର୍ମଳ ପୋଷାକ ପରିଚ୍ଛଦ ପିନ୍ଧି ଉପରେ ଖଣ୍ଡିଏ ଓଭର କୋଟ୍ ଚଢ଼େଇ ଆମକୁ ପରଷାପରଷି କରୁଛନ୍ତି । ଶୁଣିଲି ଏମାନେ ବାସନକୁସନ ମଜାମଜି, ଟେବୁଲ ସଫାସଫି ବି କରନ୍ତି । ବିଲାତରେ ଉଚ୍ଚଶିକ୍ଷା ପାଇଁ କିଛି ରୋଜଗାର କରିବାକୁ ଏ ପନ୍ଥା ଧରନ୍ତି । କେହି କେହି ଅର୍ଥ ଉପାର୍ଜନ ପାଇଁ ନାନା କୌଶଳରେ ଏଠାକୁ ଆସି ପ୍ରଥମେ ଅନ୍ୟ କୌଣସି ବୃତ୍ତି ନ ପାଇ ପାଚକ ବା ପରିବେଷଣକାରୀ କାର୍ଯ୍ୟ ଧରିନେଇଛନ୍ତି । ଏଥିପାଇଁ କିନ୍ତୁ ସାହେବୀ ରେଷ୍ଟୁରାଁରେ ଖୁବ୍ ଅସୁବିଧା । ସେଠି କେହି ପରିବେଷଣ କରିବାକୁ ମିଳନ୍ତିନି । ଯଦି କୌଣସିଠାରେ ଧଳା ବା କଳା ଲୋକଙ୍କ

ସାହାଯ୍ୟରେ ଏଇ ପରିବେଷଣ କାମଟା କରାଯାଏ ତେବେ ସେଥିପାଇଁ ଅଧିକ ମାହାସୂଲ ଦେବାକୁ ପଡ଼େ । ମାତ୍ର ଅଧିକାଂଶ ଯାଗାରେ Self-service ! ଖାଦ୍ୟପେୟ ନିଜ ହାତରେ Counter ରୁ ଆଣି ତାର ସଦ୍‌ବ୍ୟବହାର କରାଯାଏ । ରେସ୍ତୁରାଁର ପରିବେଶ ଦେଖି କିଛୁ ଆଶ୍ଚର୍ଯ୍ୟ କିଛୁ ଆନନ୍ଦିତ ହୋଇ କେତୋଟା କେକ୍ ସାଣ୍ଡୱଇଚ୍ ଆଣିଲି । ତା ସାଙ୍ଗରେ କପେ ଚା' । ଚମଡ଼ାଗଦିଦିଆ ଟୁଲ ଖଣ୍ଡିକରେ ବସିପଡ଼ି ପାଟି ଆଖି ଦୁହିଁଙ୍କ ତୃପ୍ତି ସାଧନରେ ଲାଗିପଡ଼ିଲି ।

ଟୁଲରେ ଯେଉଁ ମହିଳାମାନେ ବସିଥାନ୍ତି ସେ ସମସ୍ତଙ୍କୁ ଯୁବତୀ କହିବା ଠିକ୍ ହେବନି । କାରଣ ସେମାନଙ୍କ ଭିତରୁ କେତେକ ଯୌବନର ପ୍ରଥମ ବା ଦ୍ୱିତୀୟ ପର୍ଯ୍ୟାୟ ପାରିହୋଇଗଲେଣି । କେବଳ ପ୍ରସାଧନର ପ୍ରାଚୁର୍ଯ୍ୟରେ ଦେହକୁ ଘଷି ମାଜି ଚକ୍ ଚକ୍ କରିଥାନ୍ତି । ତୈଳବିହୀନ କେଶରାଶି ପାନିଆରେ ସଜଡ଼ା ହେଲାପରି ଦେଖାଗଲାନି । ମନେ ପଡ଼ିଗଲା ଆମ ଭାରତୀୟ ରମଣୀଙ୍କ କେଶ ପ୍ରସାଧନର ମାଧୁର୍ଯ୍ୟ, କେଡ଼େ ସୁନ୍ଦର କେଡ଼େ କଳାନୈପୁଣ୍ୟଭରା ସେ । କାହାର ଆଜାନୁ ବା ଆପୃଷ୍ଠ ଲମ୍ବିତ କେଶରାଶି ସୁନ୍ଦର ଭାବରେ ପରିମାର୍ଜିତ, ପ୍ରସାଧିତ ହୋଇଥାଏ, ବିଭିନ୍ନ ସୁବାସିତ ତୈଳ ସାହାଯ୍ୟରେ । କେହି ମଧ୍ୟଭାଗରେ କେହି ବାମ ବା ଡାହାଣରେ ସୁନ୍ଥା କାଟିଦେଇଥାନ୍ତି । ବିବାହିତା ରମଣୀମାନେ ସେଥିରେ ଟାଣିଦେଇଥାନ୍ତି ସିନ୍ଦୂରଗାର । କେଶ ପ୍ରସାଧନର ଏହି ଅପୂର୍ବ ଭଙ୍ଗୀ ବି ବହୁତ ଦେଖିବା ମନ୍ଦିର, ଦେବାଳୟ ଗାତ୍ରରେ । କବି ଲେଖିଛନ୍ତି କେତେ କବିତା ଏହାକୁ ଲକ୍ଷ୍ୟ କରି ।

ସୁକୁନ୍ତଳା ସୁକୁନ୍ତଳ ମାଳ କୁଟିଳ ଗହଳ
ଚିକ୍କଣ ଲମ୍ବ ବିଭିନ୍ନ ବାସ ନିବାସ
ସୁନ୍ଦର ମୃଦୁ ବରହୀ ପୁଚ୍ଛ ଲକ୍ଷ୍ୟ ହେବା ପାଇଁ
ଗଲାଥା ପାଇଲା ଯାଇ ଲୋକେଶ ପାଶ ।
ସେ ଶହ୍ନ ଚନ୍ଦ୍ରିକା ପ୍ରମାଣ, ସଭୟ ହୋଇଲେ ଶୁଣି ଉପମାଗଣ ।

କିନ୍ତୁ ଏ ବିଲାତି ମହିଳାଙ୍କ କେଶରାଶି ଏପରି ଅଯତ୍ନ, ଅରକ୍ଷିତ କାହିଁକି ? ଏଣିକି ତେଣିକି ବଙ୍କାଟଙ୍କା ଖାଲଢିପ । ପଚ୍ଛର ବୁଦ୍ଧିଲ

ଯେ ଏମାନେ କେଶଶ୍ରେଣୀର ଏପରି ସୌନ୍ଦର୍ଯ୍ୟକୁ ଭଲପାଆନ୍ତି । ପୁରୁଷମାନଙ୍କ ପରି କେଶ ଛେଦନ କରନ୍ତି । ତାକୁ ଅଳ୍ପ ଲମ୍ବ ରଖି ଏପଟ ସେପଟ ଏପରି ଭାବରେ କୁଣ୍ଡାନ୍ତି ଯେପରିକି ତନ୍ମଧ୍ୟରେ ପ୍ରସାଧାନର ଅଭିସାର ଘଟିଛି ବୋଲି ଜଣା ପଡ଼େନା । ବାସ୍ତବିକ୍ ସେମାନଙ୍କର କେଶ ପ୍ରସାଧାନ ବଡ଼ ବିଚିତ୍ର । ପ୍ରତ୍ୟେକଙ୍କର ଅଲଗା ଅଲଗା ପ୍ରକାରର । କେତେକଙ୍କର କେଶ ପାଣ୍ଡୁର, କେତେକଙ୍କର ପାଁଶୁଳ, କେତେକଙ୍କର ଈଷତ୍-ରଙ୍ଗୀନ୍, କେତେକଙ୍କର ବା କୃଷ୍ଣ । ତେବେ ଏମାନେ ବିରହିଣୀ ଯକ୍ଷ-ରମଣୀ ପରି ଗବାକ୍ଷ ପାଶରେ କାହା ଅପେକ୍ଷାରେ ଅଛନ୍ତି ! କେତେକଙ୍କ ପାଖରେ ନାଗର ଅବଶ୍ୟ ଯୁଟିଯାଇଥାନ୍ତି । ସେମାନେ ସୁରା ବା ଚ୍ଚ୍ କଫି ପାନ କରୁ କରୁ କେତେ ଆନନ୍ଦ ଆମୋଦରେ ମାତି ଉଠିଥାନ୍ତି ।

ବାଟରେ ଏ ହୋଟେଲ, ରେସ୍ତୁରାଁ ସବୁ ହେଲା ପ୍ରେମ କାରବାରର ପୀଠ । ଏଇଠି ବିବାହିତ, ଅବିବାହିତ ଯୁବକଯୁବତୀଙ୍କର ଆସର ଜମିଉଠେ । ଖାଦ୍ୟପେୟର ବ୍ୟବସ୍ଥା କରି ଏମାନେ ଚାଲିଯାନ୍ତି ହାଇଡ୍ ପାର୍କ ବା ଅନ୍ୟ କୌଣସି ପ୍ରାନ୍ତରକୁ ନିର୍ଜନ ବିହାର ପାଇଁ । ସମସ୍ତେ ଯେ ସେଠି ଗୋରା ଲୋକ ଥିଲେ ତା ନୁହେଁ କଳା ଲୋକ ବି ଥାନ୍ତି । ଏସିଆ ଆଫ୍ରିକାର ବି କେତେକ ପୁରୁଷ ଗୋଟିଏ ଗୋଟିଏ ଶ୍ୱେତାଙ୍ଗିନୀଙ୍କୁ ବା କୃଷ୍ଣାଙ୍ଗିନୀ ବା ଶ୍ୟାମାଙ୍ଗିନୀଙ୍କୁ ଧରି ବେଶ୍ ଆମୋଦ ପ୍ରମୋଦରେ ମାତି ଉଠିଥାନ୍ତି । ଶନି ରବିବାରରେ ଏ ଆସରଗୁଡ଼ିକ ଖୁବ୍ ଜମି ଉଠେ । ବନ୍ଧୁମାନେ ଅନେକ ବେଳୁ ତାଙ୍କର ଜଳଯୋଗ ସାରି ଏହି ଯୁବକ ଯୁବତୀମାନଙ୍କ ଭିତରୁ କାହା କାହା ପାଖରେ ବସି ମଧୁର ଆଳାପ ଆରମ୍ଭ କରିଦେଇଥାନ୍ତି । ଖାଲି ମାଗଣା ନୁହେଁ । ଅନ୍ତତଃ କପେ ଚ୍ଚ୍ ବା କଫିର ଖର୍ଚ୍ଚ ବହନ କରି ।

ମୁଁ ଖାଲି ବସିଥାଏ ଆଁ କରି । ବାରମ୍ବାର ଚାହୁଁଥାଏ ଏ କଫି ଦୋକାନର ପରିବେଶକୁ । ମନେ ପଡ଼ିଗଲା W.B. Yeats ଙ୍କ କବିତା —

My fiftieth year had come and gone
I sat a solitary man,
In a crowded London shop
An open book and an empty cup,
On the marble table-top.



## ମର୍ତ୍ତ୍ୟର ନନ୍ଦନକାନନ ହାଇଡ୍ ପାର୍କ

ରେସ୍ତୁରାଁରେ ଜଳଯୋଗ ଓ ଚା’ପାନ ସାରି ଟିକିଏ ତାଜା ହୋଇଗଲି । ଦେଖିଲି ଜଣେ ଶ୍ୱେତାଙ୍ଗ ଭଦ୍ରଲୋକ କଫି କପେ ଧରି ଗବାକ୍ଷ ମଧ୍ୟଦେଇ ବଡ଼ ବ୍ୟାକୁଳ ଭାବରେ ଏଣିକି ତେଣିକି ଚାହୁଁଛନ୍ତି । ବହୁ ପୁରୁଷ ସ୍ତ୍ରୀ ଯୋଡ଼ି ଯୋଡ଼ି ହୋଇ ଚା, କଫି ବା ରଙ୍ଗୀନ୍ ରସ କିଛି ପାନ କରିବାରେ ବ୍ୟସ୍ତ । ଆଉ ବି ଲୋକେ ଜଣ ଜଣ ହୋଇ ଦଳ ଦଳ ହୋଇ ଆସୁଥାନ୍ତି । କିଛି ଖିଆଖିଇ ପିଆପିଇ କରି ପୁଣି ବାହାରିଯାଉଥାନ୍ତି । ପରିସରଟା ବେଶ୍ ସରଗରମ, ବେଶ୍ ଉତ୍ସବମୟ ହୋଇଉଠିଥାଏ ।

ମୁଁ ଏ ଛବିଳ-ସୁନ୍ଦର ପାନାହାର ଆସରର ପ୍ରକୃତ ତଥ୍ୟ ଜାଣିବାକୁ ବିକଳ ହୋଇପଡ଼ିଥାଏ । ଗବାକ୍ଷ ପାଖରେ ଏକାକୀ ବସିଥିବା ଭଦ୍ରଲୋକଙ୍କ ପାଖକୁ ଗଲି । ତାଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ନାନା ପ୍ରକାର ନବାକ୍ ସବାକ୍ ଅଙ୍ଗଭଙ୍ଗୀ କଲି, ଇସାରା ଦେଲି । ହେଲେ ସେ ବିଚରା ତ ଏକ ଧ୍ୟାନରେ ବାହାରକୁ ଚାହିଁଥାନ୍ତି । କିନ୍ତୁ କାହିଁକି ? ଓ ! ବାନ୍ଧବୀ ସନ୍ଧାନରେ ! ତେବେ ସେ ଯେତେବେଳେ ମିଳୁନାହାନ୍ତି ସେଥିପାଇଁ ଆଉ ପ୍ରାଣପାତ ନକରି ପାଖରେ ଆସି ଯେ ବନ୍ଧୁଟି ମିଳିଯାଇଚନ୍ତି ତାଙ୍କ ସହିତ ଆଳାପ ଆଲୋଚନା କର ! ଇମିତି ଭାବି ପୁଣି ସାହାସ ବାନ୍ଧି ନାନା କଥା ପାଗ-ବେଳ ସମ୍ବନ୍ଧରେ ଆରମ୍ଭ କରିଦେଲି । କେତେ ସମୟପରେ ମହାତ୍ମାଙ୍କର ତପଭଗ୍ନ ହେଲାପରି ଜଣାଗଲା । ମୁଁ ମନମୋହିନୀ ନର୍ତ୍ତକୀ ପରି ମୋର କଳାଭିଜ୍ଞତା ପରଷି ଦେଲି, ମାନେ ବିଲାତି ଆଦବ-କାଏଦାର ମୂଳ କାଣ୍ଡିଟା ଆରମ୍ଭ କଲି । I am so and so from India. Very gald to meet you. It is such a

fine weather to-day. ଓଃ ! ଦୃଷ୍ଟି ଫେରେଇଲେ ! ସୁନ୍ଦରୀ ଫାଟିଲା ! ସୂର୍ଯ୍ୟ ଉଇଁବେ । ମହାପୁରୁଷଙ୍କ ମୁହଁରେ ଭାବପରିବର୍ତ୍ତନର ଢଙ୍ଗ ଦେଖି ଭାବାକୁଳ ନୟନରେ ଅନାଇଥାଏ । ତେବେ କଥା କହିବେ କିନ୍ତୁ କହୁନାହାନ୍ତି କାହିଁକି ? ହଁ, କହିବେ ତ ! ଭଦ୍ରଲୋକ ନିଜ ମୁଖମଣ୍ଡଳରେ ପ୍ରତିପଦ୍ ବା ଦ୍ୱିତୀୟା ଚନ୍ଦ୍ରପରି କ୍ଷୀଣ ହାସ୍ୟରେଖାଟିଏ ଟାଣିଦେଇ ମୋତେ ପାଖରେ ବସିବାକୁ ଇଙ୍ଗିତ ଦେଲେ । ମୁଁ ଯେମିତି କୃତାର୍ଥ ହୋଇଗଲି । ହେଲେ ବିଚରା ବଡ ବିଷର୍ଣ୍ଣ । କଣ ଖୋଜୁଥିଲେ କଣ ମିଳିଲା । ପୁରୁଷ ହେଲେ ବି ଟିକିଏ ସୁନ୍ଦର ଚେହେରା ହେଇଥାନ୍ତା । ଏକଦମ୍ ଜଣେ କୃଷ୍ଣକାୟ ଭାରତୀୟ । ତେଣିକି ମୁଁ ଯେଉଁ ପୋଷାକ ପିନ୍ଧିଥାଏ ସେଇଟା ଭାରତ ତିଆରି । ବିଲାତି ପୋଷାକର ଢଙ୍ଗରଙ୍ଗ, ଚାକଚକ୍ୟ ସେଥିରେ ନାହିଁ । ମୋତେ ମନେ ହେଉଥାଏ ସେଠି ଯେ ସାମାଜିକ ସର୍କସ ଚାଲିଥାଏ ମୁଁ ସେଥିରେ କ୍ଲାଉନ୍ ବା ବିଦୂଷକ ! ତେବେ·········

ତେବେ ଭଦ୍ରଲୋକ କଥା କହିଲେ । ପହିଲି ମୁଲାକାତ୍‌ର ଗୌରଚନ୍ଦ୍ରିକା ସରିବାପରେ ହଠାତ୍ ମୋତେ ପଚାରିଦେଲେ "ଆପଣ କଣ ନୂଆ ଲଣ୍ଡନ ଆସିଛନ୍ତି ?" ଏ କଣ ! ବିନାମେଘେ ବଜ୍ରାଘାତ ! ଇମିତି କାହିଁ କହିଲେ ? ମୋ ଆଚରଣ ବ୍ୟବହାରରେ କଣ ବେଆଡା ରହିଗଲା ! ରହିଥିବ । ସେଇଟା ତ ମୁଁ ଆଜଯାଏ ସଜାଡି କରିପାରିନାହିଁ । ଇମିତି ଭାବି ବଡ ଅଶ୍ୱସ୍ତିକର ଭାବରେ ସଙ୍କୁଚିତ ଅସ୍ତିସୂଚକ ଉତ୍ତରଟିଏ ଦେଇ କଥାଟାକୁ ଏଡ଼ିଦେବାକୁ କ୍ଷୁଦ୍ର ଭାଷଣଟାଏ ଆରମ୍ଭ କରିଦେଲି ।

କାଳକ ମୁଁ ବାକ୍ୟବୀର । କୌଣସି କଥା ବା କାର୍ଯ୍ୟରେ କିଛି ଦୋଷତ୍ରୁଟି ରହିଗଲେ ତାକୁ ବକ୍ତୃତା ସାହାଯ୍ୟରେ ସଜାଡ଼ିବାକୁ ଚେଷ୍ଟାକରେ । କହିଚାଲିଥାଏ ଭାରତ-ବିଲାତ ନେଇ କେତେ କଣ ଲଗାମ୍‌ଛଡ଼ା ଭାବରେ । କିନ୍ତୁ ଏ କଣ ? ଭଦ୍ରଲୋକ ଇମିତି ଉଦାସ ଭାବରେ ଚାହିଁଛନ୍ତି କାହିଁକି ? କଣ ମୋ କଥା ବୁଝିପାରୁନାହାନ୍ତି ? ସାହେବ ଇଂରେଜି ବୁଝିପାରୁନାହାନ୍ତି ? ନିଜର ସନ୍ଦେହମୋଚନ କରିବାକୁ ପଚାରିଲି ।

—ଆପଣ ମୋ କଥା ବୁଝିପାରୁଚନ୍ତି ତ ?

—ନା ସମ୍ପୂର୍ଣ୍ଣରୂପେ ବୁଝୁନି । You talk so fast. !

ଆଶ୍ଚର୍ଯ୍ୟ କଥା ! ଯେତେ ଚଞ୍ଚଳ କହିଲେ ବି ବିଲାତରେ ଇଂରେଜି ଅବୋଧ ! ଏଠି ସମସ୍ତେ ଇଂରେଜି କହନ୍ତି, ଇଂରେଜି ବୁଝନ୍ତି ବୋଲି ମୁଁ ଏମାନଙ୍କୁ ମନେ ମନେ କେତେ ବଡ ଭାବେ । ଭଦ୍ରଲୋକ ମୋତେ ବୁଝେଇବାକୁ ଯାଇ କହିଲେ "ଆପଣ ଯେ ଖାଲି ତରତର ହୋଇ କହୁଚନ୍ତି ତା' ନୁହେଁ, ଆପଣଙ୍କ ଇଂରେଜି କହିବା ଢଙ୍ଗ ଆମ ଏଠା ଢଙ୍ଗ ଅପେକ୍ଷା ପୃଥକ୍ । ଆପଣଙ୍କ ଭାଷା ସ୍ୱଳ୍ପ-ଧ୍ୱନି ସମ୍ବଳିତ ହୋଇପଡୁଚି । You talk in shorter syllables". ଆପଣ ଟିକିଏ ଟାଣି ଟାଣି କଥା କହନ୍ତୁ ଠିକ୍ ହେବ । ଟାଣି ଟାଣି କହିବି ? କଣ ସୂତା କି ରବର ହେଇଚି କି ! ଯେଉଁତ ଭାଷା ! ତାର ବନାନ୍ ବିଚିତ୍ର, ଉଚ୍ଚାରଣ ଅପୂର୍ବ ! ତାକୁ ପୁଣି ଟାଣିବି ! ଭାଷା ଯେ ଆମ ଓଡ଼ିଆ । କହିବ ଯେମିତି, ଲେଖିବ ସେମିତି । ଅବଶ୍ୟ ଆକାଶବାଣୀ ସୌଜନ୍ୟରୁ ସେ ଅନେକଟା ତାର ମହତ୍ତ୍ୱ ହରାଇଚି । ଯାହାହେଉ ଇଂରେଜି ଭାଷାର ସମ୍ୟକ୍ ପାରଦର୍ଶିତା ଥିବାର ଯେ ଗର୍ବ ମୋର ଥିଲା ସେ ଉଭେଇଗଲା । ବଡ଼ ଦୁଃଖ ତ ! ବିଦେଶ ଆସି ନିଜର ସମସ୍ତ ଜାତୀୟ ଗୌରବ, ଭାଷା, ପୋଷାକ, ଆଚାର ବ୍ୟବହାର, ଖାଦ୍ୟ-ପେୟ ହରାଇଚି । ଶେଷରେ ପୁଣି ଏ ଅପମାନ !

ଆଉ ମାନ ବା ମୁହଁଟରେ ଲାଭ କଣ ? ବିଲାତର ରୀତି-ନୀତି, ଚାଲି-ଚଳଣି ସମ୍ବନ୍ଧରେ ସବିଶେଷ ଜ୍ଞାନ ଅର୍ଜନ କରିବାକୁ ତ ବିକଳ ହୋଇଉଠିଚି । ତେଣୁ ଭାଷାକୁ ଯଥା ସମ୍ଭବ ସଜାଡ଼ି ଭଦ୍ରଲୋକଙ୍କ ସହିତ କଥାବାର୍ତ୍ତା ଚଳେଇଲି ଏବଂ ସେ ଦେଶର ପାନାହାର-ସ୍ଥଳୀ ରେସ୍ତୁରାଁ ସମ୍ବନ୍ଧରେ ଯତ୍‌କିଞ୍ଚିତ୍ ମୂଲ୍ୟବାନ୍ ତଥ୍ୟ ଆହରଣ କଲି । ମୋଟାମୋଟି କଥା ହେଲା, ବିଲାତରେ ଏପରି ଅନେକ ପାନାହାର ସ୍ଥଳୀ ଅଛି କେଉଁଠାରେ ଏହା କଂସାବାଟି ତ କେଉଁଠାରେ ବୋଲିଏ ଏ କରୁଣା ବାରଧି । କେଫ୍, କଫି ହାଉସ୍ , ରେସ୍ତୁରାଁ ଇମିତି ଏହାର ଅନେକ ନାମ । କିନ୍ତୁ କାମ ଗୋଟିଏ, ଲୋକଙ୍କୁ ପାନାହାର ଯୋଗାଇବା । ଲଣ୍ଡନ ସହରର ରାସ୍ତାଘାଟ, ଗଳିକନ୍ଦିରେ ଏସବୁ ଭରିଯାଇଛି । ଏଗୁଡ଼ିକ ବେଶ୍ ଦରକାରରେ ଆସନ୍ତି । ସହରର ଅଧିବାସୀଙ୍କ ମଧ୍ୟରୁ ଅଧିକାଂଶ ଏକପ୍ରକାର

ବାସୁଦେବ । ନିଜର ବୋଲି ଘର କେଉଁଠି ନଥାଏ । ଦିନଯାକ କୌଣସି କାରଖାନା ବା ଦପ୍ତରରେ କାମ କରନ୍ତି । ଜଳଯୋଗ ଓ ପାନୀୟର ବ୍ୟବସ୍ଥା ଏହି ରେସ୍ତୁରାଁ ପ୍ରଭୃତିରେ ହୁଏ । ରାତିରେ ବିଶ୍ରାମ ପାଇଁ କେଉଁଠାରେ ଭଡ଼ାଘର ନେଇଥାନ୍ତି । ସେଠାରେ କେତେ ଘଣ୍ଟା କଟେଇ ଦିଅନ୍ତି । ପୁଣି ସକାଳ ହେଲେ ବେଶବାସ ହୋଇ ବାହାରକୁ ବାହାରିଯାନ୍ତି ।

ସପ୍ତାହର ଶେଷ ଅଂଶ ଶନିବାର ରବିବାର ଦିନଗୁଡ଼ିକ ବିଲାତରେ ଛୁଟି । ଏହି ଦିନମାନଙ୍କରେ କେଫେ, ରେସ୍ତୁରାଁ ଆଦିରେ ଖିଆପିଆ ଆସର ଖୁବ୍ ଜୋରରେ ଜମିଉଠେ । ବିବାହିତ ଦମ୍ପତିମାନେ ଏଠାରେ ଖାନାଦାନା ସାରି ଚାଲିଯାନ୍ତି ହାଇଡ୍ ପାର୍କ ବା ଅନ୍ୟ କୌଣସି ପାର୍କ ମଇଦାନକୁ ସାଙ୍ଗରେ କିଛି ସ୍ୟାଣ୍ଡୱିଚ୍ ବା କେକ୍ ବିସ୍କୁଟ ସହିତ ଚା’ କଫି ଧରି ସପ୍ତାହକର କର୍ମମୟ ଜୀବନ ପରେ ଚିତ୍ତବିନୋଦନ କରିବାକୁ । କିନ୍ତୁ ଏଠି ବେଶୀ ଆଡ୍ଡା ମାରନ୍ତି ଅବିବାହିତ ଯୁବକ-ଯୁବତୀ ଓ ବିପତ୍ନୀକ-ବିଧବା ଦଳ । ଆହୁରି ବି ଯେଉଁମାନେ ନିଜ ସ୍ତ୍ରୀ ବା ସ୍ୱାମୀଙ୍କୁ ଘରେ ଛାଡ଼ି ଆସି ଏଠି ବିଦେଶବାସ କରୁଥାନ୍ତି, ସେମାନଙ୍କର ଏହି କେଫେ, ରେସ୍ତୁରାଁ ଆଦି ହୁଏ କେଳି-କେନ୍ଦ୍ର । ଏଠି ଅନେକ ପୁରୁଷ-ସ୍ତ୍ରୀ, ଯୁବକ-ଯୁବତୀ ପରସ୍ପର ସହିତ ବନ୍ଧୁତା ପାତନ୍ତି ଏବଂ ତାଙ୍କୁ ଉଷ୍ମ ବା ରଙ୍ଗୀନ୍ ପାନୀୟରେ ସରଗରମ କରି ଚାଲିଯାନ୍ତି ଆନନ୍ଦ-ଅଭିସାରରେ । ଏ ଆନନ୍ଦ କେବଳ ଯୁବକ-ଯୁବତୀମାନଙ୍କର ଏକଚାଟିଆ ନୁହେଁ । ବୟସ୍କ-ବୟସ୍କା, ବୃଦ୍ଧ-ବୃଦ୍ଧା ବି ଏ ମଉଜ-ମଜଲିସ୍‌ରେ ମାତିଉଠନ୍ତି । ଏକଥା ଶୁଣୁ ଶୁଣୁ ମୁଁ ଯେମିତି ମୁଗ୍ଧ ହୋଇ ଉଠିଥାଏ । ବାଃ ! ବଡ଼ ଚମତ୍କାର ତ । ଜୀବନ ଉପଭୋଗ କରିବାର କି ପ୍ରକୃଷ୍ଟ ପ୍ରଣାଳୀ ! କ୍ଷଣକ ପାଇଁ ମନେ ପଡ଼ିଗଲା ନିଜ ଦେଶର କଥା । ଆଃ ! ଭାରତର ସାଧାରଣ ଦୁଃଖୀ ଜନତା ବିଶେଷରେ ବିଚରା ଓଡ଼ିଆଙ୍କ ପକ୍ଷରେ ଏହା କଣ ସମ୍ଭବ ! ଛୁଟି ବୋଲି ତ କଣ ସେମାନେ ଜାଣନ୍ତି ନି । ଜାଣିବେ କୁଆଡ଼ୁ ? ଛୁଟି ଦିନମାନଙ୍କରେ ବି ସେମାନଙ୍କୁ ଅନେକ ଦୁଃଖ-ଜଞ୍ଜାଳ ଭୋଗ କରିବାକୁ ପଡ଼େ । କେତେଜଣ ମୁଷ୍ଟିମେୟ ଧନୀ ଲୋକଙ୍କୁ ଛାଡ଼ିଦେଲେ ଅନ୍ୟମାନଙ୍କ ପକ୍ଷରେ ଆମୋଦ-ପ୍ରମୋଦ ତ ଦିବା-ସ୍ୱପ୍ନ । ହଁ, ସେ କେତେଟା ପର୍ବ-ପର୍ବାଣୀ, ସେଥିରେ ବା

କେତେଟା ଆନନ୍ଦ ମିଳେ । ସାଧାରଣ କୃଷକ ବା ଶ୍ରମିକଙ୍କ ଘରେ ଯେପରି ଦୋଳ, ଦଶହରା ପ୍ରଭୃତି ବଡ଼ ବଡ଼ ପର୍ବ କଟେ ତା ଦେଖିଲେ ଆଖିକୁ ଲୁହ ଚାଲିଆସେ ।

ବିଲାତ ଯିବା ଆଗରୁ କୌଣସି ଦଶହରା ପର୍ବ ପାଇଁ ଲୁଗାପଟା ଆଣିବାକୁ ଯାଇଥାଏ ବଜାରକୁ । ପାଖରେ ଯଥେଷ୍ଟ ସମ୍ବଳ ନ ଥାଏ; କିନ୍ତୁ ପିଲାମାନଙ୍କଠାରୁ ବରାଦ ମିଳିଥାଏ ଅନେକ କିଛି । କାହାର ଚପଲବେଳ, କାହାର ଖେଳନା ବେଳ, କାହାର ହାତ ଥିବାବାଲା, କାହାର ବେଲ୍ଟ, କାହାର ନାଲି, କାହାର ବାଇଗଣି, କାହାର ଅନ୍ୟ ରଙ୍ଗର ଜାମା, ଜଙ୍ଘିଆ ଆଦି ବରାଦ ଥାଏ । ପାଖରେ ଯାହା ଧନ ଥାଏ ତାକୁ ମନେ ରଖି ବାରମ୍ବାର ହିସାବ ଯୋଡ଼ିଲି । ବହୁ ଚତୁରତା, ବହୁତ ପୋଖତ ବୁଦ୍ଧି ଲଗେଇ ନାନା କାଟକସୁର କଲି । ବୋଧହୁଏ କୌଣସି ଗାଣିତିକ କୌଣସି ଗଣିତ ସୂତ୍ର ସମାଧାନରେ ଏତେଦୂର ମନୋନିବେଶ କରିନଥିବେ କି କୌଣସି ଅର୍ଥମନ୍ତ୍ରୀ ତାଙ୍କ ବଜେଟ୍ ସନ୍ତୁଳିତ କରିବାକୁ ଏତେ ସାଧନା କରିନଥିବେ । ତଥାପି ଚାହିଦା ପୂରଣର କୌଣସି ଆଶା ଦେଖିଲିନି । ସାହସ ବାନ୍ଧି ବାହାରି ପଡ଼ିଲି ବଜାରକୁ । ସେଠି ହୁଏତ କିଛି ବୁଦ୍ଧି ଦିଶିଯିବ । ଶସ୍ତା-ସୁବିଧା ଦେଖି କିଛି କିଣିଆଣିବ ।

ସେଦିନ ବୋଧହୁଏ ଷଷ୍ଠୀ । ମା ମହିଷାସୁରମର୍ଦ୍ଦିନୀ ଭକ୍ତଙ୍କ ମଣ୍ଡପମାନଙ୍କରେ ଦୁଇଭୁଜା, ଚତୁର୍ଭୁଜା ବା ବହୁଭୁଜାରୂପେ ଦର୍ଶନ ପାଉଥାନ୍ତି । କେଉଁଠି ଖଣ୍ଡା-ଖପରଧାରିଣୀ ତ କେଉଁଠି ଘଣ୍ଟା-ଚାମର ଶୋଭିନୀ । କେଉଁଠି ଖାଣ୍ଟି ଓଡ଼ିଆଣୀ ବେଶ ତ କେଉଁଠି ଚଟି-ଚରଣା ଆଧୁନିକା ରୂପ । ସହରର ବିଭିନ୍ନ ରାସ୍ତା ଗଳିକନ୍ଦିରେ ଢୋଲ-ମହୁରି, ତୁରୀ-ପେଁକାଳି କମ୍ପି ଯାଉଥାଏ । ସାରି ଗୋଳମାଳ ଅସମ୍ଭାଳ । ଚାଲିଥାନ୍ତି ଲୋକ ପଲପଲ ହୋଇ । ଚାରିଆଡ଼ୁ ଜନସ୍ରୋତ ଯେମିତି ମାଡ଼ିଆସୁଥାଏ । ଲୋକ ଓ ତାଙ୍କ ପିଲାଙ୍କ ଦେହରେ ଘୋର ଦାରିଦ୍ର୍ୟ, ମହା ଦୈନ୍ୟର ଛାପ ମାରିଥାଏ । ଏହି ଗରିବମାନଙ୍କ ମଧ୍ୟରେ ଜଣେ ବୟସ୍କା ମଧ୍ୟବୟସ୍କ ଲୋକ ତାର ଅଳିଅଳି ଦୁଲାଳକୁ ସାଙ୍ଗରେ ଧରି

ଦୋକାନ ଉପରକୁ ଉଠିଲା । ମୁଁ ସେଇଠି ଯାବତ୍ତୀୟ ଅର୍ଥନୈତିକ ବିଚକ୍ଷଣତା ସହ ଗଣିତର କସରତ୍ କରୁଥାଏ ଜାମାପଣ୍ଟା କିଣାରେ । ପିଲାଟି ତାର କୌଣସି ସାଥୀର ଜାମା-ଜଙ୍ଘିଆ ଦେଖି ସେହିପରି ହାଲଏ ତା'ପାଇଁ କିଣିବାକୁ ଏକାଜିଦ୍ ଧରିଥାଏ । କିନ୍ତୁ ବାପ ପାଖରେ ଆବଶ୍ୟକ ଅର୍ଥ ନାହିଁ । ଯାହା କିଛି ଯୋଗାଡ଼ କରିଥିଲା ସେଥିରେ ତାର ଏକୋଇରବଳା ବଶିକେଶନ ପାଇଁ କିଣ ଦ'ଖଣ୍ଡ ଶସ୍ତାରେ କିଣି ତାକୁ ସନ୍ତୁଷ୍ଟ କରିବାକୁ ଚେଷ୍ଟାରେ ଥାଏ । ମାତ୍ର ଯେତେ ଚେଷ୍ଟା କଲେ ତାର ସମ୍ବଳ ଭିତରେ ଜାମା-ଜଙ୍ଘିଆ କିଣାଯାଇ ପାରୁନି । ଏଣେ ପିଲାଟି ମାରସ ଜାମା ନବନି ବୋଲି ବାରମ୍ବାର ଅଳି, ଲଢ଼ କରି ଗଡ଼ିଯାଉଥାଏ । ତେଣେ ଦୋକାନୀ ଦାମ୍ କମିପାରିବନି ବୋଲି ଅଡ଼ି ବସିଥାଏ । ବିଚରା ଲୋକଟିର ଶସ୍ତା ଜାମା-ଜଙ୍ଘିଆ କିଣିବାକୁ ବି ଅଳ୍ପ କିଛି ପଇସା ଅଭାବ ପଡ଼ୁଥାଏ । ଦୋକାନୀକୁ ସେ ବହୁତ ଅନୁନୟ ବିନୟ କଲା, ସେତକ ଛାଡ଼ିଦେବାକୁ । କିନ୍ତୁ ଯମସ୍ୟ କରୁଣା ନାସ୍ତି । ତାର ଏକା ନାହିଁ । ବିଚରାଟି ଧାର, ଦାନ ଏମିତି କେତେ ଦାହି ଦେଇ ସେତକ କାଟିବାକୁ ଚେଷ୍ଟାକଲା । ତଥାପି ଦୋକାନୀ ଅଚଳ, ଅଟଳ । ଅବସ୍ଥାଟା ଇମିତି କରୁଣ ହୋଇଉଠିଲା ଯେ ମୁଁ ମୋ ନିଜର କିଣାକିଣି ସମସ୍ୟା ଭୁଲିଯାଇ ସେ ଲୋକଟିର ନିଅଣ୍ଟ ପଡ଼ୁଥିବା ପଇସାତକ ଦେବି ବୋଲି ବସିଥିଲି । କିନ୍ତୁ ସେତେବେଳକୁ ସେ ବିଚରାର ଧୈର୍ଯ୍ୟଚ୍ୟୁତି ଘଟିଥିଲା । ସେ ସେଇ ଦୋକାନରେ ପିଲାଟିକୁ ନିସ୍ଠୁର ଦ'ଗୁଟି ପାହାର ଦେଇ ତାକୁ ଭିଡ଼ିନେଇ ଗ୍ଲଲଗଲା । ପିଲାଟି ଗହାଧରି କାନ୍ଦୁଥାଏ । ଓଃ ! କି ବିକଟ ଦାରିଦ୍ର୍ୟ ! କି ଭୟାନକ ଦୃଶ୍ୟ ! ଏବେ ବି ସେକଥା ମନେପଡ଼ିଗଲେ ମୋର ହୃଦୟ ଦୁଃଖ ଓ ଯନ୍ତ୍ରଣାରେ ଭରିଯାଏ ।

ପିକାଡ଼ିଲି, ଓ୍ୱେଷ୍ଟ ଏଣ୍ଡର ଆମୋଦ-ପ୍ରମୋଦ ସ୍ଥଳୀ ଓ ବିଳାସ-ବ୍ୟସନର ଆଡ୍ଡା ଜାଗା । ସବୁବେଳେ ଲୋକାରଣ୍ୟ । ଗ୍ଧରିଆଡ଼ୁ ନାଲିରଙ୍ଗର ବସ୍, ଅନେକ ଢଙ୍ଗର ମଟରକାର ମାଡ଼ିଆସୁଥାଏ । ସାପ୍ତାହିକ ଛୁଟି ହେତୁ ଲୋକଭିଡ଼ ଯେମିତି ବେଶୀ । ମୋର ଆଗ୍ରହ ଉନ୍ମାଦନା ବଢ଼ିଗଲା । ଗୋଟିଏ ରେସ୍ତୁରାଁରେ କିଛି କେକ୍ ସ୍ୟାଣ୍ଡୁଇଚ୍, କପେ ଗ୍ଧ' ଖାଇ ମୁଁ ଏଣେତେଣେ ଘୁରିବୁଲିଲି । ହେ ମାର୍କେଟ, ହାଇଡ୍

ପାର୍କ ରୋଡ୍ ଆଡ଼େ ଟିକିଏ ମାଡ଼ି ଚାଲିଗଲି; ହେଲେ ରାସ୍ତାର ଯେପରି ଶେଷ ନାହିଁ, କି ଜନଗହଳିର ବିରାମ ନାହିଁ ।

ମୋର ଇଚ୍ଛା, ଖୁବ୍ ଅଦମ୍ୟ ଚେଷ୍ଟା ବି, ସାରା ସହରଟାକୁ କିମିତି ଏକାବେଳେ ଦେଖିନିଅନ୍ତି । କିନ୍ତୁ ତାହା କି ସମ୍ଭବ ! ତେଣୁ ସାଙ୍ଗସାଥିମାନେ ଠିକ୍ କଲେ, ପିକାଡ଼ିଲି ପରେ ହାଇଡ୍ ପାର୍କ ଯିବାକୁ । "ଏଁ ! ହାଇଡ୍ ପାର୍କ ? ବାଃ ! ବଡ଼ ଚମତ୍କାର ତ ! ବିନା ତେଣେ ଟିକିଏ ଆଗ ବୁଲି ନଆସିଲେ ଚଳିବ !" ମୁଁ ଆନନ୍ଦବିହ୍ୱଳର ହୋଇ କହି-ଉଠିଲି । ହେଲେ ରେସ୍ତୁରାଁରେ ଯେ ପାନାହାର କରିଥିଲୁ ସେ ପିକାଡ଼ିଲି ବୁଲିବୁଲିରେ ଭସ୍ମ ହୋଇଯାଇଥାଏ । ଆଶ୍ଚର୍ଯ୍ୟ କଥା ! ଯେଉଁ ଷ୍ଟେସନରେ ଗାଡ଼ିରେ କୋଇଲା ପଡ଼ିଲା ସେଇଠି ପଇନ୍ଟର ମାରୁ ମାରୁ ସେତକ ଖତମ୍ । ପୁଣି ଆଗକୁ ଗାଡ଼ି ଯିବ କିମିତି ! ପୁଣି ତ କୋଇଲା ଦରକାର । ନା, ଆଉ କିଛି ଉଦରସ୍ଥ ନକଲେ ପେଟର ଜ୍ୱାଳା ସମ୍ଭାଳି ହେବନି ।

ଗୋଟିଏ ଗଳିର ଟିକିଏ ଭିତରକୁ ପଶିଯାଇ ଏକ ଗ୍ରେଟକାଠର ହୋଟେଲ ଭିତରକୁ ଉଠିଲୁ । କାରଣ ପିକାଡ଼ିଲି ଓ ତାର ଆଖପାଖ ରାସ୍ତାର ଛକ ଜାଗାମାନଙ୍କରେ ଯେଉଁ ବଡ଼ ବଡ଼ ହୋଟେଲସବୁ ଥିଲା ସେଥିରେ ଖାଇବା ମହାସୁଲଟା ଏତେ ଚଡ଼ା ଯେ, ସେ ଆଡ଼କୁ ମୁହାଁଇବାର ସାହସ ଆମର ନଥିଲା ।

ହୋଟେଲରେ ବସିଲା ପରେ ସେଠାର ଜଣେ ମହାମାନ୍ୟ ଅର୍ଦ୍ଦଳୀ ଖାଦ୍ୟପେୟର ଏକ ବିସ୍ତୃତ ତାଲିକା (Menu) ଆମକୁ ବଢ଼ାଇଦେଲେ ।

କିନ୍ତୁ କ'ଣ ଏ ତାଲିକାରୁ ବାଛିବ ? କିଛି ଠିକ୍ କରିହେଲାନି । ବମ୍ବେ, ଦିଲ୍ଲୀ, କଲିକତା ପ୍ରଭୃତିରେ ଏ ମେନୁ କାର୍ଡ଼ର ବ୍ୟବହାର ଦେଖିଛି, କରିଛି ବି । କିନ୍ତୁ ସେଠି କିଛି ଅସୁବିଧା ହେଉ ନଥିଲା । କାରଣ ସେଠା ଖାଦ୍ୟପେୟ ସମ୍ବନ୍ଧରେ ସାଧାରଣ ଧାରଣା ଥିଲା । ଭାତ, ପଲାଉ, ବିରିଆନି, ମଟନକରି, କୁରୁମା, ମଟନ-ମସାଲା, ମଟନ-ଦୋପିଆଜା, ଚିକେନ୍ କରି, ପୁରି, ପାମ୍ପଡ଼ ଇମିତି ସବୁ । ଅନ୍ୟ ଶସ୍ତା

ହୋଟେଲରେ ବ୍ୟବସ୍ଥାଟା ଆଉରି ସୁବିଧାଜନକ । ତାଙ୍କର ଯୋଡ଼ାଏ ସିଧା କଥା, ଆମିଷ କି ନିରାମିଷ, ମୁହେଁ ମୁହେଁ ପଚାରିଦେବେ । ଆଉ ଖୁବ୍ ହେଲେ ପଚାରିବେ ମାଛ ଖାଇବ କି ମାଂସ । କିନ୍ତୁ ଏଠି ଏଡ଼େ ତାଲିକା କ'ଣ ?

ଏଥିରେ ଫ୍ରେଞ୍ଚ୍, ଇଟାଲିଆନ୍, ସ୍ପେନିଶ୍ ଇମିତି ସବୁ ଦେଶର ଖାଦ୍ୟପେୟର ନାଁ ଲେଖାହେଲା ପରି ଜଣା ପଡ଼ୁଥାଏ । ଗ୍ରେଟ ହୋଟେଲମାନଙ୍କରେ ତ ଏତେ ଆଡ଼ମ୍ବର ଆଉ ବଡ଼ ବଡ଼ ହୋଟେଲରେ କ'ଣ ହେଇ ନ ଥିବ !

ମୁଁ ଇମିତି ଭାବି ତାଲିକାଟାକୁ ଟିକିଏ ତନଖିଗଲି । ଯେଉଁ ନାଁ ସେଥିରେ ଦେଖିଲି ସେସବୁ ପ୍ରକୃତରେ କ'ଣ ଜାଣି ହେଲାନି । ଅବଶ୍ୟ ଠାଏ ଠାଏ ବିଫ୍, ଚିକେନ୍ ଇମିତି କେତେଟା ଶବ୍ଦଥାଏ । କିନ୍ତୁ ଶେଷ ଆଡ଼କୁ ଥିଲା ଫିସ୍ ଆଣ୍ଡ୍ ଚିପ୍ସ (Fish & chips), ଏଗ୍ସ ଆଣ୍ଡ୍ ବ୍ୟାକନ୍ (Eggs & bacon) ଇତ୍ୟାଦି । ହଁ, ଏଗୁଡ଼ିକ ଟିକିଏ ହୃଦୟଙ୍ଗମ କରିହେଉଚି ।

ସେଠାରେ ଥିବା ଅନ୍ୟମାନଙ୍କୁ ଟିକିଏ ଲକ୍ଷ୍ୟ କଲି । ଦେଖିବା ସେମାନେ କ'ଣ ସେବନ କରୁଛନ୍ତି । କିନ୍ତୁ ଏ କ'ଣ ? ଏ ତ କିଛି ସେବନ କରୁନାହାନ୍ତି । କରୁଛନ୍ତି ଖାଲି ଶୋଷଣ ! ମୋଟା ମୋଟା କାଚ ଜଗ୍‌ରେ କଳରାପଣ ପାଣି ପରି କ'ଣ ପିଉଛନ୍ତି । ଓଃ ! ଏଗୁଡ଼ାକ ବିଅର୍ । ଆଉ କେତେକଙ୍କ ପାଖରେ ସାନ ପାତ୍ରରେ ଈଷତ୍ ହରିତ, ଈଷତ୍ ରଙ୍ଗିନ୍ ତୃବା ସଫେଦ୍ ଏପରି ବିଭିନ୍ନ ରଙ୍ଗର ପାନୀୟ ବି ଥାଏ । କେତେ ଜଣଙ୍କ ପାଖରେ ଶଙ୍ଖ ଥାଳିଆରେ ଧୂଆଁହୋଇଥାଏ ସିଝା କୁକ୍‌କୁଟ, ପ୍ରାୟ ଗୋଟା, ଗୋଡ଼, ମୁଣ୍ଡ ସ୍ପଷ୍ଟ ଜାଣିହେଉଥାଏ । ତା'ସାଙ୍ଗେ ଅବୋଧ, ଅବର୍ଣ୍ଣନୀୟ ଆଉ କିଛି ଖାଦ୍ୟ ।

ଆଚ୍ଛା ଗୋଲକଧନ୍ଦାରେ ପଡ଼ିଲି । କ'ଣ ଖାଇବି ? ବନ୍ଧୁମାନେ ତାଙ୍କ ଇଚ୍ଛାନୁସାରେ ଖାଦ୍ୟ ତାଲିକାରୁ ଅଙ୍ଗୁଳି ନିର୍ଦ୍ଦେଶରେ କ'ଣ ବରାଦ କରୁଥାନ୍ତି । କାଳେ ଅଖାଦ୍ୟ କିଛି ବାଉଳାରେ ବରାଦ କରିଦେବି

ଏହି ଉପରରେ ସେଇ ଫିସ୍ ଆଣ୍ଡ୍ ଚିପ୍‌ସକୁ ଭରସା କଲି । ଖରାପ କ'ଣ ! କାଲକ ତ ମାଛ ମୋର ବଡ଼ ପ୍ରିୟ । ଚିପ୍‌ସମାନେ ତ ଆଳୁଭଜା । ବେଶ୍ ରୁଚିକର ହେବ, ଶସ୍ତା ବି ପଡ଼ିବ ।

ବନ୍ଧୁମାନେ କିନ୍ତୁ ଏଇଟା ପସନ୍ଦ କଲେନି । ଜଣେ କହିଲେ କିଛି କରି (Curry) ବନ୍ଦୋବସ୍ତ କଲେନି, ମଟନ୍ କରି । ଆଉ ଜଣେ କହିଲେ ସାଙ୍ଗେ ସାଙ୍ଗେ ଟିପ୍‌ପଣୀ କଲେ ଏଠି ହୋଟେଲମାନଙ୍କରେ ମଟନ୍ ଆଉ ବିଫ୍ ଭିତରେ ପ୍ରଭେଦଟା ପ୍ରାୟ ରହେନି ।

ଏଁ ! ବିଫ୍ ! ନା, ନା, ସେ ଚଳିବନି । ମନେ ମନେ ଗୋମାତାଙ୍କୁ ସଭକ୍ତି ପ୍ରଣାମ କରି ଫିସ୍ ଆଣ୍ଡ୍ ଚିପ୍‌ସକୁ ଚର୍ବଣ କଲି ।

ସମସ୍ତେ କଣ୍ଟା ଛୁରୀର ସାହାଯ୍ୟରେ ଭୋଜନ କାର୍ଯ୍ୟ ଚଳାଇଥାନ୍ତି । କେହି କେହି ସିଦ୍ଧ କୁକ୍‌କୁଟଙ୍କୁ ଦୁଇ ହାତରେ ଧରି ସେ ବିଚରା ଦଗ୍ଧୀଭୂତ ଜୀବକୁ କାମୁଡ଼ି ରାମ୍ପୁଡ଼ି ଯେତେକେଟି ଯେତେକେଟି ଖାଉଥାନ୍ତି । ପିଲାଦିନେ କେଉଁ ବହିରେ ଅସୁରଙ୍କର ଚିତ୍ର ଦେଖିଥିଲି । ଦୁଇଟା ବିକୃତକାୟ ଜୀବ ହାଡ଼ଲଗା ବଡ଼ ବଡ଼ କଞ୍ଚା ମାଂସଖଣ୍ଡମାନ କାମୁଡ଼ି ଖାଉଥାନ୍ତି । ମୋତେ ଏ କୁକ୍‌କୁଟଭୋଜୀ ସାହେବମାନେ ସେମିତି ଦେଖାଗଲେ । ବଡ଼ ବିଚିତ୍ର ଲାଗିଲା ସଭ୍ୟ ମନୁଷ୍ୟ ଜାତିର ଏ ପ୍ରକାର ଆଚରର ବ୍ୟବହାର; ଆହୁରି ବିଚିତ୍ର ଲାଗିଲା ଖାଇବା ପିଇବା ସାଙ୍ଗରେ ଚାଲିଥିବା ଆମୋଦ-ପ୍ରମୋଦ, କେଳି କଉତୁକ । କେତେଜଣ ମହିଳା ସେଠି ଜୁଟିଯାଇଥାନ୍ତି । ଅବଶ୍ୟ ସେମାନଙ୍କ ରୂପଯୌବନରେ ସେପରି କିଛି ବିଶେଷତ୍ୱ ନଥାଏ । କିନ୍ତୁ ଦେହଟାକୁ ଘଷାମଜା, ସାଜସଜା ଖୁବ୍ ଯତ୍ନରେ କରି ରାଣୀ ମହୁମାଛି ପରି ପୁରୁଷମାନଙ୍କ ମଧ୍ୟରେ ସଗର୍ବେ ଆସନ ଜମେଇ ଦେଇଥାନ୍ତି । ପୁରୁଷମାନେ ଯେମିତି ସେମାନଙ୍କୁ ତାଙ୍କ ପୂରା ପ୍ରଣଟା ସମର୍ପି ଦେବାକୁ ବିକଳ । ଟିକିଏ ଟିକିଏ କଥାରେ ଖାଲି ଡିଅର, ଡାର୍ଲିଂ, ଲଭ ଇମିତି କୁହାକୁହି ହେଉଥାନ୍ତି । ପ୍ରେମ-ସାଗର ଯେମିତି ଉଦ୍‌ବେଳିତ ହୋଇଉଠିଥାଏ । କି କଥା ଏ ! ଏମାନେ କଣ ପ୍ରକୃତରେ ପରସ୍ପରକୁ ଇମିତି ଭଲପାନ୍ତି । ପାଉଥିବେ । ସାହେବ ଦେଶ ଏ । ଏଠି ସବୁ ସୁନ୍ଦର, ସବୁ ଅପୂର୍ବ ।

ରମଣୀମାନଙ୍କୁ ଟିକିଏ ଭଲକରି ଲକ୍ଷ୍ୟକଲି । କଣ ଅଛି ଏମାନଙ୍କ ରୂପଯୌବନରେ ଯାହା ଯୋଗେ ଏମାନେ ଏଠି ଏପରି ଆନନ୍ଦ ଉତ୍ସବ ଲଗେଇଚନ୍ତି । ଠିକ୍ ରଙ୍ଗମଞ୍ଚରେ ଅଭିନୟ କଲାପରି ଜଣା ଯାଉଚି । କିନ୍ତୁ ଏ କଣ ? ଏମାନଙ୍କର ରୂପଯୌବନ ସମ୍ପୂର୍ଣ୍ଣ ନିଜସ୍ୱ ପରି ମନେହେଉନି । ସେଥିରେ ବହୁତ କିଛି କୃତ୍ରିମ ଥିଲାପରି ଜଣା ପଡ଼ୁଚି । ଜଣେ ବୟସ୍କା ମହିଳା ବେଶ୍ ବେହିସ୍ପୂର୍ତ୍ତି କରୁଥାନ୍ତି । କିନ୍ତୁ ବିକୃତ ମାଂସଚର୍ମ ଛଡ଼ା ତାଙ୍କ ଦେହରେ ବିଶେଷ କିଛି ପ୍ରାକୃତିକ ବିଭବ ନଥିଲା । ସବୁ ପ୍ରସାଧନର କରାମତି !

ଗୋଟିଏ କଥା ମନେ ପଡ଼ିଲା, ତାକୁ କେଉଁଠି ମୁଁ ଶୁଣିଥାଏ । ଘଟଣାଟି ଏପରି ଚମତ୍କାର ଯେ ତାକୁ ସହଜରେ ପାସୋରିବା ସମ୍ଭବ ନୁହେଁ । ଜଣେ କେହି ଭାବପ୍ରବଣ ଭାରତୀୟ ଭଦ୍ରଲୋକ ପାଠ ପଢ଼ିବାକୁ ଯାଇଥାନ୍ତି ବିଲାତ । ବୟସ୍କ ନୁହନ୍ତି, ଯୁବକ ଓ ଅବିବାହିତ । ତେଣୁ ବିଦେଶରେ ଲଗାମ୍‌ଛଡ଼ା ଭାବରେ ଦିନ କାଟିବାକୁ ସୁବିଧା ପାଇଥାନ୍ତି । ଲଣ୍ଡନରୁ କେତେଦିନ ପାଇଁ ଯାଇଥିଲେ ପାରିସ୍, ଆନନ୍ଦବିହାର କରିବାକୁ ସେଠାରେ କୌଣସି ରୂପସୀଙ୍କ ପ୍ରେମରେ ପଡ଼ି ଯାଇଥାନ୍ତି । ପଡ଼ିଥାନ୍ତି ଯେ ଏକଦମ୍ ନିର୍ଘାତ୍ ଭାବରେ, ଏକ ବିରାଟ ଇଟାଗଦା ଭାଙ୍ଗି ପଡ଼ିଲା ପରି । ତାଙ୍କ ଆଖିରେ ସେ ଜଣେ ପରମା ସୁନ୍ଦରୀ ଯୁବତୀ, ସର୍ବାଙ୍ଗ ଅପୂର୍ବ ସୌନ୍ଦର୍ଯ୍ୟରେ ଭରା । ରୂପସୀଟି ବି ଏହି ଉତ୍ସାହୀ ଯୁବକଙ୍କ ବନ୍ଧୁତାକୁ ସ୍ୱାଗତ କରିଥାନ୍ତି ସାବେଗରେ ଏବଂ ତାଙ୍କ ସଙ୍ଗସୁଖ ଦେବାରେ ଅକୁହା ପଣ ସ୍ୱରୂପ ବିନା ଖର୍ଚ୍ଚରେ ସିନେମାଥିଏଟର ଦେଖା, ହୋଟେଲ ରେଷ୍ଟୁରାଂରେ ଖାଇବା କ୍ଲବମଇଦାନରେ ବୁଲିବା ଚଳେଇଥାନ୍ତି । ସେ ରୂପସୀ ଥାନ୍ତି କୌଣସି ଗଳିର ଏକ ଫ୍ଲାଟ୍‌ରେ ଏକାକିନୀ । ଏକାକୀ ବି ଥାନ୍ତି ଏ ଯୁବକ ଜଣକ ଅନ୍ୟ ଏକ ଜାଗାରେ । ସେ ରୂପସୀଙ୍କ ପିଛା ପଇସା ଖର୍ଚ୍ଚ କରିବାରେ ଯୁବକଟି ପାଉଥାନ୍ତି ଅପୂର୍ବ ଆନନ୍ଦ । ଦିନରାତି କ୍ଷଣକ ପାଇଁ ତାଙ୍କ ସଙ୍ଗସୁଖ ଭଙ୍ଗ କରିବାକୁ ସେ ଚାହୁଁ ନଥାନ୍ତି । ତଥାପି ରୂପସୀ ଅଙ୍ଗଦାନ କରିନଥାନ୍ତି । ସେଇଟା ସେ ଯେମିତି ଏଡ଼ି ଚାଲିଥାନ୍ତି । ସେଥିରେ କିନ୍ତୁ ଯୁବକଙ୍କର ଦୁଃଖ ନଥାଏ । କବିଙ୍କ ଭାଷାରେ ସେ ବୋଧହୁଏ ଭାବୁଥାନ୍ତି—If winter comes, can

spring be far behind ? ଶୀତ ଯଦ୍ଦି ଆସିଚ, ବସନ୍ତ ଆସିବାରେ ଆଉ କଣ ଡେରି ହୋଇପାରେ ?

ମାତ୍ର ଏ ରୂପସୀଟି ବେଳେବେଳେ କୁଆଡ଼େ ଗାଏବ୍ ହୋଇଯାନ୍ତି ତାଙ୍କ ଭାବାତୁର, କାମାତୁର ପ୍ରେମିକଙ୍କୁ ସନ୍ଦେଶ ନ ଦେଇ । ଏଥିରେ ଯୁବକଙ୍କର ଧୈର୍ଯ୍ୟବନ୍ଧ ଭାଙ୍ଗିଯାଏ । ଭାଙ୍ଗିଯାଏ ଯେ ବିରାଟ ଧାଇଁ କରି ବିରାଟ ସୁଅ ଛୁଟେଇ । ଯୁବକ ବିଚାରା କଣ କରିବେ ? ସେ ତାଙ୍କ ପ୍ରେୟସୀଙ୍କୁ ନ ଦେଖିଲେ ପାଗଳ ହୋଇଉଠନ୍ତି । ପୁଣି ଦେଖାହେଲେ କାନ୍ଦିକୁନ୍ଥେଇ ଅସ୍ଥିର ହୋଇପଡ଼ନ୍ତି । ରୂପସୀଙ୍କର ଯଦ୍ଦି କିଛି ମାନ ଥାଏ ତାକୁ ଭାଙ୍ଗନ୍ତି ବହୁତ କିଛି ଅର୍ଥ ଶ୍ରାଦ୍ଧ କରି ଏବଂ ତାଙ୍କ ମନ ନେବାକୁ ତାଙ୍କ ରୂପଗୁଣର ଉଚ୍ଛ୍ୱସିତ ପ୍ରଶଂସା କରନ୍ତି । ନୁଖୁରା କ ଲୋକ-ଦେଖାଣିଆ ପ୍ରଶଂସା ନୁହେଁ । ଗଭୀର ନିଷ୍ଠାପର ଓ ଆନ୍ତରିକ ଭାବରେ ତୋଷାମଦ କରନ୍ତି । ବେଳେବେଳେ ବିରହବେଦନା ସହ୍ୟ କରି-ନପାରି ରୂପସୀଙ୍କ ଫ୍ଲାଟକୁ ଦଉଡ଼ଯାନ୍ତି । କିନ୍ତୁ ବାନ୍ଧବୀଙ୍କର ପୂରା ତାଗିଦ୍ ଥାଏ ଗୃହ ଭିତରେ ପ୍ରବେଶ ନ କରିବାକୁ ।

ବାହାରୁ ବାରମ୍ବାର ଡ଼ାକ-ଘଣ୍ଟି (Calling bell) ଚିପି ଚିତ୍କାର କରି ଉଠନ୍ତି—

Where are you darling ?

ତୁମେ କେଉଁଠି ପ୍ରେୟସୀ ?

Come out honey ! I cannot wait so long.

ତୁମେ ବାହାରକୁ ଆସ ମାଧୁରିମା ! ମୁଁ ଯେ ଆଉ ଅପେକ୍ଷା କରିପାରୁନି ।

Can I go sweetest ?

ମୁଁ ଭିତରକୁ ଯାଇପାରେ କି ପ୍ରିୟତମା !

Oh, don't darling ! I am coming.

ନା, ଭିତରକୁ ଆସନା ପ୍ରିୟତମ ! ମୁଁ ଯାଉଚି ।

ଉତ୍ତର ମିଳେ ଭିତରୁ ।

କଣ କରିବ ବିଚରା ! ପ୍ରିୟତମଙ୍କ ଆଦେଶ ଅମାନ୍ୟ କରିବାର ସାହସ ନଥାଏ । ଏଣେ କିନ୍ତୁ ପ୍ରେୟସୀଙ୍କ ସାନ୍ନିଧ୍ୟ ନ ପାଇ ପ୍ରାଣ ବଡ଼ ବିକଳ । ତେବେ ଧୈର୍ଯ୍ୟ ଧରି ଅପେକ୍ଷା କରନ୍ତି ପ୍ରେୟସୀ ବାହାରେ ଆସି ଦର୍ଶନ ଦେବା ପର୍ଯ୍ୟନ୍ତ । ଥରେ ବଡ଼ ଅସୁବିଧା ହେଲା । ଭଦ୍ରଲୋକ ଅନେକ ଦିନ ହେବ ବାନ୍ଧବୀଙ୍କୁ ନ ଦେଖି ଏକେବାରେ ବିରହ ବ୍ୟଥାରେ ଘାରି ହୋଇଯାଇଥାନ୍ତି । ହଠାତ୍ ଯାଇ ପହଞ୍ଚିଗଲେ ପ୍ରେୟସୀଙ୍କ ମୁକାମରେ । ବାହାରେ ଅପେକ୍ଷା କରି ଡାକିବାକୁ ଧୈର୍ଯ୍ୟ ରହିଲାନି । ସାହସ ବାନ୍ଧି ବିନା ସୂଚନା ବା ସଙ୍କେତରେ ଭିତରକୁ ପଶିଯିବେ ବୋଲି ସ୍ଥିର କଲେ । ଦେଖିବା ବାନ୍ଧବୀ କଣ କରୁଚି, କପରି ଅଛି ? ଏକ ଅହେତୁକ କୌତୂହଳ ତାଙ୍କ ଭିତରେ ଜାଗିଉଠିଲା । ବିଳାସିନୀ ପ୍ରେୟସୀ ମୋର ତାର ନିଜ ପ୍ରକୋଷ୍ଠରେ କେଳି କଉତୁକରେ ମାତି ଉଠିଥିବ । କେଡ଼େ ସୁନ୍ଦର ସେ ଦିଶୁନଥିବ ! କେଡ଼େ ମନୋମୁଗ୍ଧକର ହୋଇଉଠୁନଥିବ ତାର ଠାଣି, ଗୁହାଁଣି ! ହୁଏତ ସୁକୋମଳ ତୁଳୀତଳ୍ପ ଉପରେ ଅର୍ଦ୍ଧ-ଉଲଗ୍ନ ଅବସ୍ଥାରେ ଢଳି ପଡ଼ିଥିବ ପ୍ରେମାଳସୀ ଭଙ୍ଗୀରେ । ହାତରେ ଥିବ ଚିତ୍ରଜଗତର ଖଣ୍ଡେ ଛବି ବହି ବା ପ୍ୟାରିସବିଖ୍ୟାତ କେତେକ ନଗ୍ନ ଚିତ୍ରର ସଂକଳନ । ନା ମୋତେ ଅନେକ ଦିନ ହେଲା ନ ଦେଖି ବ୍ୟଥାତୁରା, ପ୍ରେମଭିରା ଭଙ୍ଗୀରେ ବସି ଲେଖୁଥିବ ପ୍ରେମଚିଠାଉ ! ନା କୌଣସି ଅପୂର୍ବ ବାଦ୍ୟଯନ୍ତ୍ର ଧରି ମୋ ଉଦ୍ଦେଶ୍ୟରେ ବୋଲୁଥିବ ପ୍ରେମସଙ୍ଗୀତ । ଠିକ୍ ମହାକବି କାଳିଦାସଙ୍କ "ମେଘଦୂତ" ବର୍ଣ୍ଣିନା ପରି :—

ଉତ୍ସଙ୍ଗେ ବା ମଳିନବସନେ ସୌମ୍ୟ ନିକ୍ଷିପ୍ୟ ବୀଣାଂ
ମଦ୍‌ଗୋତ୍ରାଙ୍କ ବିରଚିତପଦଂ ଗେୟମୁଦ୍‌ଗାତୁକାମା
ତନ୍ତ୍ରୀମାର୍ଦ୍ରାଂ ନୟନସଲିଳୈଃ ସାରୟିତ୍ୱା କଥଞ୍ଚିଦ୍
ଭୂୟୋ ଭୂୟଃ ସ୍ୱୟମପି କୃତାଂ ମୂର୍ଚ୍ଛନାଂ ବିସ୍ମରନ୍ତୀ ।

"ଗାଉଣ ଥିବ ଖାଣା ଉପ୍ସଙ୍ଗେ ଯେନ
ଚୁମ୍ବି ଅବମା ଲମ୍ବି ଥିବ ତା ବେଣୀ……"

ବେଣୀ ତ ନୁହେଁ ବବ୍ ବାଳ କାନ୍ଧରେ ଲେଟୁଥିବ । ଏମିତି କେତେ କଣ ସରସ ସୁନ୍ଦର ଚଳ ପ୍ରେୟସୀଙ୍କ ସମ୍ବନ୍ଧରେ ମନରେ ଆଙ୍କି ଘର ଭିତରକୁ ପଶିଗଲେ । କିନ୍ତୁ ସେଠାରେ ଯାହା ଦେଖିଲେ ସେଥିରେ ତାଙ୍କର ଚେତାଚଇତନ ବୁଡ଼ିଗଲା । ଦର୍ପଣ ସାମନାରେ ଠିଆ ହୋଇଚ, ଗୋଟିଏ କଙ୍କାଳସାର ଦରବୁଢ଼ୀର ଏକ ପ୍ରକାର ନଗ୍ନ ମୂର୍ତ୍ତି । ତାଙ୍କର ପାଟିରେ ଦାନ୍ତ ନାହିଁ । ମୁଣ୍ଡରେ କେଶ ବି ନାହିଁ । ଗାଲ ଦୁଇଟା କୋଟରଗତ । ଉରଜ ଅଞ୍ଚଳଟା ପ୍ରାୟ ସମତଳ । ସାମନାରେ ଟେବୁଲ ଉପରେ ରଖାଯାଇଚ, ପରଚୁଳା, ଡୁଳା ବଣ୍ଡା, ମେଞ୍ଚାଏ କାଦୁଅପର କିଛି କଜଳ ଓ ପ୍ରସାଧନର ଅନ୍ୟାନ୍ୟ ସାମଗ୍ରୀ । ଭଦ୍ରଲୋକ ଏସବୁ ଦେଖି କୋକୁଆ ଭୟରେ ମାଇଲେ ଡିଆଁ ନିଜ ବସାକୁ । ଏତିକିରେ ଏ ବିଚିତ୍ର ପ୍ରେମକାରବାର ପରିସମାପ୍ତି ଘଟିଲା ।

ସେ ହୋଟେଲରେ କେଳରଟା ସେ ଅର୍ଦ୍ଧବୁଢ଼ୀ ହୁଏତ ଏହି ପ୍ୟାରିସ୍ ସୁନ୍ଦରୀଙ୍କ ପଟାନ୍ତର । ଯାହାହେଉ ମୁଁ କିଛି fish and chips ଖାଇ ନେଇ, ବନ୍ଧୁମାନଙ୍କ ଗହଣରେ ହାଇଡ୍ ପାର୍କକୁ ବାହାରି ପଡ଼ିଲି ।

ହାଇଡ୍ ପାର୍କ ! ଯାହାକୁ ନେଇ କେତେ ସରସ ସୁନ୍ଦର ଗଳ୍ପ, କେତେ ମଧୁର ପରିକଳ୍ପନା ମନ ଭିତରେ ଜାଗି ଉଠୁଥାଏ । ପୁରାଣ-ବର୍ଣ୍ଣିତ ନନ୍ଦନକାନନର ବର୍ଣ୍ଣନା ମନେ ପଡ଼ିଲା । ସଦା-ପ୍ରସ୍ଫୁଟିତ ପୁଷ୍ପରେ ଭରା, ଚିର ନୃତ୍ୟରତା ଅପ୍ସରାମାନଙ୍କର ବିହାରସ୍ଥଳୀ ଅଜର ଅମର ଦେବତାମାନଙ୍କର ଆମୋଦପ୍ରମୋଦର ପୀଠ ସେ ସ୍ୱର୍ଗର ଉଦ୍ୟାନ । ତାର ମର୍ତ୍ତ୍ୟ-ରୂପାନ୍ତର ବୋଧହୁଏ ଏ ହାଇଡ୍ ପାର୍କ । ତା' କଥା ପଡ଼ିଲେ ଲୋକେ ପ୍ରଶଂସାରେ ପଞ୍ଚମୁଖ ହୋଇ ଉଠନ୍ତି । ଆଜି ମର୍ତ୍ତ୍ୟର ସେହି ନନ୍ଦନକାନନ ନେବାକୁଥିି ହେବ । ମନରେ କି ଅପୂର୍ବ ଉଚ୍ଚାଟ, କି ଅଭିନବ ଉତ୍ସାହ ! ବନ୍ଧୁମାନେ ଯେମିତି ଏ ଉଚ୍ଚାଟଉତ୍ସାହ ମାତ୍ରା ବଢ଼େଇ ଦେଉଥାନ୍ତି । ଅର୍ଥବ୍ୟଞ୍ଜକ ହସ ହସି, ଟିକିଏ ଆଖି ଠାରିଠାରି

ହୋଇ କହିଲେ "ଡେର ହେବ । ଆଜ ଥାଉ, ଅନ୍ୟ ଦିନ ଆସିବା ।"
କି କଥା ଏ ! ଏପରି ଏକ ଆନନ୍ଦଦାୟକ ଉଦ୍ୟାନ ଦେଖିବାରେ କଣ
ଡେରି ସଅଳ ବିଚାର କରାଯାଏ ! ଏମାନେ ଆଗରୁ ଦେଖି ନେଇଚନ୍ତି
ବୋଲି ··ରାଗ ଓ ଅଭିମାନରେ ମୁଁ କୁହୁଳି ଉଠିଥିଲି । କହିଲି
ତୁମେମାନେ ଯଦି ବସାକୁ ଫେରିଯିବ, ଯାଅ । ମୁଁ କିନ୍ତୁ ଆଜ ନିଶ୍ଚୟ
ହାଇଡ୍ ପାର୍କକୁ ଯିବି ।"

—କଣ ଏକା ?

-- ହଁ, ଏକା ।

—ଅବଶ୍ୟ ହାଇଡ୍ ପାର୍କଟା ଏକା ବୁଲିବା ଜାଗା ।

ବନ୍ଧୁମାନେ ସମସ୍ତେ ଖିଲ୍ ଖିଲ୍ ହସି ଉଠିଲେ ।

ଏମାନେ ଇମିତି କୌତୁକ କରୁଚନ୍ତି କାହିଁକି ! ବାସ୍ତବିକ୍ ଆମ
ଲୋକଙ୍କର କୌଣସି କଥାରେ ନିଷ୍ଠା ନାହିଁ । ଏଇଲେ ଯାଇ ଖାଇ
ଗୋଡ଼ୁପରି ଶୋଇବେ । କିନ୍ତୁ ହାଇଡ୍ ପାର୍କପରି ଏକ ସରସ ସୁନ୍ଦର
ସ୍ଥାନ ଦେଖିବାକୁ ଉତ୍ସାହ ନାହିଁ ! ସେମାନଙ୍କୁ ମୋ ନିଷ୍ଠାର ପରାକାଷ୍ଠା
ଦେଖାଇ କହିଲି "ଆଜ ଚାଲି ଟିକିଏ ସେ ପବିତ୍ର ପୀଠକୁ ଚାହିଁଦେଇ
ନେତ୍ର ପବିତ୍ର କରିବା । ପରେ ପଛେ ଆସି ମନପୂରେଇ ଦେଖିବା ।"
ମୋର ଉତ୍କଣ୍ଠା, ଆଗ୍ରହ ଯେମିତି ସେମାନଙ୍କ ଉପରେ ପ୍ରଭାବ ପକେଇଲା ।
ଜୁହ୍ନେଇ କହିଲେ "ହଉ ଚାଲନ୍ତୁ" ।

ପିକାଡ଼ିଲ୍ ସର୍କସ୍‌ରୁ ବସ୍‌ରେ ବସିଲୁ । ସେଠାରୁ ହାଇଡ୍ ପାର୍କ
ଅଳ୍ପ ଦୂର । ମୁଁ ଖାଲି ବିକଳ ହୋଇ ଆଗକୁ ଚାହୁଁଥାଏ । କାଳେ
ଦୂରରୁ ପାର୍କର ସୁନ୍ଦର ସୁନ୍ଦର ବୃକ୍ଷଲତା, ଫୁଲକୁଞ୍ଜ ଆଦି ଦେଖାଯିବ ।
କିନ୍ତୁ କାହିଁ କିଛି ନାହିଁ ତ ! ଆଗ୍ରହର ଆତିଶଯ୍ୟ ମନରେ ଚାପି ଗୋଟାଏ
କିଛି ଅତି ଅପ୍ରତ୍ୟାଶିତ ଅତି ମନୋମୁଗ୍ଧକର ଦୃଶ୍ୟ ଦୃଷ୍ଟିରେ ପଡ଼ିବା
ଅପେକ୍ଷାରେ ଥାଏ । କେତେ ସମୟ ପରେ ବନ୍ଧୁମାନେ ହାଇଡ୍ ପାର୍କ
ହୋଇଗଲା ବୋଲି କଳରବ କରି ଉଠିଲେ । କିନ୍ତୁ କାହିଁ କିଛି ତ ମୋ
ଚାପଚେନିକୁ ଦେଖାଯାଉନି । ଖାଲି ଟିକିଏ ଦୂରରେ ଗୁଡାଏ ଗଛପତ୍ର ଦିଶୁଚି ।

ହେ ହାଇଡ୍ ପାର୍କ ! କାହିଁ ତୋ ରୂପ ମୋହନ ! ଯେ ବେଶେ ମୋହିଲୁ ତୁ ବିଶ୍ୱନୟନ ! ମୋ ମନ ଭିତରେ ଆକୁଳ ନିବେଦନ ଜାଗି ଉଠିଲା । ଆଖି ଆଗରେ ଭାସି ଉଠିଲା ଏକ ବିଚିତ୍ର ଦୃଶ୍ୟ । ମହାକବି କାଳିଦାସ ତାଙ୍କ "ଅଭିଜ୍ଞାନ ଶକୁନ୍ତଳମ୍ ନାଟକରେ ବର୍ଣ୍ଣନା କରିଚନ୍ତି ରାଜା ଦୁଷ୍ମନ୍ତ କିପରି ମାଳିନୀ ନଦୀ କୂଳସ୍ଥ କଣ୍ୱ ମୁନିଙ୍କ ତପୋବନରେ ପ୍ରବେଶ କଲେ । ଦୂରରୁ ତପୋବନର ଶୋଭା ଦେଖି ସାରଥିଙ୍କୁ କହିଲେ, ଦେଖୁଚ ବନ୍ଧୁ !

କୁଲ୍ୟାମ୍ଭୋଭିଃ ପବନଚପଳୈଃ ଶାଖିନୋଧୌତମୂଳା
ଭିନ୍ନୋ ରାଗଃ କିସଳୟରୁଚାମାଜ୍ୟ ଧୂମୋଦ୍‌ଗମେନ
ଏତେ ଚାର୍ବାଗୁପବନଭୁବି ଛିନ୍ନଦର୍ଭାଙ୍କୁରାୟାଂ
ନଷ୍ଟାଶଙ୍କା ହରିଣ ଶିଶବୋ ମନ୍ଦମନ୍ଦଂ ଚରନ୍ତି ।

ଏଇ ଯେ କ୍ଷୁଦ୍ର ନଈ ଅଛି ତାହାର ଜଳ ପବନରେ ଚଞ୍ଚଳିତ ହୋଇ ତୀରସ୍ଥ ବୃକ୍ଷସବୁର ମୂଳ ଧୋଇଦେଉଛି । ଘୃତାହୁତିରୁ ଧୂଆଁ ଉଠି ନବପତ୍ରର ରକ୍ତିମାକୁ ସାମାନ୍ୟ ମଳିନ କରିଦେଇଛି । ଯେଉଁ ସ୍ଥାନରୁ ମୁନିଗଣ କୁଶ ସଂଗ୍ରହ କରି ନେଇଛନ୍ତି ସେହିଠାରେ ହରିଣ ଛୁଆସବୁ ନିର୍ଭୟରେ ଆମ ପାଖରେ ବିଚରଣ କରୁଛନ୍ତି ।

× × ×

ନା ସାରଥି ! ଏପରି ପବିତ୍ର ପୀଠରେ କୌଣସି ଉପଦ୍ରବ କରିବା ଉଚିତ ନୁହେ । ତୁମେ ଏଇଠି ରଥ ରଖ, ମୁଁ ଏଇଠୁ ଓହ୍ଲାଇ ପଦଯାତ୍ରା କରିବି । ସବିନୟ ଭାବେ ଏ ତପୋବନରେ ପ୍ରବେଶ କରିବା ଉଚିତ । ତେଣୁ ତୁମେ ମୋ ମାରାତ୍ମକ ଶରାସନ, ଏ ରାଜକୀୟ ବେଶ-ପୋଷାକ ନିଅ......

ଦୁଷ୍ମନ୍ତଙ୍କ ଭୂମିକା ମୋତେ ଯେମିତି ଧରିନେଇଥାଏ । ବନ୍ଧୁମାନଙ୍କୁ କହିଲି, ଚାଲ ଏଇଠି ଓହ୍ଲାଇ ଚାଲି ଚାଲି ଯିବା ।

ବନ୍ଧୁମାନେ ମୋ ଢଙ୍ଗ ଦେଖି ଏକବାରେ ବିସ୍ମିତ ହୋଇ ପଡ଼ିଥାନ୍ତି । ତେବେ ବସ୍ ଅଟକିଗଲା । ଆମେ ଓହ୍ଲାଇ ପଏଦଲରେ ଆଗେଇଲୁ । ସ୍ୱଭାବ ଦୁଷ୍ମନ୍ତଙ୍କ ପରି ଆମର ବି ସମୀଚ ଆଚରଣ ଦରକାର ।

ମୋର ଚେହେରା ଆଉ ବେଶ, ପୋଷାକ ଯାହା ମୁଁ ତ ଏକବାରେ ବନପୁର ଅବତାର ପରି ଜଣା ପଡ଼ୁଚି । ଆଉ କି ବନପୁ ଆଚରଣ କରିବ । ମୋର ବା କି ଶରୀସନ ବା ବଳାସପୂର୍ଣ୍ଣ ବେଶପୋଷାକ ଅଛି ! ସାରିଦେହଟା ତ ଦୈନ୍ୟରେ ଭରା । ଖାଲି ଏ ବ୍ୟାପକ ଓଭର କୋଟ୍ ଆଉ ସିରାଟ ବ୍ୟାଗ୍‌ଟା ! ଓଭରକୋଟଟା ତ ଗୁଡ଼ିହେବନି ଶୀତ-ଦୌରାତ୍ମ୍ୟ ଯୋଗୁଁ । ଆଉ ମୋ କୋଥଲି-ବ୍ୟାଗ୍‌ରୁ ବା କି ଗନ୍ଧ ପ୍ରକାଶ ପାଇବ ! ନା, ନା, ମୁଁ ବେଶ୍ ବନପ୍ରୀ ସ୍ୱଭାବରେ ଏ "ହାଇଡ୍ ପାର୍କ" ତପୋବନରେ ପ୍ରବେଶ କରୁଛି ।

ରାଜା ଦୁଷ୍ମନ୍ତ ତପୋବନ ଭିତରେ ପ୍ରବେଶ କଲେ । ଓଃ, ଖ୍ବରଆଡ଼େ ଅପୂର୍ବ ଶୋଭା । ଏ କଣ ମହର୍ଷି କଣ୍ୱଙ୍କର ତପୋବନ ନା ଅମରାବତୀର ନନ୍ଦନକାନନ । ଏଠି ପ୍ରବେଶ କରିବାରେ କି ଅପୂର୍ବ ଆନନ୍ଦ ଅପୂର୍ବ ଶାନ୍ତି । ଦୁଷ୍ମନ୍ତ ଇମିତି ଭାବୁ ଭାବୁ ତାଙ୍କ ଡାହାଣ ହାତ କମ୍ପି ଉଠିଲା……

ମୋ ଡାହାଣ ହାତ ବି କାହିଁ ଦୋହଲି ଗଲା । ଓ, କଏ ବାଡେଇ ହୋଇଗଲା । ହେଲେ ସବୁ ଲକ୍ଷଣ ତ ଅଛି । କିନ୍ତୁ ମୁଁ କାହିଁ ଏ ବଳତ ତପୋବନରେ କିଛି ସୌନ୍ଦର୍ଯ୍ୟ ଦେଖିପାରୁନି କି ମୋ ମନରେ ସେମିତି ଶାନ୍ତିସୁଖର ଜୁଆର ଉଠୁନି । କି ଅଘଟଣ !

ଦୁଷ୍ମନ୍ତ ଆଗେଇ ଥାନ୍ତି । କିଛିକ୍ଷଣ ପରେ ରମଣୀ କଣ୍ଠର ସ୍ୱର ଶୁଣିପାରିଲେ । ଦେଖିଲେ ଋଷିକନ୍ୟା ସବୁ କାଖରେ କଳସୀ ଧରି ବୃକ୍ଷ ମୂଳରେ ଜଳ ଦେବାକୁ ଆସୁଚନ୍ତି । ଆହା ! କି ଅପୂର୍ବ ରୂପ ଶୋଭା ! ଏ କଣ ସ୍ୱର୍ଗୀୟ ରଶ୍ମି ନା ନନ୍ଦନକାନନର ପୁଷ୍ପ କେତୋଟି । ରାଜା ଏକେବାରେ ମୁଗ୍ଧ ହୋଇ ଉଠିଥାନ୍ତି………

ହେଲେ ମୁଁ ତ ଏଠି କିଛି ମନୋମୁଗ୍ଧକର ଦେଖୁନି । ଦେଖିପାରୁନି । ହାୟରେ ପାପନୟନ !

ହାଇଡ୍ ପାର୍କର ଗୋଟିଏ କଣରେ ଓହ୍ଲାଇ ଥାଉ । ତାକୁ ହାଇଡ୍ ପାର୍କ କଣର (Hyde Park Corner) କହନ୍ତି । ସେଠାରେ ଲୋକଙ୍କର ଘାର ଭିଡ଼ । ହେବନି ! ମର୍ତ୍ତ୍ୟ ନନ୍ଦନକାନନର ଦ୍ୱାରଦେଶ ସେ ! ମୋ ମନ ବେଶ୍ ପ୍ରଫୁଲ୍ଲ ହୋଇଉଠିଲା । ଆଗରୁ ଦେଖାନଗଲେ କଣ ହେଲା ! ସାରା ଉଦ୍ୟାନଟା ତ ସାମନାରେ । ଏଥର ସବୁ ମନପୂରେଇ ଦେଖିହେବ । ହେଲେ କାଇଁ ତ କିଛି ସେମିତି ବିଶେଷ ସୁନ୍ଦର କି ଚିତ୍ତାକର୍ଷକ ଦେଖାଯାଉନି । କ୍ରମେ ଦେଖାଯିବ । ଏତେ ଅଧୈର୍ଯ୍ୟ କାହିଁକି ? ଧର ଧୈର୍ଯ୍ୟ ଦେଲନରେ ସାନ୍ତ୍ୱନା······

ମନେ ମନେ ନିଜକୁ ସାନ୍ତ୍ୱନା ଦେଇ ଆଗେଇଲି । ତେବେ ଯେମିତି ଅବୁଝା ମନଟା ବିକଳ ହୋଇ ଉଠୁଥାଏ । କାଇଁ କିଛି ତ ଦେଖାଯାଉନି । ଅନ୍ତତଃ ଦୂରରୁ ଫଳପୁଷ୍ପଭରା ବୃକ୍ଷଲତା ଦେଖାଯାନ୍ତା । ଖାଲି ଏ କଣ ଲମ୍ବ ଲମ୍ବ ଗୃକୁଣ୍ଡା ପରି ଗଛ । ଆଉ କଣ ଏଣୁ ତେଣୁ ଅନାବନା ବୁଦା । କିନ୍ତୁ ଲୋକ ଗ୍ଲଲଚନ୍ତି ବହୁତ । ହୁଏତ ପ୍ରକୃତ ଉଦ୍ୟାନଟା ଭିତରେ ଅଛି । ଏ ବୃକ୍ଷ ବୁଦା ଗୁଡ଼ାକ ତାର କେବଳ ବହିରାବରଣ । ସବୁଟା ଯେ ବାହାରୁ ସୁନ୍ଦର ଦେଖାଯିବ ଏହାର କେଉଁ କାରଣ ଅଛି ? ସବଂଶୋଭାର ନିଧାନ ଏ ବିଖ୍ୟାତ ଉଦ୍ୟାନ ତା'ର ସମସ୍ତ ରୂପଲାବଣ୍ୟକୁ ଦ୍ୱାରଦେଶରେ ଅଜାଡ଼ି ଦିଅନ୍ତା କିମିତି ! ସବୁଟା ହୁଏତ "ଫରୁଆର ପରି ଉଦରଜରେ ଭରି" ସଜାଡ଼ି ରଖିଥିବ ମୋପରି ଆଗ୍ରହୀ ରସିକ ଅତିଥିଙ୍କ ପାଇଁ ।

କିନ୍ତୁ ପାର୍କ ଭିତରେ ପଶି ନିଜର କଳ୍ପନାକଳ୍ପନାକୁ ସନ୍ତୁଷ୍ଟ କଲାପରି କିଛି ଦେଖିଲିନି । କଣ ଏ ଟ୍ରେଟ ବଡ ଅସନାଃ ଗଛ ଗୁଡ଼ାକ ! ହେଲେ ବନ୍ଧୁମାନଙ୍କୁ କିଛି ପଚାରୁ ନଥାଏ । କାରଣ ସେମାନେ ହୁଏତ ମୋର ଆଗ୍ରହାତିଶଯ୍ୟକୁ ପସନ୍ଦ କରିବେନି । ତା'ପରେ ହଠାତ୍ ସବୁ ରହସ୍ୟଟା ବୁଝି ମୋ କଳ୍ପନାବିଳାସକୁ ନଷ୍ଟ କରିବ କାହିଁକି ?

ତେବେ ବହୁତ ଲୋକ ଆସୁଥାନ୍ତି । ବହୁତ ଲୋକ ବାହାରି ଯାଉଥାନ୍ତି । ଭିତରୁ କେଉଁଠୁ ମଧୁର ଯନ୍ତ୍ରସଙ୍ଗୀତର ତାନ ଭାସି ଆସୁଥାଏ । ଜାଗାଟା ବେଶ୍ ଉତ୍ସବମୟ, ବେଶ୍ ଆନନ୍ଦମୟ ମନେ ହେଉଥାଏ । ନା, ନା, ସନ୍ଦେହର ଅବକାଶ ନାହିଁ । ନିଶ୍ଚୟ ଏହା ଏକ ସୁନ୍ଦର ମନୋରମ ଉଦ୍ୟାନ । ତା ନ ହେଲେ ଲୋକେ ଏହାର ଏତେ ପ୍ରଶଂସା କରୁଥାନ୍ତେ କାହିଁକି । ଏହାର ଏତେ ଗୁଣ ବଖାଣୁଥାନ୍ତେ କାହିଁକି ! ଏଇ ଯନ୍ତ୍ର-ସଙ୍ଗୀତ ଯେଉଁଠୁ ଭାସିଆସୁଚି "ସେଇଠି କେଉଁଠି ଏହାର ସୌନ୍ଦର୍ଯ୍ୟଗନ୍ଧାଗାର ଲୁଚିରହିଚି । ହେଲେ ସବୁତ ଦେଖାହେବ । "ଧର ଧୈର୍ଯ୍ୟ ଧେନରେ ସାନ୍ତ୍ୱନା·········

କିନ୍ତୁ କ'ଣ ଦେଖାହେବ । ଖାଲି ତ କଣ ଲୋକ ! ଦଳ ଦଳ ହୋଇ, ଯୋଡ଼ ଯୋଡ଼ ହୋଇ ଏଣେ ତେଣେ ବୁଲୁଚନ୍ତି । କେହି ବା ଆସର ଜମେଇ ଦେଇଥାନ୍ତି ଗଛତଳେ, ଖୋଲା ପଡ଼ିଆରେ । ଓ ! ଆନନ୍ଦ କରୁଚନ୍ତି । କେତେ ପ୍ରକାର ପୋଷାକ ପିନ୍ଧି, ଖୁସି ଗପରେ ମାତି ବେଶ୍ ଫୁର୍ତ୍ତି କରୁଥାନ୍ତି ସମସ୍ତେ । କିଏ ପ୍ରେମ୍ବସୀକୁ ବାହୁପାଶରେ ନିବିଡ଼ ଭାବରେ ବାନ୍ଧିଥାନ୍ତି । କିଏ ବା ତାଙ୍କ ପ୍ରେୟସୀଙ୍କ ସହାସ୍ୟ ଓ ସତୃଷ୍ଣ ନୟନରେ ଗୁନ୍ହିଁ ଗୁନ୍ହିଁ ତାଙ୍କ ସହିତ ପାଦ ମିଳାଇ ଚାଲୁଥାନ୍ତି । କିନ୍ତୁ କାଆଡ଼େ ? ନିଶ୍ଚୟ ପାର୍କ ଭିତରକୁ । ପାର୍କଟି ତେବେ ଭିତରେ ଅଛି । ବାହାରେ ମୁଁ ଯାହା ଦେଖୁଚି ସେ କେବଳ ଆନନ୍ଦ ଉତ୍ସବ, କେଳିକଉତୁକର ପୀଠ । ସେହି ବିଖ୍ୟାତ ଉଦ୍ୟାନର ପାଖପାର୍ଶ୍ୱିକ ପରିବେଶ ମାତ୍ର । ଯାହାର ବାହାର ପରିବେଶ ଏଡ଼େ ସୁନ୍ଦର, ଏଡ଼େ ଚମତ୍କାର ସେ ପ୍ରକୃତରେ କେଡ଼େ ସୁନ୍ଦର କେଡ଼େ ମନୋହର ହୋଇ ନ ଥିବ ! କିନ୍ତୁ କାହିଁ ସେ ସୁଶୋଭିତ ଉଦ୍ୟାନ ? ବହୁତ ତ ଚାଲିଲିଣି । ବାଟା ଜୋତା ଯୁପାରେ ମୋ ପାଦ ଦି'ଟା ଯେମିତି କଟକଟ କରି ଉଠୁଥାନ୍ତି । ନାନା କଥା ଭାବି ମନକୁ ଯେତେ ସାନ୍ତ୍ୱନା ଦେଲେ ବି ସେ ସମ୍ଭାଳି ପଡୁ ନାହିଁ । ପାର୍କ କାହିଁ, ପାର୍କ କାହିଁ ବୋଲି ସେ ଯେମିତି ଚିତ୍କାର ଆରମ୍ଭ କରିଦେଇଚି । ଶେଷରେ ଉତ୍କଣ୍ଠାର ଚାପ ସମ୍ଭାଳି ନ ପାରି ବନ୍ଧୁମାନଙ୍କୁ ପଚାରିଲି —

—ଅସଲ ପାର୍କ ଆଉ କେତେଦୂର ?

ଆଉ କେତେ ଦୂର ? ଏଇ କଥାଟା ଯେମିତି ମନ ଭିତରେ ବାରମ୍ବାର ପ୍ରତିଧ୍ୱନି କରି ଉଠିଲା ।

—ଏଇ ତ ପାର୍କ, ଆଉ ଅସଲ କମସଲ କ'ଣ ?

ବନ୍ଧୁମାନଙ୍କ ଭିତରୁ ଜଣେ କେହି ସଗର୍ବେ ଉତ୍ତର ଦେଲେ ।

—ଏଇ ସେ ପାର୍କ ! କିନ୍ତୁ .....

ଆଉ କିଛି କହି ପାରିଲିନି । ମନ ଭିତରୁ ଗୋଟାଏ ନିରାଶ କୋହ ଗୁଡ଼ିଏ ଥରେଇ ବାହାରି ଆସିଲା । ହାୟରେ ବିଧାତା ! କେତେ କଳ୍ପନାଜଳ୍ପନା, କେତେ ଆଶାଆକାଂକ୍ଷା, ସବୁ ଧୂଳିସାତ୍ ହୋଇଗଲା । ଏଇ ଅସନା ଗଛବୁଦା, ଏଇ ଉଚ୍ଚା ନୀଚା ଖୋଲା ପଡ଼ିଆଟା ପାର୍କ, ହାଇଡ୍ ପାର୍କ !

ଦେଖିଲି ଗୋଟାଏ ଜଳାଶୟ ବଙ୍କାକୃତି ଭାବରେ ଭିତରକୁ ଯାଇଛି । କୂଳରେ ରଖାଯାଇଛି କେତୋଟି ଡଙ୍ଗା । କେତେ ହଂସ, ବତକ ଖେଳୁଚନ୍ତି ତା'ର ଧୀର ଶାନ୍ତ ଜଳରାଶି ଭିତରେ ତରଙ୍ଗ ସୃଷ୍ଟି କରି । କେତେ ଲୋକ ତାଙ୍କ ପ୍ରେୟସୀଙ୍କ ସାଙ୍ଗରେ ନାବ କେଳିରେ ମାତି ଉଠିଥାନ୍ତି । ମନେ ପଡ଼ିଗଲା କବି-ସମ୍ରାଟ ଉପେନ୍ଦ୍ରଭଞ୍ଜଙ୍କ କବିତା— ଦେଖିରେ ନଳିନୀ, ନଳିନୀ, ନଳିନୀରେ ପୂରିତ ! ହେଲେ ଏଠି ନଳିନୀ କାହିଁ ? ଏତ ଖାଲି ଦଳନ, ଦଳପୂର୍ଣ୍ଣ ମଇଳା ଗୋଳିଆ ପାଣି । ଦୂରକୁ ସିନା ଏ ଜଳାଶୟଟା ସୁନ୍ଦର ଚକ୍ ଚକ୍ ଦିଶୁଚି ନୋହିଲେ ନିହାତି ମଇଳା ଅପରିଷ୍କାର ପାଣି । ଗାଁ ଗଡ଼ିଆ ଠାରୁ ହୀନ । ତେବେ ମନେକଲେ ଗାଡ଼ିଆ ଗଙ୍ଗା ! ଲୋକେ ମହାନନ୍ଦରେ ଏହାର କୂଳରେ, ଭିତରେ ବିହାର କରୁଛନ୍ତି ।

ଏଇ ଜଳାଶୟଟିକୁ କହନ୍ତି Serpentine ସର୍ପିଳା, ବୋଧହୁଏ ତାର କୁଟିଳା, ଜଟିଳା ଆକାର ହେତୁ । ମୋ ମନ ବି ବିକଳ ହୋଇଉଠିଲା ବିଲାତସ୍ୱର୍ଗର ଏ ମାନସରୋବରରେ ବିହାର କରିବାକୁ । ଅବଶ୍ୟ ଗରମ ହେଉନଥାଏ ଯଦିଚ ସେଇଟା ସେଠାକାର ଖରାଦିନ । ଭାବିଲି ଗାଧୋଇଲେ କିମିତି ହୁଅନ୍ତା ! କିନ୍ତୁ ଗାଧୋଇବାର

ଉପକରଣ ତ କିଛି ଆଣିନ । ମୁଁ ତ ସାର୍ଟ-ପ୍ୟାଣ୍ଟ-ପିନ୍ଧା ସାହେବ ସାଜନ୍ତି । ଏ ବେଶରେ କଣ ଗାଧୋଇବାର ସୁବଧା ହୋଇପାରେ ! ଆମ କଟକ, ପୁରୀ ହୋଇଥଲେ ସିନା ଗାଧୋଇବାଟା ଜମି ଉଠିଥାନ୍ତା । ଖଣ୍ଡେ କଣ ଅଣ୍ଟାରେ ଗୁଡ଼େଇଦେଇ ବାରଦର୍ପରେ ପାଣି ଭିତରକୁ ଲମ୍ପ ଦଅନ୍ତ । ହେଲେ କେହି ତ କଣ ଗାଧୋଉ ନାହାନ୍ତି କ ପହଁରୁ ନାହାନ୍ତି । ବେରସିକ ଲୋକ ଗୁଡ଼ାକ ! ଗାଧୋଇବା ମଉଜ ଏଗୁଡ଼ାକ କୁଆଡ଼ୁ ବୁଝିବେ । ଆମ ପୁରୀଲୋକେ ବେଶ୍ ବୁଝନ୍ତି, ବେଶ୍ ଉପଭୋଗ କରନ୍ତି ଏ ଗାଧୁଆ ମଉଜ ।

ଗୋଟିଏ କଥା ମନେପଡ଼ିଲା । ୧୯୪୨ ମସିହା । ଦ୍ୱିତୀୟ ମହାଯୁଦ୍ଧର ଶେଷ ପର୍ଯ୍ୟାୟ । ଆକସିସ୍ ଦଳୀୟ ଜାପାନ, ସିଙ୍ଗାପୁର, ଚଟ୍ଟଗ୍ରାମ ପ୍ରଭୃତିରେ ବୋମା ପକାଇ ସାରା ଏସିଆରେ ଭୟଭୀତର ସଞ୍ଚାର କରିଥାଏ । କେତେଟା ବୋମା ଆମ କଟକ ଜିଲ୍ଲା କୁଜଙ୍ଗ ପାଖରେ ବି ପଡ଼ିଥିଲା । ସେଥିପାଇଁ କଟକ ସହରରେ କୋକୁଆ ଭୟ ଖେଳଯାଇଥାଏ । ଲୋକେ କେତେ ଗପଗୁଜବ ଆରମ୍ଭ କରିଦେଇଥାନ୍ତି । କିଏ କହୁଥାଏ ଜାପାନୀମାନେ ଆସି ପାରାଦ୍ୱୀପରେ ଓହ୍ଲେଇଲେଣି । କିଏ କହୁଥାଏ ନେତାଜୀ ସୁବାସ୍ ବୋଷ୍ ତାଙ୍କ ଜାତୀୟ ସେନାଙ୍କୁ ଧରି କଲିକତାରେ ଶାସନ ଆରମ୍ଭ କରିଦେଇଚନ୍ତି । ଆଜି ଏକ୍ସପ୍ରେସ୍‌ରେ କଟକ ଆସୁଚନ୍ତି । ଏଇଟା ତାଙ୍କ ଜନ୍ମସ୍ଥାନ କନା ! ଆଉ କିଏ କହିଲା ତାଙ୍କର ଜଣେ ଆତ୍ମୀୟ ଗୁଇନ୍ଦା ବିଭାଗରେ କାମ କରନ୍ତି, ତାଙ୍କ ଜରିଆରେ ସେ ଗୁପ୍ତ ଖବର ପାଇଚନ୍ତି । ଆଜାଦ୍‌ହିନ୍ଦ୍ ଫଉଜ ଆସି ନନ୍ଦକେଶରୀ ପଡ଼ିଆରେ ଆସ୍ଥାନ ଜମେଇଦେଲେଣି । ସେଠା ବାଇଗଣ କିଆରିରେ ତମ୍ବୁ ପଡ଼ିଚି । ଗଉଡ଼ସବୁ ତାଙ୍କ ଗାଈଗୋରୁ ଘେନି ପଡ଼ିଆରୁ ପଳାଇ ଆସିଲେଣି । ତାଙ୍କ ସାଙ୍ଗରେ ଆଉଜଣେ କଣ୍ଠ ମିଳାଇ କହିଲେ ପଳେଇ ଆସିବା କଥା, ଗୁଳି ଫୁଟିଲେ ଗାଈ ହୁରୁଡ଼ିବେ । ପୁଣି କିଏ କହୁଥାଏ, ହୁରୁଡ଼ିବେ କଣ । ଏକଦମ୍ ସମସ୍ତେ ବାଞ୍ଝ ହୋଇଯିବେ । ଆଉ ଜନ୍ମ କରିବେନି । କଟକ ସହରକୁ ଦୁଧକଷ୍ଟ ନିଶ୍ଚୟ ପଡ଼ିବ । ଆଉ କିଏ କହୁଥାଏ, ନେତାଜୀ ଏକଦମ୍ ଦୁନିଆଁକୁ ଚମକେଇଦେବେ । ଆଉ କିଏ କହୁଥାଏ ସୁଭାଷବୋଷଙ୍କୁ ସାହେବମାନଙ୍କର ଭାରି ଡର । ସେ ଖାଲି ଘୋଡ଼ା ଚଢ଼ି

ଆସିଲେ ଓଡ଼ିଶାରେ ଯେତେ ସାହେବ ଅଛନ୍ତି ସେ ସମସ୍ତେ ଭୟରେ ପଳେଇବେ । ତେଣିକି ତ ଖାଲି କଟେଣ୍ଟରେ ବସିଲେ ଶାସନ ଚାଲିଲା । ଆଉ ଜଣେ କିଏ ବୁଢ଼ାଲୋକ ଏକଥା ଶୁଣି କହୁଥାନ୍ତି, ଆରେ ତୁମେ ସୁଭାଷ ବୋଷ୍, ସୁଭାଷ ବୋଷ ହେଉଛି ଯେ ତୁମକୁ ସେ ବଡ଼ ହୋଇ ପାରନ୍ତି କିନ୍ତୁ ମୋତେ ନୁହେଁ । ମୁଁ ତାଙ୍କ ବାପା ଜାନକୀବାବୁଙ୍କ ମୋହରିର ଥିଲି । ସୁଭାଷକୁ ମୁଁ କୋଳେଇ କାଖେଇ ମଣିଷ କରିଛି । ମୁଁ ତାଙ୍କୁ ଯାହା କହିବି ସେ ତା କରିବେ । ଆଉ ଏଣିକି କିଛି ଚିନ୍ତା ନାହିଁ, ଡରଭୟ ନାହିଁ । ଆମର ସବୁ ଦୁଃଖ ଅସୁବିଧା ଏଥର ଚାଲିଯିବ । ସୁଭାଷ ଆସିଲେ ତାଙ୍କୁ ଛଣ ପୁଳାଏ ମାଗିବି । ମୋ ଘରଟା ଦି'ବର୍ଷ ହେଲା ଛପର ହୋଇନି... ।

ଏତେ କଥାକୁ କେଉଁଠି କି'ଣ ଗୁଡ଼ାଏ ଶବ୍ଦ ଶୁଣିଲେ ବୋମା ମାଡ଼ ଡରରେ ସମସ୍ତଙ୍କର ପିଲେଇ ପାଣି । କଟକ ସହରବାସୀ ଏକବାରେ ଭୟରେ ଗୁମୁଆ ହୋଇଯାଇଥାନ୍ତି । ଗୋଟି ଗୋଟି ହୋଇ ପଳାଉଥାନ୍ତି ଗାଁଗହଳକୁ ନିଜ ପରିବାର ଓ ପିଲାକୁ, କୋରଣା ଆଦି ଆସବାସ ଧରି । ଧାଡ଼ି ଧାଡ଼ି ଶଗଡ଼ ଗାଡ଼ି ପ୍ରତି ସାହି, ବସ୍ତିରୁ ଚାଲିଥାଏ, କିନ୍ତୁ କୁଆଡ଼େ ? କିଏ ମଫସଲରେ ଥିବା ତାଙ୍କ ଘରକୁ ଯାଉଥାନ୍ତି । କିଏ କେଉଁ ଦୂର ଦୂରାନ୍ତରକୁ ।

ସରକାର ତ ସମ୍ବଲପୁରକୁ ରାଜଧାନୀ ଉଠାଇ ଦେଇ ନିଶ୍ଚିନ୍ତ । ସମସ୍ତେ ଯେମିତି ଭାବୁଥାନ୍ତି କଟକ ସହରରୁ ପଳେଇଗଲେ ରକ୍ଷା । କିଏ ଏହା ସପକ୍ଷରେ ଯୁକ୍ତିବାଢ଼ି କହୁଥାଏ—କଟକ ହିରକୁ ମହାବିପଦ ମାଡ଼ି ଆସିଲାଣି । ଜାପାନ ତ ଏଇଠୁ ଭାରତ ଶାସନ କରିବ । ଏପରି ସୁବିଧା ଜାଗା ତାଙ୍କୁ ମିଳିବ କେଉଁଠୁ ? ଦୁଇପଟେ ନଈ । ବାରବାଟୀ ଭିତରେ ରହିଲେ ଶତ୍ରୁ ଭୟ ନାହିଁ । ବର୍ଷାଦିନେ ତ ଏଠି ଯମ ପଶିବନି ଆଉ ଶତ୍ରୁ ! ସତେ ଯେମିତି ଆକ୍‌ସିସ୍ ଶକ୍ତିଙ୍କର ଏଇ କଟକ ନଗର ଧବଳ ଝଟଗର ଉପରେ ଆଖି ।

ଏଇ କୋକୁଆଭୟ ଆମ ଘରେ ବି ପଶିଲା । ମୋର ନନା (ବାପା) ଓ ମୋ ସ୍ତ୍ରୀ ଏସବୁ ଗପ ସାହି ପଡ଼ିଶାରୁ ଶୁଣି ମଫସଲକୁ

ଫେଳେଇବାକୁ ଜିଦ୍ ଧରିଲେ । ଆମର ବି ମଫସଲରେ ଖଣ୍ଡେ ଦାନ୍ତଲଗା ସ୍କୁଲଘର ଥାଏ । ସେଠାକୁ ଗ୍ଲଲଗଲେ ନିରାପଦ । ବୋମା ଭୟ ନାହିଁ । ସ୍କୁଲରେ ତ ବୋମା ପଡ଼ିଲେ ସେ ଦୁହାଡ଼ ପରି ଜଳି ଉଠିବ । ପୁଣି ଆମ ଘରେ ଯେଉଁ ପୁରୁଣା ପୋକରା ବାଉଁଶ ଅଛି ନା, ତାକୁ ତ ନିଆଁ କାଉଁରିଆ ପରି ଜାଳିଦେବ । ମୁଁ ଗାଁକୁ ଯିବାକୁ ଜମା ମଙ୍ଗୁନ ଥାଏ । କଟକରେ ଯଦି ବୋମା ପଡ଼ିବ, ଗାଁଗୁଡ଼ାକ କମିତି ନିରାପଦ ହେବ ? ତା'ପରେ ସେଠି ସାପ କାମୁଡ଼ାରେ କି ଅନ୍ୟ କୌଣସି ଦୈବୀ ଦୁର୍ଘଟଣାରେ ପ୍ରାଣ ଯାଇପାରେ । ବଡ଼ ବ୍ୟକ୍ତିମାନେ ସ୍ୱସ୍ଥାନ ପରିତ୍ୟାଗ କରନ୍ତି ନାହିଁ । ଏଠି ମଲେ କିଏ ବା ପଚାରିବ ବା ବୁଝିବ । କେହି କେହି ବା ଗ୍ଲେଟକାଟର ଗୋଟାଏ ଶୋକସଭା କରିବେ । କିନ୍ତୁ ଗ୍ରାମାଞ୍ଚଳରେ ତ ଜନ୍ମମୃତ୍ୟୁ ଟଗୋଟାଏ ସାଧାରଣ ଘଟଣା । ସେଠି ତୁମେ ଗଲେ ବା ମଲେ ସେଥିକି କେହି ଗୁରୁତ୍ୱ ଦେବେନି । ନାଁ, ଆମେ ଗାଁକୁ ଯିବାନି, ମୁଁ ଜିଦ୍ ଧଇଲି ।

କିନ୍ତୁ ମୋ ଜିଦ୍‌ଠାରୁ ମୋ ନନା ଓ ସ୍ତ୍ରୀଙ୍କର ଜିଦ୍ ବଳିଗଲା । କିଏ କ'ଣ କହୁଚି ସେମାନେ କାନଡେରି ଶୁଣୁଥାନ୍ତି । ମୁଁ ଅଫିସ୍‌ରୁ ଆସିଲାକ୍ଷଣି ଆରମ୍ଭ ହେଇଯାଏ ନାନା ଆଳାପ ଆଲୋଚନା, ଯୁକ୍ତି ତର୍କ କଟକକୁ ବୋମାବିପଦ ନେଇ । ଶେଷରେ ମୁଁ ସେମାନଙ୍କ ଗ୍ଲପରେ ଏଡ଼ି କୋକୁଆଭୟର ଶିକାର ହେଲି ।

ଦିନେ ସନ୍ଧ୍ୟାରେ ଘରର ଶିଳ, କୋରଣା, ଖଟଚଉକି ଆଦି ଯାବତୀୟ ଆସବାବ ଧରି ଆମେ ବାହାରି ପଡ଼ିଲୁ ଶଗଡ଼ ଯାନରେ ସୁଦୂର ମଫସଲସ୍ଥ ଆମ ଗାଁକୁ । ରାତିଯାକ ଘୋର ଅନ୍ଧକାରରେ ବଣ ଗହୀର ଦେଇ ଯାତ୍ରା ଗ୍ଲଲିଥାଏ । ଓଃ ! ସେ କି ଭୟାନକ ପରିସ୍ଥିତି ! ବେଳେ ବେଳେ ଭୟରେ ଦେହ ଥରି ଉଠୁଥାଏ । ଯାଃ, ଟ୍ରେର ଡକାୟତଙ୍କ ହାତରେ ପଡ଼ିଲେ ତ ପ୍ରାଣଗଲା । ମୁଁ ଇମିତି କେତେ କ'ଣ ବାଟଯାକ ଭାବୁଥାଏ ।

ଯାହାହେଉ କୌଣସିମତେ ତହିଁଆରଦିନ ସନ୍ଧ୍ୟାବେଳକୁ ଗାଁରେ ସପରିବାରେ ପହଞ୍ଚିଗଲି । ସେଠାରେ ନନା ଓ ସ୍ତ୍ରୀଙ୍କୁ ଛାଡ଼ି ଜ୍ଞାତିସ୍ୱଜନଙ୍କୁ ନାନା ପ୍ରକାରେ ପ୍ରବୋଧି ପୁଣି ବାଟଦେଇ କଟକ ଫେରିଲି ।

ସେଇଟା ଚନ୍ଦନଯାତ୍ରା ସମୟ । ଗ୍ରବଲ ଆହାହା କ ଦୁଃଖର କଥା ! ଏ ବୋମା ଭୟରେ ଆମ ରସିକ ପୁରୀବାସୀଙ୍କର ତ ଏତେବଡ଼ ଚନ୍ଦନ ମଉଜଟା ଖରାପ ହେଇଯାଇଥିବ । ହଉ, ଟିକଏ ନରେନ୍ଦ୍ର ପୋଖରୀ ଆଡ଼େ ବୁଲି ଆସିବା । ସେ ଜାଗାରେ ଏ ସମୟରେ କେତେ ଆନନ୍ଦ-ଉତ୍ସବ ଲାଗେ । କିନ୍ତୁ ଏଇଲେ ତ ସେଠି କୁଆକୋଇଲି ନ ଥିବେ । ଏ ଜାପାନ ଯେଉଁ ହଇଚଇ କଲାଣି ସେଥିରେ ତ ପ୍ରାଣ ଯାଉଚି କି ରହୁଚି ଠିକ୍ ନାହିଁ । ଆଉ ଚନ୍ଦନ ଝୁଲଣ ମଉଜ କଥା ପଚାରୁଚି କିଏ ?

କିନ୍ତୁ ନରେନ୍ଦ୍ର କୋଣରେ ପହଞ୍ଚି ଦେଖେ ତ ଘଟଣା ଅନ୍ୟ ପ୍ରକାର । ସେଇ ଗୋଳମାଳ, ସେଇ ଭିଡ଼, ସେଇ ମଲ୍ଲୀମାଳ, ସେଇ ଶୋଲ ବଡ଼ା ! ଏ କ'ଣ ! ଜାପାନ ତେବେ ପୁରୀବାସୀଙ୍କୁ ବୋମାମାଡ଼ରୁ ଛାଡ଼ି କରିଚି କି ? ହେଇଥିବ । ପୁରୀ ଜଗତର ନାଥ ଜଗନ୍ନାଥଙ୍କ ପୀଠ । ପଣ୍ଡାମାନେ ତାଙ୍କ ଯାତ୍ରୀ ଗୁମାସ୍ତାଙ୍କ ଜରିଆରେ ବା ଅନ୍ୟ କୌଣସି ପ୍ରକାରେ ଜାପାନ ଉପରେ ପ୍ରଭାବ ପକାଇଥିବେ ।

ଯାହାହେଉ ଚନ୍ଦନ ଯାତ୍ରା ଚାଲିଚି । ଚାରିଆଡ଼େ ଓଡ଼ିଶୀ ସଙ୍ଗୀତର ଝଙ୍କାର, ଜାଗାଘରମାନଙ୍କରୁ ଘଣ୍ଟା ମାଦଳର ଅଗୁଡ଼ି ଶବ୍ଦ ଭାସି ଆସୁଥାଏ । ଠାଏ ଠାଏ ଚାଲିଥାଏ ଭାଙ୍ଗପାଚକର ମଉଜ । କି ଆଶ୍ଚର୍ଯ୍ୟ ! କଟକ ପୁରୀ ଭିତରେ ଏତେ ପ୍ରଭେଦ ! ସାହସ ଧରି ଜଣେ ପଣ୍ଡାଙ୍କୁ ପଚାରିଲି—"ଆପଣମାନେ ଏତେ ସଂଖ୍ୟାରେ ଏଠି ଜମା ହେଇଛନ୍ତି । ଜାପାନୀମାନେ ଯଦି ଆସି ବୋମା ପକାନ୍ତି······।"

ପଣ୍ଡା ମହାଶୟ ଟିକଏ ଗମ୍ଭୀର ହୋଇ ପୁରୀ ବଜାରବୋଲି ଭାଷାରେ ଜାପାନକୁ ଏପରି ଗାଳିଦେବା ଆରମ୍ଭ କରିଦେଲେ ଯେ, ମୁଁ କାନରେ ହାତ ନ ଦେଇ ରହିପାରିଲି ନି । କହିଲେ—

"ବେଢ଼ିପୋର ଏତେ ଗୁମାନ ! ଯେଉଁଠି ସ୍ୱୟଂ ଜଗନ୍ନାଥେ ବିରାଜମାନ କରିବା ହେଇଛନ୍ତି, ସେଠି ବୋମା ପକେଇବ । ଶଶୁର-ପୁଅର ଶଙ୍ଖୀ ଚିପି ଦେବୁନି ।" ଇତ୍ୟାଦି ।

ଭଦ୍ରଲୋକ ଭାଙ୍ଗ ନିଶାରେ ମସଗୁଲ ଥା'ନ୍ତି । ତା'ପରେ ଚଳେଇ ଦେଲେ ଅଭଦ୍ର ଅଶ୍ଳୀଳ ଭାଷାରେ ଭର୍ତ୍ସନା, ଯାହା ଛୁଣ୍ଡିକୁ ଆସିଲା ।

ସ୍ୱୟଂ ଜାପାନ ଏ ଭାଷା ଶୁଣିଲେ ପ୍ରକୃତରେ ଆଉ ମୁଣ୍ଡ ମୁହାଁଇବନି ।
ଭଦ୍ରଲୋକ ଶେଷରେ ତାଙ୍କ ବକ୍ତୃତାର ଉଣିତା କରି କହିଲେ—
"ଶଳା ! ମରିଗଲେ ପାଣି ପାନି ଏ ପାଇବ, ମଉଜ ମିଳିବ କାହୁଁ ?"
ଅବଶ୍ୟ ।

ପଣ୍ଡା ମହାଶୟ ଆଗରୁ ଦେହରେ ତୈଳ ମର୍ଦ୍ଦନ କରିଥାନ୍ତି । ବେକରେ ମଲ୍ଲୀ ମାଳ, ହାତରେ ଗୋଲବଡ଼ା ଥାଏ । "ଆଜ ଏ କି ଗୁମାନରେ ଚନ୍ଦ୍ରାନନା !"...ଗୀତ ବୋଲି ପାଣିରେ ଲମ୍ଫ ଦେଲେ । ମୁଁ ତାଟକା ହୋଇ ଗୃହିଁଥାଏ ।

ସତକଥା, ମଉଜ ମିଳିବ କାହୁଁ ? ହଁ, ସେମାନେ ଯେ ଜାଣନ୍ତି ଗାଧୁଆ ମଜଜ କ'ଣ ! ଆଉ ଏ ବିଲାତ ହାଇଡ୍ ପାର୍କରେ କିଏ ବୁଝିବ ତା'ର ମାହାତ୍ମ୍ୟ !

ଇମିତି କେତେ କ'ଣ ଭାବ ଭାବ ସେଇ ଜଟିଳା କୁଟିଳା ଜଳାଶୟ ସର୍ପେଣ୍ଟାଇନ୍ ପାଖରେ ଠିଆ ହେଲି । ବନ୍ଧୁମାନେ ବିରକ୍ତ ହୋଇ ଉଠିଲେ ।

—କ'ଣ ସ୍ୱା'କୁ ଏତେ ଦେଖୁଛନ୍ତି ?

—ନାଇଁ, ଗୃଲ ।

ପୁଣି ସମସ୍ତେ ମିଶି ଆଗେଇ ଗୃଲିଲୁ । ଅଳ୍ପ ଦୂରରେ ଶୁଣା-ଯାଉଥାଏ ମିଳିତ ଯନ୍ତ୍ରସଙ୍ଗୀତର ଗୁରୁଗମ୍ଭୀର ଝଙ୍କାର । ଯାହାହେଉ ବିଲାତବାସୀଙ୍କ ବୁଦ୍ଧିଟା ବଡ଼ ଚମତ୍କାର । ଏତେବଡ଼ ପାର୍କ, ଏତେ ଲୋକଙ୍କ ବିହାରସ୍ଥଳୀ, ସେନା ଏଠି ଟିକିଏ ଯନ୍ତ୍ରସଙ୍ଗୀତର ବ୍ୟବସ୍ଥା ନ ହେଲେ କ'ଣ ଫୁର୍ତ୍ତି କି ଆଡ୍ଡା ଜମିବ !

ବାସ୍ତବିକ୍ ଯୁବକଯୁବତୀ ଓ ବାଳକବାଳିକାମାନଙ୍କ ଲୀଳାୟିତ ଭଙ୍ଗୀରେ ବେଶ୍ ଜଣାପଡ଼ୁଥାଏ ଏ ଯନ୍ତ୍ରସଙ୍ଗୀତର ପ୍ରଭାବ । କେଉଁ କେଉଁ ତରୁଣ ତାରିଲ୍ଲରେ ଏହି ମଧୁମୂର୍ଚ୍ଛନାର ଖିଅ କଣ୍ଠରେ ଧରିନେଇ ମଦନମୋହନ ବମାନରେ ଚନ୍ଦନଯାତ୍ରାକୁ ବଜେ କଳ୍ପତରି ଦୋହଲି

ଦୋହଲି ଗୁଲଥାନ୍ତି । ଏମାନଙ୍କ ଢଙ୍ଗରଙ୍ଗ, କଥାବାର୍ତ୍ତା ସବୁଥିରେ ଯେପରି ଏ ସଙ୍ଗୀତର ପ୍ରଭାବ ପରିଲକ୍ଷିତ ହେଉଥାଏ । ସବୁଟା ଛନ୍ଦମୟ ଜଣାପଡୁଥାଏ ।

ଏଥିମଧ୍ୟରେ ଗୋଟାଏ ବିଚିତ୍ର ଘଟଣା ମୋ ଆଖିରେ ପଡ଼ିଯାଇ ଥିଲା । ବନ୍ଧୁମାନଙ୍କ ଖିଲିଖିଲି ହସ, ଅନ୍ୟମାନଙ୍କର ସସ୍ମିତ ସୂଚକ୍ ଏସବୁ ଘଟଣାକୁ ଆଉରି ସୁସ୍ପଷ୍ଟ କରିଦେଉଥାଏ । ଆଗରୁ ବିଳାତର ରାସ୍ତାଘାଟ, ପାର୍କ ମଇଦାନରେ ଚାଲିଥିବା ବୈଧ ଓ ଅବୈଧ ପ୍ରେମ କାରବାର ସମ୍ବନ୍ଧରେ ଶୁଣିଥିଲି । କେତେଟା ଘଟଣା ବି ଦେଖିଥିଲି; କିନ୍ତୁ ଏତେଟା ଖୋଲାଖୋଲି ଏସବୁ ଏଠି ଚାଲେ ବୋଲି ମୋର ଧାରଣା ନ ଥିଲା । କ'ଣ ଏକଥା ! ଏମାନେ ଖୁବ୍ ସଭ୍ୟ ବୋଲି ଏତେ ଗର୍ବ କରନ୍ତି, ଆଚାର ବ୍ୟବହାର, ଖିଆପିଆରେ ଏତେ ମାର୍ଜିତ ଓ ସଜାଗ କିନ୍ତୁ ଏ ଖୋଲା ପଡ଼ିଆରେ ଇମିତି କୁକୁର ବିରାଡ଼ି ପରି··· । ଅସମ୍ଭବ କ'ଣ ? ଅଙ୍ଗ ଦହଇ ଯାଉ ଅନଙ୍ଗ ବାଣ, ସ୍ଥାନ ଅସ୍ଥାନ ତା'ର ସବୁ ସମାନ ! ସ୍ୱାଧୀନ ଦେଶ । ସବୁ କଥାରେ ସବୁ କାମରେ ନରନାରୀଙ୍କର ଅଖଣ୍ଡ ସ୍ୱାଧୀନତା । ସୁବିଧା ଦେଖି ବା ଅସୁବିଧାରେ ପଡ଼ି ଚଳେଇଚାନ୍ତି ତାଙ୍କ ଅବିଦ୍ୟା ।

ଯନ୍ତ୍ରସଙ୍ଗୀତ ଆସରରେ ଯାଇ ପହଞ୍ଚିଗଲୁ । ଯନ୍ତ୍ରବାଦକମାନେ ସୁନ୍ଦର ପୋଷାକ ପିନ୍ଧି ଖୁବ୍ ତନ୍ମୟ ଭାବରେ ତାଙ୍କ କାର୍ଯ୍ୟରେ ରତ ଥାଆନ୍ତି । ଏକ ଅପୂର୍ବ ମୂର୍ଚ୍ଛନା, ଅଗ୍ରାଢ଼ ଉନ୍ମାଦନା ଚାରିଆଡ଼େ ଖେଳି ଯାଉଥାଏ । କେତେକ ରସିକ ରସିକା ଏହି ଆନନ୍ଦ ହିଲ୍ଲୋଳର ଚାପ ସମ୍ଭାଳି ନ ପାରି ତାଳେ ତାଳେ ପାଦ ପକେଇ ନାଚିବାକୁ ଆରମ୍ଭ କରିଥାନ୍ତି । ବାଦକମାନଙ୍କ ଭିତରେ ଥା'ନ୍ତି ଜଣେ ପ୍ରବୀଣ ବୃଦ୍ଧ ସଙ୍ଗୀତଜ୍ଞ । ସେ ବେହେଲାକୁ ହାତରେ ଧରି ବିଭିନ୍ନ ଅଭିନୟ ସହ ଏମିତି ଉଚ୍ଚାଙ୍ଗ ଝଙ୍କାର ସୃଷ୍ଟି କରୁଥାନ୍ତି ଯେ, ସମସ୍ତେ ଭାବାବେଗରେ ତନ୍ମୟ ହୋଇ ଉଠୁଥା'ନ୍ତି । ଅନ୍ୟ ବାଦକମାନେ ବି ତାଙ୍କର ଅନୁସରଣ କରି ସେମାନଙ୍କ ତାନ ଖୁବ୍ ଜୋରରେ ଟାଣି ଦେଉଥାନ୍ତି । ଫଳରେ ତରୁଣ ତରୁଣୀ-ମାନଙ୍କର ପାଦର ଗତି ଆଉରି ଚଞ୍ଚଳ ହୋଇ ଉଠେଥାଏ । ତାଙ୍କ ମୁଖମଣ୍ଡଳରେ ଉଙ୍କିମାରେ ଆସେ ଗଭୀର ରଙ୍ଗିନ୍ ଆଭା । ସମସ୍ତେ ଯେପରି

ଘିବବିଷ୍ଠେର । ମଞ୍ଚିରେ ମଞ୍ଚିରେ ଉଚ୍ଛୃଙ୍ଖଳ ହାସ୍ୟରୋଳ ଓ କରତାଳି ଜାଗାଟିକୁ ଆହୁରି ଶବ୍ଦମୁଖର କରୁଥାଏ । ଉପସ୍ଥିତ ଜନତା ହାଃ ହାଃ କରି ଉଠୁଥାନ୍ତି । ବାଃ ! ବଡ଼ ଚମତ୍କାର !

ସନ୍ଧ୍ୟା ନଇଁ ଆସୁଥାଏ । ସେଇଟା ଅବଶ୍ୟ ଘଣ୍ଟା ଦେଖି ବୁଝିବାକୁ ପଡ଼େ । କାରଣ ଆମ ଦେଶପରି ସେଠି ଆକାଶରେ ସୂର୍ଯ୍ୟଙ୍କ ସ୍ଥିତି ଦେଖି ସମୟ ନିରୂପଣ କରିବା ସମ୍ଭବ ନୁହେଁ । ଏପରିକି ବିଲାତ ଦେଶରେ ଦେବ ଦିବାକରଙ୍କର ନିୟମିତ ଉଦୟ ଅସ୍ତ ହୁଏ କି ନାହିଁ ବୁଝିବା କଷ୍ଟକର । ତାଙ୍କୁ ଆକାଶମଣ୍ଡଳରେ ସ୍ପଷ୍ଟ କ୍ୱଚିତ୍ ଦେଖିବାକୁ ମିଳେ । ତେଣୁ ଘଣ୍ଟା ଦେଖି ସବୁକାମ କରିବାକୁ ହୁଏ । ଏଇମାନଙ୍କ ଯୋଗେ ବୋଧହୁଏ ଘଣ୍ଟାର ସୃଷ୍ଟି । ଆମ ଦେଶରେ ତ ସୂର୍ଯ୍ୟଙ୍କୁ ଦେଖି ସମୟ ବେଶ୍ ଜାଣିହୁଏ ।

ଗଛଆଡ଼େ ଯେପରି ଅନ୍ଧାର ବଢ଼ିଯାଉଛି । ଆକାଶ ମେଘାଚ୍ଛନ୍ନ । ସେ ଦେଶରେ ସବୁବେଳେ ଆକାଶଟା ଜଳଦଖଣ୍ଡମାନଙ୍କରେ ଘନଘୋର ରହେ । ପ୍ରାୟ ସବୁବେଳେ ବର୍ଷା ଲାଗିଥାଏ । ହୁଏ ତ ଆଜି ବି ବର୍ଷା ହେବ । ବନ୍ଧୁମାନେ କହିଲେ ଚାଲନ୍ତୁ ଯିବା । ଯିବା ? ମୁଁ ଯେପରି ଦୋଦୋପାଞ୍ଚ ହେଉଥାଏ । ବିକଳ ମନର ଅତୃପ୍ତ ବାସନା ମୋତେ ଅସ୍ଥିର କରୁଥାଏ । ଗୋଡ଼ ଦି'ଟା ଅଟକି ଯାଇଥାଏ ।

—ଆଉ ଟିକିଏ କ'ଣ ଦେଖିଥାନ୍ତେ !

ମୁଁ ଉତ୍ତର ଦେଲି ।

—କଣ ଅଛି ଏଠି ଦେଖିବେ !

ଗୋଟେ ନଗଟ ପଡ଼ିଆ ବା ତୋଟା । ତେବେ ବହୁତ ରଙ୍ଗ ଫୁଲ ଫୁଟିଛି । ଖାଲି ଦେଖାସୁନ୍ଦର କଥାରୁ ବଡ଼ । ବିଲାତର ସବୁଟା ଏଇ ରଙ୍ଗ-ଫୁଲ ପରି, ଦେଖିବାକୁ ସୁନ୍ଦର ଜକ୍‌ଜକ୍ କିନ୍ତୁ ସାରବସ୍ତୁ ନାହିଁ । ଏ ହାଇଡ୍ ପାର୍କରେ ସବୁ କରିହୋଇପାରେ, କିନ୍ତୁ ଏ ଫୁଲରେ ହାତ ନ ଦେବାକୁ କଡ଼ା ତାକିଦ୍ । ଯୁଚ୍ଛ ଫୁଲ ! ବନ୍ଧୁମାନେ ଏମିତି ଚ୍ଛଳେଇ କହିଲେ ।

ତେବେ ବି ମୋ ମନ ବଳୁନଥାଏ, ସେଠୁ ଗ୍ଲଡ଼ି ଆସିବାକୁ; କିନ୍ତୁ ଆମେ ବୁଲୁଥାଉ, ଯେମିତି କେତେ ଜଣ ପଥଭଣା ଯାତ୍ରୀ, ଯାହା ଖୋଜନ୍ତି ପାଉନାହାନ୍ତି ତଥାପି ଆଗେଇଚ୍ଛନ୍ତି ନାନା ଅଶାଆକାଙ୍କ୍ଷା ମନରେ ଧରି । ମୁଁ ଚାରିଆଡ଼କୁ ତନ୍ନ ତନ୍ନ କରି ଚାହୁଁଥାଏ । ଖାଲି ମଣିଷ ତ ! ଯୋଡ଼ ଯୋଡ଼ ହୋଇ ବୁଲୁଥାନ୍ତି, ବସିଥାନ୍ତି, ଶୋଇଥାନ୍ତି । କେହି ଯୁବକ ଯୁବତୀ ଏକା ଏକା ଚାରିଆଡ଼େ ବୁଲୁଥାନ୍ତି କ'ଣ ଖୋଜି ଖୋଜି । କିନ୍ତୁ କ'ଣ ? ହଁ, ସାଥୀ । କୌଣସି ଯୁବକ ବା ବୟସ୍କ ପୁରୁଷ ଏମିତି ବୁଲୁ ବୁଲୁ ସଙ୍ଗିନୀଟିଏ ପାଇଲେ ଆନନ୍ଦରେ ଆତ୍ମହରା ହୋଇ ଉଠୁଥାନ୍ତି, ଯେମିତି ସ୍ୱର୍ଗସମ୍ପଦ ପାଇଲେ । ସାଥିହୀନା ମହିଳା ଓ ଯୁବତୀ ବି ଖୋଜୁଥାନ୍ତି ସଙ୍ଗୀ । ଏଣେ ତେଣେ ବୁଲି କେଉଁଠି ଅଟକିଯାନ୍ତି । ବୋଧହୁଏ ଦେଖନ୍ତି ତାଙ୍କ ଇପ୍‌ସିତ ପ୍ରେମିକ ଅନ୍ୟ କାହାକୁ ଧରି କେଳି ଆରମ୍ଭ କରିଚନ୍ତି । ମୁହଁ ଫୁଲେଇ ଫେରି ଆସନ୍ତି । ତାଙ୍କ ପୁରୁଷ ଯଦି ଅନ୍ୟ ସହିତ ପ୍ରେମରେ ମାତିଲା ତାଙ୍କଠାରେ ଆଉ ଦରକାର କ'ଣ ? ମହାକବି ଭଞ୍ଜ ଲେଖିଚନ୍ତି । ଭ୍ରମର ରାତିସାକ କଇଁ ଫୁଲରେ ବସି ମଧୁପାନ କରେ । ତା'ର ଦେହ ଫୁଲରେଣୁରେ ପାଂଶୁଳ ହୋଇ ଉଠିଥାଏ । ସେହି ବିଟପ ଭ୍ରମର ସକାଳେ ପଦ୍ମ ପାଖକୁ ଆସିଲେ ସେ ତାକୁ ପ୍ରତ୍ୟାଖ୍ୟାନ କରେ ।

ନବାଶ ଭୃଙ୍ଗ କୁପିତେବ ପଦ୍ମିନୀ
ନ ମାନନୀ ସଂସହତେଽନ୍ୟସଙ୍ଗମଂ ।

ଯାଃ ! କେଉଁଠି କେଉଁ କଥା ! ତଥାପି ଏ ହାଇଡ୍ ପାର୍କ । ବିଲାତର ବିଖ୍ୟାତ ହାଇଡ୍ ପାର୍କ !

ରାତି ହୋଇ ଆସିଥାଏ । ଦ୍ରୁତ ପଦରେ ମାର୍ବଲ ଆର୍କ ଆଡ଼କୁ ଆଗେଇଲୁ । ମାର୍ବଲ ଆର୍କ ହେଉଚି ହାଇଡ୍ ପାର୍କର ଆଉ ଗୋଟିଏ ଗମନାଗମନର ଦ୍ୱାର । ତାର ଆଖ ପାଖରେ ଲୋକ ଭିଡ଼ ଖୁବ୍ ବେଶୀ । ଗୋଟିଏ ଜାଗାରେ ଜନଗହଳି ଜମାଟ ବାନ୍ଧି ଯାଇଥାଏ । ଟିକିଏ ଆଗେଇଯାଇ ଦେଖିଲି, ଜଣେ ସ୍ଥୂଳକାୟ ଶ୍ୱେତାଙ୍ଗ ବୃଦ୍ଧ ତାର ରୁଗ୍‌ଣା ସ୍ତ୍ରୀକୁ ଧରି ଚଳେଇଥାଏ କଣ ଗୋଟାଏ ହଟଚମଟ ଖେଳ । କେତେବେଳେ ନିଜେ ନାଚୁଥାଏ, କେତେବେଳେ ସ୍ତ୍ରୀକୁ ନଚଉଥାଏ ।

କେତେବେଳେ ବିଭିନ୍ନ ଭଙ୍ଗୀରେ ଗଡ଼ପଡ଼ ଲୋକଙ୍କୁ ହସାଉଥାଏ । କେତେବେଳେ ସ୍ତ୍ରୀର ଅଣ୍ଟାକୁ ଧରି ନେହ୍ୱଆମି କରୁଥାଏ । ମଝିରେ ମଝିରେ ଗୋଟାଏ ପୁରୁଣା ହ୍ୟାଟ୍ ଦେଖେଇ ଦେଖଣାହାରିଙ୍କଠାରୁ କିଛି ମାଗେ । କିଏ କେମିତି ସେଥିରେ ଗୋଟାଏ ସିଲିଂ କି କେତେଟା ପେନସ୍ ପକାଇ ଦିଅନ୍ତି । ବାଃ ! ଏଠି ଏସବୁ ଚାଲେଟି ! ଆମ ଦେଶର କେଳାକେଳୁଣୀଙ୍କ ନାଚ କି ଘଣ୍ଟପାଟୁଆଙ୍କ ଡେପାଗୀତ ନୁହେଁ ଖାଲି ନେହ୍ୱଆମି କରି ପେଟ ପୋଷିବାର ଫିକର । କିସ ପୁଣି ଦେଖା ନ ଯାଏ ଏ ବିଲାତ ରାଜ୍ୟରେ ।

ମର୍ବଲ ଆର୍କର ଅଳ୍ପ ଦୂରରେ Speaker's corner । ସେଠାରେ ଡାବଲ ପଟା ପରି ଶସ୍ତା କାଠରେ ତିଆରି ପିଢ଼ ଉପରେ ଠିଆହୋଇ କେତେକ ଲୋକ ବକ୍ତୃତା ଚଳେଇଥା'ନ୍ତି ଉଚ୍ଚୈଃ ସ୍ୱରରେ । କିଏ କହୁଥାଏ, ଈଶ୍ୱର ନାହାନ୍ତି, କିଏ ମେରି-ନନ୍ଦନ ଯିଶୁଙ୍କର ଅଶେଷ ପ୍ରଶଂସା କରୁଥାଏ । କିଏ ବୁଝାଉଥାଏ ଅର୍ଥନୀତି, କିଏ ରାଜନୀତି, କିଏ ଆଉ କଣ । କିନ୍ତୁ ସମସ୍ତେ ଭାବପ୍ରବଣ ଭାବରେ ତାଙ୍କ ବକ୍ତୃତା ଚଳେଇଥାନ୍ତି । ଏତେ କଥାକୁ ଶ୍ରୋତା କାହାନ୍ତି ? କିଏ ସେ ବାଟରେ ଯାଉ ଯାଉ ଟିକିଏ ସେଠି ଠିଆ ହୋଇଯାଉଥାଏ । କିଏ ବାଟ ଆଡ଼େଇ ଚାଲିଯାଉଥାଏ କିନ୍ତୁ ସେଥିକି ଏ ଡାବଲ ବାକ୍ସ ବକ୍ତା (Soap-box orator) ମାନଙ୍କର ଖାତିର ନଥାଏ । କିଏ ଥଙ୍ଗେଇ କିଏ ଅନର୍ଗଳ ଗପି ଚାଲିଥାନ୍ତି । ଏଇଠି କେତେ ଗୋରା କଳା ଲୋକ ବକ୍ତୃତା ଅଭ୍ୟାସ କରନ୍ତି । ଆମ କୃଷ୍ଣ ମେନନ୍ ବି ଦିନେ ଏଠି ବକ୍ତୃତା କରୁଥିଲେ । ମୋ କଣ୍ଠନଳୀଟା ଯେମିତି ଗଜ ଗଜ କରିଉଠିଲା । ଭାବିଲି, କେଉଁଠି ଠିଆ ହେଇ ଦପଦପ ହାଙ୍କି ଦେବି କି ଏ ଲଣ୍ଡନ ସହର ସମ୍ବନ୍ଧରେ ମୋର ଅନୁଭୂତି ।

କିନ୍ତୁ ବନ୍ଧୁମାନେ ଏଣେ ଉଚ୍ଛନ୍ନ କରୁଥାନ୍ତି ବସାକୁ ଫେରିବାକୁ । ଭାବିଲି ନାହିଁ ଆଜି ଥାଉ । ପୁଣି କେତେବେଳେ ଆସି ନିଜ କରାମତି ଦେଖେଇବି । ପାର୍କରୁ ବାହାରି ଆସି ଅବିଳମ୍ବେ ଆମ କାମ୍ଡ଼େନ ରୋଡ଼୍ ଉଦ୍ଦେଶ୍ୟରେ ବସ୍ ଧରିଲୁ । ମୋତେ ଲାଗୁଥାଏ ମୁଁ ଯେମିତି କୌଣସି ଚିଡ଼ିଆଖାନାରୁ ଫେରୁଚି ।

# ମହାର୍ଘାର୍ଥ ଓ୍ବେଷ୍ଟ୍ ଏଣ୍ଡ୍

କାମ୍‌ଡେନ୍ ରୋଡ଼ର ଆମ ୨୩୫ ନମ୍ବର ଘର ଏକ ଶ୍ବିର ମହଲ ପୁରୁଣା କୋଠା । ସେଥିରେ ଗୋଟିଏ ବଡ଼ ବହୁତ ବଖରା । ମାଲିକ ତାର ଜଣେ ଇହୁଦୀ । ସେ ଖୁବ୍ ଚତୁର ବ୍ୟବସାୟୀ । ନହାତ କେତେଟା ଗୋଟିଏ ଟୁଙ୍ଗୀକୁ ଛାଡ଼ିଦେଲେ ବାକିଟାକୁ କେତୋଟି ସ୍ୱତନ୍ତ୍ର ସ୍ୱଳ୍ପ ଆୟତନର ବାସଗୃହ, ଇଂରେଜରେ ଯାହାକୁ କହନ୍ତି ଫ୍ଲାଟ୍ (flat) ରେ ପରିଣତ କରିଥାନ୍ତି । ପ୍ରତ୍ୟେକ ଫ୍ଲାଟ୍‌ରେ ଗୋଟିଏ ବା ଦୁଇଟି ବଖରା ରହିବା ଘର ଓ ତା' ସହିତ ଏକ କ୍ଷୁଦ୍ର ରନ୍ଧନଶାଳା ସଂଲଗ୍ନ ଥାଏ । କିନ୍ତୁ ଦୁଇଟି ସର୍ବସାଧାରଣ ପାଇଖାନା । ଅନେକ ଭଡ଼ାଟିଆ ଥାନ୍ତି, କେହି ସପରିବାରେ କେହି ବା ମେସ୍ କରି । ମୁଁ କେତେଜଣ ବନ୍ଧୁଙ୍କ ସହ ଗୋଟିଏ ଫ୍ଲାଟରେ ଥାଏ । ସେଇଟା ଭୂମି ମହଲ (ground floor) ରେ ଅବସ୍ଥିତ । ଘରଟି ଆଦୌ ମନୋରମ ନୁହେଁ । କିନ୍ତୁ ଅପେକ୍ଷାକୃତ ଶସ୍ତା ଭଡ଼ା ଯୋଗୁ ଆମେ ତାକୁ ସାନନ୍ଦରେ ବାଛି ନେଇଥାଉ । ସ୍ୱର୍ଗରେ ଆଉ ଭଲ ମନ୍ଦ କ'ଣ ! ସବୁ ତ ସୁନ୍ଦର ! ବିଖ୍ୟାତ ଲଣ୍ଡନ ସହରରେ ଗୋଟିଏ ବସାଘର ମିଳିବ ସେଇ ବଡ଼ ଭାଗ୍ୟ !

ଆମ ଘରକୁ ଲାଗିରହିଥିବା ବଖରାଟି ସାରା କୋଠାଟିର ପ୍ରବେଶ ଓ ବହିର୍ଗମନ ପଥ ରୂପେ ବ୍ୟବହୃତ ହେଉଥାଏ । ସେଇଟା କିନ୍ତୁ ଭରି ଅପରିଷ୍କାର, ବଡ଼ କଦର୍ଯ୍ୟ । ସେଥିରେ ସାରା କୋଠାଟିରେ ଥିବା ସବୁ ଲୋକଙ୍କର ସମାନ ଅଧିକାର । ତେଣୁ ସମସ୍ତେ ତାକୁ ବ୍ୟବହାର କରିବାରେ ହକ୍‌ଦାର । ସମସ୍ତେ ବ୍ୟବହାର କରୁଥିଲେ ମଧ୍ୟ । ତାଙ୍କର ଯେତେ ମଇଳା, ଆବର୍ଜନା ସେସବୁ ଆଣି ଏଇ ଘରେ ପିଙ୍ଗନ୍ତି । ପୁରୁଣା ଖବରକାଗଜ, ପରିବା ଚୋପା, ଅଣ୍ଡାଖୋଳ, ଭୋଜନାବଶେଷ

ଖାଦ୍ୟପଦାର୍ଥ, ଯଥା—ମାଂସ ହାଡ଼, ରୁଟି ଗୁକୁଡ଼ା ଆଦି, ଅନ୍ତଃସାରଶୂନ୍ୟ ମଦବୋତଲ, ବିଭିନ୍ନ ଶାକ୍‌ସବଜି ଭର୍ତ୍ତି ହୋଇ ଆସିଥିବା ଫଲ୍‌ଥିନ୍ ଖୋଳ ବା କାଗଜଠୁଙ୍ଗା ଇତ୍ୟାଦିରେ ସାରା ଘରଟି ଭର୍ତ୍ତି ହୋଇଯାଇ-ଥାଏ । ମୋଟାମୋଟି ପୂର୍ବ କୋଠାଟିରେ ଥିବା ଲୋକଙ୍କ ଜାଣିସୁଚା, ଆଗ୍ରହର ବ୍ୟବହାର, ସଭ୍ୟତା ସଂସ୍କୃତିର ଗୋଟାଏ ଧାରଣା ଏଇ ଅସାମାନ୍ୟ ପର୍ଯ୍ୟୁସିତ୍ତା ମଇଳା ପଦାର୍ଥରୁ ଜନ୍ମିପାରିବ । ଅନ୍ତତଃ ବିଗତ କେତେ ମାସ ଭିତରେ ସେମାନେ କ'ଣ ଖିଆପିଆ କରିଥିଲେ ସେଇଟା ଜାଣିବାରେ କୌଣସି ଅସୁବିଧା ନାହିଁ ।

ଏସବୁ ଦ୍ରବ୍ୟ ବା ଅଦ୍ରବ୍ୟ ପଦାର୍ଥକୁ ତ ରାସ୍ତାରେ ଫିଙ୍ଗି ପାରିବେନି କାରଣ ରାସ୍ତା ମଇଳା ହୋଇଯିବ । ତେଣୁ ଘରେ ସାଇତି ରଖନ୍ତି କେତୋଟି ଡ୍ରମରେ । କିନ୍ତୁ ଏଇ ଡ୍ରମଗୁଡ଼ିକର କଳେବର ସସୀମ; ମାତ୍ର ମଇଳା ଆବର୍ଜନା ଅସୀମ । ଫଳରେ ସେଥିରୁ ଅନେକଟା ଚଟାଣ ଉପରେ ବିଛୁରି ପଡ଼ିଥାଏ । ଲଣ୍ଡନ ନଗରପାଳିକାର ମଇଳା-ବୁହା ଗାଡ଼ି ସପ୍ତାହକରେ ଥରେ ଆସି ତାକୁ ନେଇଯାଏ । କିନ୍ତୁ ପୂରାଟା ନୁହେଁ । କାରଣ ସବୁ ଜାଗାରୁ ସବୁ ମଇଳା ନେଲେ ଟ୍ରକରେ କାମ ଚଳିବନି । ଏଥିପାଇଁ ଗୋଟେ ମାଲ୍‌ବୁହା ଟ୍ରେନ୍ ବ୍ୟବହାର କଲେ ବା କ'ଣ ହୁଅନ୍ତା; କିନ୍ତୁ ସେଇଟା ଯେତେବେଳେ ସମ୍ଭବ ନୁହେଁ, ମଇଳାବୁହା ଟ୍ରକ୍ ଯେତିକି ପାରେ ସେତିକି ନିଏ । ଫଳରେ ବହୁତ ପର୍ଯ୍ୟୁସିତ୍ତା ମାଲ ରହିଯାଏ । ତା'ପରେ ସାହେବ କୁଳି ତ ତଳୁ ପୋଛି ପୋଛି ଏସବୁ ମଇଳା ନେବେନି । ତେଣୁ ଧରଣୀଶାୟୀ ସାମଗ୍ରୀଗୁଡ଼ିକ ପ୍ରାୟ ରହିଯାଏ । କେବେ କୌଣସି କାରଣରୁ ଯଦି ମଇଳାଭାଣ୍ଡ ଭରି ନଥାଏ ତେବେ ଏମାନଙ୍କର ଭାଗ୍ୟ ପଡ଼େ ଏବଂ ସେଥିରୁ କିୟଦଂଶ ଗାଡ଼ିକୁ ବିଦା ହୁଅନ୍ତି । ସୂକ୍ଷ୍ମରେ କହିବାକୁ ଗଲେ ସେ ଘରଟି ପ୍ରାୟ ସବୁ ସମୟରେ ପର୍ଯ୍ୟୁସିତ୍ତା ଆବର୍ଜନାରେ ଭରି ଥାଏ ।

ଏ ଘରଟିର ଗୋଟିଏ କଣରେ ସିଡ଼ି ତଳେ ଥାଏ ସାରା କୋଠାଟିର ଅନ୍ୟତମ ସର୍ବସାଧାରଣ ପାଇଖାନା । ଏହାର ଫ୍ଲାସ୍ ଯନ୍ତ୍ରଟି ପ୍ରାୟ ଅଚଳ ରହେ କାରଣ ବହୁ ଲୋକଙ୍କ ଉଡ଼ାଟଣା ସମ୍ଭାଳିବା

କିଛି ସହଜ କଥା ନୁହେଁ । ତେଣୁ ତାର ଟାଣିବା ଚେନ୍‌ଟା ଛିଣ୍ଡି ଯାଇଥାଏ । ଫଳରେ ଅନେକ ସମୟରେ ପାଇଖାନା ପିଣ୍ଡି ଉପର ଓ ଭିତର ନରବସ୍ଥା, ଟଏଲେଟ୍ ପେଟର ପୁରୁଣା ଖବରକାଗଜରେ ଭରିଯାଏ । କିନ୍ତୁ ପାଖରେ ବାହାରକୁ କୌଣସି ଝରକା ବା କବାଟ ନ ଥିବାରୁ ତାର ଦୁର୍ଗନ୍ଧ ବାହାରକୁ ନଯାଇପାରି ସେ ଘରେ ଘେରିବୁଲେ । ତା' ସାଙ୍ଗରେ ସେ ପଗୃସଡ଼ା ଜନଷର କଦର୍ଯ୍ୟ ମହକ ମିଶି ଇମିତ ଗୋଟାଏ ଦୂଷିତ ଦୁର୍ଗନ୍ଧର ପାଞ୍ଚନ ସୃଷ୍ଟି କରେ ଯେ ତା'କୁ ଆଘ୍ରାଣ କଲାମାତ୍ରେ ଦେହର ସବୁ ଶିରାପ୍ରଶିରା, ଗ୍ରନ୍ଥି, ମସ୍ତିଷ୍କ ଚମକି ଉଠେ । କୋଠାଟିର ଅଧିବାସୀ, ବାହାରର ଅଭ୍ୟାଗତ ଏଇ ବାଟ ଦେଇ ଯିବା ଆସିବାରେ ସେହି ଦୁର୍ଗନ୍ଧରୁ ଦଲକାଏ ଲେଖାଏଁ ଆଘ୍ରାଣ କରୁଥାନ୍ତି । କିନ୍ତୁ ସେଥିପାଇଁ କାହାର ଖାତିର ନଥାଏ କି ସେ ଘରଟିକୁ ସଫା ପରିଷ୍କାର ରଖିବାର କେହି ଉଦ୍ୟମ କରନ୍ତିନି । କି ଦରକାର ! ସର୍ବସାଧାରଣ ବଖରାଟା ତ ସର୍ବସାଧାରଣ ଭାବରେ ବ୍ୟବହାର ହେଉଛି ତାକୁ ସଫା କରିବା ବିଷୟରେ କାହିଁକି କିଏ ଚିନ୍ତା କରିବ !

ଯେଉଁ ଶିକ୍ଷାନୁଷ୍ଠାନରେ ମୋର ପଢ଼ିବାର କଥା ସେଇଟା ଖୋଲିବାକୁ ଆଉ କେତେଦିନ ବାକି ଥାଏ । ତେଣୁ ମିଳିଥାଏ ଲଣ୍ଡନ ସହର ବୁଲିବାର ଓ ବିଲାତ ଦେଶ ଦେଖିବାର ଅପୂର୍ବ ସୁଯୋଗ; କିନ୍ତୁ ଏଣେତେଣେ ବୁଲାବୁଲି କରି ବସାକୁ ଫେରିଲେ ଆଉ ରୁଚି ନାହିଁ । ପୁଣି ସେଇ ନିଜ ଦେଶ, ନିଜ ପିଲାପିଲିଙ୍କ କଥା ମନେ ପଡ଼ିଯାଏ । ବଡ଼ ଅସ୍ୱସ୍ତିକର, ଦୁଃଖମୟ ଲାଗେ ଜୀବନଟା । କେତେ ଚିତ୍ର ଆଖି ଆଗରେ ଭାସିଉଠେ । କେତେ ସୁଖଦୁଃଖଭରା ରମ୍ୟକରୁଣ କାହାଣୀ ମନ ଭିତରକୁ ଘାଣ୍ଟି ପକାଏ । ତେବେ ପୁଣି ଉପାୟ ? ପ୍ରାଣପାତ କରି ଯେଉଁ ଉଦ୍ଦେଶ୍ୟରେ ଏତେଦୂର ଆସିଲି, ମାନସିକ ଦୁର୍ବଳତା ଓ ଭାବପ୍ରବଣତା ପାଇଁ ସେ କଣ ନଷ୍ଟ ହୋଇଯିବ ! ନା, ଚେଷ୍ଟା କରି, ସାହସ ବାନ୍ଧି, କର୍ତ୍ତବ୍ୟପଥରେ ଆଗେଇଯିବାକୁ ପଡ଼ିବ । ମନେ ମନେ ଖୁବ୍ ପ୍ରତିଜ୍ଞା କରି ବସିଲି, ଟିକିଏ ହସ ମାଡ଼ିଲା । ନୀତିଶିକ୍ଷା, ହିତୋପଦେଶ ତ ବହୁତ କିଛି ଅଛି କିନ୍ତୁ କୋମଳ ଚର୍ମ ମାଂସରେ ଗଢ଼ା ଦେହଟା ଆଉ ତାହାର ନରମ ଉପାଦାନରୁ ଉଦ୍‌ଭବ ଏ ମନଟା କଣ ଏତେ ବୁଝନ୍ତି !

ଟିକିଏ ଦୁଃଖ, ଟିକିଏ ଚିନ୍ତାରେ ସେ ହାଉ ହାଉ କରି ଉଠନ୍ତି, ଭାବବିହ୍ୱଳ ହୋଇ ପଡ଼ନ୍ତି । ତେବେ ? ଧରି ଧୈର୍ଯ୍ୟ ସେଥିରେ ସାନ୍ତ୍ୱନା !

ମନର ଏ ଦ୍ୱନ୍ଦ୍ୱ ଭାବକୁ ଆହୁରି ଗୁରୁତର କରେ ପେଟର ଦାଉ । ସେ କୌଣସି କଥା ନ ବୁଝି ବାରମ୍ବାର ତାର ଅଭିଯୋଗ ପେଶ୍ କରେ । ଭୋକ, ଘୋର ଭୋକ, ସବୁବେଳେ ଭୋକ । ମୋ ପରି ସରକାରୀ ଚାକିରିଆ ଯାହାଙ୍କର ଅଗ୍ନିମାନ୍ଦ୍ୟ ରୋଗ ଚିରସହଚର ସେ ପେଟ-ଚିନ୍ତାରେ ଜର୍ଜରିତ ହୋଇ ଅନବରତ ମୁହାଁଁମୁହିଁ କ'ଣ ଖାଇବ, ଖାଲି ଖାଇବ, ସବୁବେଳେ କ'ଣ ଖାଇବ । ବିଲାତ ଶୀତପ୍ରଧାନ ଦେଶ କିନା ! ତେଣୁ ଦେହକଳଟାକୁ ଚାଲୁ ରଖିବାକୁ କୋଇଲା ମାତ୍ରାଟା ଟିକିଏ ବେଶୀ ଦରକାର; ହେଲେ ଯାହା ଖାଇଲେ କ୍ଷଣକେ ଭସ୍ମ । ତା'ପରେ ରାଗ ମସଲା ବିହୀନ ଶାକସବ୍ଜି ବା ମାଛମାଂସ କ'ଣ ପେଟ ପୂରେଇ ଖାଇହୁଏ ! ସେଥିରେ ପୁଣି ବେଶୀକିଛି ଖର୍ଚ୍ଚ ନ କରିବାକୁ ମହା ସାବଧାନତା । ତେଣୁ ପାଉଁରୁଟି, କେକ୍ ବିସ୍କୁଟ୍ ଆଦି ଶସ୍ତା ସୁବିଧା ଜିନିଷଗୁଡ଼ାକ ବିକଳରେ ଗିଳିହୁଏ । କିନ୍ତୁ ସେଥିରେ କି ସମସ୍ୟା ତୁଟେ ! ଯେଉଁଠି କୋଇଲା ଆଞ୍ଚ ଦରକାର ସେଠି ବାଉଁଶପତ୍ର ଜାଳିଲେ କି ଗୁଜରାଣ ମେଣ୍ଟିବ ! ତେବେ ଏଣୁତେଣୁ ଯାହା ମିଳିଲା ସେଥିରେ ସବୁବେଳେ ଚୋଲଟାକୁ ଭର୍ତ୍ତି ରଖିବାକୁ ହୁଏ । ନୋହିଲେ ନିସ୍ତାର ନାହିଁ ।

ବିଲାତଟା ଅନେକ ଦିଗରୁ ବଡ଼ ସୁବିଧା ଜାଗା । ସେଠି ଯେ କଣ ନ ମିଳେ ଇମିତି କିଛି ନାହିଁ । ବିଶେଷତଃ ଭାରତୀୟମାନଙ୍କର ଖାଦ୍ୟପେୟ ପାଇଁ ଯାହା ଦରକାର ସେଥିର ଆଦୌ ଅଭାବ ପଡ଼େନି । ବିଲାତବାସୀ ପୋଖତ ବ୍ୟବସାୟୀ । ପୃଥିବୀର ବିଭିନ୍ନ ଦେଶରୁ ବିଭିନ୍ନ ପ୍ରାନ୍ତରରୁ ଲୋକ ଏଠାକୁ ଆସନ୍ତି । ତେଣୁ ସେମାନଙ୍କ ଚାହିଦା ଅନୁସାରେ ସବୁ ଜିନିଷ ଆଣି ଏଠି ବିକ୍ରି କରନ୍ତି । ଆଳୁ, ବାଇଗଣ, କଦଳୀ, କଖାରୁ, କୋବି, କନ୍ଦମୂଳ, ଶାଗ, ସଜନା ଛୁଇଁ, ଅଦା, ଲଙ୍କା, ପିଆଜ, ରସୁଣ, ଅଟା, ମଇଦା, ଚାଉଳ, ଡାଲି, ଘିଅ ତେଲ ଆଦି ସବୁ ମିଳେ । ତା'ପରେ ମାଛ, ଅଣ୍ଡା ଅପର୍ଯ୍ୟାପ୍ତ । ଆଉ ମାଂସ ବି ବିଭିନ୍ନ ରକମର, କୁକୁଡ଼ା, ଠେକୁଆ, ମେଣ୍ଢା, ଘୁଷୁରି, ଗୋରୁ, ଘୋଡ଼ା । ପୁଣି ଶୁଖୁଆ ମଧ୍ୟ ମିଳେ,

କେବଳ ମାଛର ନୁହେଁ, ଠେକୁଆ ପ୍ରଭୃତିର ବି । ପାଉଁରୁଟି-ମାଖନ, ଛେନା ଦହି ଯାହାକୁ ଯେତେ !

ଆମେ ଯେଉଁଠି ଥାଉ ତାର ଅଳ୍ପ ଦୂରରେ ଗୋଟିଏ ଛକ, ନାଁ ବ୍ରେକ୍‌ନକ୍ । ସେଠାରେ ବହୁ ଦୋକାନ ଅଛି । ପୋଇ, ପାଳଙ୍ଗ ଆଦି ଶାକସବଜିଠାରୁ ଆରମ୍ଭ କରି ବ୍ରାଣ୍ଡି, ହୁଇସ୍କି, ରମ୍, ବିଅର ଆଦି ସୋମରସ ମିଳେ । ମାଛଟି ମୋର ବଡ଼ ପ୍ରିୟ । ଆମ ସେ ଛକରେ ବିଭିନ୍ନ କିସମର ଏବଂ ଜଳଚର ଜୀବଗୁଡ଼ିକ ଯେପରି ସଜାଇ ହୋଇ ରଖା ଯାଇଥାଏ, ତାକୁ ଦେଖିଲେ ମୋ ପାଟିରୁ ଲାଳ ବୁହେ । ହେରିଂ ମାଛଟା ମିଳେ ଅତି ମାତ୍ରାରେ । ଏ ମାଛଟା ଆମ ଦେଶର ପୋହଳା ମାଛପରି, ଆକାରରେ କିନ୍ତୁ ଅପେକ୍ଷାକୃତ ବେଶ୍ ବଡ଼, ଖୁବ୍ ମଞ୍ଜିଆ ଓ ଚକ୍‌ଣିଆ ବି । ଲଣ୍ଡନରେ ଭଲ ଚାଉଳ, ବଡ଼ ବଡ଼ ଫାଳ ହରଡ଼ ଡାଲି, ଅନ୍ୟ ଡାଲି ବି ମିଳେ । ସେସବୁ ଆଣି ସଜାଇ କରି ରଖିଥାଉ । ଏକପ୍ରକାର ବନସ୍ପତି ମିଳେ, ସଂଶୋଧିତ ବାଦାମ୍ ତେଲ ବା ଆଉ କିଛି ସେଥିରେ କୌଣସି ଗନ୍ଧ ନଥାଏ । ଆମ ଭାରତୀୟଙ୍କ ରୋଷେଇବାସରେ ଏଇ ତେଲଟା ବେଶ୍ ଲାଗେ । ଅବଶ୍ୟ ସାହେବମାନେ ତାଙ୍କ ରନ୍ଧାରନ୍ଧିରେ ଲାର୍ଡ (Lard) ବ୍ୟବହାର କରନ୍ତି । ଏଗୁଡ଼ା ଗୋରୁ ମେଣ୍ଢା ଆଦିଙ୍କ ଚର୍ବିରୁ ପ୍ରସ୍ତୁତ । ସେସବୁ ତ ଆମର ଚଳିବନି । ତେଣୁ ଆମେ ଆଶ୍ରା ନେଇଥାଉ ବନସ୍ପତିର । ପ୍ୟାକେଟ୍‌ରେ, ଟିଣରେ ହଳଦୀ ଓ ମସଲା ଗୁଣ୍ଡ ମିଳେ । ତାକୁ କିଣି ରଖିଥାଉ । ତେଣୁ ହାଣ୍ଡିଶାଳ କାରବାରଟା ବେଶ୍ ଜୋରରେ ଜମିଉଠେ । ଭାତ, ଡାଲି, ମାଛ ତରକାରି ଓ ଭଜା, ଆଳୁବାଇଗଣ, ପୋଇକଖାରୁ ଘାଣ୍ଟ ବା ମହୁର, କୋବିଝୋଳ, କୁକୁଡ଼ା ବା ମେଣ୍ଢା ମାଂସ ତରକାରି ଯେଉଁଦିନ ଯାହା ସୁବିଧା ହୁଏ ବ୍ୟବସ୍ଥା କରୁ । ରୋଷେଇଶାଳାରେ ଗ୍ୟାସ୍ ଚୁଲି ଥାଏ । ଯେଉଁ ପାଇପ୍ ଦେଇ ଗ୍ୟାସ୍ ଆସେ ତାହାରି ଦେହରେ ଥିବା ଛିଦ୍ରରେ ଶିଲିଂଏ ଦୁଇ ଶିଲିଂ ପକେଇଦେଲେ ସେହି ମୂଲ୍ୟର ଗ୍ୟାସ୍ ଚୁଲିକି ଚାଲିଆସେ । ସେ ସରିଗଲେ ପୁଣି ଶିଲିଂ ପକେଇ ପୁଣି ଗ୍ୟାସ୍ ଆସିବାର ବ୍ୟବସ୍ଥା କରାଯାଏ । ବେଶ୍ ସୁବିଧା । କାଠ କଣାର ହେଙ୍ଗାମ୍ ନାହିଁ, ଚୁଲି ଫୁଙ୍କାର ଦରକାର ନାହିଁ । ରୋଷେଇ ବସେଇ ଦେଇ ଖବରକାଗଜ ପଢ଼ା, ଘରକୁ ଚିଠି

ଲେଖା, ଗପସପ, ପାଠପଢ଼ା ଗୁଡ଼ିଲେ । ସେଥିପାଇଁ ସନ୍ଧ୍ୟାବେଳେ ବେଶ୍ ପେଟଭରି ଭୋଜନ କରାଯାଏ । ଏଥିରେ ବିଲାତବାସୀର ଦୁଃଖ ଅନେକଟା କଟିଯାଏ । ଅବଶ୍ୟ ଖାଇସାରି ବାସନ ଧୋଇଲାବେଳକୁ ମୁଁହ ଟିକିଏ ଶୁଖିଯାଏ । ତେବେ ଏ କାମଟା ସେତେ କଷ୍ଟଦାୟକ ହୁଏ ନାହିଁ । ଘରେ ବେସିନ୍ ଥାଏ । ସେଥିରେ ପ୍ଲେଟ୍ କପ୍ ସବୁ ରଖି ତାହାଁରେ ଟିକିଏ ପରିଷ୍କାରକ ପାଉଡ଼ର ଛିଞ୍ଚିଦେଇ ଟ୍ୟାପ୍‌ଟା ଖୋଲିଦେଲେ କାମଟା ସହଜରେ ଶେଷ ହୁଏ । କେବଳ ମନରେ ସାମାନ୍ୟ ଅନୁଶୋଚନା ଆସେ । ବିଲାତ ଶିକ୍ଷା ପାଇଁ କେତେ କୃଚ୍ଛ୍ର ସାଧନା କରିବାକୁ ନ ପଡ଼ୁଛି ! ନିଜ ଦେଶରେ ଥିଲେ ଏ ସବୁର ଆବଶ୍ୟକତା ପଡ଼ିନଥାନ୍ତା । ଚାକରବାକରଙ୍କୁ ହୁକୁମ ଦେଇ ସେସବୁ କରାଯାନ୍ତା । କିନ୍ତୁ ବିଲାତରେ ଚାକର ପ୍ରାଣିଟି ବଡ଼ ଦୁଷ୍ପ୍ରାପ୍ୟ । ଯେ ମିଳନ୍ତି ତାଙ୍କର ବେତନ ମାତ୍ରାଟା ଏତେ ବେଶୀ ଯେ ସେ କଥା ଆମ ପକ୍ଷରେ ଚିନ୍ତା କରିବା ସମ୍ଭବ ନୁହେଁ ।

ଓଡ଼ିଶାରୁ ଏପରିକି ଭାରତର ଅନ୍ୟ ପ୍ରଦେଶରୁ ଯେଉଁମାନେ ବିଲାତ ଯାଇଥାନ୍ତି ସେମାନଙ୍କର ଆମ୍ଭମାନଙ୍କ ଭିତରୁ କାହା ସହିତ ଯଦି ପରିଚୟ ଥାଏ ସେମାନେ ସମସ୍ତେ ସପ୍ତାହର ଶନିବାର ରବିବାରରେ ଆସି ଆମ ବସାରେ ଜୁଟିଯାନ୍ତି । ବିଦେଶବାସ ହେତୁ ଆମ ଭିତରେ ଅପୂର୍ବ ଆତ୍ମୀୟତା ଜାଗିଉଠିଥାଏ । ଜମିଉଠେ ବେଶ୍ ଆନନ୍ଦଉଲ୍ଲାସ ଆମ ୨୩୫ ନମ୍ବର କାମଡେନ୍ ରୋଡ଼ରେ । ବହୁତ ଆଳାପ-ଆଲୋଚନା ବହୁତ ଗପସପଗୁଡ଼ିଲେ ଖିଆପିଆ ସାଙ୍ଗକୁ । ତା'ସାଙ୍ଗକୁ ଠିକ୍ ହୋଇଯାଏ ବୁଲାବୁଲିର କାର୍ଯ୍ୟକ୍ରମ । ସିନେମା-ଥିଏଟର ଦେଖିବା, ପାର୍କ-ମଇଦାନରେ ଆନନ୍ଦବିହାର କରିବା, ବଡ଼ ବଡ଼ ବଜାରକୁ ଯାଇ ବିଭିନ୍ନ ସଉଦା କଣାକଣି କରିବା ଇତ୍ୟାଦି । ଅନେକଙ୍କର ଅବଶ୍ୟ ଏଥିରେ ବିଶେଷ ସ୍ପୃହା ନଥାଏ । କିଏ ଦୀର୍ଘ ବିଦେଶବାସ ଚିନ୍ତାରେ ଏକପ୍ରକାର ଭାଙ୍ଗିପଡ଼ିଥାଏ, କିଏ ଗୃହସୁଖ ଭୁଲିଯିବାକୁ ନାଚଗୀତ କ୍ଲବର ଆଶ୍ରା ନେଇଥାଏ । କେହି କେହି ପାଠପଢ଼ା ଚିନ୍ତାରେ ଭାଙ୍ଗିଭିଡ଼ି ନିରାଟ ଉଦାସ ଭାବରେ ଜୀବନ ଯାପନ କରୁଥାନ୍ତି । ମୋର କିନ୍ତୁ ଲଣ୍ଡନ ଓ ବିଲାତ ବୁଲିବାର ଅଦମ୍ୟ ବାସନା । ପାଠ ପଢ଼ାପଢ଼ି ଆରମ୍ଭ ହୋଇଗଲେ ବେଶୀ ବୁଲାବୁଲି କରିବାର ବିଶେଷ ସୁବିଧା ହେବ କି ନାହିଁ;

ତେଣୁ ଆଗରୁ ହେଲେ ଯାହା ସମ୍ଭବ ଦେଖିନେବାକୁ ମନ ମଧ୍ୟ ବ୍ୟାକୁଳ । କୌଣସିମତେ ବୁଲାଆଡ଼େ ବୁଲିବା ଏଇ ହେଲା ମୋର ପ୍ରଧାନ ପ୍ରଣିଧାନର ବିଷୟ । ଅବଶ୍ୟ ବସାକୁ ଫେରିଲେ ଘରକୁ ଚିଠି ଲେଖିବା । ସକାଳ-ସନ୍ଧ୍ୟାରେ ଡାକବାଲା ଚିଠି ଦେଲାକି ନାହିଁ ତା'ର ଅନୁସନ୍ଧାନ କରିବାଟା ବଡ଼ କାମ ହୁଏ । ମନ ଖୁଣ୍ଟୁଥାଏ ସବୁଦିନ ଘରୁ ଚିଠି ଆସୁ । ସେଥିପାଇଁ ମଧ୍ୟ ସ୍ତ୍ରୀ ଓ ପିଲାଙ୍କୁ କଡ଼ା ତାଗିଦ୍ କରିଥାଏ । ସେମାନେ ବି ବହୁତ ଚିଠି ଲେଖନ୍ତି । ବେଳେ ବେଳେ ସେଗୁଡ଼ାକ ଠିକ୍ ସମୟରେ ପହଞ୍ଚେନ । ଆଗ ଚିଠି ପରେ ପର ଚିଠି ଆଗ ପହଞ୍ଚି ବଡ଼ ବିରକ୍ତିକର ପରିସ୍ଥିତି ସୃଷ୍ଟି କରେ । ଗୁଡ଼ାଏ ବାହାରର ଡାକଘର ବିଭାଗକୁ ଗାଳିଦିଏ । ତେବେ ବି ଅନେକ ଚିଠି ମିଳେ । ସେଗୁଡ଼ାକ ତନ୍ନ ତନ୍ନ କରି ବାରିଥିକ ପଢ଼ି କେତେ ସମୟ କାଟେ ।

କିନ୍ତୁ ସୁବିଧା ଅସୁବିଧାକୁ ଖାତିର ନକରି ଗୁରିଆଡ଼େ ବହୁତ ବୁଲେ । ଯେଉଁ ବିଲାତ ଦେଖିବାକୁ ମନରେ ଦୁର୍ବାର ବାସନା ସେଠାକୁ ଆସି ତ ନୀରବ ନିଷ୍କ୍ରିୟ ରହିବା ଠିକ୍ ହେବନି । ବିଲାତର ଭଲ-ମନ୍ଦ ସୁନ୍ଦର-ଅସୁନ୍ଦର ସବୁ ବସ୍ତୁ ଦେଖି ସେ ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବାକୁ ମୋ ମନ ବ୍ୟାକୁଳ ହୋଇଉଠୁଥାଏ । ତେବେ ସନ୍ଧ୍ୟା ଆଗମନରେ ପିକାଡ଼ିଲି ସର୍କସର ସୁନ୍ଦର ଆଲୋକ ରୋଷଣି ଓ ବିଜ୍ଞାପନ ମେଳ ଦେଖିବି, କି ହାଇଡ଼୍ ପାର୍କ, ଗ୍ରୀନ୍ ପାର୍କ, ରିଜେଣ୍ଟ ପାର୍କ ଆଦିରେ ବୁଲିବି ? ଲଣ୍ଡନ ସହରରେ ସର୍ପାକୃତି ଗତିରେ ଯାଉଥିବା ନିତାନ୍ତ ମଇଳା ଜଳଭରା ବିଖ୍ୟାତ ଥେମସ୍ ନଦୀର ସୁନ୍ଦର ଅସୁନ୍ଦର ଶୋଭା ଦେଖିବି କି ଏହାର କୂଳରେ ଗଢ଼ିଉଠିଥିବା ବିଭିନ୍ନ ମଉଜ-ମଜଲିସରେ ଯୋଗଦେବି ? ଆଗ ପାର୍ଲିଆମେଣ୍ଟ ଭବନ (Houses of Parliament), ବକିଂହାମ ରାଜପ୍ରାସାଦ (Bunkimham Palace) ଓ ଓ୍ୱେଷ୍ଟ ମିନଷ୍ଟର ଗିର୍ଜା (Westminister Abbey) କୁ ଯିବି କି ଆଗ ଲଣ୍ଡନ ଦୁର୍ଗ (Town of london) ଓ ଓ୍ୱିଣ୍ଡସର ରାଜପ୍ରାସାଦ (Windsor palace) ପ୍ରଭୃତି ବିଭିନ୍ନ ପୁରାତନ କୋଠା ଦେଖିବି ? ଆଗ ଫ୍ଲିଟ୍ ଷ୍ଟ୍ରିଟ୍‌କୁ ଯିବି କି ଆଗ ଥ୍ରେଡ଼ନିଡ଼ଲ ଷ୍ଟ୍ରିଟ୍‌କୁ ଯିବି ? ଆଗ ଚିଡ଼ିଆଖାନା, ମ୍ୟୁଜିୟମ୍‌ସବୁ ଦେଖିବି କି ଆଗ ଥିଏଟର-ସଙ୍ଗୀତ

ଅନୁଷ୍ଠାନମାନଙ୍କରେ ଗ୍ରାହକତା କରିବ ? ଆଗ ଲଣ୍ଡନ ସହର ଭିତରେ ବୁଲିବ କି ଆଗ ବାହାରର ଦର୍ଶନୀୟ ଜାଗାକୁ ଦେଖିନେବ ? ଥେମସ ନଦୀରେ ନୌକା ବିହାର କରିବି କି ବଡ଼ ବଡ଼ ହୋଟେଲମାନଙ୍କୁ ଯାଇ ପ୍ରଥମେ ଭଲ କରି ଦି ଗୁରିଟା ଭୋଜନ ପକେଇବି, ଏ ସବୁ ଚିନ୍ତା ମନକୁ ଘାଣ୍ଟି ପକାଉଥାଏ । ଏ ତ ଏକ ମହା ସମସ୍ୟା । କଣ ଆଗ ଦେଖିବି, କଣ ପଛେ ଦେଖିବି ଯେମିତି ଠିକ୍ କରି ପାରୁନଥାଏ । ସୁନ୍ଦର ଓ ସୁସ୍ୱାଦୁ ଜିନିଷର ପୂଜାରୀ ସରଳ ନିରୀହ ଶିଶୁଟିଏ ସାମନାରେ ଗୁଡ଼ାଏ ସଜଫୁଟା ବିଭିନ୍ନ ରଙ୍ଗର ଫୁଲ ବା ଗୁଡ଼ାଏ ସୁଆଦିଆ ଗଛପାଚିଲା ଫଳ ଦେଖିଲେ ସବୁଟାକୁ ଯେମିତି ଯାବୁଡ଼ ବସେ, କାହାକୁ ଛୁଡ଼ ପାରେନି ମୋର ମନର ଅବସ୍ଥା ଅନେକଟା ସେମିତି । କିନ୍ତୁ ଠିକ୍ ନକରି ପାରି ବଡ଼ ଛଟପଟ ହୁଏ ।

ଗୋଟିଏ କଥା ମନେ ପଡ଼ିଗଲା । ଥରେ ଆମ ପୁରୀର ଜଣେ ପଣ୍ଡିତପ୍ରବର ଅତ୍ୟାହାରେ ଭଙ୍ଗ ଖାଇଦେଇ କିଛି ସମୟ ପରେ ପୁରୀର ଧର୍ମମାନ୍ୟ ରକ୍ଷା ନକରିପାରି ଧରାଶାୟୀ ହେଲେ । କିନ୍ତୁ ହଠାତ୍ ତାଙ୍କ ମନକୁ ଆସିଲା ସେ କରୁଚନ୍ତି କଣ ! ଯେଉଁ ଦିଗରେ ସ୍ୱୟଂ ଜଗତର ନାଥ ଜଗନ୍ନାଥ ବିଜେ କରିଚନ୍ତି ସେ ସେହି ଆଡ଼କୁ ଗୋଡ଼ କଲେ ! ତେଣୁ ଉଠିପଡ଼ି ବୁଲି ଶୋଇଲେ । ପରେ ତାଙ୍କର ମନେ ହେଲା ପୁଣି ସେ ଭୁଲ କରିଚନ୍ତି । ଯେଉଁ ଦିଗରେ ମା ଲକ୍ଷ୍ମୀଙ୍କର ପିତ୍ରାଳୟ ମହୋଦଧି ବିରାଜମାନ ସେ ତେଣିକି ଗୋଡ଼ କଲେ କିମିତି ! କ୍ଷୀରବ୍ଧିତନୟା ରମା କୋପ କଲେ ସେ ଚିରଦରିଦ୍ର ହୋଇ ରହିବେ । ପୁଣି ଅନ୍ୟ ଗୋଟିଏ ଦିଗକୁ ଗୋଡ଼ ଦେଇ ଶୋଇଲେ । ଟିକିଏ ପରେ ପୁଣି ଚେତା ଆସିଲା । ସର୍ବନାଶ ! ଭୁଲ, ଭୁଲ, ମହାଭୁଲ ସେ କରି ବସିଚନ୍ତି । ସେପଟେ ମା ଚାମୁଣ୍ଡୀ ଅଛନ୍ତି । ସେ ମହାଶକ୍ତି ଦୁର୍ଗା । ତାଙ୍କୁ ଅବମାନନା କଲେ ସେ କୋପଦୃଷ୍ଟି ପକେଇ ଭସ୍ମ କରିଦେବେ । ପୁଣି ଅନ୍ୟ ଦିଗକୁ ଗୋଡ଼ କରି ଶୋଇଲେ । ଆରେ ସେ ପୁଣି କଲେ କଣ ! ସେପଟେ ପରା ଦେବାଧିଦେବ ମହାଦେବ ଲୋକନାଥ ଅଛନ୍ତି । ତାଙ୍କୁ ଅବଜ୍ଞା କଲେ ତିନିପୁରରେ ସ୍ଥାନ ନାହିଁ । ହୁଏତ ତୃତୀୟ ନେତ୍ର ବାହାର କରି ତାଙ୍କୁ ଭସ୍ମ କରିଦେବେ । ଏମିତି ସବୁ ଦିଗ ବିଦିଗ ଫେରିଲାରୁ

[illegible] ଉଠି ଠିଆହେଲେ । ନା, ଏ ବି ତ ଠିକ୍ ହେଲା ନି । ମା ବସୁଧାଙ୍କ ଉପରେ ପାଦ ଦେଇ······ପୁଣି ତଳକୁ ମୁଣ୍ଡ ଉପରକୁ ଗୋଡ଼ କରି ଶୀର୍ଷାସନ ଆରମ୍ଭ କରିଦେଲେ । ନା, ଏବି ତ ଠିକ୍ ହେଉନି । ଉପରେ ଅଛନ୍ତି ଧର୍ମଦେବତା ସୂର୍ଯ୍ୟ । ଜବାକୁସୁମସଙ୍କାଶଂ କାସ୍ୟପେୟଂ ମହାଦ୍ୟୁତିଂ ଧ୍ୱାନ୍ତାରୀ ସର୍ବପାପେଭ୍ୟା ପ୍ରଣତୋସ୍ମି ଦିବାକରଂ ! ରକ୍ଷାକର ପ୍ରଭୋ ! କିନ୍ତୁ ଉଠିପଡ଼ି ପଣ୍ଡିତ ମହାଶୟ ଏଣେତେଣେ ଧାଁ ଧପଡ଼୍ କଲେ । ଇମିତି ରାତି ପାହିଗଲା; କିନ୍ତୁ ବିଚାରି ଆଉ ଶାନ୍ତିରେ ଶୋଇ ପାରିଲେନି । ମୋ ଅବସ୍ଥାଟା ସେମିତି ଜଣା ପଡ଼ୁଥାଏ । କୁଆଡ଼େ ଯିବି କୁଆଡ଼େ ନ ଯିବି ହେଇ ହେଇ କଣ ମୋର ଲଣ୍ଡନ ରହଣି ଶେଷ ହୋଇଯିବ ! ନା, ତା’ କାହିଁ ହେବ ! ଯୁଆଡ଼ୁ ହେଲେ ଆରମ୍ଭ କରାଯାଉ ।

ଭାବିଲି ଆଗ ଲଣ୍ଡନ ସହର ଭିତରଟା ବୁଲି ଦେଖିବି; କିନ୍ତୁ ବୁଲି ଦେଖିବାକୁ ହେଲେ ଚାଲି ଚାଲି ଯିବା ଉଚିତ । ବସ୍ ବା କୋଚରେ ଗଲେ ସେମିତି ବେଶୀ କିଛି ଦେଖି ହେବନି । ମାଟିତଳ (under-ground) ଟ୍ରେନରେ ଗଲେ ତ ସୁଡ଼ଙ୍ଗ ଭିତରେ ଯିବ । ଦେଖିବ କଣ ? କିନ୍ତୁ ଏତେ ବଡ଼ ଲଣ୍ଡନ ସହରଟା ତ ପାଦରେ ପରିକ୍ରମା କରିହେବ ନି । ତେବେ ଗୋଟାଏ କଥା କରାଯାଉ । ବସ୍ ବା କୋଚ୍‌ରେ ଗୋଟାଏ ଗୋଟାଏ ନିର୍ଦ୍ଦିଷ୍ଟ ଜାଗାକୁ ଯାଇ ସେଠାରେ ପାଦରେ ବୁଲାବୁଲି କରାଯିବ । ଗୋଡ଼ ଥକିଗଲେ ଯାନବାହନର ଆଶ୍ରା ନେଇ ଅନ୍ୟତ୍ର ଯିବାକୁ ହେବ । ସାଙ୍ଗସାଥୀ ମିଳିଲେ ତ ଭଲ, ନହେଲେ ଏକା ଏକା ଏ ପଦଯାତ୍ରା କରାଯିବ । ତାହାହିଁ କଲି ।

ସକାଳୁ ଜଳପାନ ଆଦି ସାରି ବାହାରିପଡ଼େ । ଆମ ବସାପାଖ ବସ୍ ଘାଟିରେ ପ୍ରାୟ ସେତେ ଭିଡ଼ ହୁଏନି । କିନ୍ତୁ ବେଳେବେଳେ ଏତେ ଲୋକ ସେଠାରେ ଜମିଯାନ୍ତି ଯେ ଘଣ୍ଟା ଘଣ୍ଟା ଧରି କ୍ୟୁରେ ବସ୍ ଓ କୋଚ୍ ମହାପ୍ରଭୁଙ୍କୁ ଅପେକ୍ଷା କରିବାକୁ ପଡ଼େ । ଲଣ୍ଡନରେ କ୍ୟୁ ନିୟମଟା ଖୁବ୍ କଡ଼ାକଡ଼ି ପାଳନ କରାଯାଏ । ସେଠାକାର ଲୋକ ଆମଠାରୁ ବେଶୀ କାର୍ଯ୍ୟବ୍ୟସ୍ତ ହେଲେ ବି ବହୁ ସମୟ ଧରି ଧୀରସ୍ଥିର ଭାବରେ କ୍ୟୁରେ ଠିଆ ହୁଅନ୍ତି । ଶୀତପ୍ରଧାନ ଦେଶ । ବହୁ ସମୟ ଖୋଲା

ରାସ୍ତାରେ ଅପେକ୍ଷା କରିବା ବଡ଼ କଷ୍ଟକର କଥା । ଶୀତଦିନରେ ଅବସ୍ଥା ଆହୁରି ସାଙ୍ଘାତିକ ହୋଇଉଠେ । ସେଥିରେ ପୁଣି ସବୁବେଳେ ବର୍ଷା । ପ୍ରାୟ କାହାରି ମୁଣ୍ଡରେ କିଛି ଆବରଣ ନଥାଏ । ଯେଉଁମାନେ ମଫଲର ରୂପକ ପଶମ-ପଟି ବ୍ୟବହାର କରନ୍ତି ସେମାନେ ସେଇଟାକୁ ବେକରେ ଗୁଡ଼େଇଥାନ୍ତି, ମୁଣ୍ଡରେ ନୁହେ । ହେଲେ ଶୀତ ଦାଉରୁ ରକ୍ଷା ପାଇବାକୁ ଓଭରକୋଟ୍, ବର୍ଷା ସମ୍ଭାଳିବାକୁ "ମାକିଣ୍ଟସ୍" ବୋଲି କୁହାଯାଇଥିବା ପ୍ଲାଷ୍ଟିକ୍ ବର୍ଷାତି ବ୍ୟବହାର କରନ୍ତି । ଅନେକଙ୍କର ଓଭରକୋଟ୍ ବର୍ଷା ଶୀତ ଉଭୟ ପାଇଁ କାମରେ ଲାଗେ । ଶୀତମାତ୍ରା ବେଶୀ ହେଲେ କି ବର୍ଷାର ପରିମାଣ ବଢ଼ିଗଲେ ସେଇ ଉପର କୋଟ୍‌ଟାକୁ ଦେହରେ ଜୋରରେ ଜାକିଧରନ୍ତି । କିନ୍ତୁ ରକ୍ଷା ଯେ ଆମ ଦେଶ ପରି ମୁଷଳ ଧାରାରେ ସେଠି ବର୍ଷା ପ୍ରାୟ ହୁଏନି ।

ପୁରୁଷମାନେ କେହି କେହି ଫେଲ୍‌ଟଟୋପି ପିନ୍ଧିଥାନ୍ତି । ଆମ ଦେଶରେ ସାହେବମାନେ, ବାବୁମାନେ ଆଗେ ଶୋଲ ଟୋପି ବିଶେଷ ଭାବରେ ବ୍ୟବହାର କରୁଥିଲେ । ଏଇଟାକୁ ବିଲାତି ସାହେବମାନେ ତାଙ୍କ ଶାସନ କାଳରେ ପ୍ରଚଳନ କରିଥିଲେ । ନିଜେ ପିନ୍ଧୁଥିଲେ ଏବଂ ତାଙ୍କ ଦେଖାଦେଖି ଆମ ଦେଶୀ ସାହେବମାନେ ଏଥିରୁ ଗୋଟିଏ ଗୋଟିଏ ସେମାନଙ୍କ ମୁଣ୍ଡରେ ଲଗଉଥିଲେ । ଏବେ ସେଇଟା କୁଆଡ଼େ ଉଭେଇଗଲାଣି । ବୋଧହୁଏ ସାହେବମାନେ ଆମ ଦେଶ ଛାଡ଼ି ଚାଲିଯିବାରୁ ତାଙ୍କ ବିରହରେ ଏ ଶୋଲଟୋପି ଗୁଡ଼ାକ କୁଆଡେ ଅନ୍ତର୍ଦ୍ଧାନ ହୋଇଗଲେ । କିନ୍ତୁ ଗଲେ କୁଆଡ଼େ ? ତାଙ୍କ ଦେଶକୁ ତ ଆସି ନାହାନ୍ତି । ବୋଧହୁଏ ଆଫ୍ରିକା ଆଡକୁ ପଳେଇଲେ । ଯାହାହେଉ ପାଣି ସମ୍ଭାଳୁ ନ ସମ୍ଭାଳୁ ସାହେବମାନଙ୍କ ଭିତରୁ କେହି କମିତି ସେ ପତଳା ଫେଲ୍‌ଟ ଟୋପିରୁ ଖଣ୍ଡେ ଖଣ୍ଡେ ପିନ୍ଧିଚନ୍ତି । କିନ୍ତୁ ସାହାବାଣୀମାନଙ୍କ ମୁଣ୍ଡରେ କିଛି ନାହିଁ । କାହିଁ ଛତା ବ୍ୟବହାର କରୁନାହାନ୍ତି ! ଖରା ବର୍ଷା ଉଭୟରୁ ରକ୍ଷା ପାଆନ୍ତେ । ଖରା ଅବଶ୍ୟ ଏମାନଙ୍କ ଦେଶରେ ନାହିଁ କିନ୍ତୁ ବର୍ଷା ତ ସମ୍ଭଳା ପଡନ୍ତା । ନହେଲେ ଓଭର କୋଟ୍ ଓ ବର୍ଷାତି ସାଙ୍ଗକୁ ମୁଣ୍ଡରେ ଖଣ୍ଡେ ଖଣ୍ଡେ ସେହି ଉପାଦାନର ଟୋପି ପିନ୍ଧୁ ନାହାନ୍ତି ? କେତେକ ପୁରୁଷ ଏପରି ଟୋପି ପିନ୍ଧିଛନ୍ତି,

କେତେକ ଛତା ବି ବ୍ୟବହାର କରୁଚନ୍ତି । କିନ୍ତୁ ଅଧିକାଂଶ ଫୁଲଫାଙ୍କିଆ । ଏମାନେ ଛତା ବା କୌଣସି ପ୍ରକାର ଟୋପି ବ୍ୟବହାର କରୁନାହାନ୍ତି ବୋଧହୁଏ ତାଙ୍କ କର୍ମବ୍ୟଗ୍ରତା (Smartness) ରେ ଆଞ୍ଚ ଆସିବ ବୋଲି । ତା ବୋଲି ମହିଳାଗୁଡ଼ାକ ମୁଣ୍ଡକୁ ଇମିତି ଓଦା କରୁଚନ୍ତି ! ଉକୁଣି ହେବେ ନି ? ତା' ନହୋଇ ପାରେ; କାରଣ ଏମାନେ ତ ମୁଣ୍ଡରେ ତେଲ ଲଗାନ୍ତିନି । ତେଣୁ ଉକୁଣିଗୁଡ଼ାଙ୍କୁ ଖାଦ୍ୟ ମିଳିବ କୁଆଡ଼ୁ ! କେତେଜଣ ମହିଳା ମୁଣ୍ଡରେ ପତଳା ସିଲ୍‌କ ପଟି (Scarf) ଭିଡ଼ଚନ୍ତି । କିନ୍ତୁ ସେଥିରେ କି ବର୍ଷା ସମ୍ଭାଳିପଡ଼େ ! ଖଣ୍ଡେ ମୋଟା ଚଉଡ଼ା କିଛି ମୁଣ୍ଡରେ ବାନ୍ଧିଥିଲେ ସିନା ହୋଇଥାନ୍ତା । ନା ତା' କରିବେ କିମିତି ? ସେଥିରେ ମୁଣ୍ଡ ଓ ମୁହଁର ସୌନ୍ଦର୍ଯ୍ୟ ଅନେକଟା ଘୋଡ଼େଇ ହୋଇ ପଡ଼ିବ । ହଁ, ଅସଲି କଥା ହେଲା ଏଇ ସୌନ୍ଦର୍ଯ୍ୟ ! ସେଇଟାର ପ୍ରଦର୍ଶନ ଓ ପ୍ରଚାରରେ ବାଧାଦେଲେ ଭଲ ତ କିଛି କରାଯାଇ ପାରେନା । ତେବେ କିଣ କେଶରାଶିର ଶୋଭା ନଷ୍ଟ ହୋଇଯିବା ବା ଲୁଚିଯିବା ଭୟରେ ଏ କୃଚ୍ଛ୍ର ସାଧନା !

ଆଗେ ଆମ ଉତ୍କଳ ସିମନ୍ତିନୀଗଣ ମୁଣ୍ଡରେ ନାନା ପ୍ରକାର ସୁବାସିତ ତେଲ ଲଗାଇ ପାନିଆ, କଣ୍ଟା, ଚଉଁରିଭୁଣ୍ଡି, ପାଟଫୁଲ, ଝିଙ୍କ କାଠି, ମହଣ ଆଦି ସାହାଯ୍ୟରେ ମୁଣ୍ଡ ବାନ୍ଧୁଥିଲେ । ସୁନ୍ଦା କରୁଥିଲେ, ପାତା ପାରୁଥିଲେ । ତା'ପରେ ଆସିଲା ବେଣୀ । ସୁଲମ୍ବ ଘନ କେଶରାଶିକୁ କୋମଳ ତକ୍‌କଣ କରି ପାନିଆର କଠୋର ପ୍ରୟୋଗ ଦ୍ୱାରା ତାକୁ ଶୃଙ୍ଖଳିତ ଓ ଗୋଚ୍ଛୀକୃତ କରି ସେଥିରେ ଫାନ୍ଦ ପକାଇ ବନାଯାଉଥିଲା ବେଣୀ, ଗୋଟିକିଆ, ଦୁଟିକିଆ । ତାକୁ ଗୁଡ଼ି ହୋଆଯାଉଥିଲା ପଛରେ ସର୍ପାକାରରେ ଝୁଲିବାକୁ । ରୁପାସୁନାର ତାରକସୀ କାମ ସେଥିରେ ଲଗାଇ ତାର ଶୋଭାବର୍ଦ୍ଧନ କରାଯାଉଥିଲା । ଏହି ବେଣୀକୁ ମୁଣ୍ଡର ଶୀର୍ଷ ଅଂଶରେ ଗୁଡ଼େଇ ନାନା ଢାଞ୍ଚାର ଖୋଷା, ଖୁମ୍ପା ତିଆରି କରାଯାଉଥିଲା ରୁପା କଣ୍ଟା ବା ଲୁହାକଣ୍ଟା ସାହାଯ୍ୟରେ । ସେଥିରେ ନାନାପ୍ରକାର ତାରକସୀ କାମର ଝୁମ୍ପା, ଝରା, ଫୁଲ, ପେଣ୍ଡୀ ଦେଇ ତାକୁ ସୁନ୍ଦର ଓ ସୁସଜ୍ଜିତ କରାଯାଉଥିଲା । ତା'ପରେ ଆସିଲା ଛଦ୍ମ କେଶର ବ୍ୟବହାର । ଯାହାର କେଶରାଶି ସାନ୍ଦ୍ର ବା ସୁଲମ୍ବ ନୁହେ ସେମାନେ ନାଇଲନ୍ ତିଆରି ଛଦ୍ମ କେଶ ବ୍ୟବହାର କରି ମସ୍ତକର ଶୋଭା

ବର୍ଣ୍ଣନ କରନ୍ତି । ପରେ ଆଉ କେତେ ପ୍ରକାର କେଶବିନ୍ୟାସ-କଳା ପ୍ରକାଶ ପାଇଲା । ମହିଳାମାନେ କୃତ୍ରିମ କେଶ, କୃତ୍ରିମ କେଶ-ମୁଣ୍ଡଲୀ ସାହାଯ୍ୟରେ ବହୁ ପ୍ରକାର ଜୁଡ଼ା, ମୋଡ଼ା ବଡ଼ ଯତ୍ନରେ କରନ୍ତି । କିନ୍ତୁ ସେଥିରେ ଶୃଙ୍ଖଳା ଥାଏ । ଚମତ୍କାରିତା ଥାଏ ।

କିନ୍ତୁ ବିଲାତି ରମଣୀଙ୍କ କେଶ ଇମିତି ଉନ୍ମୁକ୍ତ ଫୁଲ-ଫାଙ୍ଗୁଲା, ଏପଟ-ସେପଟ ହୋଇଚି କାହିଁକି ? ଗୋଟାଏ ଯେମିତି ଅଯତ୍ନ ସୌନ୍ଦର୍ଯ୍ୟ ତାକୁ ଘେରି ରହିଚି । କେଉଁଠି କୁଞ୍ଚୁକୁଞ୍ଚୁ, କେଉଁଠି ସିଧା ସଳଖ, କେଉଁଠି ପକ୍ଷୀ ପର ପରି ପଲ୍ଲବିତ । କେଉଁଠି ସାଧୁମାନଙ୍କ ଜଟା ପରି ମୋଡ଼ା ମୋଡ଼ା । ନା, ଏ ଅଯତ୍ନ ସୌନ୍ଦର୍ଯ୍ୟ ନୁହେ । ଏ ଯତ୍ନଶୀଳ ଅଯତ୍ନ କେଶ ବିନ୍ୟାସ । ସ୍ୱେଚ୍ଛାରେ ସେଥିରେ ଏପରି ବିଶୃଙ୍ଖଳା ସୃଷ୍ଟି କରାଯାଇଛି ତାର ସୌନ୍ଦର୍ଯ୍ୟ ବୃଦ୍ଧି କରିବାକୁ ଏବଂ ସେହି ସୌନ୍ଦର୍ଯ୍ୟ ନଷ୍ଟ ହୋଇଯିବା ଭୟରେ ରମଣୀମାନେ ମୁଣ୍ଡକୁ ଖୋଲା ରଖୁଚନ୍ତି ।

ମାଟିତଳ ଟ୍ରେନ୍‌କୁ ଛାଡ଼ିଦେଲେ ଲୋକମାନଙ୍କର ଗମନାଗମନ ସୁବିଧା ପାଇଁ ବହୁତ ବସ୍, ବହୁତ କୋଚ୍ ଲଣ୍ଡନରେ ଚାଲେ । କୋଚ୍ ବୋଲିଲେ ଘୋଡ଼ାଗାଡ଼ି ନୁହେ । ସେହି ମଟରଯାନ, ବସ୍ ! କିନ୍ତୁ ସେ ପେଟ୍ରୋଲ ବା ଡିଜେଲରେ ନ ଚାଲି ଚାଲେ ଇଲେକ୍‌ଟ୍ରିରେ ଟ୍ରାମ୍ ପରି । କିନ୍ତୁ ଟ୍ରାମ୍‌ର ଚକ ଚାଲିବାକୁ ରାସ୍ତାରେ ଲୁହା ଧାରଣା ପଡ଼ିଥାଏ ମାତ୍ର କୋଚ୍‌ରେ ସେ ଦରକାର ନାହିଁ । ଏହା ଉପରେ ଅାଙ୍କୁଡ଼ି ପରି ଖଣ୍ଡେ ଲମ୍ବା ଦଣ୍ଡ ଇଲେକ୍‌ଟ୍ରି ଲାଇନ୍‌ରେ ଲାଗିଥାଏ । ତାରି ସାହାଯ୍ୟରେ କୋଚ୍ ଚାଲେ । ତା ପରେ ଟେ୍ରନ୍, ଟ୍ୟାକ୍‌ସି, କାର ଅଛି । ଏଗୁଡ଼ାକ ସବୁବେଳେ ଚାରିଆଡ଼େ ଧାଁ ଧପଡ଼ କରୁଥାନ୍ତି । ତଥାପି ସେ ଲୋକଙ୍କ ଚାହିଦା ମେଣ୍ଟାଇ ପାରନ୍ତିନ । ପୁଣି କେତେବେଳେ କୌଣସି ଦୈବୀ ଦୁର୍ଘଟଣା ବା ଅସୁବିଧା ଯୋଗୁ ସର୍ବସାଧାରଣ ଯାନବାହନ ବସ୍, କୋଚ୍ ଭିତରୁ କିଏ କେଉଁଠି ଯଦି ଅଟକିଯାନ୍ତି ତେବେ ମହା ଅସୁବିଧା । ଷ୍ଟାଣ୍ଡ୍ ବା ଯାତ୍ରୀମାନଙ୍କରେ ବହୁ ସମୟ ଧରି କ୍ୟୁରେ ଅପେକ୍ଷା କରିବାକୁ ପଡ଼େ । କିନ୍ତୁ ଅଧିକାଂଶ ସମୟରେ ଆମ ବସା ପାଖ ଷ୍ଟାଣ୍ଡରେ ପହଞ୍ଚୁ ପହଞ୍ଚୁ ଏହି ଯନ୍ତ୍ରଯାନରୁ ଗୋଟିଏ ଗୋଟିଏ ଆସି ଜୁଟିଯାନ୍ତି । ଅଳ୍ପ ସମୟ ଅଟକିଯାଇ ଏମାନେ ପୁଣି ଦୌଡ଼ିବାକୁ ଆରମ୍ଭ କରନ୍ତି । ତେଣୁ ବସ୍ ବା କୋଚ୍ ଯାତ୍ରୀ ଧଇଲାକ୍ଷଣି ସେଥିରେ ଲମ୍ଫଦେଇ ପ୍ରବେଶ କରିବାର

କଥା । ମାନ ମାଡ଼ିଚକଟି ନୁହେ । କ୍ୟୁ ରେ ଠିଆ ହୋଇଥିବା କ୍ରମରେ ଗାଡ଼ିକୁ ଉଠିବାକୁ ହୁଏ । ଆଗେ ଲୋକ ଆଗରେ ଯାନ୍ତି, ପଛଲୋକ ପଛରେ । ତୁମ ବେଳକୁ ଯଦି ଜାଗା ନଥାଏ ତେବେ କଣ୍ଡକ୍ଟର ନାସ୍ତି-ସୂଚକ ମୁଣ୍ଡ ହଲେଇ ଗାଡ଼ି ଛାଡ଼ିଦେବାର ସଙ୍କେତ ଦିଏ । ଫଳରେ ତୁମକୁ ଅନ୍ୟ ବସ୍ ବା କୋଚ୍ ପାଇଁ ଅପେକ୍ଷା କରିବାକୁ ପଡ଼େ । ଯାହା ହେଉ କୌଣସିମତେ ଜାଗାଟିଏ ଦଖଲ କରି ବସିଗଲା ପରେ କଣ୍ଡକ୍ଟର ବାବୁ ଆସି ମାହାସୁଲ ଆଦାୟ କରନ୍ତି । ଟିକେଟ୍ ଦେଇଯାନ୍ତି । ମୋତେ ଭାରି ଭଲଲାଗେ ଦୋମହଲା ବସ୍ (Doulele-decker)ର ଉପର ମହଲା ସିଟ୍ । ସେଠାରୁ ଚାରି ଆଡ଼କୁ ସୁବିଧାରେ ଚାହିଁ ହୁଏ । ନାନା ହୋହଲା ଫସଲ ଧାଁ ଧପଡ଼ ଭିତରେ ଯେତେବେଳେ ବସ୍‌ର ଉପର ମହଲାରେ ବସି ବାହାରକୁ ଟିକିଏ ଆଖି ପକେଇଦିଏ ମନରେ ଅପୂର୍ବ ଆନନ୍ଦ ଜାଗିଉଠେ । ଚାରିଆଡ଼ର କୋଠାବାଡ଼ି, ହାଟବଜାର, ଯାନବାହନକୁ ଏକଲୟରେ ଲକ୍ଷ୍ୟକରେ । ଆଉରି ଲକ୍ଷ୍ୟକରେ ପଦପଥରେ ସାଲୁବାଲୁ ହୋଇ ଯାତାୟାତ କରୁଥିବା ଲୋକଙ୍କୁ । କଣ ସେଥିରେ ଦେଖେ ବା ସେଥିରୁ କଳ୍ପନା କରେ କେଜାଣି ମନଟା ହର୍ଷୋତ୍‌ଫୁଲ୍ଲ ହୋଇ ଗୁଣୁ ଗୁଣୁ କରି ଉଠେ ।

ଚାରିଆଡ଼େ ଯାନବାହନ ଖୁବ୍ ଦ୍ରୁତଗତିରେ ଦଉଡ଼ୁଥାନ୍ତି । ସବୁଆଡ଼େ ଗହଳ ଚହଲ, ଧାଁ ଧପଡ଼ ଲାଗିରହିଥାଏ । ତେବେ କୁଆଡ଼େ ଯିବ ? କଣ ଦେଖିବ ? ଆଗରୁ ଲଣ୍ଡନ ମାନଚିତ୍ର ଦେଖି କେତେଟା ବିଖ୍ୟାତ ଜାଗା ଠିକ୍ କରିନେଇଥାଏ । ବିଭିନ୍ନ ରାସ୍ତାରେ ଭିନ୍ନ ଭିନ୍ନ ନମ୍ବରର ବସ୍ ଯାଏ । ତେଣୁ ଯେଉଁଆଡ଼େ ଯିବାର କଥା ସେ ପଟର ବସ୍ ନମ୍ବର ମନେରଖି ସେଇ ବସ୍ ଧରେ । ଇଉଷ୍ଟନ ସ୍କୋୟାର୍, ଅକ୍‌ସଫୋର୍ଡ଼ ସର୍କସ୍, ହୋବର୍ନ, ଅଲ୍‌ଡ଼ଓ୍ୱିଚ୍ , ରେସ୍ପାରିଂ କ୍ରସ୍, ଟ୍ରାଫଲଗାର ସ୍କୋୟାର୍, ବଣ୍ଡଷ୍ଟ୍ରିଟ୍, ରିଜେଣ୍ଟଷ୍ଟ୍ରିଟ୍, ଓ୍ୟାଟରଲୁ ରୋଡ଼୍, ଭିକ୍ଟୋରିଆ ଷ୍ଟ୍ରିଟ୍, ସାଉଥ୍ ବ୍ୟାଙ୍କ, ଫିନ୍‌ସବରି, ବ୍ଲୁମସବରି, ମେଫେୟାର୍, ବେଜ୍‌ଓ୍ୟାଟର୍, କେନସିଙ୍ଗ୍‌ଟନ୍, ପ୍ୟାଡ଼ିଂଟନ୍, ଅର୍ଲସ କୋର୍ଟ, କିଙ୍ଗସ୍‌କ୍ରସ, ସୋହୋ ସ୍କୋୟାର ଇମିତି କୌଣସି ଛକ ବା ଚୋକ ଜାଗାରେ ଓହ୍ଲାଇ ପଡ଼ି ବୁଲିବାକୁ ଆରମ୍ଭ କରିଦିଏ । ପ୍ରଧାନ ରାସ୍ତାକୁ ଲକ୍ଷ୍ୟ ରଖି ଏଣେତେଣେ

ଯାଏ । କେଉଁଠି ଦୋକାନ ଭିତରେ ପଶିଯାଏ, କେଉଁଠି ବେଶୀ ଲୋକ ଦେଖିଲେ ସେଠି ଟିକିଏ ଠିଆହୋଇ ସେମାନଙ୍କର ଗତିବିଧି ଲକ୍ଷ୍ୟକରେ । ଶେଷରେ ଗୋଡ଼ ଯେତେବେଳେ ଥକିପଡ଼େ ପୁଣି ଗୋଟିଏ ବସ୍ ବା କୋର୍ ଧରି ଅନ୍ୟ ଜାଗାକୁ ଯାଏ । ସେଠାରେ ପୁଣି ବୁଲିବାକୁ ଆରମ୍ଭ କରେ । ମଝିରେ ମଝିରେ କୌଣସି କାଫେ ବା ରେଷ୍ଟୁରାଁରେ କିଛି ଖାଇଦେଇ ଟି’ କପେ ପିଏ । ଏମିତି ଏଣେ ତେଣେ ରାସ୍ତାରେ ଧାଁ ଧପଡ଼ କଲାବେଳେ ଯା’ଆସ କରୁଥିବା ଲୋକଙ୍କର ଚାଲିଚଳଣି ଢଙ୍ଗରଙ୍ଗ ପ୍ରତି ଦୃଷ୍ଟି ଦିଏ । କ’ଣ ମହତ୍ତ୍ୱ, କ’ଣ ବିଶେଷତ୍ୱ ଅଛି ବ୍ରିଟିଶ୍ ସାମ୍ରାଜ୍ୟର ରାଜଧାନୀ, ଫିରିଙ୍ଗୀମାନଙ୍କ ଧର୍ମ କର୍ମ, ବ୍ୟବସାୟ-ବାଣିଜ୍ୟର ପ୍ରଧାନ ପୀଠ ଏହି ଲଣ୍ଡନ ସହରରେ । ଚାରିଆଡ଼େ ବଡ଼ ବଡ଼, କୋଠା, ସୁନ୍ଦର ସୁନ୍ଦର ଘରଦ୍ୱାର । ଲୋକେସବୁ ନିର୍ମଳ ଚିକ୍‌କଣ ପୋଷାକ ପିନ୍ଧି ଚାଲିଯାଉଥାନ୍ତି, ପଦବ୍ରଜରେ, ଯାନବାହନରେ । କାହା ହାତରେ ଖଣ୍ଡିଏ ଖଣ୍ଡିଏ ବ୍ୟାଗ୍ କି ଖବର କାଗଜ । କାହା ପାଟିରେ ପାଇପ୍, ଚୁରୁଟ୍, ସିଗାରେଟ୍ । ସମସ୍ତେ ଚଞ୍ଚଳ, ସମସ୍ତେ କାର୍ଯ୍ୟବ୍ୟସ୍ତ । ଏଥିରୁ ଯେମିତି ବିଲାତର ଆର୍ଥିକ ସ୍ୱଚ୍ଛଳତା ସମ୍ବନ୍ଧରେ ଗୋଟାଏ ଧାରଣା କରିହୁଏ । ଆମ ଦେଶରେ କୌଣସିଠାରେ ପଞ୍ଚାଏ ଲୋକ ଦେଖିଲେ ସେଥିରେ ଅଳ୍ପ, ଖୁବ୍ ଅଳ୍ପ ଥିବେ ଭଲ ପୋଷାକଧାରୀ । ବାକି ଅଧିକାଂଶଙ୍କର ଥିବ ସାଧାରଣ ବା ସ୍ୱଳ୍ପ ବେଶପୋଷାକ । କିନ୍ତୁ ଏ ଦେଶରେ ଯେମିତି ଠିକ୍ ଓଲଟା । ଅଧିକାଂଶ ଭଲ ପୋଷାକ ପିନ୍ଧିଥାନ୍ତି । କାହାର କେଉଁଠି ପ୍ୟାଣ୍ଟ କୋଟ୍ ଟିକିଏ ମଇଳା । ଏଠି ତେବେ କ’ଣ ଦୁଃଖୀ-ଦରିଦ୍ର ଭିକାରୀ-ବେକାର ବେଶୀ ନାହାନ୍ତି । ନ ଥିବେ । ଶହ ଶହ ବର୍ଷ ଧରି ଯେଉଁମାନେ ସୁଶାସନ, ବ୍ୟବସାୟ ବାଣିଜ୍ୟର ଦୋହାଇ ଦେଇ ପୃଥିବୀର ଚାରିଆଡ଼େ ସାମ୍ରାଜ୍ୟ ବିସ୍ତାର କରି ସେଠାକାର ସରଳ ନିରୀହ ଲୋକଙ୍କୁ ଶୋଷଣ କରିଚନ୍ତି ସେମାନଙ୍କର ବା ବିଶେଷ ଅଭାବ ଅସୁବିଧା ରହିବ କାହିଁକି ?

ଥରେ ଇମିତି ବୁଲୁବୁଲୁ ଦେଖିଲି ଏକ ବିରାଟ କୋଠା । ତା’ ଭିତରକୁ ବହୁତ ଲୋକ ଯା’ଆସ କରୁଥାନ୍ତି । ପୂର୍ବ ବଡ଼ ଦେଉଳ ସିଂହଦ୍ୱାରରେ ଯାତ୍ରୀ ଜମା ହେଲା ଭଳି ଘୋର ଭିଡ଼ । ସାମନାରେ କେତେ ଗାଡ଼ି ଥୁଆ ହୋଇଚି, କେତେ ଆସୁଚି, କେତେ ଯାଉଚି । ଘର ସାମନାରେ

ବଡ଼ ବଡ଼ ଅକ୍ଷରରେ ଲେଖା ଯାଇଚି ହାରଡ଼ସ୍ (Harrods) । ଏଠି ଚେତେବେ ଦର୍ଶନୀୟ, ରମଣୀୟ କିଛି ଅଛି । ଏପରି ଭାବି ମୁଁ ମଧ ଭିତରକୁ ଭିଡ଼ି ପଶିଲି । ଏହା ଗୋଟିଏ ବହୁ ମହଲା ବିଶିଷ୍ଟ ବିପଣୀ । ଘର ଭିତରେ ବିଭିନ୍ନ ମନୋହର୍ଣ୍ଣ ଜିନିଷ, ପୋଷାକପତ୍ର, ଖେଳନା ଆଦି ଯାବତୀୟ ଜିନିଷ ରଖାଯାଉଛି । ବିକ୍ରୀ ହେଉଛି । ବହୁ ପୁରୁଷ-ସ୍ତ୍ରୀ ଯୁବକ-ଯୁବତୀ ବିଭିନ୍ନ ଦ୍ରବ୍ୟ କିଣାକିଣି କରୁଚନ୍ତି । ଚାରିଆଡ଼େ ଆନନ୍ଦ ଉଲ୍ଲାସ ଖେଳିଯାଇଚି । ଯୁବକ-ଯୁବତୀମାନେ ବି ଏଠି ତାଙ୍କ ପ୍ରେମ-ପ୍ରଣୟ, ସ୍ନେହ-ସୋହାଗ ଚଳେଇଥାନ୍ତି । ଏସବୁ ବଡ଼ ବେଆଡ଼ା ଜଣାପଡ଼େ । ଆମ ଦେଶର ଅବିବାହିତା ଯୁବତୀ, ନବ-ବଧୂମାନେ ଓଠରେ କ୍ଷୀଣ ହସ । ନୟନରେ ନୀରବ ଭାଷା ରଖି ପ୍ରେମ-ନିବେଦନ କରନ୍ତି । ଏଠି କିନ୍ତୁ ଓଲଟା, ସବୁ ଖୋଲା ଖୋଲି ପରି ଜଣାପଡ଼େ । ବେଶ୍ ରଙ୍ଗରସ, ହସ-କୌତୁକ ଚାଲିଥାଏ । କିଏ ତାଙ୍କ ପ୍ରେମ ପତ୍ରକୁ ରୂପାୟିତ କରୁଥାନ୍ତି କାଜୁବାଦାମ୍, ଆଳୁଭଜା ଚୋବେଇ ବା ଶୀତଳ ଆଇସ୍କ୍ରିମ୍ ଖାଇ । ଏହାରି ମଧ୍ୟରେ ଚାଲିଥାଏ ପ୍ରାକ୍-ବିବାହର ପୂର୍ବରାଗ ଅଭିନୟ ଏବଂ ବୈବାହିକ ଜୀବନର ମନପ୍ରାଣ ଦିଆନିଆ କାରବାର । ସତେ କ'ଣ ଏମାନେ ପରସ୍ପରକୁ ଏତେ ଭଲ ପାଆନ୍ତି ! ଏତେ ପ୍ରେମ କରନ୍ତି ! ବେଳେବେଳେ ଚିତ୍ତବିନୋଦନ କରିବାକୁ ·ଏମାନେ ଯେ ଅନ୍ୟ ସ୍ତ୍ରୀ ବା ପୁରୁଷର ସଙ୍ଗ ବା ଅଙ୍ଗ ନ ଲୋଡ଼ନ୍ତି ତା' ନୁହେଁ । ସେଇଟା ଅବଶ୍ୟ ସାଧାରଣ ପ୍ରେମ-କାରବାରର ସାମାନ୍ୟ ବ୍ୟତିକ୍ରମ, ଅନ୍ତରାଳରେ ସାଙ୍ଗ ହୁଏ । ଏଇଟା କିନ୍ତୁ ରାସ୍ତାଘାଟ, ଦୋକାନ ବଜାରର ଖୋଲା ରଙ୍ଗମଞ୍ଚରେ ଚାଲେ । ଯେଉଁଟା ସହଜ ଓ ସାଧାରଣ ସେଇଟା ସର୍ବସାଧାରଣରେ ଚାଲେ, ଯେଉଁଟା ଅସାଧାରଣ ଓ ଅସହଜ ତା'ପାଇଁ ଉଡ଼ାଳ, ଆବରଣ ଖୋଜାପଡ଼େ । ବଡ଼ ଚମତ୍କାର ବ୍ୟବସ୍ଥା !

ଏ ବିରାଟ ବିପଣୀରୁ ମୋର କିଛି କିଣିବାର ନଥାଏ । କିନ୍ତୁ ଜଣେ ରସିକ ଗ୍ରାହକ ପରି ମୁଁ ଚାରିଆଡ଼େ ଘୁରିବୁଲୁଥାଏ ଦେଖିବାକୁ କିମିତି କାରବାର ଚାଲିଚି, କିଏ କଣ କରୁଚି । ଅବଶ୍ୟ ଆମ ଦେଶରେ ବି ଏପରି ବଡ଼ ବଡ଼ ବିପଣୀ (Departmental store) ଅଛି କିନ୍ତୁ ଏଠାକାର ଅଧିକାଂଶ ଲୋକଙ୍କର କିଣା ବିକାରେ ଯେପରି ବେପରୁଆ

ଦେଖାଯାଏ ଆମର ସେମିତି ନାହିଁ । ଆମର ସବୁଥିରେ କଷାକଷି, ଟଣାଟଣି । କାରଣ ଆମର ଆର୍ଥିକ ଅବସ୍ଥା ତାଙ୍କପରି ସ୍ୱଚ୍ଛଳ ନୁହେଁ । ଦାମ୍‌ଟା ସରଞ୍ଜାମ ଉପରେ ଲେଖାଥାଏ । ନୋହିଲେ ବିକ୍ରେତା ବିଜ୍ଞପ୍ତି ସେଇଟା କହିଦିଅନ୍ତି । ଅବଶ୍ୟ ବଗ୍ଦୁକଟ୍ଟା ଚାଲେ । କିନ୍ତୁ ଦାମ କମେଇବାକୁ କଥାଳ ନାହିଁ । ଜିନିଷ ପସନ୍ଦ ହେଲେ, ସାଙ୍ଗେ ସାଙ୍ଗେ ପୁଡ଼ିଆଟି ସୁନ୍ଦର ଭାବରେ ବନ୍ଧା ହୋଇ ପହଞ୍ଚିଯାଏ । ତେଣିକି ପାଉଣ୍ଡ ସିଲିଂ ଦେଇ ପୁଡ଼ିଆଟି ନେବାର କଥା ।

ଆମ ଦେଶରେ କିନ୍ତୁ ଏ ଦାମ୍ କାଟକଷ୍ଟର ପାଲିଟା ଅନେକ ଜାଗାରେ ବେଶ୍ ଚାଲେ । ଅନେକ ଦୋକାନୀ ବିଶେଷତଃ ରାସ୍ତାକଡ଼ର ବିକାଳିମାନେ ଇମିତି ଦରଟା ଜୋରରେ ହାଙ୍କନ୍ତି ଯେ ଠିକଏ ସାବଧାନ ନଥିଲେ ଠକାମିରେ ପଡ଼ିଯିବାର ଭୟ ।

ଗୋଟିଏ କଥା ମନେପଡ଼ିଲା, ପୁରୀରେ ଥିଲାବେଳେ ସେଠାକାର ନୋଳିଆଣୀଙ୍କ ଠାରୁ କମିତି ମାଛ କିଣିବାକୁ ହେବ ସେ ଶୈଳୀଟା ମୋର ଜଣେ ସୁଚତୁର ଆତ୍ମୀୟ ବତାଇ ଦେଇଥାନ୍ତି । ନୋଳିଆଣୀମାନେ ଯେଉଁ ଦାମ୍ କହିବେ ମୋଟାମୋଟି ତା' ଅଧାରୁ କି ତା'ଠାରୁ ଆଉ କିଛି କମ୍‌ରେ ତୁମେ ଆରମ୍ଭ କରିବ । ସେ ପାଞ୍ଚଟଙ୍କା କହିଲେ ତୁମେ ଅଢ଼େଇ ଟଙ୍କା ବା ଦି ଟଙ୍କା ଯାଚିବ । ତା'ପରେ ଉପରକୁ ଉଠିବ, ଆସ୍ତେ ଆସ୍ତେ । ମଝିରେ ମଝିରେ ଚାଲିଯିବାକୁ କପଟ ଧମକ ଦେବ । ପାଖରେ ଥିବା ଆଉ ଜଣେ ଦିଜଣ ବିକାଳିଙ୍କ ସାଙ୍ଗରେ ଦରଦାମ୍ ନେଇ କଥାବାର୍ତ୍ତା ଆରମ୍ଭ କରିବ । ଥରେ ଅଧେ ଗୋଡ଼ କାଢ଼ି ଟିକଏ ବାହାରି ଯାଉଥିବ । ଯେତେବେଳେ ଦେଖିବ ଯେ ନୋଳିଆଣୀ ତୁମକୁ ଆଉ ଡାକୁନି ସେତେବେଳେ ବୁଝିବ ଯେ ତୁମେ ଠିକ୍ ଦରର ପାଖାପାଖି ହେଲଣି । ତା'ପରେ ମୁହଁ ହମୋଡ଼ି, ଶାକୁଲେଇ, ଧମକେଇ ଦାମ୍ ଠିକ୍ କରିବ । ଅବଶ୍ୟ ଅଳ୍ପ କିଛି ଶେଷରେ କାଟିବାକୁ ବାଟ ରଖି ପୁଡ଼ିଆଟି ଧରିବ । ପଇସା ଦେଲାବେଳେ ରେଜାନାହିଁ, ପରେ ଦେବ, ସବୁବେଳେ ଏଇଠୁ ମାଛ କିଣିବ ଇମିତି କେତେ ପ୍ରକାର ଆଳ ଦେଖେଇ ଆଉ କିଛି କାଟିବ । ସେଥିରେ ସେ ସମ୍ମତ ନହେଲେ ମାଛ ନ କିଣିବାର ଧମକ ଦେବ । କିନ୍ତୁ ପୁଡ଼ିଆଟିକୁ ଧାବୁଡ଼ି ଧରିଥିବ । ନଚେତ୍ ସେଥିରେ

କୃତକାର୍ଯ୍ୟ ନହେଲେ ପଇସା ଦେଲାବେଳକୁ ଗୋଟିଏ ଦୁ'ଟି ପ୍ଲେଟମାଛ ବଳାକାରେ ହାତ ପୂରାଇ ଧରି ବାହାରି ଆସିବ ।

ବାପ୍‌ରେ ବାପ୍ ! ଏତ ଏକ ବିରାଟ କସରତ୍ । ଏଥିପାଇଁ ବୋଲ ଓ ବଳ ଥିବା ଦରକାର । ତା' ସାଙ୍ଗକୁ ମନସ୍ତତ୍ତ୍ୱ ଓ ଅର୍ଥନୀତିରେ ଜ୍ଞାନ ବି ଲୋଡ଼ା । ଅବଶ୍ୟ ଆମ ଦେଶରେ ସବୁ ଦୋକାନରେ ଯେ ଇମିତି ଦରଦାମ୍ କାଟକସୁର ନେଇ ଉଡ଼ାଓଟରା ଚାଲେ ତା' ନୁହେ । ବଡ଼ ବଡ଼ ଦୋକାନମାନଙ୍କରେ ଏଠାକାର ପରି ଦାମ୍‌ଟା ନିର୍ଦ୍ଦିଷ୍ଟ ଥାଏ ।

ବିଲାତର ସବୁ ବଡ଼ ବଡ଼ ରାସ୍ତା ଦୋକାନ ବଜାରରେ ଭର୍ତ୍ତି । ଅକ୍‌ସଫୋର୍ଡ଼ ଷ୍ଟ୍ରିଟ୍, ବଣ୍ଡ ଷ୍ଟ୍ରିଟ୍ ଆଦି ବିକାକିଣାର କେନ୍ଦ୍ର ହିସାବରେ ବହୁଦିନରୁ ଖ୍ୟାତି ଅର୍ଜନ କରିଚନ୍ତି । ଏଠି ହ୍ୟାରଡ୍ସ୍ ପରି ବହୁ ବଡ଼ ବଡ଼ ଦୋକାନ, ଯଥା—ସେଲଫ୍ରିଜେସ (Selfridges), ସିଭିଲ ସର୍ଭିସ ଷ୍ଟୋରସ୍, ଜାରଲଡ଼ସ୍ (Jarrolds) ପ୍ରଭୃତି ଅଛି । ଏମାନେ ସହରର ବିଭିନ୍ନ ଚୌକ ଜାଗା-ମାନଙ୍କରେ ବିପଣୀ ଖୋଲି କାରବାର ଚଳାନ୍ତି । ସବୁଟା ଶୃଙ୍ଖଳିତ, ସବୁଟା ସୁସଜ୍ଜିତ । ବହୁତ କିଣାଳି ଜୁଟନ୍ତି । ଏତେ ଜୁଆଡ଼ୁ ଆସନ୍ତି, ଏତେ ପଇସା ତାଙ୍କୁ କୁଆଡ଼ୁ ମିଳେ, ଏଇଟା ଭାବିବାର କଥା । କିନ୍ତୁ ବିଚିତ୍ର କ'ଣ ? ଏ ହେଲା ଏକ ବିଖ୍ୟାତ ବାଣିଜ୍ୟ-ପ୍ରଧାନ ସହର । ବହୁତ ଲୋକ ବିଭିନ୍ନ କାମରେ ବିଭିନ୍ନ ବ୍ୟବସାୟରେ ଏଠାକୁ ଆସନ୍ତି । ଶିକ୍ଷାର୍ଥୀ, ଦର୍ଶନାର୍ଥୀ, ବ୍ୟବସାୟୀ, ଶିଳ୍ପସଂସ୍ଥାର କାରପଟଦାର, ବିଭିନ୍ନ ଦେଶର ରାଜନୈତିକ, ସାଂସ୍କୃତିକ, ବ୍ୟାବସାୟିକ ପ୍ରତିନିଧି ଓ କର୍ମକର୍ତ୍ତା ଏଠି ଯୁଟନ୍ତି । ତେଣୁ ଏତେ ହାଟବଜାର ଏତେ ଗହଳ ଚହଳ । ବର୍ଣ୍ଣାଡ଼ସଙ୍କ ଭାଷାରେ ଇଂରେଜମାନେ ଆଉ ଯାହା ହୁଅନ୍ତୁ ନ ହୁଅନ୍ତୁ ନା କାହିଁକି ସେମାନେ ନିଛକ୍ ବ୍ୟବସାୟୀ । ବ୍ୟବସାୟଟା ଏମାନଙ୍କର ରକ୍ତଗତ । ଏଇ ବ୍ୟବସାୟ ବଳରେ ସେ ଏଡ଼େ ବଡ଼ ସାମ୍ରାଜ୍ୟ ସୃଷ୍ଟି କରିଥିଲେ ।

ମହିଳାମାନଙ୍କ ଗତିବିଧି ବିଶେଷକରି ଲକ୍ଷ୍ୟ କରୁଥାଏ । କାରଣ ଏହି କିଣାବିକା କାରବାରରେ ଏମାନେ ନେତୃତ୍ୱ ନେଇଥାନ୍ତି, ଆଗୁଆ-

ଥାନ୍ତି । ହେଲେ ଏମାନେ ଇମିତି ଉଚଗୋଇଠି ମୁନିଆ ଜୋତା ପିନ୍ଧି ଛେପେଇ ଛେପେଇ ଗୁଲୁଚନ୍ତି କାହିଁକି ? ଏ ବି ଏକ କସରତ୍ । ପୁରୁଷମାନଙ୍କ ପରି ଚଉଡ଼ା ଗୋଇଠି ମାଗୁ ବଇଠି ଯୋତା ପିନ୍ଧିଲେ କ'ଣ ଚଳନ୍ତାନି ! ଆମ ଦେଶର ପାଣିପାଣ୍ଠୁଆମାନେ କାଠ ବଇଠି ଲଗେଇ ନାଚଲା ପରି ଏମାନେ ଇମିତି ଗୁଲୁଚନ୍ତି କାହିଁକି ? ଆହା କେତେ କଷ୍ଟ ପାଉନାହାନ୍ତି ଏମାନେ ! କିନ୍ତୁ କଷ୍ଟ ପାଇଲା ପରି ତ ଜଣାଯାଉ ନାହାନ୍ତି । ଉଚ୍ଚ ଉଚ୍ଚ ଛେପେଇ ଛେପେଇ ଧୀର ମନ୍ଥର ଗତିରେ, ଦ୍ରୁତ ବେଗରେ ଯିବା ଆସିବା କରୁଚନ୍ତି ମହା ଖୁସିରେ ।

ହେଲେ ଏ ମୁନିଆ ଉଚ ଗୋଇଠି ଜୋତା କାହିଁକି ? ଗୋଡ଼ ଖସିଲେ ନିର୍ଘାତ୍ କଚଡ଼ା ପଡ଼ିବେ । ତେବେ କ'ଣ ରୂପଯୌବନର ପ୍ରକାଶ ଓ ପ୍ରଚ୍ଛର ପାଇଁ ଏ ବ୍ୟବସ୍ଥା ! ଆମ କବି ଲେଖିଛନ୍ତି "କୃଶାଙ୍ଗୀ, କୃଶୋଦରୀ କୁନ୍ଦଦଶନା ଘନ ଜଘନଭରେ ମନ୍ଦଗମନା ।" ଏମାନେ ତ କୃଶାଙ୍ଗୀ କି କୃଶୋଦରୀ ନୁହନ୍ତି । ରୂପଯୌବନ ବା ମାଂସହାଡ଼ର ଭାର ତ ଏମାନଙ୍କର ଖୁବ୍ ବେଶୀ । ଆଉ ମନ୍ଦ ଗମନ ବି କରୁ ନାହାନ୍ତି । ଖୁବ୍ ଅସ୍ଥିର, ଚଞ୍ଚଳ ଜଣାପଡ଼ୁଚନ୍ତି । ତେବେ କ'ଣ ପାଇଁ ଏ ମୁନିଆ ଉଚା ଜୋତା ? ଯେଉଁମାନେ ପ୍ରକୃତରେ କୃଶାଙ୍ଗୀ ସେମାନେ ନିହାତି ଖରାପ ଦେଖାଯାନ୍ତିନି ଏ ଉଚା ଯୋତା ପିନ୍ଧି ଗୁଲିଲାବେଳେ । କିନ୍ତୁ ଯେଉଁମାନଙ୍କ ଦେହରେ ଟିକିଏ ଚର୍ବି ଲାଗିଚି ସେଗୁଡ଼ାକ ତ କ'ଣ ମୋଟା ମାଂସ ପିଣ୍ଡୁଳା ଗଡ଼ିଲା ପରି ପଡ଼ି ଉଠି ଧାଇଁଚନ୍ତି । କବିସୂର୍ଯ୍ୟ ବଳଦେବ ରଥଙ୍କ କବିତା ମନେ ପଡ଼ିଲା "ମୁଁ ତ ଯଉବନ ଗୁମାନେ ମଦନ ମନ୍ଥର କରି ନ ଜାଣେ, ମୋତେ ଜଳକେଳି-ଅଳସୀ-ମରାଳୀ ଗମନା ବୋଲନ୍ତି କେଣେ !" ଏମାନେ କ'ଣ ପାଣିକୁ ପହଁରିବା ପାଇଁ ଯାଉଥିବା ହଂସୀ ପରି ଦେଖାଯାଉଚନ୍ତି ? ହଁ, ହୋଇପାରେ । ହଂସୀଗୁଡ଼ାକ ଯଦି ମୋଟୀ, ଘୋଟୀ ହୋଇଥିବେ କିନ୍ତୁ ଏ ତ ଜଳକେଳି-ଅଳସୀ-ଗମନା ନୁହନ୍ତି । କ'ଣ ଇମିତି ଉଗ୍ ଉଗ୍ ଛେପେଇ ଛେପେଇ ଗୁଲିଚନ୍ତି, ଅବଶ୍ୟ କେଳି କରିବାକୁ, ବଜାର-କେଳି ।

ଲଣ୍ଡନ ସହର ଦେଖିବାକୁ ମୁଁ ସବୁବେଳେ ସଜବାଜ ହୋଇ ନିଷ୍କାର ସହ ବାହାରେ । ହାତରେ ଲଣ୍ଡନର ମାନଚିତ୍ର, ପୁଡ଼ିଏ ପ୍ରସ୍ତରପତ୍ର; ମୁଣ୍ଡରେ

ବିଲାତରେ ଯାବତୀୟ ଇତିହାସ, ଭୂଗୋଳ, ବିଜ୍ଞାନର ରୋମନ୍ଥନ । କୌଣସି ସେନାନାୟକ ଯୁଦ୍ଧ ଭୂମିରେ ସୈନ୍ୟଗୁଳନା କଲାବେଳେ ଏତେ ଚିନ୍ତାଗ୍ରସ୍ତ ହେଉ ନଥିବେ କି ଏତେ ଆୟୋଜନ କରୁ ନଥିବେ ! ଯାହା ଦେଖୁଥାଏ ତାକୁ ପିଇ ଯାଉଥାଏ, ଅବଶ୍ୟ ଆଖିରେ ! କୌଣସିଥିରେ ସନ୍ଦେହ ହେଲେ କାହାକୁ ସବିନୟେ ପଚାରି ସବୁ ବୁଝି ନେଉଥାଏ । ବସ୍, କୋଚ୍ ଯେଉଁଠି ଯାହା ସୁବିଧା ମିଳିଲା ଏ ରାସ୍ତାରୁ ସେ ରାସ୍ତା, ଏ ଛକରୁ ସେ ଛକ ଧାଇଁଥାଏ । ହେଲେ ଏହାର ଯେମିତି ପରିସମାପ୍ତି ନାହିଁ । ମନରେ ଯେମିତି ପରିତୃପ୍ତି ନାହିଁ । ବାଟଯାକ ଘାଟିକୁ ଘାଟି ଯାନବାହନଗୁଡ଼ିକର ଯାତାୟାତ ନିୟନ୍ତ୍ରଣ କରିବାକୁ ବିଦ୍ୟୁତ ଆଲୋକଯନ୍ତ୍ର ଖଞ୍ଜାଯାଇଥାଏ । ବସ୍, କୋଚ୍, କାର ଆଦି ସଙ୍କେତରେ ମାଡ଼ିଯାଉଥାନ୍ତି । ନାଲି ସଙ୍କେତ ଦେଖିଲାକ୍ଷଣି କେଁ ଚେଁ ହୋଇ ଅଟକି ଯାନ୍ତି । ବାଇଗଣି ଆଲୁଅ ହେବା ଆଗରୁ ହଳଦିଆ ଆଲୁଅ ଦେଖିଲାକ୍ଷଣି ପୁଣି ଆଗକୁ ମାଡ଼ିଗୁଲନ୍ତି । ସବୁଆଡ଼େ ତ ଲଣ୍ଡନ । କିନ୍ତୁ ସହରଟା କେଉଁଠି ଆରମ୍ଭ ହୋଇ କେଉଁଠି ଶେଷ ହୋଇଛି ? କିଛି ତ ଜଣା ପଡୁନି । ସବୁଆଡ଼େ ତ ସେହି ରାସ୍ତା, ସେହି ଲୋକ, ସେହି ବିପଣୀ, ସେହି ବଜାର । ତେବେ କଣ ଏହାର ଆଦି ଅନ୍ତ ନାହିଁ ! ଏଟା ଅନନ୍ତ ! ଜଣେ କାହାକୁ ବିଜ୍ଞବ୍ୟକ୍ତି ବୋଲି ଅନ୍ଦାଜ କରି ପଚାରିଲି । ସେ ମହାଶୟ ଭ୍ରୂକୁଞ୍ଚନ କରି କପାଳ ଦେଶର ଶୁଭ୍ର ଚର୍ମରେ ତରଙ୍ଗ ସୃଷ୍ଟି କରି, ମସ୍ତିଷ୍କକୁ ସତେଜ କରିବାକୁ ସିଗାରେଟ୍‌ଟିରେ ଅଗ୍ନି ସଂଯୋଗକରି ଉତ୍ତର ଛଳରେ ମୋ ରି ପ୍ରଶ୍ନଟିର ମର୍ମକୁ ପୁନରୁଦ୍ଧାର କଲେ । "ଲଣ୍ଡନ କେଉଁଠି ଆରମ୍ଭ ହୋଇ କେଉଁଠି ସରିଛି କଣ ? ସବୁଟା ତ ଲଣ୍ଡନ ।" ଚମତ୍କାର କଥା । ଏ ସସୀମ ପୃଥିବୀରେ ଲଣ୍ଡନ ସହରଟା ଅସୀମ ହେଲା କିପରି ? ନା ଏହାର ବ୍ୟାପ୍ତିଟା କଳନା କରିବାକୁ ହେବ । ସେଥିପାଇଁ ବସ୍, କୋଚ୍ ଯଦି ଯଥେଷ୍ଟ ନ ହୁଅନ୍ତି ତେବେ ମାଟିତଳ ବା ମାଟି ଉପର ରେଲର ଆଶ୍ରୟ ନିଆଯିବ । କିନ୍ତୁ ସେଥିପାଇଁ ତରତର ହେବାର ଦରକାର ନାହିଁ । ସମୟ ଦେଖି ସୁବିଧାରେ ତା କରାଯିବ । "ଧରି ଧୈର୍ଯ୍ୟ, ମନରେ ସାନ୍ତ୍ୱନା......"

ଲଣ୍ଡନ ସହର ଭିତରେ ଓ୍ୱେଷ୍ଟ୍ ଏଣ୍ଡ୍‌ଟା ବଡ଼ ବିଖ୍ୟାତ ଅଞ୍ଚଳ । ଏଠାରେ ବହୁ ବଡ଼ ବଡ଼ ଦୋକାନ ବଜାର, ହୋଟେଲ ରେଷ୍ଟୁରାଁ,

ସିନେମା ଥିଏଟର ଅଛି । ରାତିରେ ଚାରିଆଡ଼େ ଆଲୋକମାଳାର ଝଲକ ଖେଳଯାଏ । ବହୁ ସମ୍ଭ୍ରାନ୍ତ, ଧନିକ ବ୍ୟକ୍ତି କଣାକଣି, ଆହାରବିହାର, ବିଳାସବ୍ୟସନ ପାଇଁ ଏଠି ଜମନ୍ତି । ସବୁବେଳେ ଏଇଟା ଲୋକାରଣ୍ୟ । ଧନଗରିବର ପ୍ରଭେଦ ଏ ଅଞ୍ଚଳରେ ସହଜରେ ବୁଝି ହୁଏନା । ବହୁ ବିଶିଷ୍ଟ ଓ ବିଖ୍ୟାତ ଲୋକ ଏହାକୁ ତାଙ୍କ ବାସସ୍ଥାନ, ବିହାର ଭୂମି କରି ନେଇଛନ୍ତି । ବହୁ ରୂପଜୀବୀ ରମଣୀଙ୍କର ଏ ହେଲା ଲୀଳାକେନ୍ଦ୍ର । ମହାର୍ଘତୀର୍ଥ ଏହି ଓ୍ୱେଷ୍ଟ ଏଣ୍ଡ୍‌ରେ ବନ୍ଧୁବାନ୍ଧବୀଙ୍କ ଗହଣରେ ଆହାର ବିହାର, ଆମୋଦପ୍ରମୋଦ କରିବା ବିଲାତବାସୀଙ୍କର ଗୋଟାଏ ବ୍ୟସନ । ଧନୀଦରିଦ୍ର, ଯୁବକବୃଦ୍ଧ, ଯୁବତୀବୃଦ୍ଧା ସମସ୍ତଙ୍କ ପକ୍ଷରେ ଏହାର ମୋହ ଏଡ଼ିବା ବଡ଼ କଷ୍ଟକର । ଏଠାକାର ପୋଷାକପତ୍ରର ଢ଼ଙ୍ଗ, ଚାଲିଚଳନର ଭଙ୍ଗୀ, ଆଦବକଏଦାର ନମୁନା ବିଲାତବାସୀ ଓ ସେମାନଙ୍କ ଅଧୀନସ୍ଥ ବା ସମ୍ପୃକ୍ତ ରାଜ୍ୟମାନଙ୍କର ଆଦର୍ଶ ଏଇଟା ବି ବାଚବିଳାସିନୀ ଦାମିକା ବେଶ୍ୟାମାନଙ୍କର ଚରିଭୂଇଁ । ଏଠାରେ ବାସ କରୁଥିବା ବିଖ୍ୟାତ ବେଶ୍ୟା କ୍ରିଷ୍ଟେନ୍ କେଲରଙ୍କ ପ୍ରେମ କାରବାରରେ ଲିପ୍ତ ହୋଇ ବ୍ରିଟିଶ୍ ମନ୍ତ୍ରୀମଣ୍ଡଳର ସଦସ୍ୟ ମିଷ୍ଟର ପରଫ୍ୟୁମୋ ତାଙ୍କ ମନ୍ତ୍ରୀତ୍ୱ ଛାଡ଼ିବାର ସମ୍ବାଦ ପରେ ପ୍ରକାଶ ପାଇଲା ।

କିନ୍ତୁ କେଉଁଟା ଏ ମହାର୍ଘତୀର୍ଥ ଓ୍ୱେଷ୍ଟ ଏଣ୍ଡ୍ ! ଏପରି ତ ଗୋଟାଏ ନିର୍ଦ୍ଦିଷ୍ଟ ଅଞ୍ଚଳ ନାହିଁ । ତେବେ ପିକାଡ଼ିଲି, ରିଜେଣ୍ଟ ଷ୍ଟ୍ରିଟ୍, ହେମାର୍କେଟ୍, ଅକ୍‌ସଫୋର୍ଡ଼ ଷ୍ଟ୍ରିଟ୍, ହାନୋଭର ସ୍କୋୟାର୍, ଲିସେଷ୍ଟର ସ୍କୋୟାର, ଟ୍ରାଫାଲଗାର ସ୍କୋୟାର, ସୋହୋ ସ୍କୋୟାର, ପ୍ରାୟ ଏଇସବୁ ଅଞ୍ଚଳକୁ ନେଇ ବୋଧହୁଏ ଓ୍ୱେଷ୍ଟଏଣ୍ଡ୍ । ସମସ୍ତେ କହୁଛନ୍ତି ଓ୍ୱେଷ୍ଟ୍ ଏଣ୍ଡ୍ ଓ୍ୱେଷ୍ଟ ଏଣ୍ଡ ବୋଲି କିନ୍ତୁ ତାର ଗୋଟାଏ ସୀମାସରହଦ ନାହିଁ କାହିଁକି ?

୧୬୬୬ ଖ୍ରୀଷ୍ଟାବ୍ଦର ଭୟାନକ ଅଗ୍ନିକାଣ୍ଡ (Great fire) ପରେ ମହାନ୍ ସ୍ଥପତିଶ୍ରେଷ୍ଠ ରେନ୍ (Wren) ଓ ଅନ୍ୟ କେତେ ସ୍ଥପତିଙ୍କ ନୂତନ ଲଣ୍ଡନର ପରିକଳ୍ପନା କରିଥିଲେ ଓ ତାର ମୂଳଦୁଆ ପକାଇଥିଲେ । ତାହା ପରେ ଏକ ଖାମଖିଆଲି ଢ଼ଙ୍ଗରେ ଏ ସହର ବଢ଼ି ଚାଲିଚି । ଅବଶ୍ୟ ଏବେ ଲଣ୍ଡନରେ ଜନଗହଳି ବଢ଼ି ଯାନବାହନ ଯିବା ଆସିବାରେ

ଅସୁବିଧା ଘଟିବାରୁ ଯାନ ନିୟନ୍ତ୍ରିତ କରାଯାଉଛି । କେତେ ନୂଆ ରାସ୍ତା ତିଆରି ହୋଇଛି, କେତେ ରାସ୍ତାକୁ ଚଉଡ଼ା କରାଯାଇଛି । ଘରୋଇ ମଟର ସଂଖ୍ୟା ବଢ଼ିଯିବାରୁ ଏବଂ ସେମାନେ ସେ ମଟର ସବୁ ରଖି ଦେଇ ରାସ୍ତାଘାଟ ଅବରୋଧ କରିବାରୁ ସେଗୁଡ଼ିକୁ 'ପାର୍କିଂ' କରିବାପାଇଁ କର ଆଦାୟ କରାଯାଉଛି ଏବଂ ପରିକଳ୍ପନା କରାଯାଉଛି ଯେ ଓ୍ୱେଷ୍ଟଏଣ୍ଡ ପରି ସହରର କେନ୍ଦ୍ର ଅଞ୍ଚଳକୁ କୌଣସି ଘରୋଇ ଗାଡ଼ି ଆସିବନି । ଯେଉଁମାନେ ଜନବହୁଳ ବଜାରଘାଟ, ଅଫିସ୍‌ଦପ୍ତରକୁ ଆସିବେ ସେମାନେ ତାଙ୍କ ଘରୋଇ ଗାଡ଼ିକୁ କେନ୍ଦ୍ର ଅଞ୍ଚଳର ବାହାରେ ରଖି ସର୍ବସାଧାରଣ ବସ୍, କୋଚ ଆଦିରେ ଏଠାକୁ ଆସିବେ ଏବଂ ଏ ଅଞ୍ଚଳରେ କାମ ସରିଲେ ସେହି ସର୍ବସାଧାରଣ ଯାନବାହନକୁ ଆଶ୍ରାକରି ଫେରିବେ । ଏଥିପାଇଁ ସହରର ବିଭିନ୍ନ ଅଞ୍ଚଳରେ ବହୁ ଗ୍ୟାରେଜ ତିଆରି ହୋଇଛି ଓ ହେଉଛି । ଜନଗହଳିଭରା ଓ୍ୱେଷ୍ଟଏଣ୍ଡର ବିଭିନ୍ନ ରାସ୍ତା ଗଳି କନ୍ଦିରେ ବୁଲି ସ୍ଥା ସମ୍ବନ୍ଧରେ ଧାରଣା କରିବାକୁ ପଡ଼େ । ଏହାର ବିଭିନ୍ନ ଅଞ୍ଚଳ ସହିତ ପରିଚିତ ହେଲେ ଲଣ୍ଡନ ସମ୍ବନ୍ଧରେ ଯେ କେବଳ ସମ୍ୟକ୍ ଧାରଣା ଜନ୍ମେ ତା' ନୁହେ ସେ ସବୁର ବିଶେଷତ୍ୱ ବେଶ୍ ଉପଲବ୍ଧି କରିହୁଏ ।

ଏହି ଓ୍ୱେଷ୍ଟଏଣ୍ଡର ଗୋଟିଏ ଅଂଶରେ ବିଖ୍ୟାତ ସୋହୋ ଅଞ୍ଚଳ ଯେଉଁଠିକି ବିଭିନ୍ନ ଇଉରୋପୀୟ ଖାଦ୍ୟ (Continental food) ଖାଇବାକୁ ମିଳେ । ଏଠାରେ ବି ନାନା ଆମୋଦପ୍ରମୋଦର ବ୍ୟବସ୍ଥା ଅଛି ଯାହା ଯୋଗେ ଏହାକୁ ସସ୍ନେହରେ ଲଣ୍ଡନର ଲାଟିନ୍ କ୍ୱାର୍ଟର (Latin quarter) ବୋଲି କୁହାଯାଏ । ଏହାର ଅଳ୍ପ ଦୂରରେ ମେ ଫେୟାର (May Fair) ଯାହାକି ପୂର୍ବେ ଗୋଟେ ଗାଁ ଥିଲା । ଏଠି ମେ ମାସରେ ହେଉଥିବା ମେଳାକୁ ବହୁ ସମ୍ଭ୍ରାନ୍ତ ଓ ସାଧାରଣ ଲୋକ ଆସୁଥିଲେ । ଏବେ ବି ଏଠି ପଲ୍ଲୀ ପରିବେଶର ସୂଚନା ମିଳେ ।

ଏହି ଓ୍ୱେଷ୍ଟଏଣ୍ଡ ଅଞ୍ଚଳ ଲଣ୍ଡନର ପ୍ରସିଦ୍ଧ ଉଦ୍ୟାନ (Park) ମାନଙ୍କ ମଧ୍ୟରେ ଅବସ୍ଥିତ । ଉତ୍ତରରେ ରିଜେଣ୍ଟ ପାର୍କ, ପଶ୍ଚିମରେ ହାଇଡ଼୍ ପାର୍କ ଓ ତାକୁ ଲାଗି କେନ୍‌ସିଂଟନ୍ ଗାର୍ଡ଼େନ୍, ଦକ୍ଷିଣରେ ଗ୍ରୀନ୍ ପାର୍କ ଓ ସେଣ୍ଟ ଜେମସ୍ ପାର୍କ, ବକିଂହାମ୍ ରାଜପ୍ରାସାଦକୁ ଲାଗି ପ୍ରାସାଦ

ଉଦ୍ୟାନ । ଏହିସବୁ ପାର୍କ ଉଦ୍ୟାନର ସବୁଜ ଶୋଭା ଓ୍ୱେଷ୍ଟ୍ ଏଣ୍ଡ୍‌କୁ ଘେରି ରହିଛି ।

ଏହି ମହାତୀର୍ଥ ଓ୍ୱେଷ୍ଟ୍ ଏଣ୍ଡରେ ବୁଲି ବୁଲି କ୍ଲାନ୍ତ ହୋଇ ପଡ଼ୁଥାଏ । ଶରୀରମାନ୍ଦ୍ୟ ତୁଟେଇବାକୁ ଟିକିଏ ବ୍ରାଣ୍ଡି ପିଇଦେଲି ବିନା ଦ୍ୱିଧାରେ । ମୋତେ ଡାକ୍ତର କହିଥାନ୍ତି, ମଦ ପିଇବା ଖରାପ ନୁହେଁ କେବଳ ମଦ୍ୟପ ହେବା ଖରାପ । ପୁଣି ବିଲାତରେ ବ୍ରାଣ୍ଡି ମଦ ନୁହେଁ । ସେ ଗୋଟିଏ ଔଷଧ । ସେହି ଔଷଧରୁ ଟିକିଏ ସେବନ କଲାପରେ ମଧୁର ନିଶାରେ ଦେହ ମନ ଟିକିଏ ହାଲୁକା ଲାଗିଲା । ତେଣୁ ପୁଣି ବୁଲିବାକୁ ଆରମ୍ଭ କରିଦେଲି । ରାତି ହୋଇ ଆସୁଥାଏ । ଠାଏ ଠାଏ ଅନ୍ଧାରିଆ ଆଡୁଆ ଜାଗାରେ ଯୁବକଯୁବତୀମାନେ ପରସ୍ପରକୁ ବାହୁବନ୍ଧନରେ ଜାବୁଡ଼ି ଧରି ଠିଆ କେଳିରେ ମାତି ଉଠିଥାନ୍ତି । କଫି ହାଉସ୍ ଓ ରେଷ୍ଟୁରାଁ ମାନଙ୍କରେ ଜନଗହଳି ଓ କୋଳାହଳ ବଢ଼ିଯାଇଥାଏ । ଚାରିଆଡ଼େ ଆନନ୍ଦ-ଉଲ୍ଲାସର ହା-ହିଲ୍ଲୋଳ ବଢ଼ି ଉଠିଛି । ମୁଁ କିନ୍ତୁ ଯେତେ ବୁଲିଲେ ବି ଯେତେ ଯେତେ ଦେଖିଲେ ବି ପୂରା ଆତ୍ମସନ୍ତୋଷ ଲାଭ କରିପାରୁନଥାଏ । ଲାଗୁଥାଏ ଯେମିତି ମୁଁ କ'ଣ ଖୋଜୁଛି ଅଥଚ ପାଉନି । କିଛିଲୋ ଆତ୍ମାସନ୍ତର ଜୋତାର ଦୌରାତ୍ମ୍ୟରୁ ଏ ବୁଲାବୁଲିରେ ଗୋଡ଼ ଦିଟା ଥକିପଡ଼ି କଟ କଟ କରି ଉଠୁଥାନ୍ତି । ତଥାପି ଆଉ କିଛି ଅଧିକ ରମଣୀୟ ଅଧିକ ଚିତ୍ତାକର୍ଷକ ଦୃଶ୍ୟ ଦେଖିବାର ଇଚ୍ଛା । ହେ ଲଣ୍ଡନ ! କାହିଁ ତୋ ରୂପ ମୋହନ, ଯେ ରୂପେ ମୋହିଲୁ ତୁ ବିଶ୍ୱନୟନ ! ଛାତି ଭିତରୁ ମୋର ସତେ ଅବା ଗୋଟାଏ କୋହ ଉଠୁଥାଏ ।

ଜଣେ ସହପାଠୀ ବଙ୍ଗାଳୀ ବନ୍ଧୁଙ୍କ ସହିତ ମୋର ଲଣ୍ଡନରେ ଖୁବ୍ ଆତ୍ମୀୟତା ଜମି ଉଠିଥାଏ । ନାଁ ତାର ଭୌମିକ । ବେଶ୍ ମେଳାପି, ମେଜାଜ୍‌ଦାର ଲୋକ । ମୋର ବହୁ ଆଗରୁ ସେ ବିଲାତ ଯାଇଥାଏ । ସରକାରୀ ଖର୍ଚ୍ଚରେ ନୁହେଁ ନିଜ ଚେଷ୍ଟାରେ । ସେଠାରେ ସୁବିଧା ଦେଖି ନାନା କାର୍ଯ୍ୟ-କର୍ମ କରି ସେଥିରୁ ଯାହା ରୋଜଗାର କରେ ସେଥିରେ ନିଜର ଗୁଜରାଣ ମେଣ୍ଟାଏ । ଅପରାହ୍ନର ମଧ୍ୟାହ୍ନ ବିରତି ବା ଟି'କଫି ପିଆ ଛୁଟି ସମୟରେ ଆମର ନାନା ଖୁସିଗପ ହୁଏ । ସେ ଲଣ୍ଡନ ସହରର

ଘୂରିଆଡ଼େ ବୁଲାବୁଲି କରି, ଖୁସି ଭ୍ରମଣ ନୁହେଁ କାର୍ଯ୍ୟ ସୂତ୍ରରେ, ଅନେକ ଗୁପ୍ତ ଓ ରୋମାଞ୍ଚକର ତଥ୍ୟ ସଂଗ୍ରହ କରିଥାଏ । ସେଥିରୁ ଅନେକ ଏହି ଓ୍ୱେଷ୍ଟ ଏଣ୍ଡ ସମ୍ବନ୍ଧରେ । ସେସବୁ ଶୁଣି ମୋର ବିକଳ ମନ ଆଗ୍ରହରେ ଭରିଯାଏ ରହସ୍ୟ ଭରା ଏହି ଓ୍ୱେଷ୍ଟ ଏଣ୍ଡ ର ଗୂଢ଼ଅଗୂଢ଼ ଭଲମନ୍ଦ ତଥ୍ୟ ଆବିଷ୍କାର କରିବାକୁ । ସନ୍ଧ୍ୟା ପରେ କେଉଁଠି ଏ ଅଞ୍ଚଳ ଘରି କର୍ମମୁଖର ହୋଇଉଠେ । ରାତି ଯେତକ ବଢ଼େ ଏଠାର କେଳିକୌତୁକ ସେତିକି ସାବଲୀଳ ସେତିକି ସଘନ ହୋଇପଡ଼େ । ସତେ ! ତେବେ ଏ ଅଞ୍ଚଳ ଭଲ କରି ବୁଲିବା । ମୁଁ ସାଙ୍ଗେ ସାଙ୍ଗେ ମନରେ ପ୍ରତିଜ୍ଞା କରିବସେ ।

ନାନା କଳ୍ପନାଜଳ୍ପନା କରି ଓ୍ୱେଷ୍ଟଏଣ୍ଡ ଘୂରିଯାଏ । ସଞ୍ଜ ବେଳ ଯାଏ ଏଣେ ତେଣେ ବୁଲେ କିନ୍ତୁ ରାତି ବଢ଼ିଗଲେ ଡର ମାଡ଼େ, କେଉଁଠି କଣ ବେଆଡ଼ା ଦେଖି ଦେହ ଶୀତେଇ ଉଠେ । ଆଉ ଆଗେଇ ପାରେନି । ଫେରିଆସେ । ତେବେ ବି ଆଗ୍ରହର ମାତ୍ରା କମେନି । ଠିକ୍ କୌଣସି ଦୁଃସ୍ୱପ୍ନ ପରି ଲାଗେ । ଆଗରେ ଏକ ବିରାଟକାୟ ବିକଟାଳ ଭୂତ, ସେ ତୁମ ଆଡ଼କୁ ଆଖି ତରାଟି ଆଁ କରି ମାଡ଼ିଆସୁଛି । ତୁମର ପଳେଇ ଯିବାର କଥା କିନ୍ତୁ ତୁମେ ପଳାଇ ଯିବା ପରିବର୍ତ୍ତେ ସେ ଭୟଙ୍କର ଦୁଷ୍ଟ ଜୀବ ଆଡ଼କୁ ଆଗେଇ ଚାଲିଛ ଯେମିତି କୌଣସି ସୂକ୍ଷ୍ମ ଅଦୃଶ୍ୟ ରଜ୍ଜୁରେ ଟାଣି ହୋଇ । ଧେତ୍ କି ବିଡ଼ମ୍ବନା ! ଦେହଟା ଭୟରେ କମ୍ପି ଉଠେ ।

ଓ୍ୱେଷ୍ଟଏଣ୍ଡ ଭୂତଟା ମୋତେ ସେମିତି ଟାଣୁଥିଲା । କିନ୍ତୁ ରାତିରେ ଏକା କେମିତି ସେ ଅଞ୍ଚଳରେ ବୁଲିବି ? କାଳେ କୌଣସି ଦୁଃଖଦୁର୍ଘଟଣା କି ଆପଦବିପଦ ଘଟିବ । ତେଣୁ ସାରଥି ରୂପେ ଧରିଲି ଭୌମିକକୁ । ହଁ, ଜଣେ ପଣ୍ଡା ନହେଲେ ସେ ତୀର୍ଥଭୂମି ଦେଖି ହେବ କିମିତି, ତା' ମାହାତ୍ମ୍ୟ ଉପଲବ୍ଧି କରି ହେବ କିପରି ? ଭୌମିକର କେତେଟା ବେଆଡ଼ା ଗୁଣ ଥାଏ ଯାହାକୁ ଗ୍ରାମ୍ୟ ଭାଷାରେ କୁହନ୍ତି ଆଙ୍କୁଦୋଷ । ତାକୁ ଆମ ସାଙ୍ଗସାଥୀ ମହଲରେ ସେତେ କେହି ଆଦର କରନ୍ତିନି । ତେଣୁ ମୁଁ ଯେତେବେଳେ ତାକୁ ମୋ ସାଙ୍ଗରେ ବୁଲିଯିବାକୁ ଅନୁରୋଧ କଲି ସେ ଦ୍ୱିଗୁଣ ଉତ୍ସାହରେ ଫୁଲିପାଇ ଚଟଲେଇଲା ତାର ବକ୍ତୃତା ଲଣ୍ଡନ ସହର ନେଇ । କେତେ ସେଥିରେ ସତ କେତେ ମିଛ କେଜାଣି କିନ୍ତୁ ଗପି ଚାଲିଥାଏ ଭୌମିକ ମୋତେ ଖୁବ୍ ଜଳଖିଆ

ଦେଇ । ସେ ବେଶୀ କହୁଥାଏ ଓ୍ୱେଷ୍ଟଏଣ୍ଡ୍ ସମ୍ବନ୍ଧରେ । ତେଣୁ ସେହି ବିଖ୍ୟାତ ବା କୁଖ୍ୟାତ ଅଞ୍ଚଳର ଗଳି କନ୍ଦି, ସ୍ଥାନ ଅସ୍ଥାନର ଶୋଭା ଦେଖିବାକୁ ମୋର ଉତ୍କଣ୍ଠା ବଢ଼ିଯାଇଥାଏ । ମୁଁ ପ୍ରସ୍ତାବ ଦେଲି ସପ୍ତାହର ଶେଷାଂଶ (week end)ରେ ଏହି ତୀର୍ଥଯାତ୍ରାରେ ଯିବାକୁ । କାରଣ, ଅନ୍ୟ ଦିନମାନଙ୍କରେ ଗଲେ ପଢ଼ାପଢ଼ିରେ ବ୍ୟାଘାତ ଘଟିପାରେ, ବେହୁସିଆର ଭାବରେ ବୁଲିବା ସମ୍ଭବ ହୋଇ ନ ପାରେ ।

ଭୌମିକ କିନ୍ତୁ ଏ ବିଷୟରେ ଦିନ ଅଦିନ, ସମୟ ଅସମୟ କଥା ଭାବିବାକୁ ପ୍ରସ୍ତୁତ ନଥିଲା । କହିଲା, ଏତେ କାଳ ଅକାଳ କଥା ଚିନ୍ତା କରାଯାଉଛି କାହିଁକି ! ଓ୍ୱେଷ୍ଟଏଣ୍ଡ୍ ର ଯେଉଁ ମାହାତ୍ମ୍ୟ ! କେତେ ଦେଶରୁ କେତେ ଲୋକ ଆସୁଚନ୍ତି ଏ ଓ୍ୱେଷ୍ଟଏଣ୍ଡ୍ ମହାତୀର୍ଥରେ ବସବାସ କରିବାକୁ, ଆନନ୍ଦ ଉଲ୍ଲାସ କରିବାକୁ । ସେଇ ପବିତ୍ର ଭୂମିରେ ମଉଜ-ମଜଲିସ୍‌ର ଯେ ମହାଯଜ୍ଞ ଚାଲିଛି ସେଥିରେ ଟିକିଏ ଆହୁତି ଦେବାକୁ, ସେଥିରୁ କଣିକାଏ ସ୍ମୃତି-ବିଭୂତି ଆହରଣ କରିବାକୁ ଲୋକେ ଆତ୍ମହରା ହୋଇ ଉଠୁଚନ୍ତି । ଆମେ ସେଠାକୁ ଯିବାକୁ ଏତେ ଦୋଦୋପାଞ୍ଚ କାହିଁକି ? ତେଣୁ ବ୍ରିଟିଶ୍ ସାମ୍ରାଜ୍ୟ ଓ ରାଜ୍ୟଗୋଷ୍ଠୀ ଅଧିବାସୀଙ୍କର ମକ୍‌କା-ମଦିନା ପ୍ରୟାଗ-ବଦ୍ରିକା ଏହି ଓ୍ୱେଷ୍ଟଏଣ୍ଡ୍‌କୁ ଅଚିରେ ଯିବାକୁ ହେବ ।

ଭୌମିକ ତାର ବକ୍ତୃତା ଚଳେଇଥାଏ । ମୁଁ ଆଁ କରି ଶୁଣୁଥାଏ । ସେଟା କଥା କହିବାରେ ସେତେ ଧୂରନ୍ଧର ନୁହେଁ । କିନ୍ତୁ ଓ୍ୱେଷ୍ଟଏଣ୍ଡ୍ ପ୍ରଶଂସା ନେଇ ସେ ଯେମିତି ପଞ୍ଚମୁଖ ହୋଇ ଉଠିଥାଏ । ଅସମ୍ଭବ କଣ ! ମୂକଂ କରୋତି ବାଚାଳଂ ପଙ୍ଗୁ ଲଙ୍ଘୟତେ ଗିରିଂ ଏଇ ମହାତୀର୍ଥର ମହିମା ଭୌମିକକୁ ବଡ଼ ବାବଦୁକ କରି ପକେଇଛି ! ହଁ, ହଁ, ଅନ୍ୟ ସବୁ କାମ ଥାଉ, ଆଗ ଓ୍ୱେଷ୍ଟଏଣ୍ଡ୍ ଦେଖାଯାଉ । ମୁଁ ତାର ବକ୍ତୃତାରେ ପ୍ରଭାବିତ ହୋଇ ଉତ୍ତର ଦିଏ । ଦିନେ ସନ୍ଧ୍ୟାବେଳଆ ଆମେ ଓ୍ୱେଷ୍ଟଏଣ୍ଡ୍ ଅଭିଯାନରେ ବାହାରିଲୁ । ଭୌମିକ କହିଲା, "କେଉଁଠି ଟିକିଏ ଜଳପାନ କରି ଆଜି ସୋହୋ ଅଞ୍ଚଳ ଆଡ଼େ ଯିବା" ମୁଁ ତଥାସ୍ତୁ କରିଦେଇ କହିଲି, "ହଁ ଚାଲ । ସୋହୋଟା ତ ବଡ଼ ବିଖ୍ୟାତ ଜାଗା । ସେଠି ମହାତ୍ମା ଗାନ୍ଧି ରହୁଥିଲେ ।"

—କ'ଣ ମହାତ୍ମା ଗାନ୍ଧି ରହୁଥିଲେ ?

ଭୌମିକ ପଚାରିଲା ।

ମୁଁ ମୋର ପାଣ୍ଡିତ୍ୟ ଦେଖାଇ କହିଲି, ମହାତ୍ମା ଗାନ୍ଧି ବିଲାତ ଆସିଲେ ସେଠାରେ ରହନ୍ତି । ଏଇଟା ବିଲାତର ଅପେକ୍ଷାକୃତ ଗରିବ **ଅଞ୍ଚଳ କନା !**

ଭୌମିକ ତା'ର ମୁହଁକୁ ଗମ୍ଭୀର କରି କହିଲା, ସୋହୋ ଓ ତାର ଆଖପାଖରେ ବହୁତ ବିଚିତ୍ର, ବିଖ୍ୟାତ ଜାଗା ଅଛି । ଆଉ ମହାତ୍ମା ଗାନ୍ଧି ରହିବା ଭଳି ବିଖ୍ୟାତ ଜାଗା ଥିବ ।

—ବିଖ୍ୟାତ ନୁହେଁ । ଦୁଷ୍ଟ ଅଞ୍ଚଳ ! ମହାତ୍ମା ଗାନ୍ଧି ଯେଉଁ ଦେଶକୁ ଯାଉଥିଲେ ସେଠାରେ ଦୁଃଖୀ ଦରିଦ୍ର ଯେଉଁ ଜାଗାରେ ବସବାସ କରନ୍ତି ସେ ସେଇଠି ରହୁଥିଲେ !

—ସେ ଅଞ୍ଚଳରେ ଦୁଃଖୀ ଦରିଦ୍ର ଅଛନ୍ତି କି ନାହିଁ କେଜାଣି ! କିନ୍ତୁ ବହୁତ ବେଶ୍ୟା ଓ ବିପଥଗାମୀ ମହିଳା ଅଛନ୍ତି । ସେଠାରେ ବହୁ ପ୍ରକାର ୟୁରୋପୀୟ ଖାନା ମିଳେ ।

ଭୌମିକ ସୋହୋ ମାହାତ୍ମ୍ୟ ଆରମ୍ଭ କରିଦେଲା । ମୁଁ ମନଦେଇ ଶୁଣୁଥାଏ । ମଝିରେ ତା'ଠାରୁ କଥା ଆଦାୟ କରିବାକୁ ନାନା ପ୍ରଶ୍ନ ପଚାରୁଥାଏ । ବିଭିନ୍ନ ବିଷୟର ସରଳାର୍ଥ ଭାବାର୍ଥ ବୁଝୁଥାଏ । ବସ୍ ଚାଲିଥାଏ ।

ନଇ ଅକ୍ସଫୋର୍ଡ ଷ୍ଟ୍ରିଟ୍‌ରେ ଓହ୍ଲାଇଲୁ । କିଛି ଦୂର ଯିବା ପରେ ଭୌମିକ ଗୋଟାଏ ଗଳିବାଟ ଦେଇ ମୋତେ ନେଇଗଲା । କୌଣସି ଏକ ଛକ ଜାଗାରେ ଅଟକିପାଇ କହିଲା, ଦେଖ !

—ଦେଖିବି ? କ'ଣ ଦେଖିବି ? ଏଇ ସିଗାରେଟ୍, ଚକୋଲେଟ୍ ଆଦିର ଦୋକାନ । ଏଗୁଡ଼ା ତ ସବୁଆଡ଼େ ଭର୍ତ୍ତି ।

—ନାଇଁ, ଆଉ ଅନେକ ରମଣୀୟ ଜିନିଷ ଅଛି ।

ଭୌମିକ ଯେଉଁଠି ଠିଆ ହୋଇଥିଲା ସେହିଠାରେ କାଚଢ଼ଆ ଚଟା ଫ୍ରେମ୍ ବାକ୍ସ ଭିତରେ ଯୁବତୀମାନଙ୍କର ବହୁତ ଉଲଗ୍ନ ଛବି ରଖା

ଯାଇଥାଏ । ବାଟ ପରି ଏକ ସଭ୍ୟ ଦେଶର ବଡ଼ ବଜାରରେ ଏପରି ସବୁ ଅଶ୍ଳୀଳ ଚିତ୍ର ଦେଖି ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ସାମାନ୍ୟ ଉତ୍କଣ୍ଠା ସହ ପଚାରିଲି—

—କ'ଣ ଏମିତି ଏସବୁ ରାସ୍ତା ପାଖରେ···

—ଏଠି ରାସ୍ତା ବେରାସ୍ତା ବିଚାର ନାହିଁ । ଯେଉଁ ଜିନିଷର କାଟ୍ତି ଅଛି ସେଥିରେ ବ୍ୟବସାୟ କରାଯାଏ । ଏଥିରେ କିଛି କମ୍ ଲାଭ ହୁଏନି । ହଜାର, ହଜାର ପାଉଣ୍ଡ ଖର୍ଚ୍ଚକରି ମଡ଼େଲ ବସାଇ ଏସବୁ ଫଟୋ ନିଆଯାଏ । ସେଥିରୁ ଲକ୍ଷ ଲକ୍ଷ ସଂଖ୍ୟାରେ ଛାପି ବିକ୍ରୀ କରାଯାଏ । ଦେଶ ବିଦେଶରେ ଏହାର କାଟ୍ତି ଖୁବ୍ ବେଶୀ । ଏହି ମଡ଼େଲମାନଙ୍କର ରୋଜଗାର ବହୁତ । ଏମାନଙ୍କ ଭିତରୁ ଅନେକେ ବେଶ୍ୟା ବୃତ୍ତି କରନ୍ତି । କେତେକ ଧନିକ ବ୍ୟକ୍ତିଙ୍କର ରକ୍ଷିତା ଭାବରେ ମହା ଆଡ଼ମ୍ବରରେ ଦିନ କାଟନ୍ତି । ଏମାନଙ୍କୁ ନେଇ ବହୁ ପ୍ରେମ ଆସର ଗଢ଼ିଉଠେ । ବହୁ ରସିକ, ପ୍ରେମିକ ଫୁଲ ଚାରିପଟେ ପ୍ରଜାପତି ଉଡ଼ିବୁଲିଲା ପରି ଏମାନଙ୍କୁ ଘେରି ରହିଥାନ୍ତି । ସୁରା ଭାଣ୍ଡରେ କେହି କେହି ବିଖ୍ୟାତ ରୂପ-ବିଳାସିନୀ ଡୁବକ୍ ଦିଅନ୍ତି ଏବଂ ରୂପସୀଙ୍କ ଏହି ଦେହଲଗା ସୁରାରୁ କାଣିଚାଏ କାଣିଚାଏ ମହାପ୍ରସାଦ ପରି ମୁଗ୍ଧ ପ୍ରେମିକଦଳ ସେବା କରନ୍ତି । କେହି କେହି ସୁରା ପିଆଲାରେ ପ୍ରେୟସୀଙ୍କ ଗୋଡ଼ ଆଙ୍ଗୁଠି ବୁଡ଼େଇ ପିଅନ୍ତି ଯେମିତି ଆମ ଦେଶରେ କୁଳବଧୂମାନେ ଶାଶୁଶ୍ୱଶୁର ବା ଗୁରୁଜନ-ମାନଙ୍କର ପାଦୋଦକ ସେବା କରନ୍ତି ।

ମୁଁ ଯେମିତି ଆର୍ତ୍ତନାଦ କରିଉଠିଲି । କହିଲି, ହାଇରେ ସେମାନେ ସୁନ୍ଦରୀ ବୋଲି ତାଙ୍କ ଗୋଡ଼ବୁଡ଼ା ମଦ !

—ତାଙ୍କ ଗୋଡ଼ ବଡ଼ ସଫା ଥାଏ । ଆମ ଦେଶର ଆଲୁଫଟା, ମଇଳାଲଗା ଶାଶୁଶ୍ୱଶୁରଙ୍କ ପାଦପରି ନୁହେଁ ।

—ସେଇଟା ସିନା ଭକ୍ତିରେ···

—ଏଇଟା ପ୍ରେମରେ !

ଆମେ ଆଉ ଥୋଡ଼ାଏ ବାଟ ଆଗେଇ ଯାଇଥାଉ । ଭୌମିକ ରାସ୍ତା କଡ଼ରେ ମୋତେ ଠିଆ କରେଇ ଦେଇ ଏଣେତେଣେ କ'ଣ

ଉଣ୍ଡୁଥାଏ । ମୋତେ ବି ସୁବିଧା ମିଳିଯାଇଥାଏ ସ୍ବରାଜ୍ୟ ନଗରୀକାରେ ନିରୀକ୍ଷଣ କରିବାକୁ । କିଛି ସମୟ ପରେ ଭୌମିକ ଫେରିଆସି କହିଲ, ଚାଲ ।

—କୁଆଡ଼େ ?

—ଆଗକୁ ଯାଇ ଦେଖିବା । ଏଠି ଜଣେ ଦି'ଜଣ ଚିହ୍ନା ଥିଲେ ଯେ...

—କ'ଣ ବନ୍ଧୁ ?

—ଶଳା ବନ୍ଧୁଙ୍କୁ ମାର ଗୁଲି, ବାନ୍ଧବୀ !

ବିଚରା ଏକଦମ୍ ବିଗିଡ଼ି ଯାଇଥାଏ । କଣ କରିବ ! ଯେତେ ଖୋଜାଖୋଜି କଲେ ବି ଶୀକାର ମିଳୁନାହାନ୍ତି ।

ଆଉ ଥୋଡ଼ାଏ ବାଟ ଆଗେଇ ଗଲୁ । ଆଗରୁ ଟିକିଏ ଟିକିଏ ଜାଜ୍ ବା ପପ୍ ମ୍ୟୁଜିକ୍ ଶୁଣାଯାଉଥାଏ । ସେ କ୍ରମେ ଖୁବ୍ ମୂର୍ଚ୍ଛନାମଧୁର ଓ ଉଚ୍ଚାଟମୟ ହୋଇଉଠିଲା । ତାକୁ ଶୁଣି ରାସ୍ତାରେ ଚାଲିଥିବା ଯୁବକଯୁବତୀ ଯେମିତି ତାଳେ ତାଳେ ପାଦ ପକାଇ ଚାଲିଲାପରି ଜଣା ଯାଉଥାନ୍ତି । ଯୋଡ଼ି ଯୋଡ଼ି ହୋଇ ଗୋଟି ଗୋଟି ହୋଇ ନାଚଗୀତ ଚାଲିଥିବା ଘରକୁ ପଶିଯାଉଥାନ୍ତି । ନାଚ ଗୀତ ଆସର ଅନେକ ବେଳୁଁ ଆରମ୍ଭ ହୋଇଯାଇଥାଏ । ତେଣୁ ସମସ୍ତେ ଯେମିତି ତରତର । ମୁଁ ବି ତର-ତର ହେଉଥାଏ ତା' ଭିତରକୁ ଯିବାକୁ । କହିଲି, ଆଉ ଡେରି କରୁଚୁ କାହିଁକି ? ଚାଲ ଆମେ ବି ଭିତରେ ପଶିବା । ଭୌମିକ କହିଲା, ଏ ଶଳାଙ୍କର ପରା ଭାରି କଡ଼ା ନିୟମ, ମେମ୍ବର ହୋଇ ନଥିଲେ ବା ଚିହ୍ନା ପରିଚୟ ନଥିଲେ ଭିତରକୁ ଛାଡ଼ି ଦେବେ ନି । ମୁଁ ଅବଶ୍ୟ ଗୋଟେ ଦି'ଟାର ମେମ୍ବର ଥିଲି । କିନ୍ତୁ ଅନେକ ଦିନ ହେଲା ଆସିନି ।

—ସବୁଠାରେ କଣ ଏଇ ନିୟମ ?

—ଅନେକ କ୍ଲବ୍ ଅଛି ଯାହା ଭିତରକୁ ବିନା ବାଧାରେ ପଶିହେବ । କିନ୍ତୁ ସେ ସବୁକୁ ଖୋଜି ବାହାର କରିବାକୁ ପଡ଼ିବ ।

—ଜଲଦି ଖୋଜି ବାହାର କର । ଯେମିତି ଦି'ଚାରିଟାକୁ ଆଜି ଯିବା ନା !

—ଓହୋ ରେ ରସିକପ୍ରବର ! ଆଗ ଗୋଟିକୁ ହଜମ କର ।

—ହଜମ କ'ଣ କରିବା ? ଆମେ କଣ ଏ କ୍ଳବ୍‌କୁ ଖାଉଥାଇଁ କି ?

—ଖାଇଲା ପରି ।

ଏତକ ସଂକ୍ଷେପରେ କହି ତରତରରେ ପୁଣି ଅନୁସନ୍ଧାନ କରିବାକୁ ଚାଲିଗଲା । ମୋ ମନ ବଡ଼ ଉଚ୍ଛନ୍ନ ହୋଇ ଉଠିଥାଏ । ଏସବୁ ଆନନ୍ଦ ଆସରର ଏତେ ପାଖରେ ଥାଇ କିଛି ଉପଭୋଗ କରି ହେଉ ନି କିଛି ଦେଖି ହେଉ ନି ! କଣ କେଉଁଠି ହେଉଚି ସବୁ ଲକ୍ଷ୍ୟ କରୁଥାଏ, ଯେତେଟା ବୁଝି ହେଉଥାଏ ବୁଝୁଥାଏ । ବାକିଟା କଳ୍ପନା କରୁଥାଏ । ଚାରିଆଡ଼େ ଯନ୍ତ୍ରସଙ୍ଗୀତ, କଣ୍ଠ ସଙ୍ଗୀତର ଧ୍ୱନି ବାହାରୁ ଭାରି ପଡ଼ୁଛି । ଇଂରେଜୀ ସଙ୍ଗୀତ ମୋତେ ପ୍ରାୟ ଭଲ ଲାଗେ ନି । ତାର ଭାଷାଟା ବି ପୂରା ବୁଝିବା କଷ୍ଟକର । ତଥାପି ଟେଲିଭିଜନରେ କେତେଟା ଗୀତ ଶୁଣିଥିଲି ଯେ କି ମୋତେ ବେଶ୍ ଭଲ ଲାଗିଥିଲା । ଭଲ ଲାଗୁ ମନ୍ଦ ଲାଗୁ ଏ କ୍ଳବମାନଙ୍କ ଭିତରେ ଯେ ରଙ୍ଗରସ ଚାଲିଛି ସେଇଟା ତ ଦେଖି ହୁଅନ୍ତା । ମୂଳରୁ ତ ପ୍ରବେଶ ନାସ୍ତି । ଦେଖାଯାଉ କ'ଣ ପଣ୍ଡା ମହାଶୟ ବ୍ୟବସ୍ଥା କରୁଚନ୍ତି । ପଣ୍ଡା ମହାଶୟ କିନ୍ତୁ ପୁଣି ବିମର୍ଷ ବଦନରେ ଫେରି ଆସିଲେ ।

—କଣ ହେଲା ? କଣ କେହି ଅନୁଗ୍ରହ କଲେ ନି ?

—ଓହୋ ଧୈର୍ଯ୍ୟ ଧର । ଅନୁଗ୍ରହ ନିଶ୍ଚୟ କରିବେ । ଶ—

ଆଉ ଟିକିଏ ଆଗକୁ ଯାଇ ଭୌମିକ ଅନ୍ୟ ଗୋଟିଏ କ୍ଳବର ସାମନାରେ ମୋତେ ଠିଆ କରେଇଦେଇ ମହା ସାବଧାନତା ସହ ଭିତରକୁ ପଶିଲା । ପ୍ରବେଶ ପଥରେ କେହି ଦ୍ୱାରପାଳ ନ ଥିଲେ । ମୁଁ ଗୋଟିଏ ପଟକୁ ଆଡ଼େଇ ଠିଆ ହୋଇ ଉଣ୍ଟୁଥାଏ କ'ଣ କମିତି ଚାଲିଚି । ବିଶେଷ କିଛି ଦେଖାଯାଉ ନ ଥାଏ । ଯେତେ ଚେଷ୍ଟା କଲେ ବି ଆଖି ଦି'ଟା ପରଦା ଭେଦ କରି ଭିତରେ ଚାଲିଥିବା ଗୀତନାଚ, କେଳି କଉତୁକର କୌଣସି ସୁରାକ୍ ପାଇପାରୁ ନଥାନ୍ତି । କିନ୍ତୁ ବାଦ୍ୟସଙ୍ଗୀତର ସ୍ୱର ଶୁଣା ଯାଉଥାଏ । ଓଃ ! ସେ କି ଅପୂର୍ବ ମୂର୍ଚ୍ଛନା ! କି ଉଚ୍ଚ ସଙ୍ଗୀତ

ଝଙ୍କାର ! ରସିକରସିକାଙ୍କ ଯିବା ଆସିବା ଯୋଗୁଁ ପରଦାଟା ବେଳେ ବେଳେ ଅପସରି ଯାଉଥାଏ । ଦେଖିଲି ଜଣେ କୃଷ୍ଣକାୟ ନିଗ୍ରୋ ଯୁବକ ଖୁବ୍ ଜୋରରେ ତାନ ଧରିଚନ୍ତି । ଏଣେ ପାଦରେ ତାଳ ପକାଉଥାନ୍ତି ନାଚିବା ଭଙ୍ଗୀରେ । ସାରାଦେହଟା ତାଙ୍କର ସଙ୍ଗୀତମୟ ହୋଇଉଠିଥାଏ । ଅଙ୍ଗପ୍ରତ୍ୟଙ୍ଗ ବିଭିନ୍ନ ଠାଣିରେ ଥରି ଯାଉଥାଏ, ଦୋହଲି ଯାଉଥାଏ । ଆରେ ଏଇଟା ଇମିତି ଅରଣା ମଇଁଷି ପରି ଗୁଣ୍ଡିଆଡ଼ ମାରୁଛି ପକାଉଛି କାହିଁକି ? ସଙ୍ଗୀତ ଗୋଟିଏ ସୂକ୍ଷ୍ମ କଳା । ତାକୁ ଟିକିଏ ଧୀରମଧୁର ଭାବରେ ପରିବେଷଣ କଲେ ହୁଅନ୍ତା ନି ! କିନ୍ତୁ ସେ ତ ଖାଲି ମରିବ କି ମାରିବ ଏମିତି କଣ ଉନ୍ମାଦ ହେଉଚି । ତା' ସାଙ୍ଗରେ ପାଦ ପକେଇ, କଣ୍ଠ ମିଳେଇ ହା ହୁଲ୍ଲୋଳ କରି ଉଠିଥାନ୍ତି ଉପସ୍ଥିତ ଯୁବକଯୁବତୀ ବା ପୁରୁଷସ୍ତ୍ରୀ ଦଳ । ଫଳରେ ନୃତ୍ୟଗୀତର ଏକ ଅଦ୍ଭୁତ ସଙ୍ଗମ, ସ୍ୱର୍ଗ ସୃଷ୍ଟି ହେଉଥାଏ । ଏତେ ଦୂରରେ ଥିଲେ ବି ମୋ ଦେହ ଶିରଶିର କରି ଉଠିଲା ।

ଭୌମିକ ଫେରି ଆସିଲା । ତା' ମୁହଁର ଭାବ ଦେଖି ଅଭିଯାନର ଫଳାଫଳ କଥା ଅନୁମାନ କରିବାକୁ ଚେଷ୍ଟାକଲି । କଣ ଶୁଭ ନା ଅଶୁଭ ? ଅଶୁଭ ବୋଧହୁଏ !

—କ'ଣ ହେଲା ?

—ନାଁ, ହେଇପାରିଲା ନି । ଏ ଶଳାଙ୍କର ବେଶୀ ଫୁଟାଣି ! ପୂର୍ବ ସଭ୍ୟ ଗୁଡ଼ାଟା ଦେଇଚି ବୋଲି କହିଲା । ଶ—

—ପୁଣି ?

—ଅନ୍ୟ କ୍ଲବ ଅଛି ।

—ସେଠି ଯଦି ଅବସ୍ଥା ଏଇଆ ହୁଏ ?

—ନାଇଁମ । ଏ ଶଳାଙ୍କୁ ପାଉଣ୍ଡ ଦେଲେ···

ତା'ପରେ ଭୌମିକ ବିଲାତବାସୀଙ୍କୁ ବଡ଼ ଅଭଦ୍ର ଭାବରେ ଗାଳି ଦେଲା ମଝିରେ ମଝିରେ ଦୋଅକ୍ଷର ଅଳଙ୍କାର ଲଗେଇ । କିଏ ବୁଝୁଚି ତା' ଭାଷା ଲଣ୍ଡନର ସେ ଗଳି କନ୍ଦିରେ !

ମୋ ମନଟା ଯେମିତି ଖରାପ ହୋଇଗଲା । ଏ ଆନନ୍ଦଉତ୍ସବର ମନ୍ଦିରମାନଙ୍କୁ ଆସି ଶେଷରେ ତାଙ୍କ ସିଂହଦ୍ୱାରରୁ ଫେରି ଯିବାକୁ ପଡ଼ିବ ! ଭୌମିକ କିନ୍ତୁ ଭାଙ୍ଗି ପଡ଼ିବାର ଲୋକ ନୁହେ । ଚାଲିଥାଏ ଆଗକୁ ଦ୍ରୁତ ପଦରେ । ଏତେ ବେଳକୁ ଆମେ ଗୁଡ଼ାଏ ବାଟ ଚାଲିଲୁଣି । ପାଦ ଦି'ଟା ମୋର କଟକଟ କରି ଉଠୁଥାଏ ନୂଆ ଆମ୍ବାସଡ଼ର ଯୋତା ଚାପରେ । ତଥାପି ଦୁଃଖ ନାହିଁ । ଅନୁଶୋଚନା ନାହିଁ । ଆମେ ଦୁଇଜଣ ଯେମିତି କହାନ୍ତି କଷ୍ଟାପର ତୀର୍ଥଯାତ୍ରୀ, କୌଣସି ଦେବାଦେବୀଙ୍କ ପବିତ୍ର ଦର୍ଶନ ପାଇଁ ବ୍ୟାକୁଳ ଭାବରେ ଆଗେଇ ଚାଲିଛୁ !

ଅନ୍ୟ ଗୋଟିଏ ଘରେ ଭୌମିକ ପଶିଲା । କଣ ଶୁଭ କି ଅଶୁଭ ? କଣ ଏତେ ବାଛ ବିଚାର ? ଗୀତନାଚର ଆସର, ତାର ପ୍ରବେଶ ଦ୍ୱାର ଅବରୁଦ୍ଧ କାହିଁକି ? ଏତେ କଟକଣା କାହିଁକି ? "ଉଠ ସଜନୀ ଖୋଲ ଝରୋକା, ଦେଖ ସାଜନ ଆୟା ଦୁଆରେ" ! କଟକଣା ନଥିଲେ ତ ଲୋକେ ଶହ ଶହ ସଂଖ୍ୟାରେ ପଶିଯିବେ । ତାକୁ ସମ୍ଭାଳିବ କିଏ ! ଏଥର କିନ୍ତୁ ହସହସ ମୁହଁରେ ଭୌମିକ ଫେରିଆସିଲା । ପଚାରିଲି କଣ ହେଲା ? ସବୁ ଠିକ୍ ଆସ, ଶଳା ଆଡ଼ା ଦେଖାଉଥିଲେ, ଭୌମିକ ସଗର୍ବେ ଉତ୍ତର ଦେଲା ।

ଭିତରେ ପଶି ଦେଖିଲି, ଆସରଟା ବେଶ୍ ଜୋରରେ ଜମି ଉଠିଛି । କିନ୍ତୁ ଲୋକ ସେତେ ବେଶୀ ନାହାନ୍ତି, ଚାରିଜଣ ଯୁବତୀ, ବେଶ୍ ସୁନ୍ଦରୀ ଆଉ ଦୁଇଜଣ ମାତ୍ର ଯୁବକ । ଆଗରୁ ଭୌମିକ ମୋତେ ଧାରଣା ଦେଇଥାଏ ଏସବୁ ଜାଗାରେ ଯୁବତୀମାନଙ୍କ ସଂଖ୍ୟା ଅପେକ୍ଷା ପୁରୁଷ-ମାନଙ୍କ ସଂଖ୍ୟା ଖୁବ୍ ଅଧିକ; ତେଣୁ ଏହି ଯୁବତୀମାନଙ୍କ ସାନ୍ନିଧ୍ୟ, ସଙ୍ଗସୁଖ ଲାଭ କରିବାକୁ ବହୁତ ସଂଗ୍ରାମ କରିବାକୁ ପଡ଼େ, ଖୁବ୍ ଖର୍ଚ୍ଚ କରିବାକୁ ହୁଏ । ଏଠି କିନ୍ତୁ ପୁରୁଷ ସଂଖ୍ୟା କମ୍ ଥିବାରୁ ଭୌମିକର ଆନନ୍ଦ ମାତ୍ରାଟା ଯେମିତି ବଢ଼ିଯାଇଥାଏ । ସେ ହସହସ ମୁହଁରେ ମୋତେ ଭିତରକୁ ଟାଣିନେଲା । ମୁଁ ସେଠି ପଡ଼ିଥିବା କାଉଚରେ ଲଥ୍‌କିନା ବସିପଡ଼ିଲି । ପାଦ ଦି'ଟାକୁ କଷିଲା ଯୋତା ବଡ଼ କଷ୍ଟ ଦେଉଥାନ୍ତି । ସେ ମୋ ମନର ବେଦନା ବୁଝିବାକୁ ଯେମିତି ପୂରା ଅମଙ୍ଗ । ମୁଁ ଏଇ ଅବସରରେ ତାକୁ ଟିକିଏ ଢ଼ିଲା କରିଦେଇ ସ୍ୱସ୍ତିର ନିଃଶ୍ୱାସ ମାରିଲି ।

ଘରଟା ବେଶୀ ବଡ଼ ନୁହେଁ । ତାର ଗୋଟିଏ ପଟେ ବସିଥାନ୍ତି ଜଣେ ବୟସ୍କ ଓ ଜଣେ ଯୁବକ ଲୋକ । ସାମନାରେ ତାଙ୍କର ଗୋଟିଏ ଟେବୁଲ । ଟେବୁଲ ଉପରେ ରସିଦ୍ ବହି ଓ ଲେଖାଲେଖିର ସରଞ୍ଜାମ । ମୁଁ ଟିକିଏ ଡରିଗଲି । ଏ ଜଣ ଆମ ନାଁ ଗାଁ ଟିପିବେ କି ! ପାଠ ପଢ଼ିବାକୁ ଆସି ଏ ଯେ ଆନନ୍ଦ ଅଭିସାର ଚାଲିଚ...ବିକଳରେ ଭୌମିକଙ୍କୁ ପଚାରିଲି । ସେ ନିର୍ଭୟ ବାଣୀ ଶୁଣାଇ କହିଲି, ନା, ସେମିତି କିଛି ନାହିଁ । ସେ କେବଳ ପାମାପ ବିକ୍ରିର ରସିଦ୍ ଲେଖୁଚନ୍ତି । ଯଦି ନାଁ ଗାଁ ପଚାରିବେ ମନେ ମନେ ଗୋଟାଏ ଛଦ୍ମ ନାଁ ଠିକ୍ କରିଥାଅ ।

—କାଲେ ଆମ ଫଟୋ ନେବେ ।

—ଧେତ୍ ! ତାଙ୍କର ଗରଜ ପଡ଼ିଛି ନା ଆମ ପିଛା ତାଙ୍କ ଫିଲ୍ମଗୁଡ଼ାକ ନଷ୍ଟ କରିବେ ! ସେମାନେ ତାଙ୍କ ବ୍ୟବସାୟ ନେଇ ବ୍ୟସ୍ତ ।

ମୁଁ ଆଉ କଣ କହିବି ବୋଲି ବସିଥିଲି କିନ୍ତୁ ଭୌମିକ ମୁହଁର କର୍କଶ ଭାବ ଦେଖି ପାଟି ଫିଟେଇ ପାରିଲି ନି । ସେ ବି ତା କାମରେ ଚାଲିଗଲା । ଗୋଟିଏ ଆଲମାରିରେ ରଙ୍ଗିନ୍ ରସ ବୋତଲମାନଙ୍କରେ ଥୁଆ ହୋଇଥାଏ । ସେଠାରେ ଅନ୍ୟ ଯେ ଦୁଇଜଣ ଯୁବକ ଥିଲେ ସେମାନେ ଥରକୁ ଥର ଯାଇ ଦାମ୍ ଦେଇ ରଙ୍ଗିନ୍ ପାମାପ କିଣୁଥାନ୍ତି ଓ ତାଙ୍କ ପଛରେ ଲୀଳାୟିତ ଭଙ୍ଗୀରେ ରୂପସୀମାନେ ଅନୁଗମନ କରୁଥାନ୍ତି । ଯୁବକଦ୍ୱୟ ନିଜ ପୁରୁଷକାରର ପରିଚୟ ଦେବାକୁ ଦୁଇ ହାତରେ ସୁରାପାତ୍ର ଧରି ଚାଲି ଆସୁଥାନ୍ତି ତାଙ୍କ ବସିବା ଜାଗାକୁ । ତା'ପରେ କେତେ ଠାଣିରେ କେତେ କେଳିକଉତୁକ ଭିତରେ ଚାଲେ ପିଇବା ପାଳି । କେଉଁଠି ରସିକ ପ୍ରେମିକ ତାର ମଦ ପିଆଲିକୁ ଲୀଳାମୟୀ ପ୍ରେୟସୀର ଓଠରେ ଲଗାଇ ଦେଇ ଦିବ୍ୟାନନ୍ଦରେ ସେହି ଓଠଉଚ୍ଛିଷ୍ଟ ପାନ କରୁଥାଏ । ପ୍ରେୟସୀ ତାର ସୁରାପାତ୍ରକୁ ପୁରୁଷ ସାଥୀର ଓଠ ପାଖକୁ ଦେଖେଇ ଦେଇ "Cheers" କହି ସେ ରଙ୍ଗିନ୍ ରସ ପିଇବାକୁ ଆରମ୍ଭ କରିଦିଏ । ଚାଲିଥାଏ ପିଆପିଇ ଖୁବ୍ ଜୋରରେ । ତା' ଭିତରେ ଖୁସି ଗପ, ଗେଲଥଟ୍ଟା, ଚୁମ୍ବନ, ଆଲିଙ୍ଗନ ଆଦି ଖୁବ୍ ଜୋରରେ ଜମି ଉଠିଥାଏ । ଏ ଆସର ଥୋଡ଼ାଏ ସମୟ ଚାଲିଲା ପରେ ଆରମ୍ଭ ହୁଏ

ନାଚ-ପାଲ୍ଲ । ସେ ସେମିତି ନାଚ ନାଁରେ ପରସ୍ପର ସହିତ ଆଙ୍ଗିକ ସମ୍ପର୍କ, ସଂଘର୍ଷ ସୃଷ୍ଟି କରିବାର ବ୍ୟବସ୍ଥା । ଏତ ଇମିତି ପିଆପିଇ କରି ମାତାଲ ମସ୍‌ଗୁଲ୍ ହୋଇ ନାଚ କୁଦରେ ମସ୍ତ ହୋଇ ଉଠିଚନ୍ତି । ଯାର ଶେଷ ପରିଣତି ଚେବେ କେଉଁଠି ! ମୁଁ କାଉଚ ଉପରେ ଆରାମରେ ବସି ଇମିତି କେତେ କ'ଣ ତାତ୍ତ୍ୱିକ, ଦାର୍ଶନିକ ଚିନ୍ତା କରୁଥାଏ ।

—ଏଣିକି ଆସ । ଚୂପ୍ ହୋଇ ବସିଗଲ କଣ !

ଭୌମିକ ମଦ କାଉଣ୍ଟର ପାଖରୁ ଡାକଦ୍ କଲା ।

ମୁଁ ଉଠିଯାଇ ବଶମ୍ବଦ ଶିଷ୍ୟ ପରି ଗୁରୁଙ୍କ ପାଖରେ ଠିଆ ହେଲି । କି ଆଜ୍ଞା ଦେଉଚନ୍ତି ଗୁରୁ ମହାଶୟ !

—ଧର ।

ଭୌମିକ ମୋତେ ଦୁଇଟି ମଦ ପିଆଲା ଧରିବାକୁ ଇଙ୍ଗିତ ଦେଲା । ନିଜେ ବି ଦୁଇଟି ଧରିଥାଏ । ମୁଁ ପଚାରିଲି, ଏତେ କଣ ?

—ଆମେ ଦୁଇଜଣ, ଆମର ସାଥୀ ଦୁଇଜଣ ।

—ଓ !

ଏତେବେଳକୁ ସେ କେଲି ଭବନରେ ଆଉ କେତେଜଣ ଯୁବକଯୁବତୀ ଆସି ପହଞ୍ଚିଯାଇଥାନ୍ତି । ଭୌମିକ ଆଗରୁ ଜଣେ ଯୁବତୀକୁ ସାଙ୍ଗରେ ଧରିଥାଏ । ଆଉ ଜଣେ ଦୁଇଜଣ ପ୍ରେମଶୀଳା ବାଳା ମୋ ପାଟରେ ହସହସ ମୁଖେ ହରଷଭରେ ପଇନ୍ତରା ମାରୁଥାନ୍ତି । ଠିକ୍ ନୂଆ ମଡ଼ ଆସିଲେ କୁକୁର, ବିଲୁଆ ଯେମିତି ତାକୁ ପ୍ରଦକ୍ଷିଣ କରନ୍ତି ଖାଇବା ପର୍ବ ଆରମ୍ଭ କରିବା ପୂର୍ବରୁ ।

ମଦ ପିଆଲା ଧରି କାଉଚରେ ଆସି ବସିଗଲୁ । ଭୌମିକ ପାଖରେ ତା' ପ୍ରେୟସୀ ବସିଗଲା । ମଦ ପିଆଲା ଦେଖି ସେ ଯେମିତି ପ୍ରେମାତିଶଯ୍ୟରେ ଭୌମିକ ଆଡ଼କୁ ଢଳିପଡ଼ୁଥାଏ । ମୋତେ ନୀରବ ନିଷ୍ଫଳ ଦେଖି ଭୌମିକ କହିଲା, ବସିଲ କାଇଁକି ? ଗୋଟିଏ ବାଛ । ବାଛୁବ କଣ ! ଏ କଣ ଖେଳନା ନା ମନୋହରୀ ଜିନିଷ ହେଇଚନ୍ତି । ମୁଁ ଏମିତି ଭାବୁଥାଏ । ଜଣେ ଯୁବତୀ କାହିଁ ସ୍ୱେଚ୍ଛାକୃତ ଭାବରେ ମୋ ପାଖରେ

ବସିଯାଇ ମୋତେ ଏ ଦୁଷ୍ଟ ନ୍ତାରୁ ରକ୍ଷାକଲେ । ମୁଁ ତାଙ୍କୁ ଦୁଇ ପିଆଲା ଯାକ ମଦ ସମର୍ପିଦେଇ ନିଜକୁ କୃତାର୍ଥ, ସିଦ୍ଧାର୍ଥ ମନେକଲି ।

ମୋର ମୁଣ୍ଡ ଭିତରେ ଗବେଷଣା ଚାଲିଥାଏ, କିଏ ଏସବୁ ଝିଅ, କଣ ପାଇଁ ଏ କଦର୍ଯ୍ୟ ଜାଗାରେ ଯୁଟିଚନ୍ତି । ପଚାରି ବୁଝିଲି, ସେମାନଙ୍କର ସମସ୍ତ ତତ୍ତ୍ୱ ଓ ତଥ୍ୟ । ସେମାନେ କୌଣସି କୌଣସି ଅଫିସ ବା ଦପ୍ତରରେ ଅଭ୍ୟର୍ଥନାକାରିଣୀ, ଟାଇପିଷ୍ଟ, କିରାଣୀ ଆଦି କାମ କରନ୍ତି । କିନ୍ତୁ ନିଜ ସ୍ୱଳ୍ପ ଆୟରୁ ପିଆପିଇ, ମଉଜ-ମଜଲିସ୍ ଚଳିପାରେ ନି । ତେଣୁ ଚାଲି ଆସନ୍ତି ଏହି କେଳିଭବନମାନଙ୍କୁ ଅନ୍ୟର ଚିତ୍ତବିନୋଦନ କରି ନିଜ ଗୁଜରାଣ ମେଣ୍ଟେଇବାକୁ । ବାଃ, ଚମତ୍କାର ବୁଦ୍ଧି ତ !

ସେ ଗ୍ରେଟ ଘରଟା ନାଚ ଗୀତରେ ମୁଖର ହୋଇଉଠିଥାଏ । ରେକର୍ଡ଼ ପ୍ଲେୟାରରେ ଚାଲିଥାଏ ବିଭିନ୍ନ ଯନ୍ତ୍ରସଙ୍ଗୀତ, ତା' ସହିତ ତାଳ ଦେଇ ନାଚଉଠୁଥାନ୍ତି ଉପସ୍ଥିତ ପୁରୁଷ-ସ୍ତ୍ରୀ ଦଳ । ଆମର ବି ପିଆପିଇ ଚାଲିଥାଏ । ମୁଁ ତ ମୋ ପିଆଲାକୁ ମୋ ବାନ୍ଧବୀଙ୍କୁ ସମର୍ପି ଦେଇଥିଲି । ସେ କିନ୍ତୁ ସେଇଟାକୁ ମୋତେ ଫେରାଇ ଦେଲେ । ମୁଁ ମୋ ପିଆଲାରୁ ଅଧିକାଂଶ ତାଙ୍କ ପିଆଲାରେ ଅଜାଡ଼ି ଦେଇ ସାମାନ୍ୟ ଟିକିଏ ସେ ରଙ୍ଗିନ୍ ରସରୁ ସେବାକଲି । ମୋର ବାନ୍ଧବୀ ଏହାକୁ ମୋର ପ୍ରେମ-ନିବେଦନ ବୁଝି ମୋତେ ଯେମିତି ଅତି ଆପଣାର କରିବାକୁ ଉଦ୍ୟମ କରୁଥାନ୍ତି । ମୁଁ କିନ୍ତୁ ପରିସ୍ଥିତିର ଗୋଟେ ଏ ମାନସିକ ପରିକ୍ରମା କରୁଥାଏ । ମୋର ଅନାବିଷ୍ଟ, ଅନ୍ୟମନସ୍କ ଭାବ ଦେଖି ଭୌମିକ ମୋର ବାନ୍ଧବୀଙ୍କୁ ସୁରାକ୍ ଦେଇ କହିଲି, ତୁମ ବନ୍ଧୁଟି ଏସବୁରେ ବଡ଼ ଭୀରୁ । ତାକୁ ଟିକିଏ ଏ ରଙ୍ଗରସରେ ମସ୍ତ କରିଦିଅ । ଏ ନିର୍ଦ୍ଦେଶ ପାଇ ମୋ ବାନ୍ଧବୀ ଦ୍ୱିଗୁଣ ଉତ୍ସାହରେ ମୋତେ ଆବୋରି ବସିଲେ । କେତେ କଣ କହୁଥାନ୍ତି । କେତେ ହସୁଥାନ୍ତି । ମୋତେ ପରିସ୍ଥିତିଟା ବେଶ୍ କୌତୁକପ୍ରଦ ଲାଗୁଥାଏ । ଟିକିଏ ଦୁଃଖ ବି ଲାଗୁଥାଏ ଏ ବିଚାରୀ ଯୁବତୀମାନଙ୍କ ଅବସ୍ଥା ଦେଖି । ସାମାନ୍ୟ ଟିକିଏ ପାନାହାରର ସୁବିଧା ପାଇବାକୁ ଏମାନେ ଶସ୍ତା ପଣ୍ୟପରି ବା ପରି ନିଜକୁ କିପରି ପରପାଖରେ ସମର୍ପି ଦେଉଛନ୍ତି । ମୋର ବାନ୍ଧବୀଙ୍କୁ

ସଶଙ୍କୋଚେ ପଚ୍ଚାରିଲି ତୁମେମାନେତ ଏ ବୟସରେ ଏସବୁ କେଳିରେ ମାତିଲ । ପୁଣି ତୁମମାନଙ୍କର ବିବାହ ?

—ଏଇଲେ ସେସବୁ କଥା ଉଠୁଚି କାହିଁକି ! ବର୍ତ୍ତମାନ ତ ଜୀବନକୁ ଉପଭୋଗ କରିବାର କଥା । ବିବାହ ବୟସ ହେଉ ।

ଏଁ ! ଏବେ ବି ଏମାନଙ୍କର ବିବାହ ବୟସ ହୋଇନି । ବିଲାତି ମହିଳାଙ୍କର ପ୍ରକୃତ ବୟସ ବୁଝିବା ତ ବଡ଼ କଷ୍ଟ । ତେବେ ଏଙ୍କର ବୟସ ତ ୨୪।୨୫ ବର୍ଷରୁ କମ୍ ହେବନି ।

—କେବେ ସେ ବୟସ ଆସିବ ?

—ଡେରି ଅଛି ।

ବାଃ ! ଚମତ୍କାର ! ଏଇଲେ ଫୁର୍ତ୍ତି-ଫାଜିଲମି, ମଉଜ-ମଜଲିସ କରିବେ । ଏଥିରେ ବୈରାଗ୍ୟ ଜନ୍ମିଲେ, ଯୌବନରେ ଶିଥିଳତା ଆସିଲେ ବିବାହ କରି ଧୀରସୁସ୍ଥ ପନ୍ଥାରେ ଜୀବନ କାଟିବେ । ତଥ୍ୟଟା ବୁଝିଗଲି ! ଏଥିଭିତରେ ମୋର ବାନ୍ଧବୀ ପଚ୍ଚାରି ଦେଇଥାନ୍ତି, ମୁଁ ବିବାହିତ କି ନାହିଁ । ମୋଠାରୁ ମୋ ପାରିବାରିକ ସବୁ ଘଟଣା ଶୁଣି ତାଙ୍କ ମୁହଁ ଟିକିଏ ଫିକା ପଡ଼ିଗଲା । ଓ ! ଏମାନେ ତେବେ ଏଇ ସବୁ ଜାଗାରୁ ତାଙ୍କ ଜୀବନସାଥୀର ଯୋଗାଡ଼ କରନ୍ତି ବୋଧହୁଏ । ହଁ, ଏଇ ମିଶାମିଶି ନାଚ ଗୀତର ଯାଲ ଭିତରେ କାହାକୁ ଯାଲରେ ପକାଉଥିବେ !

ମୁଁ ବିବାହିତ ଜାଣି ବାନ୍ଧବୀ ମୋର ଯାହା ହତୋତ୍ସାହ ହୋଇ ପଡ଼ିଥିଲେ ବାରଧିକ ମୋ ପାଉଣ୍ଡ-ଶିଲିଂରେ ରଙ୍ଗିନ୍ ପାମାସ୍ତୁ ପିଇ ପୁଣି ତାଜା ହୋଇ ଉଠିଲେ । ନାନା କଥାଭାଷା ଭିତରେ ମୋତେ ଅନୁରୋଧ କଲେ ନାଚିବାକୁ । ପିଇବନି ପିଇବନି ବୋଲି କହି ବେଶ୍ ଟିକିଏ ମଦ ପିଇଦେଇଥିଲି । ତେଣୁ ନିଶାଟା ମୋତେ ଭଲ ଭାବରେ ଧରିନେଇଥାଏ । ଘୁରିଆଡ଼ ଝାପ୍‌ସା ଝାପ୍‌ସା ଦେଖାଯାଉଥାଏ । ତଥାପି ମୁଁ ମୋର ଜ୍ଞାନବିବେକ ହରାଇ ନଥାଏ । ଏ ନାଚ କଥା ଶୁଣି ହସିବି କି କାନ୍ଦିବି ଠିକ୍ କରିପାରିଲିନି । ତଥାପି ବାନ୍ଧବୀଙ୍କ ଅନୁରୋଧ ଏଡ଼ି ନପାରି ନାଚିବାକୁ ଉଠିପଡ଼ିଲି । କିନ୍ତୁ ମୋ ଗତିବିଧି, ମୋ ପାଦପକାଇବାର

ଢଙ୍ଗ ଦେଖି ମୋ ବାନ୍ଧବୀ ଖିଲଖିଲ ହସି ଉଠୁଥାନ୍ତି । ତାଙ୍କ ସାଙ୍ଗରେ ଯୋଗ ଦେଉଥାନ୍ତି ଆଖପାଖର ପାର୍ଶ୍ୱସ୍ଥ ଅଧବା ଅନ୍ୟ କେତେକ ଯୁବତୀ । ମୋତେ ବଡ଼ ଅଶ୍ୱସ୍ତିକର ଲାଗୁଥାଏ । ମାତ୍ର ଖସି ଆସିବାର ସୁବିଧା ନାହିଁ, କାରଣ ମୋର ବାନ୍ଧବୀ ଖୁବ୍ ଜୋରରେ ମୋତେ ବାନ୍ଧରଖିଥାନ୍ତି ତାଙ୍କ ବାହୁପାଶରେ । ଇମିତି କେତେ ସମୟ ଗଲା କେଜାଣି ! ମୋତେ ଜଣାଗଲା ଯେମିତି ରାତି ଖୁବ୍ ବେଶୀ ହୋଇଯାଇଛି । ବହୁ ଅନୁରୋଧ ପରେ ବାନ୍ଧବୀଙ୍କ ଅନୁମତି ଆଣି ପୁଣି ମୋ ପ୍ରକୋଷ୍ଠରେ ଆସି ବସିଲି । ପ୍ରେୟସୀଙ୍କ କ୍ଲାନ୍ତି ଅପନୋଦନ ପାଇଁ ଆଉ ଗୋଟାଏ ପିଆଲା ସୁରା ଆଣି ତାଙ୍କୁ ପିଇବାକୁ ଦେଲି । ମୋର ଯେପରି ଶାରୀରିକ ଓ ମାନସିକ ଅବସାଦ ଚାଲିଆସିଥାଏ । ତେଣୁ ଠିକ୍ କଲି ସେ କେଳିଭବନ ଛାଡ଼ି ବସାକୁ ଫେରିଯିବାକୁ । ଭୌମିକ ମଙ୍ଗୁ ନଥାଏ । ତାଙ୍କୁ ନାନା ଅନୁନୟ ବିନୟ କରି ଧମକ ଚମକ ଦେଇ ଶେଷରେ ରାଜି କରେଇବାକୁ ଚେଷ୍ଟାକଲି । କିନ୍ତୁ ବାନ୍ଧବୀଙ୍କ ଠାରୁ ବିଦାୟ ନେବା ବଡ଼ କଷ୍ଟକର ହେଲା । ସେ ଜମା ଛାଡ଼ୁ ନଥାନ୍ତି । ଏଁ ଏତେ ମମତା ! ଏ ସୁରାପାୟୀ ସାଙ୍ଗ କଣ ସତେ ମୋତେ ଭଲପାଇବସିଛନ୍ତି ନା ଏ କେବଳ ସେ ରଙ୍ଗିନ୍ ପାନୀୟର ମୋହ ! ଯାହାହେଉ ବାନ୍ଧବୀଙ୍କୁ ବହୁ ପ୍ରବୋଧି କହିଲି, ଠିକ୍ ଶ୍ରୀକୃଷ୍ଣ ମଥୁରାକୁ ଗଲାବେଳେ ବ୍ୟଥାତୁରା ବିରହିଣୀ ଗୋପିକାମାନଙ୍କୁ ଯେମିତି କହିଥିଲେ —

କୃଷ୍ଣ କହନ୍ତି ଶୁଣ ବରଜବଧୂ !
　　କୁମୁଦ ତେଜଇ କି କୁମୁଦ-ବନ୍ଧୁ ଗୋ !........

ବିଶ୍ୱରୁଛ କି ଗଲେ ଆସିବି ନାହିଁ ।
　　ପଦ୍ମିନୀ ବିନେ ଭୃଙ୍ଗ ରହିବ କାହିଁ ଗୋ ?

ଜଳ ନପାଇ କାହିଁ ବଞ୍ଚିବ ମୀନ ।
　　ଚାତକ ବଞ୍ଚିବ କି ନ ଦେଖି ଘନ ଗୋ ?

ଯହିଁ ଥିଲେ ମୁଁ ତୁମ୍ଭ ନିକଟେ ଅଛି ।
　　ଚାରୁ ବଦନକୁ କାଣ୍ଡି କରି ଯାଉଛି ଗୋ ।

ଚାରୁବଦନ ! ଚାଲିଗଲେ ଏଠୁ ରକ୍ଷା !

## ସେ ରଜା କାହାନ୍ତି ! ସେ ରାଜ୍ୟ କାହିଁ !

ଲଣ୍ଡନ ସହରର ଯେଉଁ ଅଂଶରେ ଷ୍ଟକ୍-ଏକ୍ସଚେଞ୍ଜ ଅଛି, ବଡ଼ ବଡ଼ ବ୍ୟବସାୟ କାରବାର ଓ ତାର ମିତ ନିୟମ ବ୍ୟବସ୍ଥା ଯେଉଁଠାରେ ହୁଏ ତାକୁ ଓ ତାର ଆଖପାଖ ଅଞ୍ଚଳକୁ ମହାନଗରୀ (city) ବୋଲି କହନ୍ତି । କିନ୍ତୁ କାହିଁକି ? ଏତେ ବଡ଼ ସହର, ପ୍ରତ୍ୟେକ ଅଂଶର କିଛି ନା କିଛି ବିଶେଷତ୍ୱ ଅଛି । ମାତ୍ର ଗୋଟାଏ ଅଂଶକୁ ମହାନଗରୀ କହିବାର ତାତ୍ପର୍ଯ୍ୟ କଣ ? ବୋଧହୁଏ ଏଇଟା ସହରର ମୂଳପିଣ୍ଡ । ଏହିଠାରୁ ଆରମ୍ଭ ହୋଇ ସହରଟା କ୍ରମେ ବଢ଼ିଚି । ବଢ଼ିଚି ବୋଲି ବଢ଼ିଚି ! ବଢ଼ି ଗୃହ ଆଡ଼କୁ ମାଡ଼ି ଏପରି ବିରାଟ ଆକାର ଧାରଣ କରିଚି ଯେ ଏହାର ଆଦ୍ୟ ଅନ୍ତ ଠିକ୍ କରିହେବ ନି । ଏହି ଷ୍ଟକ୍ ଏକ୍ସଚେଞ୍ଜ୍ ଆଖପାଖରେ ଆଇନ-ଅଦାଲତ ଓ ବିଭିନ୍ନ ଖବରକାଗଜ ଅଫିସ୍ ଅଛି । ଏହାର ଅଳ୍ପ ଦୂରରେ ପୁରାତନ ଗୀର୍ଜା ସେଣ୍ଟ୍‌ପଲସ କାଥେଡ୍ରାଲ ଅବସ୍ଥିତ । ତେଣୁ ଏହି ଅଞ୍ଚଳକୁ ମହାନଗରୀ (city) କହିବାର ଯଥେଷ୍ଟ ଯଥାର୍ଥତା ଅଛି ବୋଧହୁଏ ।

ପରମ୍ପରାର ପ୍ରଭାବ ଏହି ମହାନଗରୀରେ ଖୁବ୍ ବେଶୀ । ପୂର୍ବକାଳର ଚଳଣି ଓ ପ୍ରଥାକୁ ବଡ଼ ସଜାଗ ଓ ସଯତ୍ନ ଭାବରେ ଏଠି ପାଳନ କରାଯାଏ । ଏଥିରୁ ଗୋଟିଏ ଅତି ପୁରାତନ ଓ ଆଶ୍ଚର୍ଯ୍ୟକର ପ୍ରଥା ହେଲା; ଇଂଲଣ୍ଡର ରାଜା ବା ରାଣୀ ଏହି ମହାନଗରୀରେ ପ୍ରବେଶ କରିବାକୁ ଚାହିଁଲେ ତାଙ୍କୁ ଅନୁମତି ଭିକ୍ଷା କରିବାକୁ ହୁଏ । ଗିଲ୍‌ଡ଼ହଲ ଲଣ୍ଡନ କର୍ପୋରେସନର ମୁଖ୍ୟ କାର୍ଯ୍ୟାଳୟ । ଏଠାରେ ଏହି ମହାନଗରୀର ବିଭିନ୍ନ ଉତ୍ସବ, କାର୍ଯ୍ୟକ୍ରମ ପରିପାଳିତ ହୁଏ । ଯେତେବେଳେ ରାଜା ବା ରାଣୀ ଏହି ଗିଲ୍‌ଡ଼ହଲକୁ କୌଣସି ଉତ୍ସବ ବା ସଭାରେ ପୌରୋହିତ୍ୟ କରିବାକୁ

ଆସନ୍ତି ତେବେ ଉକ୍ତ "ଅନୁମତ ଭିକ୍ଷା" କାର୍ଯ୍ୟ ବହୁ ଆଡ଼ମ୍ବରପୂର୍ଣ୍ଣ ଭାବରେ ଚେମ୍ବାରରେ ସମାହିତ ହୁଏ ।

ଲଣ୍ଡନ ନଗରୀର ଗୋଟିଏ ବିଶେଷତ୍ୱ ଏହାର ଷ୍ଟକ୍ ଏକ୍ସଚେଞ୍ଜ ବା ଫାଟ୍କା ବଜାର । ଏହି ଫାଟ୍କା ବଜାର ବିଶ୍ୱ ଅର୍ଥନୀତି ଉପରେ କିପରି ପ୍ରଭାବ ପକାଏ ତାହା ସହଜରେ ଜାଣିହେବ ନାହିଁ । ବାହାରୁ ଏହା ବେଶ୍ ଧୀରଶାନ୍ତ ମନେହୁଏ; କିନ୍ତୁ ଏଠି ଯେ ଲୀଳା, ଯେ ନାଟକ ଚାଲେ ତାର ଫଳାଫଳ ବଡ଼ ଗୁରୁତ୍ୱପୂର୍ଣ୍ଣ ଓ ସୁଦୂରପ୍ରସାରୀ । ପ୍ରତି ଘଣ୍ଟାରେ ପ୍ରତି ମୁହୂର୍ତ୍ତରେ ଏଠି ବହୁ ବ୍ୟାବସାୟିକ କାରବାର ଚାଲେ, ଯାହା ବିଶ୍ୱ ଅର୍ଥନୀତି ଉପରେ ଯଥେଷ୍ଟ ପ୍ରଭାବ ପକାଇଥାଏ ।

ଲଣ୍ଡନର ଆଇନ ଅଦାଲତଗୁଡ଼ିକ ଟେମ୍ପଲ୍ବାର ପ୍ରାଙ୍ଗଣରେ ଲିଙ୍କନସ୍ ଇନ୍ ପ୍ରାନ୍ତରରେ ବା ତାହାର ଆଖପାଖରେ ଅବସ୍ଥିତ । ବିଳାତ ତୀର୍ଥର ଏହା ଗୋଟିଏ ପ୍ରଧାନ ଘାଟ, ଦଶାଶ୍ୱମେଧ ଘାଟ । ବିଳାତର ବାରିଷ୍ଟରୀ ଛାତ୍ରଙ୍କ ଛଡ଼ା ବିଭିନ୍ନ ଦେଶରୁ ବହୁ ବୁଦ୍ଧିଜୀବୀ ଆଇନ୍ ଶାସ୍ତ୍ର ପଢ଼ିବାକୁ ଏଠାକୁ ଆସନ୍ତି । କିଏ ବାର-ଆଟ-ଲ, କିଏ ଏଲ୍. ଏଲ୍. ଏମ୍. ଆଦି ଡିଗ୍ରୀ ହାସଲ କରି ସ୍ୱଦେଶକୁ ଫେରନ୍ତି । ଏହି ବିଦେଶୀଙ୍କ ମଧ୍ୟରୁ କେହି କେହି ଏଠି ବି ଓକିଲାତି କରନ୍ତି । ଏଠାର ଆବହାଓ୍ୱା ଅଲଗା ପ୍ରକାରର । ଏଠି ମହିଳାମାନଙ୍କର ଛବିଳ ସୁନ୍ଦର ଢଙ୍ଗ ବା ଛେପା-ପାହୁଲ ଚାଲି ବା ବେପରୁଆ ଯୁବକମାନଙ୍କର ଲଗାମ୍ଛଡ଼ା ହାବଭାବ ପ୍ରାୟ ଦେଖାଯାଏ ନାହିଁ । ଏଠାକାର ଭିତରଆଡ଼ର ପରିବେଶ ଖୁବ୍ ଗୁରୁଗମ୍ଭୀର । ଏଠି ଦେଖିବାକୁ ମିଳେ ବିଗ୍ କେଶଧାରୀ ଓକିଲମାନଙ୍କର ଧୀରଶାନ୍ତ ଗତିବିଧି, ଅଦାଲତମାନଙ୍କରେ ଉଚ୍ଚାଙ୍ଗ ଆଇନ୍ ଆଲୋଚନା ଓ ଯୁକ୍ତିତର୍କ ।

ଆମ ଦେଶମାନଙ୍କରେ ପ୍ରାୟ ଦେଖାଯାଏ ଯେ କଚେରୀ ହତାରେ ଗୋଟିଏ ବଡ଼ ବରଗଛ ବା ଆମ୍ବଗଛ କି ଅନ୍ୟ କୌଣସି ଗଛ ଥିବ । ତାର ମୂଳରେ ହୋଇଥିବ ଗୋଟିଏ ପିଣ୍ଡି । ସେଥିରେ ବସିଥିବେ ଦଳେ ମହକିଲ, ମୋହରିର ପ୍ରଭୃତି । କେଉଁଠି କିଏ ଖଣ୍ଡିଏ ପୁରୁଣା ଟାଇପ୍ ମେସିନ୍ ଧରି ଧଡ଼୍ଧଡ଼୍ କରି ବାଡ଼େଇଚାଲିଥିବ କାହାର କୌଣସି

ଦରଖାସ୍ତ ବା ଦଲିଲ-ଦସ୍ତାବିଜ୍ ନକଲ କରିବାକୁ । ଆଖପାଖରେ ଜଣେ ଦୁ'ଜଣ 'କର୍ମୀ ଓକିଲ ବୁଲୁଥିବେ ଚିନାବାଦାମ୍ ଚୋବେଇ ବା ପାନ ପାକୁଳି କରି । କିନ୍ତୁ ଏଠାରେ ସବୁଥିରେ ଗାମ୍ଭୀର୍ଯ୍ୟପୂର୍ଣ୍ଣ, ସବୁଠାରେ ଚିନ୍ତାଶୀଳ ଓ ଚତୁର ମନୋବୃତ୍ତି ଦେଖିବାକୁ ମିଳେ । ତା' ନହେଲେ ଏଠି ଆଇନକାନୁନ୍‌ର ଏକ ମହାନ୍ ଅନୁଷ୍ଠାନ ଗଢ଼ି ଉଠିଥାନ୍ତା କିପରି ! ପୃଥିବୀସାରା ଯେଉଁଠି ଆଇନକାନୁନ୍‌ର ଶାସନ ଚାଲେ ସେଠି ତ ବିଲାତ ବିଚାରର ପରମ୍ପରା (British Jurisprudence)ର ନଜିର ଦିଆଯାଏ । ବାସ୍ତବିକ୍ ଏହାର ଆଇନ ମନ୍ଦିର (Temple Bar) ନାମ ସାର୍ଥକ ହୋଇଛି । ଏଇଠୁ ଉତ୍ପତ୍ତି ହୋଇଛି କୋର୍ଟ-କଚେରୀର ମିଲର୍ଡ଼ (Me Lord—My Lord), ୟୋ ଲର୍ଡ଼ସିପ୍ (Yo Lordship—Your Lordship) ପଦ୍ଧତି । ଏହି ମି ଲର୍ଡ଼, ୟୋ ଲର୍ଡ଼ସିପ୍ ସମ୍ବୋଧନ ବହୁଦିନରୁ ଚାଲିଆସିଛି । ପୂର୍ବେ ଯେତେବେଳେ ଲର୍ଡ଼ ପରିବାରର ଲୋକେ ତାଙ୍କ ଶାସନ ଗାଦିରେ ବସି ତାଙ୍କ ପ୍ରଜାମାନଙ୍କର ଓଜର ଆପତ୍ତି ଶୁଣୁଥିଲେ, ସେମାନଙ୍କ କଳି-ତକରାଳର ବିଚାର କରୁଥିଲେ ସେତେବେଳେ ଏହି ବିଚରା ପ୍ରଜାମାନେ ସେମାନଙ୍କୁ ମି ଲର୍ଡ଼, ୟୋ ଲର୍ଡ଼ସିପ୍ ବୋଲି ସମ୍ବୋଧନ କରୁଥିଲେ । ସେହି ଦିନଠାରୁ ଏହିସବୁ ପରମ୍ପରାର ସୃଷ୍ଟି ଏବଂ ସେହି ପରମ୍ପରା ସାରା ବିଲାତ ଦେଶ ଓ ତାହାର ସାମ୍ରାଜ୍ୟରେ ବ୍ୟାପି ଖୁବ୍ ଜୋରରେ ଚେର ଧରିନେଇଛି । ଆଜି ସେ ପୂର୍ବର ପ୍ରତାପଶାଳୀ ଲର୍ଡ଼ ନାହାନ୍ତି କି ତାଙ୍କର ପୂର୍ବ ପ୍ରଭାବ ନାହିଁ; କିନ୍ତୁ କୋର୍ଟ କଚେରୀମାନଙ୍କରେ ମି ଲର୍ଡ଼, ୟୋ ଲର୍ଡ଼ସିପ୍‌ର ପ୍ରଚଳନ ଚାଲିଛି ।

ଫ୍ଲିଟ୍ ଷ୍ଟ୍ରିଟ୍ ବିଲାତ ସମ୍ବାଦପତ୍ରମାନଙ୍କର କେନ୍ଦ୍ରସ୍ଥଳୀ । ଏହାକୁ କାଳିଗଳି ( The street of ink ) ବୋଲି କହନ୍ତି; କିନ୍ତୁ ଏହାର ଏହି ବିଚିତ୍ର ନାମକରଣ କାହିଁକି ? ଓ ! ଏଠି ବହୁତ ଖବରକାଗଜ ଛପାହୁଏ, ବହୁତ କାଳିର ଶ୍ରାଦ୍ଧ ହୁଏ, ସେହି ଯୋଗେ ବୋଧହୁଏ ଏହାକୁ କାଳିଗଳି କହନ୍ତି । ଆମ କଟକରେ ବି ଗୋଟାଏ କାଳୀଗଳି ଅଛି । କିନ୍ତୁ ସେ ଏ କାଳି ଯୋଗେ ନୁହେ । ସେଠାରେ ଦେବୀ ମହାକାଳୀ ବିରାଜମାନ କରନ୍ତି ମନ୍ଦିରରେ । ତେଣୁ ସେ କାଳୀଗଳି । ଏହି ଫ୍ଲିଟ୍

ଷ୍ଟ୍ରିଟ୍‌କୁ କେହି କେହି ସଂକ୍ଷେପରେ ଷ୍ଟ୍ରିଟ୍ ବୋଲି କହନ୍ତି । ଏହିଠାରୁ ଟାଇମସ୍, ନିଉଜ କ୍ରନିକ୍ଲ, ନିଉ ଷ୍ଟେଟ୍ସମ୍ୟାନ୍, ଡ଼େଲି ମେଲ୍, ଡ଼େଲି ଟେଲିଗ୍ରାଫ୍ ଆଦି ବିଶ୍ୱବିଖ୍ୟାତ ସମ୍ବାଦପତ୍ର ସବୁ ଛପା ହୋଇ ଦେଶ ବିଦେଶକୁ ଯାଏ । ବିଲାତରେ ଖବର କାଗଜମାନଙ୍କର ଶକ୍ତି ଓ ପ୍ରଭାବ କିଛି କମ୍ ନୁହେ । ରାଜନୈତିକ, ସାମାଜିକ, ସାଂସ୍କୃତିକ ଓ ବୈଦେଶିକ ବ୍ୟାପାର ଆଦିରେ ଏମାନେ ବଡ଼ ଉଗ୍ର ଭାବରେ ଜଡ଼ିତ ହୋଇଥାନ୍ତି । ସାରା ବିଲାତବାସୀ, ଏପରି କି ପୃଥିବୀର ଅନ୍ୟାନ୍ୟ ଦେଶମାନଙ୍କର ରାଜନୀତିଜ୍ଞ, କୂଟନୀତିଜ୍ଞ ପ୍ରଭୃତି ଏହି ସମ୍ବାଦପତ୍ରମାନଙ୍କର ମତାମତକୁ ଖୁବ୍ ଚିନ୍ତାଶୀଳ ଭାବରେ ଅନୁଧ୍ୟାନ କରନ୍ତି । ଏପରି କିଛି ଗୁପ୍ତ ସମ୍ବାଦ ନାହିଁ ଯାହା ଏମାନେ ଆହରଣ ନ କରିପାରନ୍ତି । ଏପରି କେହି ପ୍ରଭାବଶାଳୀ ଲୋକ ନାହାନ୍ତି ଯାହାକୁ ଏମାନେ ସମାଲୋଚନା ନ କରନ୍ତି । ବକିଂହାମ୍ ପାଲେସ୍‌ରେ କଣ ହେଉଛି, ରାଣୀ ଓ ତାଙ୍କର ଆତ୍ମୀୟମାନେ କଣ କରୁଛନ୍ତି, ରାଜ ପରିବାରର ଦୋଷ ତ୍ରୁଟି କେଉଁଠି, କେଉଁ ମନ୍ତ୍ରୀ କେଉଁଠି କି ଅପକର୍ମ କଲେ ସେସବୁ ଏମାନେ ପଦାରେ ପକାଇ ଦେବାକୁ ଚେଷ୍ଟା କରନ୍ତି । ତେଣୁ ଏମାନଙ୍କୁ ସମସ୍ତଙ୍କର କୋକୁଆ ଭୟ । ତା'ପରେ ଅନେକ ସାନ୍ଧ୍ୟ ସମ୍ବାଦପତ୍ର ସବୁ ଅଛି ଯେଉଁମାନେ ସମ୍ବାଦ ଅପେକ୍ଷା ବିସମ୍ବାଦକୁ ବେଶୀ ପରିବେଷଣ କରନ୍ତି । କେଉଁଠି କି ଚୋରି ବା ଡ଼କାୟତି ହେଲା, କେଉଁଠି ଗୁପ୍ତ ପ୍ରଣୟ ବା ପାପ-ପ୍ରଣୟ ଚାଲିଛି, କେଉଁ ମନ୍ତ୍ରୀ ବା ଉଚ୍ଚପଦସ୍ଥ ଲୋକେ କି ଦୁର୍ନୀତି କଲେ, କିଏ ଫୁଟବଲ ପୁଲ ବା ଡ଼ରବି ଘୋଡ଼ା ଦଉଡ଼ରୁ କେତେ ପାଉଣ୍ଡ ପାଇଲା, ଏମାନେ ସେସବୁ ପ୍ରକାଶ କରନ୍ତି ଖୁବ୍ ବଡ଼ ବଡ଼ ଅକ୍ଷରରେ । ମୋଟା ମୋଟି ଏମାନେ ଚମକପ୍ରଦ ଖବର (Sensational news)କୁ ବେଶୀ ପସନ୍ଦ କରନ୍ତି । ପ୍ରାୟ ସନ୍ଧ୍ୟା ବେଳକୁ ଏସବୁ ଖବରକାଗଜ ପ୍ରକାଶିତ ହୁଏ । ତେଣୁ ଲୋକମାନେ ଦିନକର କର୍ମକ୍ଳାନ୍ତି ପରେ ଚିତ୍ତବିନୋଦନ ପାଇଁ ଏଥିରୁ ଖଣ୍ଡିଏ ଖଣ୍ଡିଏ ଧରି ଘରକୁ ବା ବସାକୁ ଫେରନ୍ତି । ବାଟରେ, ବସ୍‌ରେ ବା ଟ୍ରେନ୍‌ରେ ଏଥିରେ ଟିକିଏ ଟିକିଏ ଆଖି ପକାଇ ମନ ଖୁଲାସ୍ କରନ୍ତି ଏବଂ ପରେ ତାହାର ସମ୍ୟକ୍ ସଦ୍‌ବ୍ୟବହାର କରନ୍ତି ଘରେ ବା ବସାରେ ।

ଖବର କାଗଜଗୁଡ଼ିକର ପ୍ରସାର ବିଲାତରେ ବେଶ୍ ବେଶୀ । ବଡ଼ ବଡ଼ ସମ୍ବାଦପତ୍ର ସଂସ୍ଥାଗୁଡ଼ିକ ବିରାଟ ରୋଟାରି ମେସିନ୍‌ରେ ଲକ୍ଷ ଲକ୍ଷ କାଗଜ ଠିକ୍ ସମୟରେ ଛାପି ବାହାର କରିଦିଅନ୍ତି । ସାଙ୍ଗେ ସାଙ୍ଗେ ସେଗୁଡ଼ିକ ଯାନବାହନ ଜରିଆରେ ଗ୍ରାହକଙ୍କୁ ଚାଲିଯାଏ । ମଟର ଭ୍ୟାନରେ ଯାଇ ଖବରକାଗଜ ବିକାଳିମାନେ ଘରେ ଘରେ କାଗଜ ଦେଇଆସନ୍ତି । ବାକି କାଗଜ ବିଭିନ୍ନ ଛକ ଜାଗାରେ ସ୍ଥାନେ ସ୍ଥାନେ ରଖି ଦିଆଯାଏ । କେଉଁଠି ତା' ପାଖରେ ଲୋକଥାଆନ୍ତି, କେଉଁଠି ନାହିଁ । ଯେଉଁଠି ଲୋକ ନଥାନ୍ତି ସେଠାରୁ ଯେ ଖବରକାଗଜ ନିଏ ସେ ତା'ର ଦାମ୍ଟା ସେଠି ଥୋଇଦେଇଯାଏ । ଯାହାକୁ ଦେଖି ଅନେକେ କହନ୍ତି, ଇଂରେଜ ଲୋକେ କେତେ ସଚ୍ଚୋଟ ! ସତେ ଯେମିତି ଏହା ଇଂରେଜ-ମାନଙ୍କ ସାଧୁତାର ଏକ ନମୁନା ! ବିଲାତବାସୀଙ୍କର ଆର୍ଥିକ ଅବସ୍ଥା ଆମ ଅପେକ୍ଷା ବେଶ୍ ସ୍ୱଚ୍ଛଳ, ଜୀବନଧାରଣର ମାନ ଖୁବ୍ ଉଚ୍ଚ । ତେଣୁ ଖବରକାଗଜର ଦାମ୍ ବାବଦକୁ କେତୋଟା ପେନି ଦେବା ତାଙ୍କ ପକ୍ଷରେ କେବେ ଚିନ୍ତାର ବିଷୟ ବା କଷ୍ଟସାଧ୍ୟ ନୁହେଁ । କିମ୍ବା ସେଥିରୁ ରିହାତି ପାଇବାକୁ ଠକାମିର ଆଶ୍ରୟ ନେବା ଦରକାର ପଡ଼େ ନି । ବରଂ ବିଭିନ୍ନ କିଣାକିଣି, ଖର୍ଚ୍ଚବାର୍ଚ୍ଚରେ ପକେଟରେ ଯେ କେତୋଟା ଖୁଚୁରା ପେନି ଜମିଯାଏ ତାକୁ ସହଜରେ ହାତଛଡ଼ା କରି ହୁଏ ଏ ସମ୍ବାଦପତ୍ର ସବୁ କିଣି ।

ସମ୍ବାଦପତ୍ରମାନଙ୍କର ପୀଠସ୍ଥଳୀ ଏହି ଫ୍ଲିଟଷ୍ଟ୍ରିଟ୍‌ର ଖ୍ୟାତି ଆଜି ନୁହେଁ ବହୁଦିନରୁ ବିଶ୍ୱବିଦିତ । ଏଇଠି ପ୍ରସିଦ୍ଧ ଇଂରେଜ ଲେଖକ ଜହନ୍‌ସନ୍ ତାଙ୍କ ବିଖ୍ୟାତ ଇଙ୍ଗ୍ଲିଶ୍ ଅଭିଧାନ ( Dictionary ot the Eaglish language) ରଚନା କରିଥିଲେ । ତାଙ୍କ କର୍ମସ୍ଥଳୀ ଥିଲା ଗଫ୍ ସ୍କୋୟାରର ୧୭ ନମ୍ବର ଘର । ଏଥିରେ ବର୍ତ୍ତମାନ ଜହନ୍‌ସନ୍ କ୍ଲବ୍ ଗଢାଯାଇଚି ଏବଂ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏହାକୁ ଏକ ତୀର୍ଥସ୍ଥଳୀରେ ପରିଣତ କରାଯାଇଛି । ଡକ୍ଟର ଜହନ୍‌ସନ୍ ଅଷ୍ଟାଦଶ ଶତାବ୍ଦୀର ଲୋକ । ସେ ବହୁ ଭାଷାବିତ୍‌ଙ୍କ ସାହାଯ୍ୟରେ ଏହି ପ୍ରସିଦ୍ଧ ଗ୍ରନ୍ଥ ରଚନା କରିବାକୁ ଯେଉଁ କଠୋର ସାଧନା କରିଥିଲେ ଏବଂ ପ୍ରାଣପାତ କରି ଯେପରି ଏଥିରେ ଲାଗିପଡ଼ିଥିଲେ ତାହା ଗୋଟିଏ ଗୌରବପୂର୍ଣ୍ଣ କାହାଣୀ । ମୋଟା

ମୋଟି କହିବାକୁ ଗଲେ ଏହି ଫ୍ଲିଟ୍ ଷ୍ଟ୍ରିଟ୍ ବିଲାତି ସଭ୍ୟତାରେ ଏକ ଅପୂର୍ବ ଭୂମିକା ଗ୍ରହଣ କରିଛି । ସମ୍ବାଦ-ବିସମ୍ବାଦ, ଗପ-ଗୁଜବର ଲୀଳାଭୂମି ଏ ସ୍ଥାନଟିକୁ କିଏ ନଡରନ୍ତି, କିଏ ଲକ୍ଷ୍ୟ ନକରନ୍ତି ! ଠିକ୍ ଏ ଠିକ୍ ଏ କଥାରେ, ଯେ କୌଣସି ଘଟଣାରେ ଫ୍ଲିଟ୍ ଷ୍ଟ୍ରିଟ୍‌ରେ କିଏ କଣ କହିଲା, କିଏ କଣ ଚନ୍ତାକରୁଚ ସମସ୍ତ ବୁଦ୍ଧିଜୀବୀ, ରାଜନୀତିଜ୍ଞ ଓ ସରକାରୀ ମୁଖପାତ୍ରଙ୍କର ପ୍ରଣିଧାନର ବିଷୟ ହୋଇଥାଏ । ବ୍ରିଟିଶ୍ ସାମ୍ରାଜ୍ୟର ସୃଷ୍ଟି, ରକ୍ଷା ଓ ବିସ୍ତାରରେ ଫ୍ଲିଟ୍ ଷ୍ଟ୍ରିଟ୍ କମ୍ ସାହାଯ୍ୟ କରିନ । ବାସ୍ତବିକ୍ ଇଂରେଜମାନେ ସେମାନଙ୍କର ଜାତୀୟ (National), ପ୍ରାଦେଶିକ (Provincial), ସ୍ଥାନୀୟ (Local) ଖବରକାଗଜମାନଙ୍କ ଜରିଆରେ ସ୍ୱଦେଶରେ ଓ ବିଦେଶରେ ଖୁବ୍ ପ୍ରଭାବ ବିସ୍ତାର କରନ୍ତି ।

ଏମାନଙ୍କ ସାମ୍ବାଦିକ, ସମ୍ବାଦଦାତାମାନେ ବିଭିନ୍ନ ସମ୍ବାଦ ବିସମ୍ବାଦ, ବିଖ୍ୟାତ-କୁଖ୍ୟାତ ଘଟଣାର ବିବରଣୀ ଯୋଗାଡ଼ କରିବାରେ ଯେପରି ପ୍ରାଣପାତ କରନ୍ତି ତାହା ଶୁଣିଲେ ରୋମ ଟାଙ୍କୁରି ଉଠେ । ଏପରି କୌଣସି ଜାଗା ନାହିଁ ଯେଉଁଠିକି ଏମାନେ ଅନୁପ୍ରବେଶ ନକରନ୍ତି । ବେଳେ ବେଳେ କିଏ ମଟରଗାଡ଼ିର ପଛପଟେ, କିଏ କିଏ ମାଲବୁହା ଗାଡ଼ିର ଜିନିଷପତ୍ର ଭିତରେ କୌଣସିମତେ ଲୁଚିଛପି ବହୁ ଦୁର୍ଭେଦ୍ୟ, ଅଭେଦ୍ୟ ସ୍ଥାନରେ ପହଞ୍ଚିଯାଇ ସବୁ ଭିତର ଖବର ଆହରଣ କରନ୍ତି । ସେସବୁ ଯେତେବେଳେ ସମ୍ବାଦପତ୍ର ମାନଙ୍କରେ ବଡ଼ ବଡ଼ ଅକ୍ଷରରେ ପ୍ରକାଶ ପାଏ ସମସ୍ତେ ଚମକି ଉଠନ୍ତି । କିମିତି ଏମାନେ ସେଠାକୁ ଗଲେ, କିମିତି ଏ ଖବରସବୁ ଯୋଗାଡ଼ କଲେ ! ବାସ୍ତବିକ୍ ଏହି ବୃତ୍ତିକର୍ମୀ ବ୍ରିଟିଶ୍ ସାମ୍ବାଦିକମାନେ ସବୁ ଜାଗାକୁ ଯାଇପାରନ୍ତି, ସବୁଖବର ଯୋଗାଡ଼ କରିପାରନ୍ତି ।

ମୁଁ ବିଲାତରେ ଥିଲାବେଳେ ଚୀନା ଭାରତ ଆକ୍ରମଣ କଲା । ସେ ସମ୍ବନ୍ଧରେ ଏତେ ତଥ୍ୟ, ଖବର ଏମାନେ ପ୍ରକାଶ କଲେ ଯାହା ପଢ଼ି ମୁଁ ଏକେବାରେ ସ୍ତମ୍ଭୀଭୂତ ହୋଇଗଲି । ଦୁର୍ଭେଦ୍ୟ, ଅଗମ୍ୟ ହିମାଳୟ ଅଞ୍ଚଳରେ ଚୀନାର ସେନାଘାଟୀ କେଉଁଠି ଅଛି, କେଉଁବାଟ ଦେଇ କିପରି ଚୀନାର ସେନାନାୟକମାନେ ସୈନ୍ୟଚାଳନା କରୁଚନ୍ତି, ବା କରିପାରନ୍ତି ଏସବୁର ଠିକିନିଖି ବିବରଣୀ ବିଭିନ୍ନ ସମ୍ବାଦପତ୍ରରେ

ବାହାରପଡଲା । କି ଆଶ୍ଚର୍ଯ୍ୟ ! ଏମାନେ ଏତେ କଥା ଜାଣିଲେ କିମିତି ? ଗୁଇନା ପରି ଏକ ଏକଛତ୍ରବାଦୀ ରାଷ୍ଟ୍ରର ଏତେ ସାମରିକ ତଥ୍ୟ, ଏତେ ଗୁପ୍ତ କଥା ଏମାନେ ଯୋଗାଡ଼ କଲେ କୁଆଡୁ ? ଏତେସବୁ ବିଷୟ ତ ଆମ ଭାରତୀୟ ସେନାଧୀଶଙ୍କୁ, ସାମରିକ ଗୁଇନ୍ଦା ବିଭାଗକୁ ଜଣାନଥିବ । ଜଣାଥିଲେ ଭାରତ ତ ଚିନାମାନଙ୍କର ଏହି ଆକସ୍ମିକ ଆକ୍ରମଣରେ ବିପର୍ଯ୍ୟସ୍ତର ସମ୍ମୁଖୀନ ହୋଇନଥାନ୍ତା ।

ଫ୍ଲିଟ୍ ଷ୍ଟ୍ରିଟ୍‌ରୁ ଲଡ୍‌ଗେଟ୍ ସର୍କସ୍ ଦେଇ ଲଡ୍‌ଗେଟ୍ ହିଲ ଆଡକୁ ଗଲେ ପଡ଼େ ବିଖ୍ୟାତ ସେଣ୍ଟ ପଲ ଗୀର୍ଜା (Saint Paul's Cathedral) । ଦିନେ କୁଆଡେ ବୁଲୁ ବୁଲୁ ସାର କ୍ରିଷ୍ଟୋଫର ରେନ୍‌ଙ୍କ ପରିକଳ୍ପିତ, ନାନା କଳାଗୃହସୁସମୃଦ୍ଧ, ଉଚ୍ଚକୋଠୀର ଭାସ୍କର୍ଯ୍ୟଭରା ଏହି ସୁନ୍ଦର ଧର୍ମ ମନ୍ଦିର ସାମନାରେ ପହଞ୍ଚିଗଲି । ତାର ଦ୍ୱାରଦେଶରେ ପାଦ ମୋର ଅଟକିଗଲା । ଭିତରକୁ ପଶିବା ପୂର୍ବରୁ ଟିକିଏ ଥକ୍‌କା ହୋଇ ଚାହିଁଲି ଚାରିଆଡ଼କୁ । କିଣ ଏ ସ୍ଥାନ ! କିଣ ଏହାର ମହିମା । କୌଣସି ଧର୍ମମନ୍ଦିରକୁ ଧାରାବାହିକ ଭାବରେ ଯିବାର ସୁଅଭ୍ୟାସ ବା କୁଅଭ୍ୟାସ ମୋର ନାହିଁ କି ପବିତ୍ର ଭଗବତ୍ ଦର୍ଶନରେ ସେତେ ସ୍ପୃହା ନଥାଏ । କିଣ ବା ଦରକାର ! ପଥର ଦେଉଳରେ ବିଚରା ପଥର ଦେବତାମାନଙ୍କୁ ଶାନ୍ତିରେ ରହିବାକୁ ଦିଅ । ଦେବତା ଓ ଭଗବାନ ଥାଆନ୍ତୁ ତାଙ୍କ କାମରେ ଆମେ ଯିବା ଆମ ବାଟରେ । ସେଥିରେ ହୁଏତ କିଛି ଅଚଳ ରହିଯିବନି । ରବର୍ଟ ବ୍ରାଉନିଂ କହିଚନ୍ତି ପରା, G d's in His heaven, All's right with the world ! ତେବେ ଏତେ ଲୋକ ଏତେ ଭଙ୍ଗୀରେ ଏ ଗୀର୍ଜାକୁ ଆସୁଚନ୍ତି କାହିଁକି ? ଏକେବାରେ ମଣିଷର ସୁଅ ଛୁଟିଛି । କିଣ ସାରା ବ୍ରିଟିଶ୍ ଜାତିଟା ହଠାତ୍ ଧର୍ମପ୍ରାଣ ହୋଇ ଉଠିଲା କି ?

ମୋର ଗୋଟାଏ ଧାରଣା, ଅବଶ୍ୟ ଭିତ୍ତିହୀନ ଧାରଣା ଥିଲା ଯେ ଲୋକେ ବୁଢ଼ା ବୁଢ଼ୀ ହୋଇଗଲେ ଧର୍ମ ପଥର ଆଶ୍ରୟ ନିଅନ୍ତି । କାରଣ ବୃଦ୍ଧାବସ୍ଥା ଆସିଗଲେ ସଂସାରପ୍ରତି ଆସକ୍ତି ଶିଥିଳ ହୋଇଯାଏ, ପେଟପାଟିର ଗୁଜରାଣ ମେଣ୍ଟାଇବାକୁ କିଛି ବ୍ୟବସ୍ଥା କରାସରିଥାଏ । ତେଣୁ ସ୍ୱଚ୍ଛନ୍ଦରେ ସ୍ୱର୍ଗଲାଭ ଚିନ୍ତା କରିହୁଏ । କିନ୍ତୁ ଏଠିକି ତ ଆସୁଛନ୍ତି ସବୁ ବୟସର ଲୋକ, ବିଶେଷରେ ଯୁବକ ଯୁବତୀ ଯୋଡ଼ ଯୋଡ଼ ହୋଇ ଏଠାକୁ

ମାନ୍ତି ଆସୁଥାନ୍ତି । କଣ ଉଦ୍ଦେଶ୍ୟ ? ଏମାନେ କଣ ଆଜହୁଁ ଧର୍ମାସକ୍ତ ହୋଇ ଉଠିଛନ୍ତି ? କାହିଁ ସେମିତି ଭକ୍ତପ୍ରାଣ ଭାବ ସେମାନଙ୍କ ମୁହଁରେ ଦେଖା ଯାଉନ ତ ! ବେଶ୍ ହସ ହସ, ପ୍ରଫୁଲ୍ଲ ଦିଶୁଚନ୍ତି । ଓ ! ଏଠାରେ ବି ପୂର୍ବରାଗ, ଓ ଦାମ୍ପତ୍ୟର ପ୍ରେମାଭିନୟ ଚାଲିଚି ! ମନ୍ଦ କଣ ! ଦାଏଁ ଦେଖା, ଉଚ୍ଛୃଙ୍ଖଳା ବିକା ଏକସଙ୍ଗରେ ସମ୍ଭବ ହୋଇପାରୁଚି ।

ପ୍ରଥମରୁ ଯେ ସେଣ୍ଟ ପଲ ଗୀର୍ଜା ଥିଲା ସେ ବର୍ତ୍ତମାନର ଗୀର୍ଜାଠାରୁ ଖୁବ୍ ବଡ଼ । ସେ ପୋଡ଼ିଯିବାରୁ ଏହି ନୂତନ ଗୀର୍ଜା ତିଆରି ହୋଇଛି । ଏ ବି ଏକ ବିରାଟ ଓ ଚମତ୍କାର ମନ୍ଦିର । ଏହା ନାନା କାରୁକାର୍ଯ୍ୟରେ ଭରା । ଅନେକଟା ଆମର ଦେଉଳମାନଙ୍କ ପରି । ଏହା'ର ଉପରିଭାଗରେ ପିତ୍ତଳ ଓ ସୁନା ଗୁଡ଼ାଣି କରାଯାଇଛି । ଏହାର ସମ୍ମୁଖରେ ଗୋଟିଏ ବେଦୀ ଉପରେ ସେଣ୍ଟ ପଲଙ୍କ ପ୍ରତିକୃତି ରଖାଯାଇଚି । କିନ୍ତୁ କେହି ତ କାହିଁକି ଏହି ମୂର୍ତ୍ତିପାଖରେ ଠିଆ ହଉନାହାନ୍ତି କି ଏହି ସନ୍ଥବାବାଙ୍କ ଉଦ୍ଦେଶ୍ୟରେ ବିନମ୍ର ଭକ୍ତି ପ୍ରକାଶ କରୁନାହାନ୍ତି । ସେ ମହାତ୍ମା ଯେମିତି ନୀରବ ନିଶ୍ଚଳ ଭାବରେ ଲକ୍ଷ୍ୟ କରୁଚନ୍ତି ତାଙ୍କ ଭକ୍ତଦଳଙ୍କ କାର୍ଯ୍ୟକଳାପକୁ ।

ସମସ୍ତେ ଚାଲିଚନ୍ତି ଭିତରକୁ । ଏହାର ଭିତରଟି ଦେଖିବାକୁ ବେଶ୍ ଚମତ୍କାର । ବହୁ ଚିତ୍ରବିଚିତ୍ର ଛବି, ବହୁ ସାଧୁସନ୍ଥଙ୍କ ପ୍ରତିକୃତି ଏହାକୁ ବେଶ୍ ରମଣୀୟ, ବେଶ୍ ଗାମ୍ଭୀର୍ଯ୍ୟପୂର୍ଣ୍ଣ କରିଚି । ଏଇଟା କଣ ? ଓ ! ଚୂନା ବାକ୍ସ ! ଗୀର୍ଜା ମରାମତି ପାଇଁ ଆର୍ଥିକ ସାହାଯ୍ୟ-ଭିକ୍ଷା ! ଅନେକଟା ଆମଦେଶର ଦେଉଳ, ଦେବାଳୟର ପରିବେଶ ପରି ମନେହେଲା । ପଣ୍ଡାମାନଙ୍କର ଭିଡ଼ ବି ତଥୈବଚ । ଯୁଟି ଯାଉଥାନ୍ତି ଜଣ ଜଣ ହୋଇ ପାଦ୍ରୀ ତୁମକୁ ଧର୍ମପଥରେ ଆଗେଇ ନେବାକୁ । କେତେ ଜଣ କହୁଥାନ୍ତି । କେତେ ଜଣ ବୁଝାଉଥାନ୍ତି । କିନ୍ତୁ ମୂଳ ଉଦ୍ଦେଶ୍ୟ ହେଲା କିଛି ଅର୍ଥ ଉପାର୍ଜନ । "ଖାଇବା କଥା ମୂଳକଲା, କେଣିକି ଯାଉଚୁ ବୋଇଲା ।"

ଦର୍ଶକମାନଙ୍କ ଭିତରୁ ଯେଉଁମାନେ ଧର୍ମପରାୟଣ, ଅନ୍ତତଃ ସେମିତି ଦେଖାଯାଉଥାନ୍ତି ସେମାନେ ଯାଇ ଗୀର୍ଜା ଭିତରେ ଥିବା ବେଦୀ (altar) ନିକଟରେ ସଭକ୍ତି ପ୍ରାର୍ଥନା କରୁଥାନ୍ତି । ଅନେକେ ପଡ଼ିଥିବା ବେଞ୍ଚ ଉପରେ

ବସି ଅପେକ୍ଷା କରିଥାନ୍ତି କେତେବେଳେ ପ୍ରଧାନ ଧର୍ମଯାଜକ ବେଦୀଉପରେ ଆବିର୍ଭୂତ ହୋଇ ତାଙ୍କର ଧର୍ମବାଣୀ (Sermon) ଶୁଣାଇବେ । କେତେକ ଯୁବକ ଯୁବତୀ ଏକାଠି ବସି କଣ ଖୁସିଗପ କରୁଥାନ୍ତି । ବୋଧହୁଏ ଧର୍ମ ସମ୍ବନ୍ଧରେ ନୁହେ । ମୁଁ ସବୁଟା ବୁଝିପାରୁନଥାଏ । ତେବେ ଚାରିଆଡକୁ ଲକ୍ଷ୍ୟକରି ଏହି ଧର୍ମପୀଠରେ ଏକ ମାନସିକ ଚିତ୍ର ଆଙ୍କିନେଲି । ସବୁଟା ଯେମିତି ଖାମଖିଆଲି, ଗତାନୁଗତିକ ଗୀତ । ବିଶେଷ ଭକ୍ତିଭାବ, ଆବେଗମୟ ପ୍ରାର୍ଥନା, ଆମ ବଡଦେଉଳରେ ଯେମିତି "ଆହେ ନୀଳଆରବିନ୍ଦ" କହି ଭକ୍ତମାନେ ଆକୁଳ ଆର୍ତ୍ତନାଦ କରନ୍ତି ସେପରି କିଛି ଦେଖିଲିନି ।

ସେଣ୍ଟ୍ ପଲ କାଥେଡ୍ରାଲରୁ କ୍ୟାନନ୍ ଷ୍ଟ୍ରିଟ୍ ଦେଇ ପୁଣି ପୂର୍ବକୁ ଗଲେ ପଡେ ଲଣ୍ଡନ ବ୍ରିଜ୍ । ଏହାକୁ ପାରହେଲେ ପଡେ ସାଉଥର୍ୱାର୍କ ଗୀର୍ଜା । ଏଠି ବିଶ୍ୱବିଖ୍ୟାତ ନାଟ୍ୟକାର ଉଇଲିୟମ୍ ସେକ୍ସପିଅରଙ୍କ ଭାଇ ଏଡ୍ମଣ୍ଡ ସେକ୍ସପିଅର ଏବଂ ସେକାଳର ଅନ୍ୟାନ୍ୟ ନାଟ୍ୟକାରଙ୍କ କବର ଦେଖିବାକୁ ମିଳେ । କ୍ୟାନନ୍ ଷ୍ଟ୍ରିଟ୍‌ର ମ୍ୟାନସନ୍ ହାଉସ୍ ପାଖରୁ ଉତ୍ତର-ପୂର୍ବକୁ ଗଲେ ପଡ଼େ ଥ୍ରେଡ୍ ନିଡ୍ଲ୍ଷ୍ଟ୍ରିଟ୍ (Thread needle Street) । ଏହି ଷ୍ଟ୍ରିଟରେ ଇଂଲଣ୍ଡର ଜାତୀୟ ବ୍ୟାଙ୍କ୍, ବ୍ୟାଙ୍କ୍ ଅଫ୍ ଇଂଲଣ୍ଡ ଅବସ୍ଥିତ । ସାତତାଲ ବିଶିଷ୍ଟ ଏହି କୋଠାରେ ବାଣିଜ୍ୟପ୍ରଧାନ ବିଲାତ ଦେଶର ଅର୍ଥନୈତିକ ଜୀବନ ନିୟନ୍ତ୍ରିତ ହୁଏ । ଏହି ବ୍ୟାଙ୍କ୍‌ରେ ଯେତେ କାରବାର ଓ ଯେତେ ଲୋକର ଭିଡ଼ ସେଥିରେ ସେଠାକାର କର୍ମଚାରୀମାନେ ଯେପରି ନିଷ୍ଠା ଓ ତତ୍ପରତା ସହ କାର୍ଯ୍ୟ କରନ୍ତି ତାହା ଦେଖିଲେ ଆଶ୍ଚର୍ଯ୍ୟାନ୍ୱିତ ହେବାକୁ ପଡ଼େ । ଏମାନେ ଯନ୍ତ୍ରଚାଳିତ ହେଲା ପରି ଗ୍ରାହକମାନଙ୍କ ବିଭିନ୍ନ ସମସ୍ୟାକୁ ବଡ଼ ଚତୁର ଓ ଋବନ୍ଧିତ ଭାବରେ ସମାଧାନ କରୁଥାନ୍ତି । ଖୁବ୍ ସ୍ୱଳ୍ପ ସମୟ ଭିତରେ ଶହ ଶହ, ହଜାର ହଜାର ଓ ତତୋଽଧିକ ପାଉଣ୍ଡର କାରବାର ହୁଏ । ଆମ ଦେଶରେ ବ୍ୟାଙ୍କରେ ଯେମିତି ଗୁଡ଼ାଏ ଚେକ୍‌ଚୁକ୍ କରାଯାଏ ତାଙ୍କର ସେମିତି କିଛି ଅତ୍ୟଧିକ ସାବଧାନତା ଦେଖି ପାରିଲିନି ।

କେବଳ ବ୍ୟାଙ୍କମାନଙ୍କରେ ନୁହେ, ଡାକଘରର କାରବାରରେ, ବିଭିନ୍ନ ବ୍ୟବସାୟୀ ଅନୁଷ୍ଠାନମାନଙ୍କରେ ଅର୍ଥ ଦେଣନେଣଟା ଆମ

ଦେଶ ତୁଳନାରେ ବଡ଼ ସହଜ, ସରଳ ଭାବରେ ବିଲାତରେ ଚାଲେ । ଏ କେମିତିକା କଥା ! ଆମର ତ ସବୁ କାମରେ ସବୁଠି ଖବ୍ ସାବଧାନତା ଖୁବ୍ ସନ୍ଦେହ । ଯେକୌଣସି କାମରେ ଗୁଡ଼ାଏ ଫର୍ମରେ ଦସ୍ତଖତ କରିବାକୁ ପଡ଼େ । ପୁଣି ସେ ଦସ୍ତଖତ ଠିକ୍ କି ବେଠିକ୍, ମୂଳ ନମୁନା ଦସ୍ତଖତ ସହିତ ତା'ର ମେଳ ଅମେଳ ଇତ୍ୟାଦି କେତେ କ'ଣ ଦେଖାହୁଏ ଏବଂ ସେ ସବୁକୁ କେନ୍ଦ୍ର କରି ଗୁଡ଼ାଏ ଆପତ୍ତି-ଅଭିଯୋଗ, ଗୁଡ଼ାଏ ପାଟିତୁଣ୍ଡ ହୁଏ, ଏପରିକି ବେଳେ ବେଳେ ହାତ ଉଠାଉଠିଯେ ଯାଏ । ଏତେ କଥାକୁ ଆମ ଦେଶର କାରବାରରେ ଭୁଲଭଟକା, ଠକାଠକି ଯେ ନ ହୁଏ ଇମିତି ନୁହେଁ । ରେଜିଷ୍ଟ୍ରି ନ କଲେ କୌଣସି ଚିଠି ତ ତା' ଲକ୍ଷ୍ୟସ୍ଥଳରେ ପହଞ୍ଚିବା ବେଳେ ବେଳେ କଷ୍ଟସାଧ୍ୟ ହୋଇପଡ଼େ । ସେ ରେଜିଷ୍ଟ୍ରିରେ ପୁଣି ଗୋଟାଏ ଲିଞ୍ଜି ଏ. ଡ଼ି. (A. D.) ଲଗିଥିବ ନୋହିଲେ ତାକୁ କିଏ ନବ, କିଏ ଦସ୍ତଖତ କରି ରଖିବ ତା' କିଛି ହେବନି, ଜାଣି ହେବନି । ମନିଅର୍ଡ଼ର ଟଙ୍କା ନେଲାବେଳେ ଗୋଟାଏ ସାକ୍ଷୀର ଦରକାର ପଡ଼େ । ଇନସିଓର୍ଡ଼୍‌ରେ ଟଙ୍କା ଗଲେ ବି ସେ କେବେ କେବେ କେଉଁଠି ହରଣଚାଳ ହୋଇଯାଏ । ତେଣୁ ଆମର ସବୁଠାରେ ସବୁ କାମରେ ବିଶେଷ ସାବଧାନତା । ଆମ ବ୍ୟାଙ୍କକୁ ଟଙ୍କା ଆଣିବାକୁ ଗଲେ ମହା ହଇରାଣ । ଏ ଠିକ୍ ନାହିଁ, ସେ ଠିକ୍ ନାହିଁ । ଏ ବାବୁ ଦେଖିବେ, ସେ ବାବୁ ଚେକ୍ କରିବେ, ଏଇଟା କର, ସେଇଟା କର, ଏଠି ଦସ୍ତଖତ କର ସେଠି ସାର୍ଟିଫିକେଟ ଦିଅ । ଏସବୁ କରିପାରିଲେ ଯଦି ଲୋକଗହଳି ଥିବ ତେବେ କ୍ୟୁରେ ଠିଆ ହେବ । ସେଠି କେତେକଙ୍କର ପ୍ରକ୍ସି ବା ମୁଣ୍ଡଧାରିତା ଥିବେ । କିଏ କିଏ ପଛରେ ଆସି ସୁବିଧା ଦେଖି ଆଗରେ ଠିଆ ହୋଇଯିବେ । କିଏ ଚିହ୍ନା ପରିଚୟର ସୁବିଧା ନେଇ ଆଗ ଟଙ୍କା ମାରିନେବାକୁ ଚେଷ୍ଟା କରିବ । କେତେ ଦଳାଦଳି, ଭିଡ଼ାଓଟାରରେ ଟ । ଆଣି ଘରକୁ ଫେରିବ । ଏଥିରେ କେତେ ଘଣ୍ଟା ବା ଗୋଟାଏ ଦିନ ନଷ୍ଟପ୍ରାୟ ନଷ୍ଟହେବ । ଲୋକେ ନିଜ ଟଙ୍କା ବ୍ୟାଙ୍କରେ ରଖନ୍ତି ଅସୁବିଧା ବେଳେ ଆଣି ଚଳିବେ ବୋଲି । କିଏ କାହାଠାରୁ ପ୍ରାପ୍ୟ ଟଙ୍କା ବ୍ୟାଙ୍କ ଜରିଆରେ ପା'ନ୍ତି । ସେଥିରେ ପୁଣି ଏତେ ଦୁଃଖକଷ୍ଟ । କିନ୍ତୁ ବିଲାତର ବ୍ୟାଙ୍କମାନଙ୍କରେ ଏ ଅର୍ଥକାରବାର ବ୍ୟବସ୍ଥାଟା ଅପେକ୍ଷାକୃତ ବଡ଼ ସହଜ । ନିହାତି କିଛି

ବିଶେଷ ଭୁଲଭଟକା ନଥିଲେ କେହି ଓଜର ଆପତ୍ତି କରନ୍ତିନ । ବିଅରର ଚେକ୍ ବି ସାଧା ଚିଠି ପରି ସାଧାରଣ ଲଫାପାରେ ଚାଲିଆସେ । ତେଣୁ ବ୍ୟାଙ୍କରେ ଅର୍ଥ ଲଗାଣ ଉଠାଣ ପାଇଁ ସେତେ ଦୁଃଖକଷ୍ଟ ସହିବାକୁ ପଡ଼େନି ।

ବ୍ୟାଙ୍କ ଅପେକ୍ଷା ଆମ ଦେଶରେ ଡାକଘରୁ ଟଙ୍କା ଉଠେଇବା ଆହୁରି ଯେମିତି କଷ୍ଟସାଧ୍ୟ ହୋଇପଡ଼େ । ସେଠିତ କେଜାଣି କାହିଁକି ଦସ୍ତଖତ୍ ଜମା ମିଳେନି । ମୋର ଏ ବିଷୟରେ ବଡ଼ ତିକ୍ତ ଅନୁଭୂତି ଥିଲା । ବିଲାତ ଯିବା ଆଗରୁ ମୋ ଅନୁପସ୍ଥିତିରେ ପିଲାଏ କିମିତି ଚଳିବେ ସେଥିପାଇଁ ବହୁତ ସତର୍କ ଓ ପ୍ରତିଷେଧକ ବ୍ୟବସ୍ଥା ତ କରିବାକୁ ପଡ଼ିଲା । ଗୋଟାକେତେ ଗ୍ଲେଟକାଠର ବକ୍ତୃତା ଦେଇ ସମସ୍ତଙ୍କୁ ସଜାଗ ଓ ସାବଧାନ କରାଇଦେଲି । କିନ୍ତୁ ଗୋଟିଏ କଥା ବିଶେଷ ଚିନ୍ତାର ବିଷୟ ହେଲା, ମୋ ଅନୁପସ୍ଥିତିରେ ଅର୍ଥାଭାବ ହେଲେ ପିଲେ ଚଳିବେ କିମିତି ? ଏଥିପାଇଁ ଗୋଟାଏ ଯୋଜନା କରାଗଲା । ଯାହା ମୋର ଦରମାବାବତକୁ ମିଳିବ ସେଥିରେ ସେମାନେ ଚଳିବେ । ଅଣ୍ଟ ନଅଣ୍ଟ ପୂଜା ପାର୍ବଣରେ ପାଖରେ ଥିବା ସ୍ୱଳ୍ପ ପୁଞ୍ଜି ବ୍ୟବହାର କରିବେ । କୌଣସି ଜରୁରୀ ପରିସ୍ଥିତି ପାଇଁ ଡାକଘର ସେଭିଂସ୍ ବ୍ୟାଙ୍କରେ ମୋ ସ୍ତ୍ରୀଙ୍କ ନାଁରେ କିଛି ଟଙ୍କା ଜମା କରାଗଲା । କଥାହେଲା, ନିହାତି ଯେତେବେଳେ ଦରକାର ପଡ଼ିବ ସେତେବେଳେ ଏହି ଜରୁରୀ ପାଣ୍ଠି ଉପରେ ନିର୍ଭର କରିବେ, ଡାକଘରୁ ଟଙ୍କା ଆଣି ଚଳିବେ । କିନ୍ତୁ ଡାକଘରୁ ଟଙ୍କା ଆଣି ପାରିବେ ତ ? ଦସ୍ତଖତର ମେଳ ଅମେଳ ନେଇ ନାନା ଅସୁବିଧା ଉପୁଜିପାରେ । ତେବେ ଉପାୟ ? କ'ଣ ସେ ଟଙ୍କାକୁ ଆଣି ପାଖରେ ରଖିବେ ! ନା, ତା'ତ ଠିକ୍ ହେବନି, ଟଙ୍କାତ ଚଞ୍ଚଳା ! ପାଖରେ ଥିଲେ ସାଙ୍ଗେ ସାଙ୍ଗେ ହାତଛଡ଼ା ହୋଇଯିବେ । ପୁଣି କ'ଣ କରାଯିବ ? ଗୋଟାଏ ବୁଦ୍ଧି ପାଞ୍ଚିଲି । କେତେ ଖଣ୍ଡ ଡାକଘର ଟଙ୍କା ଉଠାଣ ଫର୍ମରେ, ଏ ମୋର ସ୍ତ୍ରୀ ଏବଂ ମୋ ସାମନାରେ ଦସ୍ତଖତ୍ କରିଛନ୍ତି ଏହି ମର୍ମରେ ସେଥିରେ ଗୋଟିଏ ଗୋଟିଏ ସୁପାରିଶ୍ ଦରଜ କରିଦେଇ ଦସ୍ତଖତ୍ କଲି ଓ ମୋ ନିଜତ୍ୱର ପ୍ରମାଣ ଦେବାକୁ ମୋ ସରକାରୀ ପଦବୀର ମୋହର ତଳେ ମାରିଦେଲି । ସ୍ତ୍ରୀଙ୍କୁ ଡାକଦ୍

କରିଥାଏ ଡାକଘରକୁ ଏ ଫର୍ମ ପଠାଇବା ପୂର୍ବରୁ ଅନ୍ୟାନ୍ୟ ଆବଶ୍ୟକ ବିବରଣୀ ପୂରଣ କରିବା ସଙ୍ଗେ ସଙ୍ଗେ ନିଜ ଦସ୍ତଖତ୍‌ଟା ନିଶ୍ଚୟ ଦେବେ ନୋହିଲେ ମୋ ସାର୍ଟିଫିକେଟ୍, ସତ୍ୟ ଓ ସାର୍ଥକ ହୋଇ ପାରିବନି । ବଡ଼ ଆନନ୍ଦର କଥା ଏ ବୁଦ୍ଧିଟା ବେଶ୍ କାମ ଦେଲା ।

ବିଲାତରେ କିନ୍ତୁ ଡାକଘରୁ ଟଙ୍କା ଉଠାଇବା ବେଶ୍ ସହଜସାଧ୍ୟ । କୌଣସି ଡାକଘରେ ଟଙ୍କା ଥିଲେ ସାରା ଇଂଲଣ୍ଡର ଅନ୍ୟ ଯେ କୌଣସି ଡାକଘରକୁ ଗଲେ ଖୁନ୍ଦିବା ମାତ୍ରେ ୧୦ ପାଉଣ୍ଡ ପର୍ଯ୍ୟନ୍ତ ସାଙ୍ଗେ ସାଙ୍ଗେ ଦେଇଦେବେ । ମୋଟାମୋଟି ସେ ଦେଶର ଲୋକଙ୍କୁ କର୍ମତତ୍ପର କରିବାକୁ ଏବଂ ତାଙ୍କ ଦୈନନ୍ଦିନ କାର୍ଯ୍ୟକ୍ରମରେ କୌଣସି ବାଧାବ୍ୟାଘାତ ସୃଷ୍ଟି ନ କରିବାକୁ ଏହି ସମସ୍ତ ସହଜ ବ୍ୟବସ୍ଥା କରିଚନ୍ତି । ଫଳରେ ସେମାନେ ବେଶୀ କାମ ଓ ବ୍ୟବସାୟ କାରବାର କରିପାରନ୍ତି । ଜାତିଟା କର୍ମଚଞ୍ଚଳ ହୋଇପାରେ । ମାତ୍ର ଆମ ଦେଶରେ ପାଞ୍ଚ ଟଙ୍କାର କାରବାର ପାଇଁ ପାଞ୍ଚଜଣ ନିକମା ତାକୁ ପରୀକ୍ଷା ନିରୀକ୍ଷା କରିବାକୁ । କିନ୍ତୁ ଏତେ ପରୀକ୍ଷା ନିରୀକ୍ଷା ପରେ ବି ଭୁଲ ହୋଇଯାଏ, ଜାଲ ଠକାମି ବି ବହୁ ଜାଗାରେ ଘଟେ । ବାସ୍ତବିକ୍ ଆମ ଦେଶର ପ୍ରଶାସନିକ, ବ୍ୟବସାୟବାଣିଜ୍ୟଗତ ଓ ଅର୍ଥନୈତିକ ବିଧିବ୍ୟବସ୍ଥା ଯେମିତି ଆମ ପ୍ରଗତି ପଥରେ ଘୋର ଅନ୍ତରାୟ ସୃଷ୍ଟି କରେ ।

ବିଲାତରେ ଯେମିତି ଚଞ୍ଚଳ ଏପରିକି ବେପରୁଆ ଭାବରେ ଅର୍ଥର ଦେଣନେଣ କରନ୍ତି ତାକୁ ଦେଖି ମୁଁ ବଡ଼ ବିସ୍ମିତ ହୋଇ-ଯାଇଥିଲି । ଏମାନେ ଏପରି ଦୁଃସାହସ କରୁଚନ୍ତି କମିତି ! ଜଣେ ଉଚ୍ଚ-ପଦସ୍ଥ ସରକାରୀ କର୍ମଚାରୀଙ୍କୁ ଏହାର ଗୂଢ଼ ତତ୍ତ୍ୱ ପଚାରିଲି ମୋର ସନ୍ଦେହ ମୋଚନ କରିବାକୁ । ସେ କହିଲେ, ଏଥିରେ ବିଶେଷ ସାବଧାନ ହୋଇ ଆପଣଙ୍କ ଦେଶ ପରି ଗୁଡ଼ାଏ ଫର୍ମ ପୂରଣ କରେଇ ଗୁଡ଼ାଏ ସାର୍ଟିଫିକେଟ ନେଇ, ଗୁଡ଼ାଏ ଚେକ୍‌ବୁକ୍ କରି ଅର୍ଥର କାରବାର, ଲଗାଣ ଉଠାଣ କଲେ ଯେତେ ଶକ୍ତି ସମୟ ନଷ୍ଟ ହେବ ତା' ତୁଳନାରେ ଆମ ଏଠାର ଜାଲ ଠକାମି ଆଦୌ ନଗଣ୍ୟ । ତେଣୁ ଅତିଗୁଡ଼ାଏ ପରୀକ୍ଷା, ନିରୀକ୍ଷା କରାଯାଏନି । ଯୁକ୍ତିଟା ବେଶ୍ ସାରଗର୍ଭକ ପରି ମନେହେଲା ।

ଥେମ୍‌ସ୍ ନଦୀର ଷ୍ଟ୍ରିଟ୍‌ର ଅଳ୍ପ ଦୂରରେ ବିଖ୍ୟାତ ଲଣ୍ଡନ ଦୁର୍ଗ (Tower of London) ଅବସ୍ଥିତ, ଯେ ଯୁଗ ଯୁଗ ଧରି ଇଂରେଜ ସଭ୍ୟତା ଓ ଆଧିପତ୍ୟର ମୂକସାକ୍ଷୀ ରୂପେ ରହିଅଛି । ଏହି ଦୁର୍ଗ ଲଣ୍ଡନର ନାଁ ଯେତେବେଳେ ଲଣ୍ଡିନିୟମ୍ । (Londinium) ଥିଲା ସେହି ବେଳର ଏହା ପ୍ରାୟ ୯୦୦ ବର୍ଷ ତଳେ ନିର୍ମିତ ହୋଇଥିଲା ଏବଂ ଏହାକୁ ଦେଖିବାକୁ ପ୍ରତିଦିନ ପ୍ରାୟ ୨୦,୦୦୦ ଯାତ୍ରୀ ଆସନ୍ତି । ଏଥିରେ ଥିବା ବିଭିନ୍ନ ପୁରାତନ ଅସ୍ତ୍ରଶସ୍ତ୍ର ଓ ଅନ୍ୟାନ୍ୟ ସରଞ୍ଜାମ, ମଣିମୁକ୍ତା ଦେଖିଲେ ବ୍ରିଟିଶ୍ ଜାତିର କଠିନ ରୂପ, ତାଙ୍କ ବୁଦ୍ଧି ବିକ୍ରମର ଧାରଣା କରିହୁଏ । ଏହି ଦୁର୍ଗର ତିଆରି କାମ ବିଜେତା ଉଇଲିୟମ୍ (William the Conquerer) ଙ୍କ ସମୟରୁ ଆରମ୍ଭ ହୋଇଥିଲା ଏବଂ ଏହାର ମଧ୍ୟସ୍ଥିତ ଶ୍ୱେତଦୁର୍ଗ (White tower)ର ଭିତ୍ତି ୧୦୭୮ ଖ୍ରୀ: ଅ: ରେ ଗୁଣ୍ଡୁଲଫ୍ ବୋଲି ଜଣେ ସ୍ଥାପତ୍ୟବିତ୍ ଧର୍ମଯାଜକ ସ୍ଥାପନ କରିଥିଲେ । ପ୍ରାୟ ପରବର୍ତ୍ତୀ ସବୁ ଯୁଗର ସ୍ଥାପତ୍ୟ ଏହି ଲଣ୍ଡନ ଦୁର୍ଗରେ ଦେଖିବାକୁ ମିଳେ । ପ୍ରଥମ ଜେମସ୍‌ଙ୍କ ରାଜତ୍ୱ ପର୍ଯ୍ୟନ୍ତ ଏହା ବ୍ରିଟିଶ୍ ସମ୍ରାଟଙ୍କର ବାସସ୍ଥଳୀ ମଧ୍ୟରୁ ଥିଲା ଅନ୍ୟତମ ଏବଂ ଏହା ଦୁର୍ଗ ଓ ଜେଲଖାନା ରୂପେ ବି ବ୍ୟବହାର କରାଯାଉଥିଲା । ଏଥିରେ ରାଜକୀୟ ମୁଦ୍ରାଶାଳା (Royal mint) ସରକାରଙ୍କର ଦଲିଲ-ଦସ୍ତାବିଜ୍ (public records) ସ୍ଥାନ ପାଉଥିଲା । ସାର ଓ୍ୱାଲଟର ରାଲେ ଓ ବିଚାରପତି ଜେଫ୍ରେଜ୍ (Judge Jeffreys) ଏହାର ରକ୍ତ ଦୁର୍ଗ (Bloody tower) ରେ ବନ୍ଦୀ ଥିଲେ । ହିଟଲରଙ୍କ ଉପମୁଖ୍ୟ (Hitler's deputy)ରୁ ଡଲଫ ହେସ୍ (Rudolf Hess)ଙ୍କୁ ଏଠାରେ ଅଟକ ରଖାଯାଇଥିଲା । ସମ୍ରାଟଙ୍କ ମୁକୁଟ ସହିତ ରାଜକୀୟ ହୀରାମାଳା (Crown jewels) ଓ ପୃଥିବୀବିଖ୍ୟାତ ଭାରତୀୟ ହୀରକ କୋହିନୁର ଏଠାରେ ସଂରକ୍ଷିତ ହୋଇଛି । ଏଥିରେ ଥିବା ଅନ୍ଧାରିଆ ବଖରାଗୁଡ଼ିକ, ଯେଉଁଠି ନାନା ଷଡ଼ଯନ୍ତ୍ର ହେଉଥିଲା ଓ ହତ୍ୟାକାଣ୍ଡ ଘଟିଥିଲା ଏବଂ ଏଠାରେ ଥିବା ଯନ୍ତ୍ରଣା ଦେବାର ଯନ୍ତ୍ରପାତିଗୁଡ଼ିକ ଯାତ୍ରୀମାନଙ୍କୁ ବିଶେଷ ଆକର୍ଷଣ କରେ ।

ଏହା ଥେମସ୍ ନଦୀର କୂଳରେ ଅବସ୍ଥିତ ଏବଂ ଏହି ଦୁର୍ଗ ନିକଟରେ ଉକ୍ତ ନଦୀ ଉପରେ ଯେଉଁ ସେତୁ ଅଛି ତାର ନାଁ ଟାଓ୍ୱାର ବ୍ରିଜ୍ ।

ଏହି ଜାଗାରେ ଶ୍ରେଷ୍ଠ ପୋତାଶ୍ରୟଟିଏ ଅଛି । ଇଂଲଣ୍ଡର ବହୁ ଜାଗାରୁ ଲୋକେ ବୋଟ୍‌ରେ ଥେମସ୍ ନଦୀଦେଇ ଆସି ଏଠି ଓହ୍ଲାନ୍ତି ଲଣ୍ଡନ ଦୁର୍ଗ ଦେଖିବାକୁ । ଆଖପାଖ ୟୁରୋପୀୟ ଅଞ୍ଚଳରୁ ବି ବହୁ ଦର୍ଶକ ଜାହାଜରେ ଏଠାକୁ ଆସନ୍ତି । ନଈକୂଳରୁ ଦୁର୍ଗ ଭିତରକୁ ଗୋଟିଏ ବାଟ ଅଛି । ତାକୁ ଅପରାଧୀ-ଫାଟକ (Criminal's gate) ବା ବିଶ୍ୱାସଘାତକ ଫାଟକ (Traitor's gate) ବୋଲି କୁହାଯାଏ । ବିଲାତବାସୀ ଏବେ ନିଜକୁ ସଭ୍ୟ ଓ ମାର୍ଜିତ ବୋଲି ଦେଖାଇ ହେଉଛନ୍ତି; କିନ୍ତୁ କାଳକ୍ରମେ ସେମାନେ ଏପରି ନ ଥିଲେ । କେତେ ଯୁଦ୍ଧ, କଳହକନ୍ଦଳ, କେତେ ଅସଭ୍ୟ ଓ ହିଂସ୍ର କାଣ୍ଡ ଏ ଦେଶରେ ନ ଘଟିଛି ! ଏମାନେ ରାଜା ପ୍ରଥମ ଚାର୍ଲସ୍‌ଙ୍କ ମୁଣ୍ଡ କାଟିଥିଲେ ବଡ଼ ନିର୍ମମଭାବରେ । ଏହିମାନେ ସ୍କଟ୍‌ଲଣ୍ଡର ରାଣୀ ମେରିଙ୍କୁ ନିର୍ମମ ଭାବରେ ହତ୍ୟା କରିଥିଲେ । ଏବେ ଏ ଦେଶରେ ଆନ୍ଦୋଳନ ଚାଲିଛି ଫାଶୀ ପ୍ରଥା ଉଠାଇ ଦେବାକୁ; କିନ୍ତୁ ଆଗେ ତ ବ୍ରିଟିଶ୍ ରାଜା ଓ ଶାସକବର୍ଗ ସାମାନ୍ୟ ଦୋଷରେ ଲୋକଙ୍କୁ ଧରିଆଣି ଏହି ଦୁର୍ଗରେ ବନ୍ଦୀ କରୁଥିଲେ ବହୁକାଳ ବା ଯାବଜ୍ଜୀବନ । ଅନେକ କ୍ଷେତ୍ରରେ ଏଇଠି ସେମାନଙ୍କୁ ହତ୍ୟା କରାଯାଉଥିଲା । ପୂର୍ବେ ନାନା ହିଂସାତ୍ମକ ଓ ଭୟାନକ କାଣ୍ଡର ପ୍ରଧାନ ରଙ୍ଗମଞ୍ଚ ଥିଲା ଏହି ଲଣ୍ଡନ ଦୁର୍ଗ । କେତେ ଯେ ଜନସାଧାରଣ, ସମ୍ଭ୍ରାନ୍ତ ବା ରାଜପରିବାରର ଲୋକଙ୍କୁ ଥେମସ୍ ନଦୀ ଦେଇ ବା ସ୍ଥଳ ପଥରେ ଧରିଆଣି ଏହି ଦୁର୍ଗରେ ହତ୍ୟା କରାଯାଇଛି ବା ଦୀର୍ଘକାଳ ତାଙ୍କୁ କଏଦୀ କରି ରଖି ତିଳେ ତିଳେ ମାରି ଦିଆଯାଇଛି ତା'ର ଇୟତ୍ତା ନାହିଁ । ମୋଟାମୋଟି କହିବାକୁ ଗଲେ ଦିନେ ଏହି ଲଣ୍ଡନ ଦୁର୍ଗ ଶତ୍ରୁ ହତ୍ୟା ବା ଶତ୍ରୁ ଧର୍ଷଣର ପ୍ରଧାନ ପୀଠ ଥିଲା । ସେମାନେ ଇଂଲଣ୍ଡୀୟ ହୁଅନ୍ତୁ ବା ବାହାରର ଲୋକ ହୁଅନ୍ତୁ ଏ ଦେଶ ପ୍ରତି ଶତ୍ରୁତା କଲେ ବା ରାଜାଙ୍କର କୋପ ଦୃଷ୍ଟିରେ ପଡ଼ିଲେ ତାଙ୍କର ଶେଷ ହୃଦୟବିଦାରକ ଅବସାନ ଏହିଠାରେ ହେଉଥିଲା । ବାସ୍ତବିକ୍ ଏଠାରେ ଏତେ ଦୋଷୀ, ନିର୍ଦ୍ଦୋଷ ଲୋକଙ୍କୁ ହତ୍ୟା କରାଯାଇଛି ତାହା ଭାବିଲେ ଦେହ ଶୀତେଇଉଠେ । ଏପରିକି ରାଜବଂଶର ଶ୍ରେଷ୍ଠ ଶ୍ରେଷ୍ଠ ଶିଶୁଙ୍କ ଆଡ଼ୁ ଭବିଷ୍ୟତରେ କୌଣସି ବିପଦର ସମ୍ଭାବନା ଦେଖିଲେ ରାଜା ଓ ତାଙ୍କ ପାରିଷଦବର୍ଗ ସେମାନଙ୍କୁ ଧରିଆଣି ଏହି ଦୁର୍ଗରେ ବନ୍ଦୀକରି

ରଖୁଥିଲେ ଏବଂ ସେମାନଙ୍କୁ ନାନା ଦୁଃଖଯନ୍ତ୍ରଣା ଦେଇ ଶେଷରେ ହତ୍ୟା କରୁଥିଲେ ବଡ଼ ନିର୍ମମ ଭାବରେ । ସେକ୍‌ସପିଅରଙ୍କ ନାଟକ ଭିତରେ ଏପରି ବହୁ ଲୋମହର୍ଷଣକାରୀ ହତ୍ୟାକାଣ୍ଡର ଅବତାରଣା କରାଯାଇଛି । ସେସବୁ ପୂରା ସତ୍ୟ ନ ହୋଇପାରିଥାଏ; କିନ୍ତୁ ସେଥିର ଅନେକଟା ଯେ ପ୍ରକୃତ ଘଟଣା ଏକଥା ଅସ୍ୱୀକାର କରିହେବନି ।

ତୃତୀୟ ରିଚାର୍ଡ଼ ନାଟକରେ ସେକ୍‌ସପିଅର୍ ଏହି ଲଣ୍ଡନ ଦୁର୍ଗରେ ଘଟିଥିବା କେତେକ ନୃଶଂସ ହତ୍ୟାକାଣ୍ଡର ବିବରଣ ଦେଇଛନ୍ତି । ଯେଉଁ କ୍ଲାରେନ୍‌ସ ରିଚାର୍ଡ଼ଙ୍କ ସିଂହାସନ-ଆରୋହଣ ପଥ ସୁଗମ କରିବା ପାଇଁ ଯୁବରାଜ ଏଡ଼ୱାର୍ଡ଼ଙ୍କୁ ହତ୍ୟା କରିଥିଲେ ତାଙ୍କୁ ରିଚାର୍ଡ଼ଙ୍କ ନିର୍ଦ୍ଦେଶରେ ବଡ଼ ନିର୍ଦ୍ଦୟ ଭାବରେ ଏହି ଦୁର୍ଗରେ ହତ୍ୟା କରାଯାଇଥିଲା । ସେହି ରିଚାର୍ଡ଼ଙ୍କ ନିର୍ଦ୍ଦେଶରେ ଏଡ଼ୱାର୍ଡ଼ଙ୍କର ଦୁଇ ଶିଶୁ ପୁତ୍ରଙ୍କୁ ଘାତୁକମାନେ ଯେପରି ନୃଶଂସ ଭାବରେ ମାରିଥିଲେ ତା'ର ବିବରଣୀ ପଢ଼ିଲେ ରୋମ ଟାଙ୍କୁରି ଉଠେ, ମନପ୍ରାଣ ବିବଶ ହୋଇଯାଏ । ସେହି ଘାତୁକମାନଙ୍କ ତୁଣ୍ଡରେ ସେକ୍‌ସପିଅର ଏହି ନିର୍ମମ ଶିଶୁ ହତ୍ୟାର ଯେଉଁ କରୁଣ ଦୃଶ୍ୟ ବର୍ଣ୍ଣନା କରିଅଛନ୍ତି ତାକୁ ପଢ଼ିଲେ ଯେ କୌଣସି ପାଷାଣ୍ଡ ବି ଦୁଃଖରେ ବିହ୍ୱଳିତ ହୋଇପଡ଼ିବ ।

"Lay the gentle babes
× × girdling one another
Within their alabaster innocent arms.
Their lips were four red roses on a stalk
And in their summer beauty kissed each
other.
A book of prayer on their pillow lay
× × × we smoothered
The most replenished sweet work of Nature
That from prime creation e'er she framed.

ବାସ୍ତବିକ୍ ଏହି ଦୁର୍ଗରେ ଏତେ ନରହତ୍ୟା ଘଟିଛି ଯେ ମନେହୁଏ ସ୍ଥାନ'ର ମାଟି ଖୋଳିଲେ ତଳେ ରକ୍ତସୁଅର ସନ୍ଧାନ ମିଳିବ । ଏଠି ପାଦ

ଦେଲାଷଣି ଦେଇ ଶିହରଉଠେ, ହୃଦୟର ସ୍ପନ୍ଦନ ବନ୍ଦ ହୋଇଗଲା ପରି ଲାଗେ । ଏଠାରେ ଉଡ଼ି ବୁଲୁଥିବା ଦଳ ଦଳ ଡାମରା କୁଆଗୁଡ଼ାକ ମନରେ ଏ ଭୟଭୀତ ଭାବକୁ ଆହୁରି ବଢ଼ାଇ ଦିଅନ୍ତି । ଯାର ବ୍ରିଟିଶ୍ ଜାତିର ଏହି ଐତିହାସିକ ଦୁର୍ଗଟି, ଯାର ରକ୍ତପିଣ୍ଡେ ଗଢ଼ା ଯା'ର ମାଟି, କାହିଁକି ସେ ସ୍ଥାନ ଡାମରା କୁଆଗୁଡ଼ାଙ୍କର ଲୀଳାଭୂମି ହୋଇଛି ତାହା ବୁଝିହୁଏନା ।

ଅବଶ୍ୟ ବିଲାତବାସୀଙ୍କର ଏ ବିଷୟରେ ବହୁ ବିଚିତ୍ର ଧାରଣା ଓ କୁସଂସ୍କାର ରହିଛି । ସେମାନଙ୍କ ମତରେ ଏହି ଲଣ୍ଡନ ଦୁର୍ଗର କୁଆଗୁଡ଼ାକ ବ୍ରିଟିଶ ଲକ୍ଷ୍ମୀଙ୍କର ପ୍ରତୀକ । ଏଗୁଡ଼ିକ ନ ରହିଲେ ଇଂରେଜମାନଙ୍କର ଶକ୍ତିସମୃଦ୍ଧି ଧ୍ୱଂସ ପାଇବ ଏବଂ ଦୁର୍ଗ ନିଶ୍ଚିହ୍ନ ହୋଇଯିବ । ତେବେ ସେମାନଙ୍କ ଲକ୍ଷ୍ମୀଙ୍କର କ'ଣ କୁଆ ବାହନ ? ହୋଇଥିବ । ଆମ ଲକ୍ଷ୍ମୀଙ୍କର ତ ପେଚା ବାହନ । କିନ୍ତୁ ପ୍ରକୃତ ତଥ୍ୟଟା କ'ଣ ? ବୋଧହୁଏ ଆଗେ ଏଠି ଏତେ ନରହତ୍ୟା ଘଟୁଥିଲା ଯେ ରକ୍ତମାଂସ ଲୋଭରେ କୁଆଗୁଡ଼ାକ ଏଠି ରୁଣ୍ଡ ହେଉଥିଲେ । ଦର୍ଶକମାନେ ବି କିଛି କିଛି ଶସ୍ୟଦାନା ଆଣି ଏମାନଙ୍କୁ ଖାଇବାକୁ ଦିଅନ୍ତି । ଦେବେ ନା । ସେମାନେ ବିଲାତ ଲକ୍ଷ୍ମୀଙ୍କର ପ୍ରତୀକ ଯେ ! ଛିଃ, ଯେତେହେଲେ ବି କୁଆଗୁଡ଼ାକ ତ !

ବ୍ରିଟିଶ ଲୋକେ ଆମର ଅନେକ ପାରମ୍ପରିକ ନୀତିକୁ କୁସଂସ୍କାର କହି ଘୃଣା କରନ୍ତି । ଅବଶ୍ୟ ଆମର ଅନେକ ସାମାଜିକ ପ୍ରଥା କାଳକ୍ରମେ ପ୍ରମାଦପୂର୍ଣ୍ଣ ଓ କଳୁଷିତ ହୋଇଉଠିଛି । କିନ୍ତୁ ସେମାନେ ଯେ କୁସଂସ୍କାରରୁ ଦୂରି ମୁକ୍ତ ତା କହି ହେବନି । ଏବେ ବି ସେମାନେ ୧୩ ସଂଖ୍ୟାକୁ ଅମଙ୍ଗଳ ସୂଚକ ମନେ କରନ୍ତି । ଟେବୁଲ ଉପରେ ଲୁଣ ବୁଣିଗଲେ ସେଇଟା ତାଙ୍କ ପକ୍ଷରେ ଅଶୁଭ ଲକ୍ଷଣ ହୁଏ । ଏହିପରି ନାନା କୁସଂସ୍କାର ବି ତାଙ୍କର ଅଛି ।

ବର୍ତ୍ତମାନ ଏହି ଲଣ୍ଡନ ଦୁର୍ଗ ପୁରାତନ ଅସ୍ତ୍ରଶସ୍ତ୍ର ଏବଂ ରାଜକୀୟ ପୋଷାକପତ୍ର ଓ ମଣିମାଣିକ୍ୟର ଏକ ଯାଦୁଘର ରୂପେ ବ୍ୟବହୃତ ହେଉଛି । ମୁଁ ଯେତେବେଳେ ସେଠାକୁ ଯାଇଥିଲି ସେତେବେଳେ ସେଠାରେ ସ୍ପେନୀୟ ସାଜ ଓ ରାଜମୋହରର ଆହ୍ୱର ପ୍ରଦର୍ଶନୀ ଚାଲିଥିଲା । ସ୍ପେନର ରାଜ ପରିବାର ସହିତ ଇଂରେଜ ରାଜପରିବାର ସମ୍ପର୍କ ବହୁ ସମୟରେ

ଖୁବ୍ ଘନିଷ୍ଠ ଥିଲା । ଇଂରେଜ ସମ୍ରାଟ ୭ ମ ହେନେରୀଙ୍କ ଜ୍ୟେଷ୍ଠ ପୁତ୍ର ଆର୍ଥର ସ୍ପେନ ସମ୍ରାଟଙ୍କ କନ୍ୟା କାଥାରିନ୍‌ଙ୍କୁ ବିବାହ କରିଥିଲେ । ବିବାହର ଅଳ୍ପଦିନ ପରେ ଆର୍ଥରଙ୍କର ମୃତ୍ୟୁ ଘଟିବାରୁ ତାଙ୍କ ସାନଭାଇ ଅଷ୍ଟମ ହେନେରୀ ତାଙ୍କ ବିଧବା ଭାଉଜଙ୍କୁ ବିବାହ କରିଥିଲେ । ଏହାର ଉଦ୍ଦେଶ୍ୟ ହେଲା ସ୍ପେନୀୟ ରାଜପରିବାର ସହିତ ଇଂଲଣ୍ଡ ରାଜପରିବାରର ମୈତ୍ରୀ-ସମ୍ପର୍କ ଅତୁଟ ରଖିବା । ଅବଶ୍ୟ ଏହି ବିଧବା ବିବାହ ନେଇ ବ୍ରିଟିଶ୍ ଇତିହାସରେ ଘୋର ଆଲୋଡ଼ନ ଓ ବିଭ୍ରାଟ ସୃଷ୍ଟି ହୋଇଥିଲା । ଯାହାହେଲେ ବି ସ୍ପେନ୍ ସହିତ ଏହି ବନ୍ଧୁତ୍ୱ ଅଭିଯାନ ବହୁକାଳ ଚାଲିଥିଲା ।

ପୂର୍ବକାଳର ଦୁର୍ଗଗୁଡ଼ିକର ନିର୍ମାଣ ପରିପାଟୀ ଯେପରି ଅନେକାଂଶରେ ଏକ ଢଙ୍ଗର ଥିଲା । ଆମ ବାରବାଟୀ ଦୁର୍ଗ ମହାନଦୀ କୂଳରେ ଅବସ୍ଥିତ ଓ ତା'ର ଚାରିପଟେ ଏକ ବିରାଟ ପରିଖା ଘେରି ରହିଚି । ଲଣ୍ଡନ ଦୁର୍ଗ ସେହିପରି ଥେମସ୍ ନଦୀର କୂଳରେ ଅବସ୍ଥିତ ଓ ତା'ର ଚାରିପଟେ ରହିଚି ଗୋଟାଏ ditch ବା ପରିଖା । ହଜାର ହଜାର ମାଇଲ ଦୂରରେ ଥିଲେ ବି ଏହି ପୁରାତନ ଦୁର୍ଗମାନଙ୍କ ମଧ୍ୟରେ କି ଅପୂର୍ବ ସାମଞ୍ଜସ୍ୟ ! ବୋଧହୁଏ ଏସବୁର ଉଦ୍ଦେଶ୍ୟ ଏକ ହୋଇଥିବାରୁ ଏମାନଙ୍କର ନିର୍ମାଣ କୌଶଳ ଏକ ହୋଇପାରିଚି ।

ଏହି ଲଣ୍ଡନ ଦୁର୍ଗରୁ ବ୍ରିଟିଶ୍ ଇତିହାସର ଅନେକ ସୂଚନା ମିଳେ । ବହୁ ପୁରାତନ ରୀତିନୀତି ବର୍ତ୍ତମାନ ବି ସେଠି ପ୍ରଚଳିତ ଅଛି । ଏବେ ମଧ୍ୟ ଏହାର ମୁଖ୍ୟ ଜଗୁଆଳି (Chief warder) ତା'ର ପ୍ରାଚୀନ ଢଙ୍ଗର ପୋଷାକ ପିନ୍ଧି ଅନ୍ୟ ଜଗୁଆଳିଙ୍କ ଗହଣରେ ଶୋଭାଯାତ୍ରା କରିପରି ଏଠି ଦୁର୍ଗ ଭିତରେ ପ୍ରବେଶ କରେ । ଅନ୍ୟ ଜଗୁଆଳିମାନେ ସେତେବେଳେ ତାକୁ ଆହ୍ୱାନ କରି ତା'ର ପରିଚୟ ମାଗନ୍ତେ ସେ ସଗର୍ବେ କହେ, "ରାଣୀ ଏଲିଜାବେଥ୍‌ଙ୍କ ଚାବି ।"

ଲଣ୍ଡନ ଟାୱାରରେ ଗୁଡ଼ିଏ ବୁଲି ତା'ର ଇତିହାସ-ଭୂଗୋଳ, ଗଳ୍ପ-ଗୁଜବ ସମ୍ବନ୍ଧରେ ବହୁତ କିଛି ତଥ୍ୟ ଆହରଣ କଲି । ମୋଟେ ତିନିଟା ବାଜିଯାଏ; କିନ୍ତୁ ଚାରିଆଡ଼େ ରାତି ଆଗମନର ସୂଚନା । ଦୁର୍ଗ

ଉପରେ ଉଡ଼ୁଥାଏ ବ୍ରିଟିଶ୍ ପତାକା ୟୁନିୟନ୍ ଜାକ୍ ଫରଫର ହୋଇ । ତାକୁ ଟିକିଏ ଚାହିଁଲି । ଭାବିଲି ଆଜି ସେ ପ୍ରବଳ ପ୍ରତାପୀ ବ୍ରିଟିଶ୍ ରାଜା ନାହାନ୍ତି କି ତାଙ୍କର ସେ ପୂର୍ବର ସୁଦୂରପ୍ରସାରୀ ସାମ୍ରାଜ୍ୟ ନାହିଁ; କିନ୍ତୁ ବହୁ ପୁରାତନ ସ୍ମୃତି ଏହି ଦୁର୍ଗରେ ଜଡ଼ିତ ରହିଛି ।

# ପଲ ପଲ ପାଣ୍ଡି ଓ କୋଲ୍‌ହ-କାକର ପାଣି

ହଇଜା ରୋଗୀ କହ, ଟାଇଫଏଡ୍ ରୋଗୀ କହ, ବେମାରି ଛାଡ଼ିଗଲେ ମାଡ଼ିଆସେ ଭୋକ, ଖାଲି ଭୋକ । ସେ ଅବସ୍ଥାରେ ଯାହା ଖାଦ୍ୟ ମିଳେ ସେ ରୁଚିକର ହେଉ ବା ନ ହେଉ ତାକୁ ଖାଇବା ପାଇଁ ମହା ବ୍ୟାକୁଳତା । ମୋର ଅବସ୍ଥାଟା ଅନେକାଂଶରେ ସେମିତି ହୋଇଉଠିଥିଲା । ବିଲାତରେ ପହଞ୍ଚିବା ପରେ ସ୍ୱଦେଶବାସ ଓ ସ୍ତ୍ରୀ ପିଲାଙ୍କୁ ଛାଡ଼ିଯିବାର ଦୁଃଖ ମୋର ମନପ୍ରାଣକୁ ବ୍ୟଥାକୁଳ କରି ପକାଇଥିଲା । ଯେତେ ଯୁଆଡ଼େ ବୁଲାବୁଲି କଲେ, ଗଲେ ଆଇଲେ ବି ମେଜାଜ୍‌ଟା ମାନ୍ଦାମାନ୍ଦା ରହୁଥିଲା । କିନ୍ତୁ କେତେଦିନ ସେଠାରେ ରହିଗଲା ପରେ ମୋର ଏ ବେମାରିଟା ଯେମିତି କମିଗଲା । ବିଲାତ ପାଣିପବନ ଯେତେବେଳେ ଦେହରେ ଚଳିଗଲା ମନରେ ଜାଗିଉଠିଲା ନୂଆ ମୋହ, ଦୁର୍ବାର ବାସନା, ବିଲାତ ଦେଶ ଓ ଲଣ୍ଡନ ସହର ଦେଖିବାକୁ ଓ ତାକୁ ଆବିଷ୍କାର କରିବାକୁ । ଏଣେ ଯିବା ତେଣେ ଯିବା, ଏଇଟା ଦେଖିବା ସେଇଟା ଦେଖିବା ପାଇଁ ବିକଳ ହୋଇ ଉଠିଲି । ଓଃ ! କି ସୁନ୍ଦର, କି ଚମତ୍କାର, ବଡ଼ ବିଚିତ୍ର, ଅତି ଆଶ୍ଚର୍ଯ୍ୟକର ଇମିତି ବିଶେଷଣରେ ଅବାରିତ ଧୂଆଁ ବାଣ, ଆହା-ହା ଉହୁ-ହୁର ସୁଅ ଦେଇ ଛୁଟି ଚାଲିଲା ।

ତା' ସାଙ୍ଗକୁ ବେଶ୍ ଜୋରରେ ଚାଲିଥାଏ ଖାଇବାପିଇବାଟା । ଆମ ୨୩୫ ନମ୍ବର କାମ୍‌ଡେନ୍ ରୋଡ଼ରେ ରୋଷେଇବାସ ବ୍ୟବସ୍ଥାଟା ଖୁବ୍ ଜାକଜମକରେ ଜମିଉଠିଥାଏ । ବିଲାତ ଖାଦ୍ୟ ନୁହେଁ, ଖାଣ୍ଟି ଦେଶୀ । ଭାତଡାଲି ସାଧା ତରକାରି, ଭଜା, ସନ୍ତୁଳା······ତା'ସାଙ୍ଗକୁ ମାଛଝୋଳ, ଭଜା ବେଳେବେଳେ ଗ୍ରାମପକ୍ଷୀ ଓ ମେଷ ମାଂସର ବି ସଦ୍‌ବ୍ୟବହାର ହେଉଥାଏ । ବିଲାତରେ ଛେଳି ନାହାନ୍ତି । ନୋହିଲେ ତାଙ୍କର ନରମ ପଲ ଆମର ବେଶୀ ପ୍ରିୟ ହୋଇଥାନ୍ତା । ତେବେ ଗୋମାତାଙ୍କୁ ନମସ୍କାର କରି, ଘୁଷୁରିଙ୍କୁ ସାମାନ୍ୟ ଘୃଣା ଚକ୍ଷୁରେ ଦେଖି ଆମେ ଉଦରସ୍ଥ କରୁଥାଉ ସବୁ ପ୍ରକାର ମାଛମାଂସ, ଶାକସବ୍‌ଜ ।

ଏପରି ପେଟପାଟି ଶାନ୍ତସନ୍ତୁଷ୍ଟ ହେଲାରୁ ମୋର ବୁଲାବୁଲି, ଦେଖାଦେଖି ଅଭିଯାନଟା ଆହୁରି ଉତ୍ସନ୍ନ ହୋଇଉଠିଲା । ଆମ ବସାର ବାଡ଼ିପଟକୁ ଗଲେ ବି ସେଠି ଉଠିଥିବା ନାନା ଅନାବନା ଗଛକୁ ଚନ୍ନ ଚନ୍ନ କରି ଦେଖିବସେ । ଏଁ, ଏଥିରେ କେତେ କଣ ତ ଫୁଲ ଫୁଟିଛି । କିଏ ଏସବୁ ଗଛ ଲଗେଇଛି କି ସେ ମନକୁ ଉଠିଛି । ନାଇଁ କିଏ ଲଗେଇବ କାଇଁକି ? ଏତ ସେମିତି କିଛି ଉଦ୍ୟାନ କି ବଗିଚା ନୁହେଁ । ନିହାତି ଅପନ୍ତରା ଅପରିଷ୍କାର ଜାଗା । ହେଲେ ବି ବିଲାତି ଦେଶର ଫୁଲ ! କିନ୍ତୁ ସୁବାସ କଣ ବିଲକୁଲ ନାସ୍ତି । କିଏ କିମିତି ଟିକିଏ ଆଇଁଷିଣିଆ କି ଭୁକୁଟିଆ ଗନ୍ଧଉଛି । ବାକି ସବୁତ ଦେଖାସୁନ୍ଦର । ଆମ ଦେଶ ବଣ ମଲ୍ଲୀର କେତେ ଚମତ୍କାର ବାସନା ! ଜୁଇ-ମାଳତୀ, ଚମ୍ପା-ହେନା ଆଦିର ମହକ ତ କେଡ଼େ ଚମତ୍କାର । ହେଲେ ସେଗୁଡ଼ା ଆମ ଦେଶୀ ଫୁଲ । ଏ କିନ୍ତୁ ବିଲାତି, ହେଉନା ନିର୍ଗନ୍ଧ ! ଏସବୁ ଭିତରର ଉଦ୍ୟାନମାନଙ୍କରେ ଲଗାଯାଉଥିବା ଋତୁଫୁଲ (Season flower) ପରି ଦିଶୁଛି । ଦିଶୁଚି କଣ ! ଏଇ ଗୁଡାକ ତ ନେଇ ଆମ ଦେଶରେ ଲଗେଇଚନ୍ତି, ଚଳେଇଚନ୍ତି । ଏସବୁ ଆମ ଦେଶରେ ଶୀତ ଦିନରେ ଫୁଟେ । ଏଠିତ ସବୁଦିନେ ଶୀତ । ଖାଲି ନିରାଟ ଶୀତ ଦିନରେ ଯେତେବେଳେ ବରଫ ପଡ଼େ ସେଇ ସମୟକୁ ଛାଡ଼ିଦେଲେ ଅନ୍ୟ ସମୟରେ ବିଲାତର ରାସ୍ତାଘାଟ, ଉଦ୍ୟାନ-ମଇଦାନରେ ଦେଖିବାକୁ ମିଳେ ଏଇ ନିର୍ଗନ୍ଧ ଋତୁ ଫୁଲ ।

ଏଇସବୁ ଶୋଭା, ଅଶୋଭାକୁ ଦେଖିବାକୁ ସୁବିଧା ଦେଖି ବାହାରି ପଡ଼େ । କେବ୍ରା କ୍ରସିଂ ଟପି ବସ୍‌ଘାଟିରେ ପହଞ୍ଚିଯାଏ । କେବ୍ରା କ୍ରସିଂ ଟପିବାକୁ ମୋତେ ପ୍ରଥମେ ପ୍ରଥମେ ଟିକିଏ କଷ୍ଟସାଧ ମନେହେଉଥିଲା । ମଟର, ବସ୍ ପ୍ରଭୃତି ମାଡ଼ିଆସନ୍ତି ଖର ଦର୍ପରେ ମହା ବେଗରେ । ଆଗରେ ରାସ୍ତାର ବିଦ୍ୟୁତ୍-ସଙ୍କେତ ନାଲି ଆଲୁଅ ଦେଖିଲେ ଚାଳକମାନେ ଜୋରରେ ଆଙ୍କୁଶୀ ଟାଣି ଦିଅନ୍ତି । ଯନ୍ତ୍ରଯାନ ଗୁଡ଼ାକ କଁଅ କଁଅ ଶବ୍ଦରେ ଚିତ୍କାର କରିଉଠନ୍ତି । ମନଟା ଶଙ୍କିଯାଏ । ଓହୋ ! କେଡ଼େ ଜୋରରେ ଚଲଉଚନ୍ତି ! ଟିକିଏ ଧୀରେ ସୁସ୍ଥେ ଆସିଲେ ହୁଅନ୍ତା ନି ? ତେବେ ବିଲାତରେ ରାସ୍ତାଛକ ମାନଙ୍କର ଆଲୋକ-ସଙ୍କେତକୁ ଗାଡ଼ିଚାଳକମାନେ ବେଶ୍ ମାନନ୍ତି । ଛକ ଛକ ଠକ ପଳାଇଯିବାର ଅପଚେଷ୍ଟା ନଥାଏ ।

ତେବେ ବି ଟିକିଏ ଡରମାଡେ । କାଳେ ଯଦି କୌଣସି ଗାଡ଼ି ଯାତାୟାତର ନିୟମ ନମାନି ମାଡ଼ି ଆସିବେ ତେବେ ତ ଦେହଟା ଛତୁ ହୋଇଯିବ, ପ୍ରାଣଟା ଚାଲିଯିବ । ତେଣୁ ବହୁ ସାବଧାନତା ସହ ଚାରିଆଡ଼କୁ ଚାହିଁ ଚାହିଁ ଏ ଜେବ୍ରା କ୍ରସିଂ ପାରହେବାକୁ ଚେଷ୍ଟାକରେ । ଗୋଡ ଚପିଚପି ପକାଉଥାଏ । କାରଣ ସବୁବେଳେ ତ ବର୍ଷା, କାଳେ ଗୋଡ ଖସିଯିବ । ଓଭରକୋଟ୍‌କୁ ଚାପି ଧରି, ବ୍ୟାଗ୍‌କୁ ଜାକି ଜାବୁଡ଼ି ଆଗାଏ ଠିକ୍ ଯୁଦ୍ଧ ଭୂମିରେ, ଆଗରେ ଶତ୍ରୁସେନାଙ୍କ ସମରସଜ୍ଜାକୁ ଲକ୍ଷ୍ୟରଖି ସୈନ୍ୟମାନେ ଅଗ୍ରସର ହେଲା ପରି ।

ତା'ପରେ କ୍ୟୁର ପାଳି । କ୍ୟୁ ନିୟମ ନ ମାନିଲେ ଲଣ୍ଡନବାସୀ ଉତ୍‌କ୍ଷିପ୍ତ ହୋଇଉଠନ୍ତି । ବିଶେଷତଃ ବସ୍ ଷ୍ଟପ୍, ଟିଉବ୍ ଷ୍ଟେସନ ଆଦିରେ ବହୁ ସମୟ ଧାଡ଼ିରେ ଠିଆ ହେବାକୁ ପଡ଼େ । ବହୁଲୋକ ସ୍ତ୍ରୀପୁରୁଷ, ଯୁବକଯୁବତୀ ଧୈର୍ଯ୍ୟଧରି ଠିଆ ହୋଇଥାନ୍ତି । କିନ୍ତୁ ଏମାନେ ଏପରି ନୀରବ କାହିଁକି ? କ'ଣ କୌଣସି ଯୋଗସାଧନା କଲାପରି ସ୍ଥିର ନିଶ୍ଚଳ ରହିଛନ୍ତି ! ପଦେ କଥା ବି କହୁନାହାନ୍ତି । ଆମ ଦେଶ ହୋଇଥିଲେ ତ ଏତେବେଳକୁ କେତେ ପାଟିତୁଣ୍ଡ, କେତେ କଳିତକରାଳ ଆରମ୍ଭ ହୋଇଯା'ନ୍ତାଣି । ତା'ପରେ ଆମ ରାସ୍ତା କଡ଼ରେ ଯେଉଁ ମଶାମଛି ସେ କ'ଣ ଯ୍ୟା'ଙ୍କୁ ଧୀରସ୍ଥିର ଭାବରେ ଠିଆ କରି-ଦିଅନ୍ତେ ! ପରସ୍ପର ସହିତ ଭାବର ଆଦାନପ୍ରଦାନ କରିବା କି ଟିକିଏ ଦୁଃଖସୁଖ କଥାବାର୍ତ୍ତା ହେବା କିଛି ନାହିଁ, ଏକଦମ୍ ଗୁଉମ୍ । ହଉ, ଯେ ଦେଶ ଯାଇ ସେ ଫଳ ଖାଇ । ହେଲେ ମୋର ଗପୁଡ଼ି ପାଟି ବନ୍ଦ ହେଉନି କେତେବେଳେ ! Good morning every body ! ଟିକିଏ ବାହାଦୁରୀ ଦେଖାଇ ଆରମ୍ଭ କରିଦେଲି ସଯତ୍ନରେ ଶିଖିଥିବା ମୋ ବିଲାତି ବୋଲି ।

ଗୁଁ ଉଁ.........

ସମବେତ କଣ୍ଠର ଗୋଟାଏ କ୍ଷୀଣ ଗୁଞ୍ଜନ ଶୁଣାଗଲା । ଏଁ, ଇମିତି ଗୁମୁରି ଉଠିଲେ କାହିଁକି ? ଓ ! ମୋ ଶୁଭ ସମ୍ଭାଷଣର ପ୍ରତ୍ୟୁତ୍ତର ଦେଲେ । ହେଲେ ଇମିତି କୁନ୍ଥେଇ ସକୁଣ୍ଠ ଶବ୍ଦ କଲେ କାହିଁକି ? ଜୋର୍‌ରେ ମନଖୁଲାସରେ ଜବାବ୍ ଦେଉ ନାହାନ୍ତି !

ପ୍ରକୃତରେ ବିଲାତବାସୀ ବଡ଼ ଚୂପ୍‌ଚାପ୍ ପ୍ରକୃତିର । ଆମ ଦେଶ ଲୋକଙ୍କ ପରି ପର କଥାରେ ପର କାମରେ ସହଜରେ ମୁଣ୍ଡ ପୂରେଇବାକୁ ଚାହାନ୍ତିନି, ନିହାତି ବାଧ୍ୟ ନ ହେଲେ କଥା କହନ୍ତିନି । ନ କହନ୍ତୁ ! ମୁଁ ଚାରିଆଡ଼କୁ ଲକ୍ଷ୍ୟକଲି । କେଉଁଠି ଘର ଉପରୁ ଧୂଆଁ ଉଠୁଥାଏ । କେଉଁଠାରୁ ଦୂରଦର୍ଶନ ବା ବେତାର ଯନ୍ତ୍ରର ସଙ୍ଗୀତ-ଧ୍ୱନି ଭାସିଆସୁଥାଏ । ଏ କ'ଣ ! ଜଣେ ମହିଳା କୁକୁର ଦେହରେ ଚମଡ଼ାର ବେଲ୍ଟ ବାନ୍ଧି ତାକୁ ଟାଣିଲେଇ ଚାଲିଲେଇ ତା' ସାଙ୍ଗରେ ନିଜେ ଚାଲିଚାଲନ୍ତି ସାନନ୍ଦରେ ! ବାଃ, ତା'ପ୍ରତି କେତେ ସ୍ନେହ ଶ୍ରଦ୍ଧା ! ଟିକିଏ କ'ଣ କୁକୁର ଦେହରେ ଆଘାତ ଲାଗିଲେ କି ବାଟ ଚାଲିରେ ତା'ର କିଛି ଅସୁବିଧା ଘଟିଲେ ତାକୁ ଗୁଡ଼ି ପର୍ଯ୍ୟନ୍ତ ଟେକିଆଣି ସସ୍ନେହ ଆଲିଙ୍ଗନ କରୁଛନ୍ତି । କେତେ କ'ଣ ମଧୁର ବଚନ କହି ତା'ର ଶରୀର ତୋଷୁଛନ୍ତି । କୁକୁରଟି ପଶୁ ହେଲେ ବି ଏ ସ୍ନେହଶ୍ରଦ୍ଧାର ପ୍ରତିଦାନ ସ୍ୱରୂପ ମହିଳାଙ୍କ ଦେହରେ ଛନ୍ଦହେଇଯାଉଛି । ମୁହଁରେ ମୁହଁ ଘଷିଦେଉଛି ।

ବିଲାତରେ ସ୍ନେହପାଳିତ ପଶୁ (pet) ବିଶେଷତଃ କୁକୁର ପ୍ରତି ପ୍ରେମ ଅତ୍ୟଧିକ । ବହୁ ଯତ୍ନରେ, ଖୁବ୍ ସ୍ନେହଶ୍ରଦ୍ଧା ସହ ଏମାନେ ପାଳନ୍ତି କୁକୁରମାନଙ୍କୁ । ସାଧାରଣତଃ ସାହେବମାନଙ୍କର କୁକୁର ପ୍ରତି, ସାହେବାଣୀମାନଙ୍କର କୁକୁର ପ୍ରତି ମମତା ଅତ୍ୟଧିକ । ଖୁବ୍ ସ୍ନେହଶ୍ରଦ୍ଧା ଦେଇ ଏମାନେ ପାଳନ୍ତି ଏହି ଚତୁଷ୍ପଦ ଜୀବଙ୍କୁ । ଶୟନେ, ଭୋଜନେ, ଜାଗରଣେ ସେମାନଙ୍କୁ ସାଙ୍ଗରେ ରଖନ୍ତି । ତାଙ୍କ ପିଛା ବହୁତ ଅର୍ଥ ବ୍ୟୟ କରନ୍ତି । ଅଭାବ ପଡ଼ିଲେ ପରିବାରର ଖର୍ଚ୍ଚ କମାଯାଏ, ପିଲାଙ୍କ ବାବଦରେ ବ୍ୟୟର ସଙ୍କୋଚ କରାଯାଏ; କିନ୍ତୁ କୁକୁରମାନଙ୍କୁ ଅବହେଳା କରାଯାଏନି । ଅନେକ ଛାଡ଼ପତ୍ର ମକଦ୍ଦମାରେ ଏଇ ଗୃହପାଳିତ କୁକୁରଙ୍କୁ କିଏ ରଖିବ ସେଇକଥା ନେଇ ନାନା କନ୍ଦଳ ସୃଷ୍ଟି ହୁଏ । ମଣିଷ ପ୍ରତି, ପରିବାରର ଲୋକ ବା ପିଲାଙ୍କ ପ୍ରତି କେହି କିଛି ଖରାପ ବା ନିର୍ଦ୍ଦୟ ବ୍ୟବହାର କଲେ ସେଇଟା କୌଣସିମତେ ସହ୍ୟ କରାଯାଏ ବା ତା'ର କୌଣସି ସମାଧାନ ହୁଏ; କିନ୍ତୁ କୁକୁରଙ୍କ ପ୍ରତି କୌଣସି ନିଷ୍ଠୁରତା ବା ନ୍ୟୂନ ବ୍ୟବହାର ଅସହ୍ୟ । ସେଥିପାଇଁ କାହାକୁ ସହଜରେ କ୍ଷମା କରାଯାଏ ନାହିଁ ।

ତେବେ ଏ ସଦାଶୟା ମହିଳା ଜଣକ କୁକୁର ଦେହରେ ଏପରି ବର୍ଷାତି କନା ଘୋଡ଼େଇ, ତା’ ବେକରେ ଫିତା ବାନ୍ଧି ଧୀର ମନ୍ଥର ଗତିରେ ଯାଉଚନ୍ତି କୁଆଡ଼େ ? ବୋଧହୁଏ ଆନନ୍ଦବିହାର ପାଇଁ । ବିଚରା ଜୀବଟିକୁ କାଳେ ଶୀତ, ବର୍ଷା ଲାଗିବ ସେଥିଯୋଗେ ତା’ ଦେହରେ ଢାଙ୍କି ଦେଇଛନ୍ତି ଗୋଟିଏ କୋମଳ ଆବରଣ । ତା’ପରେ ତାକୁ ଫିତାରେ ବାନ୍ଧି ନିଜ ଅକ୍ତିଆର୍‌ରେ ନ ରଖିଲେ କେଉଁଠି ରାସ୍ତାଘାଟରେ ଯାନବାହନ ମାଡ଼ିଯିବ । ଯେତେ ସ୍ନେହ ଦେଇ ପାଳିଲେ ବି ଏଇ ଦୁଷ୍ଟ ଉଗ୍ର ଜନ୍ତୁଗୁଡ଼ାକ ତାଙ୍କ ହିଂସ୍ର ସ୍ୱଭାବ, ଚପଳ ପ୍ରକୃତି ସହଜରେ ଛାଡ଼ନ୍ତିନି । ହୁଏତ କାହା ଉପରକୁ କେଉଁଠି ଲମ୍ଫ ଦେବେ, କାହାକୁ କୌତୁକରେ ଖୁଙ୍କ୍ ଖୁଙ୍କ୍ କାମୁଡ଼ି ଦେବେ । ତେଣୁ ତାଙ୍କ ପ୍ରତି ଟିକିଏ ସାବଧାନ ଦୃଷ୍ଟି ଦେବା ଉଚିତ । ତା’ ବେଶ୍ ଦେଉଥାନ୍ତି ସେ ମହାଶୟା ମହିଳାଟି ।

ହଠାତ୍ ରାସ୍ତା ଉପରେ ଗୋଟାଏ ଘଁ-ଘଁ ଶବ୍ଦ ଶୁଣାଯିବାରୁ ଆଖି ତେଣିକି ଟାଣି ହୋଇଗଲା । ଦେଖିଲି ଗୋଟିଏ ମଟରଯାନ (delivery van) ଆମ ଆଡ଼କୁ ଜୋର୍‌ରେ ମାଡ଼ି ଆସୁଚି । ଇମିତି ଗୋଟାଏ ଯାନ ଆମ ଶ୍ରୀକାନ୍ତବାବୁଙ୍କ ମାର୍ଫତ ଥାଏ । ସେଥିରେ ସେ ତାଙ୍କ ବ୍ୟବସାୟୀ ମାଲିକ ଶ୍ରୀଯୁକ୍ତ ଜଲାଲଙ୍କର ରସେଲ ସ୍କୋୟାରରେ ଥିବା ତେଜରାତି ଦୋକାନରୁ ବିଭିନ୍ନ ସଉଦା ନେଇ ଗ୍ରାହକମାନଙ୍କ ଘରେ ଦେଇଆସନ୍ତି । ବେଶ୍ ସୁବିଧାଜନକ ବ୍ୟବସ୍ଥା । ଆମ ଦେଶ ପରି କ’ଣ ରିକ୍‌ସା ବା ମୁଣ୍ଡ ବୋହିଆ ଅଛନ୍ତି ଯେ ଯେଉଁଠି ଦରକାର ହେବ ବ୍ୟବହାର କରିବେ ! ଆମ୍ଭେମାନେ ଶ୍ରୀକାନ୍ତବାବୁଙ୍କ ଅନୁଗ୍ରହରୁ ଏହି ମଟରଯାନ ବା ସଉଦା ଭ୍ୟାନ୍‌ରେ ବସି ଦିବାବିହାର ବା ସାନ୍ଧ୍ୟ ବିହାରରେ ବାହାରୁ । ହେଲେ ଶ୍ରୀକାନ୍ତବାବୁ ସେ ଗାଡ଼ିକୁ ବଡ଼ ସାବଧାନ ଭାବରେ ଚଳାନ୍ତି । କିନ୍ତୁ ଏଇଟା ଏପରି ବୀର ଦର୍ପରେ ମାଡ଼ି ଚାଲିଚି କାହିଁକି ? କେଉଁଠି ଦୁର୍ଘଟଣା ଘଟାଇବନି ତ !

ଘଁ ଘଁ ଶବ୍ଦ କରି ଗାଡ଼ିଟା ଜେବ୍ରା କ୍ରସିଂ ପାଖେ ଅଟକିଗଲା । କି ତୀବ୍ର ଚିତ୍କାର ! ହେଲେ ଅଟକିଗଲା କାହିଁକି ? ଓ, ଆଗରେ ନାଲି ଆଲୁଅ । କିନ୍ତୁ ଏମାନେ ଏପରି ପାଟିତୁଣ୍ଡ କରୁଚନ୍ତି କାହିଁକି ? ଗାଡ଼ି ଚାଳକ ଓ ତାଙ୍କ ପାଖରେ ବସିଥିବା [illegible]

ଏକେବାରେ ଗାଡ଼ିର ଶବ୍ଦ ସହିତ ତାଳଦେଇ ଗୁଞ୍ଜନ ପରି ମନେ ହେଉଥିଲା । କ'ଣ କଲ ନା ପ୍ରେମ-ସମ୍ଭାଷଣ ! ନା, କଳ । ଗାଡ଼ି ବନ୍ଦ ହେଲେ ବି ପାଟି ବନ୍ଦ ହେଉନ । ରାଗରେ ମୁହଁ ଫାଟିପଡ଼ୁଚି । ବୋଧହୁଏ କିଛି ଫୁର୍ତ୍ତି ବା ମଉଜ କରିବାକୁ ବାହାରିଥିଲେ । ପୁଣି ବିଗିଡ଼ିଗଲା କ'ଣ ? କିଛି ମନୋମାଳିନ୍ୟ ଘଟିଥିବ । ପୀରତିପଥ ଖସଡ଼ା ! ଶେଷରେ ଯୁବକ ଜଣକ, Go to hell, ନରକକୁ ଯାଅ କହି ଗାଡ଼ିର ଦୁଆର ଖୋଲିଦେଲେ । ଏକଦମ୍ ନରକକୁ ଠେଲିଦେଲେ ! ଯୁବତୀଟି ରାଗ ତମତମ ହୋଇ ତାଙ୍କ ବନ୍ଧୁଙ୍କୁ କ'ଣ ଦି' ଚାରି ପଦ ହାଙ୍କିଦେଲେ । ଆମ ଦେଶର ବୁଦ୍ଧ ପରି ଇଂଲିଶ୍ ଭାଷାରେ ଗାଳିଦେବା ଭାରି ଭଲ ଲାଗେ । ଖାଲି ଠୋ ଠା ଶୁଭୁଥାଏ ଶବ୍ଦଗୁଡ଼ାକ ।

ଏତିକିବେଳେ ଆମ କ୍ୟୁରେ ଠିଆ ହୋଇଥିବା ଜଣେ ମଧ୍ୟବୟସ୍କ ଲୋକ ଦ୍ରୁତ ବେଗରେ ମାଡ଼ିଯାଇ ଝିଅଟିର ହାତଧରି ଆଗେଇ ଆଣିଲେ କେତେ କ'ଣ ଚୁପ୍ ଚୁପ୍ ମଧୁରିଆ କଥା କହି । ଦୁହେଁ ଆସି ଆମ ଲାଇନ୍‌ରେ ଠିଆ ହେଲେ । ଆମ ବସ୍ ଆଜି ଏତେବେଳ ଯାଏ ଗଲା କୁଆଡ଼େ ? ଯେଉଁମାନେ କ୍ୟୁରେ ଅପେକ୍ଷା କରିଥିଲେ ସେମାନଙ୍କ ଭିତରୁ ଅନେକେ ଅନ୍ୟ ବସ୍‌ରେ ଗଲେଣି । କଣ ପାଇଁ ଏତେ ବିଳମ୍ବ ? ମୋର ଆଜି କେତେ ଆଡ଼େ ଯିବାର କଥା, କେତେ କଣ ଦେଖିବାର ଇଚ୍ଛା । କିନ୍ତୁ ମୂଳରୁ ଇମିତି ଗୋଳମାଳ ହେଲାଣି । କଣ କରିବା ? କଥାରେ କହନ୍ତି କାମ ନଥିଲେ କାଶ । କାଶୁଥାନ୍ତି ବି ଦି' ଚାରି ଜଣ କ୍ୟୁରେ ଠିଆ ହୋଇ । କଣ ହେଇଚି ଯା'ଙ୍କର, କାଶ-ସର୍ଦ୍ଦି ? ହେଇଥିବ । ଥଣ୍ଡା ଦେଶ, ଏଠାକାର ପବନରେ ବହୁ ଆବର୍ଜନା, କୋଇଲା ଗୁଣ୍ଡ, ଚିମିନି ଧୂଆଁ, ପେଟ୍ରୋଲ ଗ୍ୟାସ୍ ଆଦି ଭରି ରହିଚି । ସେଥିରୁ ଗୁଡ଼ାଏ ନାକ, ପାଟିରେ ପଶି କାଶକଫ ତ ସୃଷ୍ଟି କରିବ । ମୁଁ ମୋ କଣ୍ଠ ନାଳୀଟା ପରୀକ୍ଷା କରିବାକୁ ଗୋଟିଏ ଖଙ୍କାରି ଖାଇ ଦେଲି । ନା, ମୁଁ ଠିକ୍ ଅଛି ।

ଯେଉଁ ଯୁବତୀଟି ସେ ମାଲବୁଢ଼ା ଭ୍ୟାନରୁ ଆସି ଆମ ଲାଇନ୍‌ରେ ଠିଆ ହୋଇଥିଲେ ତାଙ୍କୁ ଟିକିଏ ଚାହିଁ ଚାହିଁ କରି ଲକ୍ଷ୍ୟ କଲି, ଅବଶ୍ୟ, ବହୁ ସାବଧାନତା ସହକାରେ । କାରଣ ବିଲାତରେ କାହାକୁ ବହୁ ସମୟ ଧରି ସିଧା ଚାହିଁବା ଶାଳୀନତାବିରୁଦ୍ଧ । ବିଲାତରେ କାହିଁକ- ?

ସବୁଠାରେ ଏଇଟା ନିଷ୍ଠୁର ଦୋଷାବହ । କିଏ ଏ ବିଲାତ ବାଲା ? କିଏ ସେମାନଙ୍କର ଶିକ୍ଷା ଦୀକ୍ଷା ? ଦେଖିଲି ତାଙ୍କ ମୁହଁରୁ ରାଗ, ଅଭିମାନ ପୂରା ଲିଭେଇ ଯାଇଚି । ହସହସ ସରସ ମୁହଁରେ ତାଙ୍କ ଦ୍ୱିତୀୟ ବାନ୍ଧବଙ୍କ ହାତରେ ହାତ ମିଶାଇ ଠିଆ ହୋଇଚନ୍ତି । ବେଶୀ ଗପସପ ନାହିଁ । କିନ୍ତୁ ମନ ବେଶ୍ ପ୍ରଫୁଲ୍ଲ । ବାଃ, ଏମାନଙ୍କ ଢଙ୍ଗରଙ୍ଗ ଅନେକଟା ଏ ଦେଶର ଜଳବାୟୁ ସହିତ ଖାପ୍ ଖାଇଯାଉଚି । ସାଙ୍ଗେ ସାଙ୍ଗେ ଘନକୃଷ୍ଣ ମେଘମାଳା ଆକାଶରେ ଭରିଯାଇ ବର୍ଷା ହେଉଚି । ପରେ ପରେ ସବୁ ସଫା, ନିର୍ମଳ !

ଗୋଟିଏ କଥା ମୁଁ ଲକ୍ଷ୍ୟ କଲି ଏଇ ଯେ ଜନପଥରେ ଗୋଟିଏ ତ୍ରିଭୁଜକାଟର ନାଟକ ଅଭିନୀତ ହୋଇଗଲା, ସେଇଟା ଯେମିତି ଆମ ଦୃଶ୍ୟ-ପ୍ରେକ୍ଷାଳୟରେ କୌଣସି ପ୍ରଭାବ ପକାଇଲାନି । କିଏ ଟିକିଏ ଭ୍ରୂକୁଟୀ କଲା, କିଏ କଣ ଗୁଣୁ ଗୁଣୁ ହୋଇ ସ୍ୱଗତ ବଚନିକା କଲା । ବାକି ସମସ୍ତେ ଧୀର ଶାନ୍ତ, ଯେମିତି କିଛି ଘଟିନି । କି କଥା ଏ । ପ୍ରେମ ପର୍ବର ଏପରି ଗୋଟାଏ ଝଗଡ଼ାଝାଣ୍ଟି ଏଠି ବୋହିଗଲା କିନ୍ତୁ ଏମାନଙ୍କର କୌଣସି ପ୍ରତିକ୍ରିୟା ପ୍ରକାଶ ପାଇଲାନି । ଆମ ଦେଶ ହୋଇଥିଲେ ଉଠିଥାନ୍ତା ମଜା ! ଧର ଶାଳାକୁ ମାର ଶାଳାକୁ କହି କେତେ ଏ ପ୍ରେମବହ୍ନିରେ ଝାସ ଦେଇଥାନ୍ତେ । ଏମାନଙ୍କର ଏ ସବୁ ଦେହସହା ହୋଇଗଲାଣି ବୋଧହୁଏ । ଏଇ ତ ଏ ଦେଶର ଚଳଣି । ଯୁବକଯୁବତୀମାନେ ପରସ୍ପର ସହିତ ଖୋଲାଖୋଲି ପ୍ରେମ କରନ୍ତି । ବେଳ ଆସିଲେ ବିବାହ ବନ୍ଧନରେ ବାନ୍ଧି ହୁଅନ୍ତି । ଆମ ଦେଶ ପରି ନିବିଡ଼ ବନ୍ଧନ ନୁହେଁ । ବେଶ୍ ପତଳା, ହାଲୁକା । ଦରକାର ବେଳେ ଖୁବ୍ ସହଜରେ ଛିଣ୍ଡେଇ ହୁଏ, ଛାଡ଼ପତ୍ର ମାଧ୍ୟମରେ ।

ଟିକେ୍ କଟିଥାଏ ଟ୍ରାଫାଲଗାର ସ୍କୋୟାର ପର୍ଯ୍ୟନ୍ତ ବସ୍‌ରେ ଯାଇ ସେଠାରୁ ଯୁଆଡ଼େ ଇଚ୍ଛା ସିଆଡ଼େ ଗୁଡ଼ାଏ ବୁଲିବି । ହଁ, ଗୁଡ଼ାଏ ବୁଲିବି ! କାମ୍‌ଡେନ୍ ଟାଉନ୍ ଦେଇ ବସ ଚାଲିଥାଏ । ମୁଁ ଚାରିଆଡ଼କୁ ବିକଳ ହୋଇ ଦୃଷ୍ଟି ପକାଉଥାଏ । କେଉଁଠି କଣ ସୁଦୃଶ୍ୟ କି କୁଦୃଶ୍ୟ ଦେଖିବାକୁ ମିଳିବ । ପଦପଥ (footpath)ରେ ବହୁତ ଲୋକ ଯିବା ଆସିବା କରୁଥାନ୍ତି । ଚାଲିଥାନ୍ତି ହଳେ ହଳେ ଦମ୍ପତି, ପ୍ରେମିକପ୍ରେମିକା

ବୋଧହୁଏ କୌଣସି ପାର୍କରେ ଆନନ୍ଦ-ଉଲ୍ଲାସ କରିବାକୁ । ପୁରୁଷ ଲୋକଟି ଗୋଟିଏ ବ୍ୟାଗରେ କିଛି ଜିନିଷ ପୂରେଇ ଧରିଥାନ୍ତି ଗୋଟିଏ ହାତରେ, ଅନ୍ୟ ହାତଟି ଶ୍ରୀମତୀଙ୍କ କରକମଳରେ ଛନ୍ଦା ହୋଇଥାଏ । ବେଶ୍ ଖୁସି ଗପ ଜମିଉଠିଛି । ଅଳ୍ପ କେତେ ଜଣଙ୍କୁ ଛାଡ଼ି ଦେଲେ ଅନ୍ୟମାନଙ୍କ ସାଙ୍ଗରେ ପିଲାଝିଲା କେହି ନଥାନ୍ତି । ସେମାନଙ୍କର କଣ ପିଲାଝିଲା ନାହାନ୍ତି ? ନଥିବେ କାହିଁକି ! ତାଙ୍କୁ ଘରେ ଛାଡ଼ିଦେଇ ଆସିଥିବେ, କି କୌଣସି ପିଲା ଜଗୁଆଳି (baby-sitter)ଙ୍କ ମାର୍ଫତରେ ତାଙ୍କୁ ରଖିଥିବେ । କିମ୍ବା ସେମାନେ ରହୁଥିବେ କୌଣସି ସ୍କୁଲ୍-ଛାତ୍ରାବାସ (Boarding School)ରେ । ବିଲାତରେ ଏ ବ୍ୟବସ୍ଥାଟା ବେଶ୍ ଚାଲେ । ସ୍ୱାମୀସ୍ତ୍ରୀମାନେ ପିଲାପିଲିଙ୍କ ଗୋଳମାଳରେ ଆଦୌ ପଡ଼ନ୍ତିନି । ସେମାନେ ତାଙ୍କ ଆୟା, ନର୍ସ, ଶିକ୍ଷୟିତ୍ରୀଙ୍କୁ ଆଶ୍ରା କରି ଚଳନ୍ତି । ଅନେକ କ୍ଷେତ୍ରରେ ପିଲାମାନଙ୍କ ସଙ୍ଗେ ଦେଖାହୁଏ, ପ୍ରାତଃଭୋଜନ (breakfast) ବା ରାତ୍ରିଭୋଜନ (dinner) ବେଳେ । ନୋହିଲେ ଅନ୍ୟ ସମୟରେ ସେମାନେ ବାପମାଙ୍କଠାରୁ ଅଲଗା । ଅବଶ୍ୟ ଗରିବ ଶ୍ରେଣୀ ଲୋକଙ୍କର ଯାହାଙ୍କର ଆୟା, ନର୍ସ, ପରିଦର୍ଶିକା (governess) ରଖିବାର କ୍ଷମତା ନଥାଏ ସେମାନେ ତାଙ୍କ ପିଲାମାନଙ୍କୁ ବେଶୀ ସମୟ ଦେଖିବାର, ସେମାନଙ୍କ ପ୍ରତି ଅଧିକ ଦୃଷ୍ଟି ଦେବାର ସୁବିଧା ପା'ନ୍ତି ।

ବିଲାତର ସ୍କୁଲମାନଙ୍କରେ ଛାତ୍ରଛାତ୍ରୀଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟର ବ୍ୟବସ୍ଥାଟା ଖୁବ୍ ଉଚ୍ଚ ଧରଣର । ସେଠାରେ ଶିକ୍ଷକଶିକ୍ଷୟିତ୍ରୀଙ୍କ ବ୍ୟତୀତ ସ୍କୁଲର ଡାକ୍ତର, ଦନ୍ତ-ଚିକିତ୍ସକ ଓ ଧାତ୍ରୀମାନେ ପିଲାମାନଙ୍କର ଯତ୍ନ ନିଅନ୍ତି । ଦରକାର ହେଲେ, ଅନ୍ୟ ଡାକ୍ତରଖାନାରେ ଛାତ୍ରଛାତ୍ରୀମାନଙ୍କର ଯେପରି ଚିକିତ୍ସା କରାଯାଇପାରିବ ତା'ର ବ୍ୟବସ୍ଥା ବି ଅଛି । ରୋଗରୁ ଆରୋଗ୍ୟ ଲାଭ କଲା ପରେ ପିଲାମାନେ ସମୁଦ୍ର କୂଳର କୌଣସି ସ୍ୱାସ୍ଥ୍ୟକର ଜାଗାକୁ ଯାଇ ଯେପରି ତାଙ୍କ ସ୍ୱାସ୍ଥ୍ୟର ଉନ୍ନତି କରିପାରିବେ ସେସବୁର ଆୟୋଜନ କରାଯାଏ । ପିଲାଟା ନିହାତି ଦୁର୍ବଳ ବା ସ୍ୱାସ୍ଥ୍ୟହୀନ ହେଲେ ତାକୁ ଏପରି ଛାତ୍ରଛାତ୍ରୀଙ୍କ ପାଇଁ ଉଦ୍ଦିଷ୍ଟ କୌଣସି ଆବାସ ବିଦ୍ୟାଳୟ (Residential School)କୁ କେତେ ବର୍ଷ ପାଇଁ ପଠାନ୍ତି । ତା'ଠାରେ ଯଦି କୌଣସି ବ୍ୟବହାରଗତ ଅଲକ୍ଷଣ ଦେଖାଯାଏ ତେବେ ସେ

ସେଥିପାଇଁ ଥିବା ସ୍ୱତନ୍ତ୍ର ଡାକ୍ତରଖାନାରେ ଚିକିତ୍ସିତ ହୁଏ ଏବଂ ସେଠାରୁ ଅସ୍ୱାଭାବିକ ପ୍ରକୃତିର ପିଲାଙ୍କ ପାଇଁ ତିଆରି ହୋଇଥିବା ବିଦ୍ୟାଳୟକୁ ଯାଏ । ଅନେକ ସ୍କୁଲରେ ପିଲାମାନଙ୍କୁ ସକାଳେ କ୍ଷୀର ପିଇବାକୁ ଦିଆଯାଏ ଓ ଖିଆବେଳେ ଖାଦ୍ୟ ଖାଇବାକୁ ମିଳେ । ଯଦି ପିଲା-ମାନଙ୍କର ବାପମା ବା ଅଭିଭାବକମାନଙ୍କର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନଥାଏ ତେବେ ପିଲାମାନଙ୍କର ପିନ୍ଧିବା ଜୋତା ଓ ବେଶପୋଷାକ ବିଦ୍ୟାଳୟ ତରଫରୁ ବ୍ୟବସ୍ଥା କରାଯାଏ । ପିଲାମାନେ କିପରି ଓ କେଉଁଠି ସନ୍ଧ୍ୟାରେ ଖେଳାଖେଳି କରିବେ ଓ କୌଣସି ଯୁବ ସଂସ୍ଥା (Youth Club)ରେ ଭର୍ତ୍ତି ହେବେ ସେସବୁ ପ୍ରତି ସ୍କୁଲ କର୍ତ୍ତୃପକ୍ଷ ଦୃଷ୍ଟି ଦିଅନ୍ତି ଏବଂ ସେମାନେ ଯଦି ସ୍କୁଲଠାରୁ ଦୂରରେ ରହନ୍ତି ତେବେ ତାଙ୍କର ବସ୍ ବା ରେଲ ଭଡ଼ା ଦିଅନ୍ତି । ସେମାନେ ଜୀବନରେ କେଉଁ ବୃତ୍ତି ଅବଲମ୍ବନ କରିବେ ସେଥିପାଇଁ ସ୍କୁଲରେ ପଢ଼ୁଥିବା ବେଳେ ତାଙ୍କ ସହିତ ମଝିରେ ମଝିରେ ଦେଖା ସାକ୍ଷାତ ହୁଏ ଏବଂ ସ୍କୁଲ ଛାଡ଼ିଲା ବେଳେ ଜୀବିକାର୍ଜନ ପାଇଁ କେଉଁ ବୃତ୍ତି ସେ ବାଛିବେ ସେ ସମ୍ବନ୍ଧରେ ତାଙ୍କୁ ପରାମର୍ଶ ଦିଆଯାଏ । ଯଦି ସେମାନେ ଠିକ୍ ସମୟରେ ପରୀକ୍ଷାରେ ଉତ୍ତୀର୍ଣ୍ଣ ନହୋଇପାରନ୍ତି ତେବେ ସେମାନଙ୍କର ବାପ ମା' ଅଭିଭାବକଙ୍କର ସ୍ୱଳ୍ପ ଆୟ ଥିଲେ ପଢ଼ା ସରିବା ପର୍ଯ୍ୟନ୍ତ ସେମାନଙ୍କୁ ସ୍କୁଲରୁ କିଛି କିଛି ଭତ୍ତା ମିଳେ । ପିଲା ଭଲ ପଢ଼ୁଥିଲେ ତାହାର ଉଚ୍ଚ ଶିକ୍ଷା ପାଇଁ ତାକୁ ବୃତ୍ତି ମିଳେ । ପିଲାମାନଙ୍କୁ ଖେଳ କସରତରେ ଦକ୍ଷତା ହାସଲ କରିବାକୁ ତାଲିମ୍ ଦିଆଯାଏ ଏବଂ ସେମାନେ ଯେମିତି ମଝିରେ ମଝିରେ କୌଣସି ସଙ୍ଗୀତ ଆସର ବା ଯାତ୍ରା ଥିଏଟର ଦେଖି ପାରିବେ ତାର ବ୍ୟବସ୍ଥା କରାଯାଏ । ପିଲାମାନେ ସେମାନଙ୍କ ସାଥୀମାନଙ୍କ ସହିତ ବାହାରକୁ ଏବଂ ସମ୍ଭବ ହେଲେ ବିଦେଶକୁ ପରିଭ୍ରମଣରେ ଯାନ୍ତି ।

ମୋଟାମୋଟି କହିବାକୁ ଗଲେ ବିଲାତର ସ୍କୁଲ ଶିକ୍ଷା ବ୍ୟବସ୍ଥା ଖୁବ୍ ବ୍ୟାପକ । ଛାତ୍ରଛାତ୍ରୀମାନଙ୍କର କିପରି ସମ୍ପୂର୍ଣ୍ଣ ମାନସିକ ବିକାଶ ଘଟିବ, ଶିକ୍ଷା ବ୍ୟବସ୍ଥା କିପରି ପିଲାମାନଙ୍କୁ କେନ୍ଦ୍ର କରି ଗଢ଼ିଉଠିବ, ସରକାରୀ ଓ ବେସରକାରୀ ବ୍ୟବସ୍ଥାର କିପରି ସମନ୍ୱୟ ରଖାଯିବ, ଛାତ୍ରଛାତ୍ରୀଙ୍କ ସ୍କୁଲଜୀବନ ଏବଂ ଗୃହଜୀବନ ମଧ୍ୟରେ କିପରି ଘନିଷ୍ଠ

ସମ୍ପର୍କ ରଖିପାରିବ ଏବଂ ସେସବୁ କିପରି ପରସ୍ପରର ଉନ୍ନତି ପାଇଁ ସାହାଯ୍ୟ କରିପାରିବେ ସେଥିପାଇଁ ପ୍ରଗାଢ଼ ଉଦ୍ୟମ ଚାଲୁରହିଛି । କେବଳ ପ୍ରାଥମିକ ଶିକ୍ଷା ନୁହେଁ ସାଧାରଣ ମାଧ୍ୟମିକ ଓ କାରିଗରି ମାଧ୍ୟମିକ ଶିକ୍ଷାର ବ୍ୟବସ୍ଥା ବିଲାତରେ ଖୁବ୍ ଉନ୍ନତ ଓ ବ୍ୟାପକ । ଅଭିଭାବକମାନଙ୍କର ଆର୍ଥିକ ଅବସ୍ଥା ଯାହା ହେଉନା କାହିଁକି ଛାତ୍ରଛାତ୍ରୀ-ମାନେ ଯେପରି ସେମାନଙ୍କର ସମ୍ୟକ୍ ଉନ୍ନତି କରିପାରିବେ ଏବଂ ଶିକ୍ଷା କ୍ଷେତ୍ରରେ ଯେମିତି ସେମାନଙ୍କ ଆର୍ଥିକ ବା ସାମାଜିକ ଅବସ୍ଥା ଯୋଗୁଁ କୌଣସି ତାରତମ୍ୟ ନ ରହିବ ସେଥିପାଇଁ ସବୁ ପ୍ରକାର ଚେଷ୍ଟା କରାଯାଇଛି । ବାସ୍ତବିକ୍ ବିଲାତର ପ୍ରାଥମିକ ଓ ମାଧ୍ୟମିକ ସ୍କୁଲଗୁଡ଼ିକ ସେ ଦେଶବାସୀଙ୍କର ଆଶା-ଆକାଙ୍କ୍ଷାର ଏକ ମହାନ୍ ପୀଠ ରୂପେ ଗଢ଼ି ଉଠିଚନ୍ତି । ବିଖ୍ୟାତ ଔପନ୍ୟାସିକ ସରଲକ୍ ହୋମସ୍ ଓକଂରୁ ଓ୍ୱାଟରଲୁ ପର୍ଯ୍ୟନ୍ତ ରେଲ୍‌ଯାତ୍ରା କଲା ସମୟରେ ଏହି ସ୍କୁଲମାନଙ୍କ ସମ୍ବନ୍ଧରେ ଏକ ଚମତ୍କାର ବର୍ଣ୍ଣନା ଦେଇଛନ୍ତି । ସେ କହିଚନ୍ତି, ଏହି ବଡ଼ ବଡ଼ ଏକପାଖିଆ ବିଦ୍ୟାଳୟର ଗୃହଗୁଡ଼ିକ ଯେପରି ବିଭିନ୍ନ କିସମର ଅଟ୍ଟାଳିକା ଓ ବସତି ସମୁଦ୍ର ମଧ୍ୟରେ ଇଟାର ଦ୍ୱୀପ ପରି ମନେହୁଅନ୍ତି । ଏଗୁଡ଼ିକ ଗୋଟିଏ ଆଲୋକ ମନ୍ଦିର ଯହିଁରେ ଉନ୍ନତିର ମଞ୍ଜି ସ୍ୱରୂପ ଶତ ଶତ କୋମଳମତି ଛାତ୍ରଛାତ୍ରୀ ଅଧ୍ୟୟନ କରନ୍ତି ଯେ କି ଦିନେ ତହିଁରୁ ବିଜ୍ଞ ଓ ପ୍ରବୀଣ ହୋଇ ବାହାରି ବିଲାତର ମୁଖ ଉଜ୍ଜ୍ୱଳ କରିବେ ଓ ତାହାର ଆଶା ଆକାଙ୍କ୍ଷା ପୂରଣରେ ସହାୟକ ହେବେ । ସତରେ ବଡ଼ ଚମତ୍କାର ଏଠାକାର ପ୍ରାଥମିକ ଓ ମାଧ୍ୟମିକ ଶିକ୍ଷାର ବ୍ୟବସ୍ଥା । ଏପରି ସ୍କୁଲମାନଙ୍କ ଦାୟିତ୍ୱରେ ପିଲାମାନଙ୍କୁ ଛାଡ଼ି ଦେଲେ ବାପ ମା', ଅଭିଭାବକମାନେ ଆଶ୍ୱସ୍ତ ଓ ସନ୍ତୁଷ୍ଟ ରହିବା ସ୍ୱାଭାବିକ ।

ଏମିତି କେତେ ଦିନ ଭାବି ମୁଁ ବସ୍-ବାହନରେ ଚାଲିଥାଏ । ଟ୍ରାଫିକଗାର ସ୍ଟୋପ୍‌ରେ ଆସିଯିବାର ସଙ୍କେତ ଦେଖିପାରି ମୁଁ ତରତରରେ ଓହ୍ଲାଇପଡ଼ିଲି । ବିଲାତରେ ବସରେ ଉଠିବା, ଓହ୍ଲାଇବା ଅନେକ ସମୟରେ ବଡ଼ କଷ୍ଟକର ବ୍ୟାପାର ହୋଇପଡ଼େ । ବସ୍ ଚାଳକମାନଙ୍କ ମଧ୍ୟରେ ଅନେକେ କଳାଲୋକ, ନିଗ୍ରୋ ଥାଆନ୍ତି । କିନ୍ତୁ ସେ କଳା ଲୋକ ହୁଅନ୍ତୁ କି ଗୋରା ଲୋକ ହୁଅନ୍ତୁ ସମସ୍ତେ ଖୁବ୍ ବେପରୁଆ ଭାବରେ ଗାଡ଼ି

ଚଳାନ୍ତି ଏବଂ ଅଟକି ଯିବା ସମୟରେ ଖୁବ୍ ଜୋରରେ ବ୍ରେକ୍ ଦିଅନ୍ତି । ଛାଡ଼ିଲା ବେଳେ ହଠାତ୍ ଛାଡ଼ିଦିଅନ୍ତି । ସାବଧାନ ନଥିଲେ ପଡ଼ିଯିବାର, ଛଟପଟାଙ୍ଗ ମାରିବାର ଖୁବ୍ ସମ୍ଭାବନା ।

ଥରେ ଏମିତି ଅସୁବିଧାରେ ପଡ଼ିଥିଲି । କେଉଁଠି ତରତରରେ ବସ୍‌ରେ ଉଠିଲାବେଳକୁ ଡ୍ରାଇଭର ମହାଶୟ ହଠାତ୍ ଜୋରରେ ଗାଡ଼ି ଛାଡିଦେଲେ । ଲଥ୍‌ଦଶେ ତଳକୁ ଖସି ପଡ଼ିଲି । ଦୈବାତ୍ ହାତ ପଡ଼ିଗଲା ବସ୍‌ର ପ୍ରବେଶ ଦ୍ୱାରରେ ଥିବା ଲୁହାବାଡ଼ା ଉପରେ । ପିଲାଦିନେ Bar Exercise କରୁଥିଲି । ଦେହର ଯାବତୀୟ ଶକ୍ତିକୁ ହାତରେ ପ୍ରୟୋଗ କରି ସେ ବାଡ଼କୁ ଏପରି ଜାବୁଡ଼ି ଧରିଲି ଯେ ବସ୍ ସାଙ୍ଗରେ ଦୁଇ ଗୃହିହାତ ଘୋଷାରି ହୋଇଗଲେ ବି ତାକୁ ମୁଁ ନଛାଡ଼େ । ହେଲେ ବିକଳରେ ଆର୍ତ୍ତନାଦ କରିଉଠିଲି । ଚକତଳେ ଗୃପିହୋଇ ପ୍ରାଣଟା ଚାଲିଯିବ କି ! ବସ୍ ଭିତରୁ କ୍ଷୀଣ କଣ୍ଠରେ ବି ଅଭିଯୋଗର ସ୍ୱର ଉଠିଲା । ବସ୍ ଅଟକିଗଲା । ଓ ! ରକ୍ଷା ମିଳିଲା । ଅବଶ୍ୟ ଆମ ଦେଶରେ ବିଶେଷତଃ ବମ୍ବେ, କଲିକତା ପ୍ରଭୃତି ବଡ ବଡ ସହରମାନଙ୍କରେ ଏପରି ଅନୁଭୂତି ବିରଳ ନୁହେ ! ତଥାପି ବିଦେଶରେ ଏ ବିଚିତ୍ର ଅନୁଭୂତି ଗୁଡ଼ାକ ଯେମିତି ମନପ୍ରାଣରେ ଅଧିକ ଭୟର ସଞ୍ଚାର କରେ ।

ଟ୍ରାଫଲଗାର ସ୍କୋୟାର ଲଣ୍ଡନର ଏକ ଚୋକ ଯାଗା । ଏହାର କେନ୍ଦ୍ରସ୍ଥଳରେ ୧୮୫ ଫୁଟ୍ ଉଚ୍ଚାର ଏକ ବିରାଟ ସ୍ତମ୍ଭ ଅବସ୍ଥିତ । ତାର ମୂଳରେ ସିଂହ ମୂର୍ତ୍ତି, ଅଗ୍ରଦେଶରେ ମହାବୀର ନେଲସନ୍‌ଙ୍କ ପ୍ରତିକୃତି ବିଦ୍ୟମାନ । ପାଖରେ ଥିବା କେତୋଟି କୃତ୍ରିମ ଝରଣାର କଳ କଳ ଶବ୍ଦ ଶୁଣା ଯାଉଥାଏ । ନିକଟରେ ଅବସ୍ଥିତ ଜାତୀୟ ଚିତ୍ରଶାଳା (National Gallery)ର ପାହାଚରୁ ଚାହିଁଲେ ଏହି ନେଲସନ୍ ସ୍ତମ୍ଭ ଓ ଝରଣାସବୁ ଖୁବ୍ ସୁନ୍ଦର ଦେଖାଯାନ୍ତି । ଏହି ସ୍ତମ୍ଭ ପାଖରେ ପଲ ପଲ ପାରା ବସିଥାନ୍ତି ଓ ପଡିଥିବା ଶସ୍ୟଦାନାକୁ ଖୁଣ୍ଟି ଖାଉଥାନ୍ତି । ଦେଖଣାହାରୀ ବହୁତ ଜୁଟନ୍ତି । ସେମାନେ ସାଙ୍ଗରେ ଆଣିଥିବା ଶସ୍ୟଦାନା ପାରାଙ୍କ ପାଖକୁ ପକେଇଦେଉଥାନ୍ତି ଏବଂ ସେମାନେ ତାହାକୁ ମହା ଆନନ୍ଦରେ ଭକ୍ଷଣ

କରୁଥାନ୍ତି । ଡରଭୟ ସେମାନଙ୍କର କିଛି ନଥାଏ । ପୋଷା ପାରା ପରି ସେମାନେ ଅବାଧ୍ୟଭାବରେ ଆହାରବିହାର କରୁଥାନ୍ତି ଏବଂ ଆଗନ୍ତୁକ ଲୋକ ଯଦି କୌତୁକରେ ତାଙ୍କୁ ହାତ ଉଠେଇ ଉଡ଼େଇଦିଅନ୍ତି ସେମାନେ ଖଣ୍ଡିଏ ଉଡ଼ା ଦେଇ ଟିକିଏ ଦୂରକୁ ଚାଲିଯାଉଥାନ୍ତି । ତା'ପରେ ପୁଣି ଆସି ପଡ଼ିଥିବା ଶସ୍ୟଦାନା ଖୁଣ୍ଟନ୍ତି । ଲୋକଙ୍କ ହାତରୁ ବି ଏମିତି ଖାଇବା ଜିନିଷ ନେଇଯାଇ ଖାଇଯାଉଥାନ୍ତି । ଏଁ, ବଡ଼ ବିଚିତ୍ର ତ ! "ଜାଣି ନାହାନ୍ତି ଏହି ନରପ୍ରଭାବ । ତେଣୁ ତାଙ୍କର ଏମିତି ଅନାସ୍ଥା ଭାବ" !

ମନେ ପଡ଼ିଲା ଆମ ପୁରୀ ଇନ୍ଦ୍ରଦ୍ୟୁମ୍ନ ପୋଖରୀ କଇଁଛଙ୍କ କଥା । ମୁଢ଼ି, ଚୂଡ଼ା, କି କିଛି ମୁଆଁ ନେଇ ପାଣିରେ ପକେଇ ଦେଇ "କଡ଼ କଡ଼" ଡାକିଲେ ସେମାନେ ପାଖକୁ ଆସି ସେସବୁ ଖାଇଯିବେ । ସେମିତି ବଡ଼ ଦେଉଳରେ, ଲୋକନାଥ ପଦାରେ ପାଣ୍ଡି ମାଙ୍କଡ଼ଙ୍କ ପ୍ରାଦୁର୍ଭାବ । ସେମାନେ କୁଆଡ଼େ ଥିବେ, କାହା ହାତରେ ଖାଇବା ଜିନିଷ ଦେଖିଲେ ତାକୁ ଆସି ହାତରୁ ଝାମ୍ପି ନେବେ କଳ କୌଶଳ କରି, ବଳ ପ୍ରୟୋଗ କରି । କିନ୍ତୁ ଟ୍ରାଫଲଗାର ସ୍କୋୟାରର ପାରାମାନଙ୍କ କାର୍ଯ୍ୟକଳାପରେ ସେପରି ଔଦ୍ଧତ୍ୟ ନାହିଁ । ସେମାନେ ବଡ଼ ଧୀର ଶାନ୍ତ । ଏଥିରେ ବା ବୈଚିତ୍ର୍ୟ କଣ ଅଛି ? ବହୁକାଳ ମନୁଷ୍ୟମାନଙ୍କ ସାଙ୍ଗରେ ଅବାଧ୍ୟଭାବରେ ଚଳପ୍ରଚଳ ହୋଇ ଏକ ପ୍ରକାର ପୋଷା ମାନିଯାଇଛନ୍ତି । ତେଣୁ ସେମାନଙ୍କୁ ଡରୁନାହାନ୍ତି, ଖାତିର କରୁନାହାନ୍ତି ।

ଏଇ ଟ୍ରାଫଲଗାର ସ୍କୋୟାର ଲଣ୍ଡନର ପ୍ରାଣକେନ୍ଦ୍ର କହିଲେ ଅତ୍ୟୁକ୍ତି ହେବ ନାହିଁ । ନାନା ଆନନ୍ଦ-ଉତ୍ସବରେ ଲଣ୍ଡନବାସୀ ଏଇଠି ଏକତ୍ର ହୁଅନ୍ତି ଫୁର୍ତ୍ତି ଫାଜିଲାମି କରିବାକୁ । କୌଣସି ଆପତ୍ତି ଅଭିଯୋଗ ଥିଲେ ସେଥିପାଇଁ ଆନ୍ଦୋଳନ ଏଠିଠାରୁ ଆରମ୍ଭ ହୁଏ । ପ୍ରତିବର୍ଷ ଡିସେମ୍ବର ୩୧ ତାରିଖ ରାତିରେ ଏଠି ଗୋଟିଏ ବଡ଼ ମେଳା ହୁଏ ବିଗତ ବର୍ଷକୁ ବିଦାୟ ଦେବାକୁ ଓ ନୂତନ ବର୍ଷକୁ ସ୍ୱାଗତ କରିବାକୁ । ଏହିଦିନ ସନ୍ଧ୍ୟା ବେଳଠାରୁ ଏଠିକି ଆସ୍ତେ ଆସ୍ତେ ଲୋକ ଗଡ଼ନ୍ତି । ସେମାନଙ୍କ ଭିତରୁ ଅଧିକାଂଶ ମଦ ପିଇ ମଜଗୁଲ ହୋଇଥାନ୍ତି । ବେଶୀ ଆସନ୍ତି ଯୁବକ-ଯୁବତୀଦଳ । ସେଇମାନେ ବେଶ୍ ଫୁର୍ତ୍ତି କରନ୍ତି । ଯେମିତି ଆମ ବଡ଼ ଦେଉଳ ବେଢ଼ା ପ୍ରଦକ୍ଷିଣ କଲାବେଳେ ଭକ୍ତମାନେ

ତ୍ରିବେଣୀ କୁଣ୍ଡରେ ପଇସା ପକାଇ ସ୍ୱର୍ଗପ୍ରାପ୍ତିର ବ୍ୟବସ୍ଥା କରନ୍ତି ସେମିତି ଟ୍ରାଫଲଗାର ସ୍କୋୟାର ଝରଣାରେ ପେନି ପକାଇବା ପଦ୍ଧତି ପ୍ରଚଳିତ ଅଛି । ଧର୍ମ ଅର୍ଜନ ପାଇଁ ନୁହେଁ, ଫାଜିଲାମିରେ । ପେନି ପକେଇଦେଇ ତାକୁ ଖୋଜିବାରେ ଲାଗିଯାନ୍ତି, ସେ ଥଣ୍ଡା ପାଣିରେ ହାତ ପୂରେଇ ।

ରାତି ୧୨ଟା ବେଳକୁ ଭିଡ଼ ବଢ଼ିଯାଏ ଏବଂ ଜାଗାଟା ଲୋକାରଣ୍ୟ ହୋଇ ଉଠେ । ଓଃ, କି ଗୋଳମାଳ ! ଯେମିତି ସାରା ଲଣ୍ଡନ ସହରର ଲୋକ ସେଠି ରୁଣ୍ଡ ହୋଇଚନ୍ତି । ବିଲାତରେ ଗୋଟାଏ ଚଳଣି ଅଛି ଯେ ଏହି ରାତି ୧୨ଟା ବେଳେ ଯେତେବେଳେ ପୂର୍ବ ବର୍ଷର ପରିସମାପ୍ତି ଘଟେ ଏବଂ ଗୀର୍ଜାମାନଙ୍କ ଘଣ୍ଟାରେ ନୂତନ ବର୍ଷର ଆଗମନୀ ବାଜେ ସେତେବେଳଟା ଏକ ଶୂନ୍ୟ-ମୁହୂର୍ତ୍ତ (Zero hour) । ସେହି ସମୟରେ କୌଣସି ଆଇନ୍ କାର୍ଯ୍ୟକାରୀ ହୋଇପାରେନା । ତେଣୁ ବଜାରୀ-ଲଫଙ୍ଗାଙ୍କ ପାଇଁ ସେଇଟା ମହା ସୁବିଧା । ସେହି ସମୟରେ ଯେ ଯାହା ଭଣ୍ଡାମି, ଗୁଣ୍ଡାମି କରିବ ପୋଲିସ୍ ସେଇଟାକୁ ଧରିବେନି । ତେଣୁ ଏହି ଶୂନ୍ୟ ମୁହୂର୍ତ୍ତରେ ମହା ଗୋଳମାଳ, ଗଣ୍ଡଗୋଳ ଆରମ୍ଭ ହୋଇଯାଏ । କିଏ କାହାକୁ ଫୋପାଡ଼େ, କଚୁଡ଼େ, ପାଣିକୁଣ୍ଡରେ ନେଇ ପକାଏ ସେଥିରେ କିଛି ବାଧବିଘ୍ନ ନାହିଁ, ଚହଲା ଅଚହଲା ବାରଣ ନାହିଁ । କିଏ ଆହାହା, ଉହହୁ ହେଉଥାନ୍ତି । କିଏ ବଡ଼ ପାଟିରେ ଚିତ୍କାର କରୁଥାନ୍ତି । କିଏ ହସ ଖୁସିରେ ଗଡ଼ଯାଉଥାଏ ।

ଥରେ ମୁଁ ଏ ଉତ୍ସବରେ ଯୋଗ ଦେଇଥିଲି । ଗୋଟିଏ ଝରଣା ପାଖରେ ଠିଆ ହୋଇ ସେଠାକାର ଦୃଶ୍ୟ ଦେଖୁଥାଏ । କିଏ କାହାକୁ ଆଣି ସେ କୁଣ୍ଡରେ ପକେଇଦେଲା । ଥଣ୍ଡା ରାତିକୁ ବାକିର ପାଣି । ସେଥିରେ ପଡ଼ି ସେ ବିଚରା ଆର୍ତ୍ତନାଦ କରି ଉଠିଲା, ଗାଳି ଗୁଲଜ କରିଲା । ହେଲେ ଶୁଣୁଛି କିଏ ? ସମସ୍ତେ ହସଖୁସିରେ ଭୋଳ । ବେଶ୍ ଏ ଦୃଶ୍ୟ ଉପଭୋଗ କରୁଥାନ୍ତି । ମୁଁ ବି ଉପଭୋଗ କରୁଥାଏ । ହେଲେ ଟିକିଏ ଡର ମାଡୁଥାଏ କାଳେ କିଏ ଆସି ମୋ ଉପରେ ଆକ୍ରମଣ କରିବ ! ନା, ଏ ଦୁର୍ବୁଦ୍ଧି କିଏ କାହିଁକି କରିବ ? ଆମେ ବିଦେଶୀ ଲୋକ । ଏଠାରେ ସମସ୍ତେ ତ ପ୍ରାୟ ଆମର ଅଜଣା ଅଶୁଣା । ଯେ କେତେ ଜଣ

ଆମ ଭାରତୀୟ ଲୋକ ସେଠାକୁ ଯାଇଥାନ୍ତି ସେମାନେ ନିରୀହ ଭାବରେ କେଉଁଠି ଠିଆ ହୋଇଥାନ୍ତି ସେମିତି ଡର ଡର ଭାବରେ। ଡର କାହିଁକି ? ଆମ ଇଚ୍ଛା ବିରୁଦ୍ଧରେ କିଏ ଏମାନେ ଆମ ସାଙ୍ଗରେ ଲାଗିବେ ! ଆମେ ସ୍ୱାଧୀନ ଭାରତର ନାଗରିକ । ରାଜ୍ୟଗୋଷ୍ଠୀର ସଭ୍ୟ, ଗାନ୍ଧି-ନେହେରୁଙ୍କ ଦେଶ ଆମର...... ଇମିତି ଭାବୁଥାଏ । ହଠାତ୍ କେହି ଦୁଇଜଣ ଗୋରା ଯୁବକ ଆସି ମୋତେ ଧରିଲେ । ଧରିଲେ ନୁହେଁ ଶୂନ୍ୟେ ଶୂନ୍ୟେ ଉଠେଇଲେ । ଏ କିଏ, ଏ କିଏ ବୋଲି ଚିତ୍କାର କରି ଉଠିଲି, ନାନା ପ୍ରକାର ଧମକ ଚମକ ଦେଲି । ଗାଳିଗୁଲଜ କଲି । ହେଲେ କିଏ ଶୁଣୁଚି !

ସେମାନେ ବୀର ଦର୍ପରେ ମୋତେ ଟେକିନେଇ ସେ କୁଣ୍ଡରେ ପକେଇଦେଲେ । ମୁଁ ହାପୁ ହାପୁ କରିଉଠିଲି । ଦୁଃଖ ଓ ନୈରାଶ୍ୟରେ ମୋର ମନପ୍ରାଣ ଭରିଗଲା । ଓହୋ, କି ବିପଦ ! ବିଲାତକୁ ବିଦେଶାଗତ ବିଶେଷତଃ ଗ୍ରୀଷ୍ମପ୍ରଧାନ ଦେଶର ଲୋକଙ୍କୁ ସହଜରେ ଥଣ୍ଡା, ନିଉମୋନିଆ ଧରିନିଏ ବୋଲି ବନ୍ଧୁମାନେ କହିଥାନ୍ତି । ତେଣୁ ଖଣ୍ଡିଏ ପତଳା ସ୍ୱେଟର ସବୁବେଳେ ଦେହକୁ ଜଡେଇ ପିନ୍ଧିଥାଏ ଏବଂ ସେ ଯେତେ ମଇଳା ହେଲେ ବି ତାକୁ ଶ୍ରୀଅଙ୍ଗଛଡ଼ା କରେନି । କିନ୍ତୁ ମୁଁ ଯେ ତଥାକଥିତ ଗରମ ପୋଷାକ ଅଳ୍ପ ପଇସାରେ ତିଆରି କରି ପିନ୍ଧିଥିଲି ସେ ବିଲାତ ଶୀତକୁ ଯଥେଷ୍ଟ ନୁହେଁ । ତେଣୁ ସେ ଖୋଲା ଜାଗାଟାରେ ଦେହଟା କାଲୁଆ କାଲୁଆ ଲାଗୁଥିଲା । ମଝିରେ ମଝିରେ ଗୁଣ୍ଡିଭିତରୁ ଉଠୁଥିଲା ମଧୁକମ୍ପନ । ପୁଣି ସେ ଥଣ୍ଡାପାଣିରେ ପଡ଼ିଯିବା ପରେ ମନେହେଲା ଦେହଟା ଯେମିତି ବରଫ ପାଲଟି ଯାଉଚି । ନାନା ଦୁଶ୍ଚିନ୍ତାରେ ମନପ୍ରାଣ ଭରିଗଲା । ତେବେ ଜୀବନଟା କଣ ଏ ସୁଦୂର ବିଲାତରେ ଥଣ୍ଡା ସର୍ଦ୍ଦିରେ କି ନିଉମୋନିଆରେ ଶେଷ ହୋଇଯିବ ! ହେଲେ ହେଉଁମାନେ ଏ କାଣ୍ଡ ଘଟାଇଥିଲେ ତାଙ୍କ ହସ ଦେଖ ! ହସ-ଧାରାର ଏକେବାରେ ଉଚ୍ଛୁଳି ପଡୁଚି । ଓଃ ! ବଡ଼ ବୀରତ୍ୱପୂର୍ଣ୍ଣ କାମଟେ କଲେ ! ରାଗ ଓ ବିରକ୍ତିରେ ଗୁଡ଼ାଏ ତାଙ୍କୁ ଗାଳିଦେଲି । ଇଂଲିଶ୍ ଗାଳିଟା ପୂରା ମୋର ଦଖଲ ହୋଇନଥାଏ । ପୁଣି ଇଂଲିଶ୍‌ରେ ଗାଳିଦେଲେ ସେମାନେ ରାଗି ଆଉ କିଛି ଉଦ୍ଭଟ କାଣ୍ଡ ସୃଷ୍ଟି କରିପାରନ୍ତି । ତେଣୁ ବିଶୁଦ୍ଧ ଓଡ଼ିଆ ଓ ଅଶୁଦ୍ଧ ହିନ୍ଦିରେ ଗାଳିଦେଲି । ମଝିରେ ମଝିରେ ପଦେ ପଦେ ଇଂଲିଶ ଗାଳି ବି

ଚଳେଇଥାଏ । କିନ୍ତୁ ସେଥିପ୍ରତି ତାଙ୍କର ଯେମିତି ଖାତିର ନାହିଁ । ମୋର ଗାଳିର ତୀବ୍ରତା ଯେତିକି ବଢୁଥାଏ ତାଙ୍କର ହାସ୍ୟରୋଳ ସେତିକି ମାତ୍ରାରେ ତେଜି ଉଠୁଥାଏ । ଆଖପାଖର ଦେଖଣାହାରୀ ଏ ହାସ୍ୟକରୁଣ ଦୃଶ୍ୟକୁ ବେଶ୍ ଉପଭୋଗ କରୁଥାନ୍ତି, ଖିଲଖିଲ ହସିଉଠି ଆଉ କାହାକୁ ଟିଣାଓଟରା କରିବାରେ ଲାଗିଯାଉଥାନ୍ତି । ଓହୋ ! କି ବଡ଼ମ୍ବନା ! କି ହଟହଟା !

ହେଲେ ମୋ ଗାଳିଧମକର ସୁଅ ଯେମିତି ବନ୍ଦ ହେଉ ନଥାଏ । ଏସା କରିବି, ତେଷା କରିବି, ଇଣ୍ଡିଆନ୍ ହାଇକମିଶନରଙ୍କୁ ଜଣେଇବି ଏମିତି କେତେ କଣ କହିବୁଲୁଥାଏ । ଏଇଟା ଆମ ଭାରତୀୟ ବୀରତ୍ୱର ପୋଟତ ନମୁନା । ଯେଉଁଠି ନ ପାରିବେ ଆରମ୍ଭ କରିଦେବେ ଗାଳି କେତେ ଢ଼ଙ୍ଗର, କେତେ ରକମର । ଏହି ଉଚାଙ୍ଗ ଗାଳି ପୁରାଣ ଶୁଣିବ ଆମ ତେଲଙ୍ଗା ବସ୍ତିମାନଙ୍କରେ, ମାଇପୀ ଲୋକଙ୍କ ଭିତରେ । ଓଃ ! ସେ କ ଅଛାଡ ଗାଳିପ୍ରସ୍ରବଣ । କ ରଡ଼, କ ମୁରାଟ ! ଗାଳିର ପାତ୍ର ବା ପାତ୍ରୀ ଯେ ହେଉନା କାହିଁକି ସେ ଯଦି ଟିକିଏ ଟାଣୁଆ ହୋଇନଥିବ ତେବେ ସେ ବାକ୍ୟବାଣରେ ନିଶ୍ଚୟ ଘାଏଲ ହୋଇଯିବ । ହେଲେ ମୁଁ ଯେତେବେଳେ ଧାରାବାହିକ ଭାବରେ ବିଭିନ୍ନ ଭାଷାରେ ବିଭିନ୍ନ ବାକ୍ୟରେ ଗାଳି ଦେଇ ଦେଇ ଥକପଡ଼ିଲି ରହି ରହି ଆରମ୍ଭକଲି ଗୋଟି ଗୋଟିକା ଶଢ, ଶଳା, ମଦୁଆ······ମନରେ ଟିକିଏ ସନ୍ଦେହ ହେଲା, ଏ ଗାଳି ଏମାନଙ୍କୁ ବାଧିବ ତ ? ଶଳା, ଯାହାକୁ ଏମାନେ କହନ୍ତି Brother-in-law, ଆଇନତଃ ଭାଇ, ସେଥିରେ ଏମାନଙ୍କୁ ଗାଳି ଦିଆଯାଉଚି ନା ସମ୍ମାନ ଦେଖାଯାଉଚି । ଆଉ ମଦୁଆ ! ସେଟା ବି କି ଗାଳି ଯେ ! ମଦ ତ ଯୂାଙ୍କର ଚିରସହଚର । କହନ୍ତି, ଆମର ପାଣି ହେଲା ବିଅର । ପାଣିପରି ବି ପିଅନ୍ତି ତାକୁ । ତେବେ ମୁଁ ଏଥିରୁ ଗୁଡ଼ାଏ ଟିକି ଉଚ୍ଚ ସ୍ୱରରେ ଉଚ୍ଚାରଣ କରି କଣ୍ଠନାଳୀଟାକୁ ଅଯଥା କଷ୍ଟ ଦେଉଚି କାହିଁକି ?

ଅବଶ୍ୟ ବିଭିନ୍ନ ଦେଶର ଗାଳି । ସାହିତ୍ୟରୁ ସେମାନଙ୍କ ସଭ୍ୟତାର ବେଶ୍ ସୂଚନା ମିଳିପାରେ । ଏମାନଙ୍କର ପ୍ରଧାନ ଗାଳିହେଲା, Fool, idiot, bastard, ମୂର୍ଖ, ବୋକା, ବେଧୂଆ । ହଁ, ଏମାନେ

ଶିକ୍ଷିତ ସଭ୍ୟ ଜାତି । ଏମାନଙ୍କୁ ମୂର୍ଖ ବା ବୋକା କହିଲେ ନିଶ୍ଚୟ ବାଧିବ । ଆଉ Bastard ଜାରଜ ! ଏଇଟା କହିଲେ ଏମାନଙ୍କର ଜନ୍ମଗତ ତଥ୍ୟପ୍ରତି ଆକ୍ଷେପ କରାଯିବ । ହଁ, ଏସବୁ ଗାଳି ସାହେବମାନଙ୍କୁ ବାଧିପାରେ । ତେଣୁ ସେଥିରୁ ଗୁଡ଼ିଏ ବି ଝାଡ଼ିଦେଲି । ହେଲେ ଫଳ ବିଶେଷ କିଛି ହେଲାନି । ଏତେବେଳକୁ ଦେହ ଶୀତରେ ଥୁରୁଥୁରୁ ହେଲାଣି । ଶେଷରେ ସେଇ ଓଦା ସୁଡ଼ୁ ସୁଡ଼ୁ ହୋଇ ସେଠାରୁ ବାହାରିଆସିଲି ଏବଂ କେତେକ ବନ୍ଧୁଙ୍କୁ ସାଙ୍ଗରେ ଧରି ବସାକୁ ଫେରିଲି । ବେଶ ବଦଳାଇ ଅଣ୍ଡା ଧରିବା ଉପରେ ଆଛାକରି ଦୁଇ ଗୋଟିଏ କମ୍ବଳ ଘୋଡ଼ିହୋଇ ଶୋଇପଡ଼ିଲି । ନବ ବର୍ଷକୁ ସ୍ୱାଗତ କରିବା ମୋର ହେଦିନ ଟେସ୍ତକରେ ଶେଷହେଲା ।

ଟ୍ରାଫଲଗାର ସ୍କୋୟାରରେ ବୁଲିବୁଲି କରି ଗଲି ଜାତୀୟ କଳାମନ୍ଦିର (National Gallery) କୁ । ବିଭିନ୍ନ ସୁନ୍ଦର ସୁନ୍ଦର ଚିତ୍ରସବୁ ସେଠାରେ ସଂଗୃହୀତ ହୋଇ ରଖାଯାଇଛି । ସେଥିରେ ମେରୀମାତା ଓ ତାଙ୍କ ନନ୍ଦନ ଯିଶୁଙ୍କର ଛବି ବହୁତ । ବହୁତ ବି ଅଛି ଅର୍ଦ୍ଧ-ଉଲଗ୍ନ ଛବି । ବିଲାତବାସୀଙ୍କର ଗୋଟାଏ ସାଧାରଣ ଗୁଣ ଦେଖିଲି, ଯଦିଚ ସେମାନେ ବଡ଼ ରକ୍ଷଣଶୀଳ ତଥାପି ତାଙ୍କ କଳା-ସାହିତ୍ୟ, ଥିଏଟର-ସିନେମା ଆଦିରେ ଘୋଡ଼ା ଘୋଡ଼ି, ଲୁଚିଛପା କାରବାର ବେଶୀ ନାହିଁ । ଯାହା ସାଧାରଣ ଓ ସ୍ୱାଭାବିକ ତାକୁ ପ୍ରକାଶ କରିବାରେ କୁଣ୍ଠା ନଥାଏ ।

ଛାତ୍ର ଜୀବନରେ, ଓକିଲ କାଳରେ ବହୁ କଥା ଶୁଣିଛି, ବହୁ ବିଷୟ ପଢ଼ିଛି ବିଲାତର ବ୍ୟବସ୍ଥାପକ ସଭା "ପାର୍ଲିମେଣ୍ଟ" ନେଇ । ଅର୍ଥ-ନୀତିର ଛାତ୍ର ହିସାବରେ ଏହାର ମହତ୍ତ୍ୱ, ଗୁରୁତ୍ୱ ନେଇ ବହୁ ବକ୍ତୃତା ଶୁଣିଛି କଲେଜର ଅଧ୍ୟାପକମାନଙ୍କଠାରୁ । ସେତେବେଳକୁ ଭାରତ ସ୍ୱାଧୀନ ହୋଇ ନଥାଏ । ସବୁ କଥାରେ ସବୁ କାମରେ ସମସ୍ତେ ବିଲାତର ନଜିରଟାକୁ ବେଶୀ ଆଦର କରୁଥିଲେ । ପୁଣି ବ୍ରିଟିଶ୍ ପାର୍ଲିମେଣ୍ଟ କଥା ପଡ଼ିଲେ ଶିକ୍ଷକ, ଶିକ୍ଷାର୍ଥୀ, ବୁଦ୍ଧିଜୀବୀ, ସମସ୍ତେ ପ୍ରଶଂସାରେ ପଞ୍ଚମୁଖ ହୋଇ-ଉଠନ୍ତି । ଏହି ବିଲାତ ପାର୍ଲିମେଣ୍ଟ ହେଉଛି ସବୁ ଦେଶର ବ୍ୟବସ୍ଥାପକ ସଭାଗୁଡ଼ିକର ଜନନୀ । ସବୁ ମନ୍ତ୍ରୀ, ସାଧାରଣ ବ୍ୟବସ୍ଥାପକ ଏହାର ଆଲୋଚନାରୁ ରସ ଆହରଣ କରି ନିଜ ବକ୍ତୃତାକୁ କରନ୍ତି ଗୌରବମୟ,

ଋଦ୍ଧିମନ୍ତ । ତେଣୁ ଏହି ବ୍ରିଟିଶ୍ ପାର୍ଲିଆମେଣ୍ଟ ଦେଖିବାର ମୋହ ମୋର ଅପାର । ବିଲାତରେ ପାଦ ଦେଲାପରେ ଏହି ମୋହର ତୀବ୍ରତା ବଢ଼ି ମୋତେ ଯେମିତି ବିକଳ, ଅଥୟ କରିପକେଇଥିଲା । ତେଣୁ ଟ୍ରାଫଲଗାର ସ୍କୋୟାରରୁ ବ୍ରିଟିଶ୍ ପାର୍ଲିମେଣ୍ଟ (Houses of Parliament) ଆଡ଼େ ବାହାରିପଡ଼ିଲି ।

ବାଟରେ ପଡ଼ିଲା ହ୍ୱାଇଟ୍ ହଲ (White Hall)ର ସୁନ୍ଦର ପ୍ରଶସ୍ତ ପଥ । ଦୁଇ କଡ଼ରେ ବଡ଼ ବଡ଼ କୋଠା । ଏଇଠାରେ ବିଲାତ ସରକାରଙ୍କର ବିଭିନ୍ନ କାର୍ଯ୍ୟାଳୟ, ବିଭିନ୍ନ ଦପ୍ତର ଅବସ୍ଥିତ । ଏଠାକାର ୧୦ ନମ୍ବର ଡାଉନିଂ ଷ୍ଟ୍ରିଟ୍‌ରେ ରହନ୍ତି ବ୍ରିଟିଶ୍ ପ୍ରଧାନମନ୍ତ୍ରୀ ଏବଂ ୧୧ ନମ୍ବରରେ ରହନ୍ତି ଚ୍ୟାନ୍‌ସେଲର ଅଫ୍ ଏକ୍‌ସଚେକର୍ । ଏହି ସ୍ଥାନର ବୈଶିଷ୍ଟ୍ୟ, ମାହାତ୍ମ୍ୟ କଥା ଭାବି ଟିକିଏ ଅଟକିଲି । ଛାତିଟା ଦୁଲୁକି ଉଠିଲା । ଏଇ ତେବେ ପ୍ରବଳପ୍ରତାପୀ ବ୍ରିଟିଶ୍ ଜାତିର ଶାସନପୀଠ । ଏଇଠାରୁ ଦିନେ ଉଠିଥିଲା ଧ୍ୱନି "Rule Britannia Rule" । ଏଇଠାରେ ଦିନେ କାମ କରୁଥିଲେ ଓ୍ୟାଲପୋଲ (Walpole), ପିଟ୍ (Pitt), ଚର୍ଚ୍ଚିଲ (Churchill) ଆଦି ବିଖ୍ୟାତ ରାଜନୀତିଜ୍ଞ ବ୍ରିଟିଶ୍ ପ୍ରଧାନ ମନ୍ତ୍ରୀଗଣ ।

ଏଠାକାର ହ୍ୱାଇଟ୍ ହଲ ପ୍ରାସାଦରେ ପୂର୍ବେ ବ୍ରିଟିଶ୍ ସମ୍ରାଟ୍ ବାସ କରୁଥିଲେ । ଦିନେ ବିଲାତର ରାଜକୀୟ ଜୀବନ, ଦରବାର ଆଦି ଏଇ ହ୍ୱାଇଟହଲ ପ୍ରାସାଦରେ କେନ୍ଦ୍ରୀଭୂତ ହୋଇଥିଲା । ସମ୍ରାଟଙ୍କର ଅସଂଖ୍ୟ ପ୍ରେୟସୀ ଓ ପାରିଷଦବୃନ୍ଦ ଏହି ଅଞ୍ଚଳରେ ବାସ କରୁଥିଲେ । ଏହିଠାରେ କେତେ ଚକ୍ରାନ୍ତ, କେତେ ଷଡ଼ଯନ୍ତ୍ର ହୋଇନି ଏବଂ କେତେ ସଭାସଦ, ପାରିଷଦଙ୍କର ଉତ୍ଥାନପତନ ନ ଘଟିଛି ! ଏହି ସ୍ଥାନ ଦିନେ ଥିଲା ଗୁଜବର ଗନ୍ତାଘର । କେତେ ପ୍ରକାର ସାମାଜିକ, ପ୍ରଶାସନିକ, ରାଜନୀତିଜ୍ଞ କାରସାଦି, ଏପରିକି ପ୍ରଣୟପ୍ରୀତି, ଯୌନକାରବାରର ସୂଅ ଏଠି ନ ଛୁଟିଛି ! ଏଠାକାର ବିଖ୍ୟାତ ଭୋଜନ ମନ୍ଦିର (Banqueting House)ର ଫାଟକ ପାଖରେ ସମ୍ରାଟ ପ୍ରଥମ ଚାର୍ଲସ୍‌ଙ୍କୁ ହତ୍ୟା କରାଯାଇଥିଲା ୧୬୪୯ ଖ୍ରୀଷ୍ଟାବ୍ଦରେ । ଏହି ଭୋଜନ ମନ୍ଦିରରେ ଅନ୍ୟ ବହୁ ଐତିହାସିକ ଘଟଣା ବି ଘଟିଛି । ଏହିଠାରେ ଦ୍ୱିତୀୟ ଚାର୍ଲସ୍‌ଙ୍କୁ

ରାଜଗାଦି ଫେରାଇ ଦିଆଯାଇଥିଲା । ଏହିଠାରେ ପାର୍ଲିମେଣ୍ଟର ସଦସ୍ୟମାନେ ଅରେଞ୍ଜର ରାଜକୁମାର ଓ ରାଜକୁମାରୀ (Prince and Princess of Orange) ଏବଂ ପରେ ରାଜା ଓ୍ୱିଲିୟମ୍ ଓ ରାଣୀ ମେରୀଙ୍କୁ ରାଜସିଂହାସନ ଯାଚିଥିଲେ । ଓଃ ! ବଡ଼ ବିଚିତ୍ର ବଡ଼ ରହସ୍ୟମୟୀ ଏ ସ୍ଥାନ !

ଇମିତି ମନ ଭିତରେ ନାନା କଥା ପର୍ଯ୍ୟାଲୋଚନା କରି ପାର୍ଲିମେଣ୍ଟ ଭବନ ଆଡ଼କୁ ଆଗେଇଲି । କିଛି ବାଟ ଯିବା ପରେ ଦେଖାଗଲା ବିଗ୍‌ବେନ୍ । ଏହି ସେ ବିଶ୍ୱବିଖ୍ୟାତ ଘଣ୍ଟା ଯାହାର ବୈଚିତ୍ର୍ୟ ସମ୍ବନ୍ଧରେ ବହୁ ଗପ, ବହୁ ଆଲୋଚନା ଶୁଣିବାକୁ ମିଳେ । ବହୁ କୌଶଳ, ବହୁ ଚତୁରତା ସହିତ ଯାହାକୁ ତିଆରି କରାଯାଇ ପ୍ରାୟ ୨୦୦ ଫୁଟ ଉଚ୍ଚର ଏକ ଖୁଣ୍ଟି ଉପରେ ରଖାଯାଇଛି । କମ୍ ବିଶାଳ ତ ଏ ନୁହେ ! ଉଚ୍ଚତା ଦିତାଲା କୋଠାର ଉଚ୍ଚତା ସହିତ ସମାନ । ଏହାର ମିନିଟ୍ କଣ୍ଟା ପ୍ରାୟ ୧୪ ଫୁଟ୍ ଲମ୍ବ ଓ ଓଜନ ପ୍ରାୟ ୧୦୦ କେ:ଜି: । ଘଣ୍ଟା କଣ୍ଟାର ଓଜନ ପ୍ରାୟ ଅଧ ଟନ୍ । ପେଣ୍ଡୁଲମର ଲମ୍ବା ପ୍ରାୟ ୧୩½ ଫୁଟ୍ ଓ ଓଜନ ପ୍ରାୟ ୨½ ଟନ୍ । ଏଥିରେ ଥିବା ସଂଖ୍ୟାଗୁଡ଼ିକ ପ୍ରତ୍ୟେକ ପ୍ରାୟ ୨ ଫୁଟ୍ ଲମ୍ବ ।

ଏହି ଘଣ୍ଟାର ଇତିହାସ ବଡ଼ ବିଚିତ୍ର, ବଡ଼ ରୋମାଞ୍ଚକର । ୧୮୩୪ ମସିହାରେ ଯେତେବେଳେ ଏକ ଭୟାନକ ଅଗ୍ନିକାଣ୍ଡ ଫଳରେ ୱେଷ୍ଟମିନଷ୍ଟର ପ୍ରାସାଦର ଅଧିକାଂଶ ପୋଡ଼ିଗଲା ସେତେବେଳେ ବ୍ରିଟିଶ୍ ପାର୍ଲିଆମେଣ୍ଟ ନିଷ୍ପତ୍ତି କଲେ ଯେ ଆଉ ଗୋଟିଏ ନୂତନ ପାର୍ଲିଆମେଣ୍ଟ ଭବନ ତିଆରି କରାଯିବ ଏବଂ ସେଥିରେ ଗୋଟିଏ ବଡ଼ ଘଣ୍ଟା ସ୍ତମ୍ଭ ରହିବ । ଏଥିରେ ଯେଉଁ ଘଣ୍ଟା ରହିବ ସେ ପୃଥିବୀରେ ଅଦ୍ୱିତୀୟ ହେବ ଏବଂ ଏହା ସମ୍ପୂର୍ଣ୍ଣ ଭାବରେ ଠିକ୍ ସମୟ ରଖିବ । କିନ୍ତୁ ଏହି ଅଭିନବ ଘଣ୍ଟା ତିଆରି କରିବାକୁ କୌଣସି ପେଶାଦାରୀ କାରିଗରଙ୍କୁ ବରାଦ ଦିଆଗଲା ନାହିଁ । ଏହାର ଦାୟିତ୍ୱ ନେଇଥିଲେ ଜଣେ ସୌଖୀନ୍ ଘଣ୍ଟା କାରିଗର ଏଡ଼ମଣ୍ଡ ବକେଟ୍ ଡେନିସନ (Edmund Bucket Denison) ନାମକ ଜଣେ ଓକିଲ । ପାର୍ଲିଆମେଣ୍ଟ ଭବନ ଓ ଘଣ୍ଟା ସ୍ତମ୍ଭର ତିଆରି ୧୮୫୨ ଖ୍ରୀଷ୍ଟାବ୍ଦ ସୁଦ୍ଧା ସରିଗଲା; କିନ୍ତୁ ଘଣ୍ଟା ତିଆରି ସରିଲା ଯାଇ ୧୮୫୯ରେ । ଏଥିରେ ପ୍ରାୟ ୧୩½ ଟନ ଓଜନର ଗୋଟିଏ ପିଟାଘଣ୍ଟା ଲଗିଲା ଓ ତାହା ସଙ୍ଗରେ ରହିଲା ୪ ହନ୍ଦର ଓଜନର ଏକ ପିଟଣା । ଓହୋ ! କି ବିଶାଳ !

କିନ୍ତୁ ଏହି ଘଣ୍ଟାର ନାମକରଣ ଡେନିସନ୍‌ଙ୍କ ନାମ ଅନୁସାରେ ରହିଲା ନାହିଁ । ସେତେବେଳେ ବିଲାତର ପ୍ରଥମ ନିର୍ମାଣ କମିଶନର (First Comissioner of Works) ଥିଲେ ସାର୍ ବେଞ୍ଜାମିନ୍ ହାଲ । ସେ ଏହାକୁ ସେଣ୍ଟ ଷ୍ଟିଫେନ୍ ନାମ ଦିଆଯିବାକୁ ପାର୍ଲିଆମେଣ୍ଟରେ ଏପରି ଏକ ଗାମ୍ଭୀର୍ଯ୍ୟପୂର୍ଣ୍ଣ ବକ୍ତୃତା ଦେଲେ ଯେ ସଭ୍ୟମାନେ ସେଥିରେ ବଡ଼ ମୁଗ୍ଧ ହୋଇପଡ଼ିଲେ । ବେଞ୍ଜାମିନ୍‌ଙ୍କୁ ବିଲାତରେ ସଂକ୍ଷେପରେ ବେନ ବୋଲି ଡାକୁଥିଲେ । ପାର୍ଲିଆମେଣ୍ଟର ସଭ୍ୟମାନେ କହିଲେ, ସେ ଘଣ୍ଟାକୁ ବେନଙ୍କ ନାମ ଅନୁସାରେ ନାମକରଣ କରାଯାଉ । ତେଣୁ ତାହାର ନାମ "ବିଗ୍‌ବେନ" ରଖାଗଲା । ପଙ୍କ ଉଖାଳିଲା କିଏ, ଶେଉଳ ଖାଇଲା କିଏ !

ଏହି ଘଣ୍ଟା ଲଣ୍ଡନବାସୀଙ୍କ ଜୀବନ ସହିତ ଓତଃପ୍ରୋତ ଭାବରେ ଜଡ଼ିତ । ବ୍ରିଟିଶ୍ ରେଡିଓରେ ଦୈନିକ ଏହାର ଶବ୍ଦ ପ୍ରଚାର କରାଯାଏ । ପାଗ ଖରାପ ଥିଲେ ବା ଅନ୍ୟ କୌଣସି କାରଣରୁ ଯଦି ଏହି ଶବ୍ଦ ମୋଟା କି ବିକୃତ ଜଣାପଡ଼େ ତେବେ ସେ ସମ୍ବନ୍ଧରେ କେତେ ଆଳାପ, ଆଲୋଚନା ହୋଟେଲ-ରେଷ୍ଟୁରାଁ, ହାଟ-ବଜାର ଆଦିରେ ଆରମ୍ଭ ହୋଇଯାଏ । ସାମ୍ବାଦପତ୍ରମାନଙ୍କରେ ଏ ସମ୍ବନ୍ଧରେ ନାନା ଖବର, ମତାମତ ବାହାରେ । ଧନ୍ୟରେ ତୁ ବିଗ୍‌ବେନ !

ବିଗ୍‌ବେନ୍ ଦେଖିବାରେ ମୋର ମନ ଏପରି ଲାଗିଯାଇଥିଲା ଯେ ପାର୍ଲିଆମେଣ୍ଟ ଭବନ ଆଡ଼କୁ ଦୃଷ୍ଟି ଦେଇପାରି ନଥିଲି । ପରେ ଯେତେବେଳେ ସେ ଆଡ଼କୁ ମୁହାଁଇଲି ସେତେବେଳେ ଥେମସ୍ ନଦୀ କୂଳର ସେ ବିଖ୍ୟାତ ବିଧାନ ସୌଧ ଉପରେ ଆଖି ପଡ଼ିଲା । ଠିକ୍ ଏତିକି ବେଳକୁ ସୂର୍ଯ୍ୟ କେଉଁଠାରେ ଆକାଶରେ ଲୁଚିରହିଥିଲେ ହଠାତ୍ ଦେଖାଦେଲେ । ସେ ତ ଆମ ଦେଶର ପ୍ରଖର ଜାଜ୍ଜ୍ୱଲ୍ୟମାନ ସୂର୍ଯ୍ୟ ନୁହନ୍ତି । ପୂର୍ଣ୍ଣମାସୀର ପୂର୍ଣ୍ଣଚନ୍ଦ୍ର ପରି ଦେଖାଯାଉଥାନ୍ତି । ଝଲକାଏ ଗୋଲାପି କିରଣ ଆସି ପାର୍ଲିଆମେଣ୍ଟ ଭବନ ଓ ଥେମସ୍ ନଦୀ ଉପରେ ପଡ଼ିଲା । ଥେମସ୍ ନଦୀରେ ବହୁ ମଟର ଲଞ୍ଚ ଯିବା ଆସିବା କରୁଥାନ୍ତି । ନିକଟରେ ଥିବା ଓ୍ୱେଷ୍ଟମିନଷ୍ଟର ବ୍ରିଜ୍ ଉପରେ ଜନ ଓ ଯାନବାହନର ଅଗ୍ଲୁଡ଼ ସୁଅ । ସାମନାରେ ବିଖ୍ୟାତ ଗୀର୍ଜା ଓ୍ୱେଷ୍ଟମିନିଷ୍ଟର ଆବି । ଜାଗାଟା ବେଶ୍ ମନୋରମ, ଖୁବ୍ ଚିତ୍ତାକର୍ଷକ ମନେହେଉଥାଏ ।

ବାସ୍ତବିକ୍ ବିଲାତବାସୀ ବେଶ୍ ଏକ ରମଣୀୟ ସ୍ଥାନରେ ତୋଳିଚନ୍ତି ତାଙ୍କ ବିଧାନ-ଭବନ । ଏହି ବିଧାନ-ଭବନକୁ ଏବଂ ତହିଁରେ ପାଶ୍ ହେଉଥିବା ଆଇନ କାନୁନ୍‌କୁ ସେମାନେ ଖୁବ୍ ସମ୍ମାନ ଦିଅନ୍ତି । ଏହା ଗଣତନ୍ତ୍ରର ଉତ୍ପତ୍ତିସ୍ଥଳ ଓ ବିଭିନ୍ନ ଲୋକସଭା, ବିଧାନସଭାର ଆଦର୍ଶ । କାଳକ୍ରମେ ଏହି ପାର୍ଲିଆମେଣ୍ଟ ପ୍ରବଳପ୍ରତାପୀ ଟ୍ୟୁଡ଼ର ଓ ଷ୍ଟୁଆର୍ଟ ରାଜାମାନଙ୍କର ଅସୀମ ଶକ୍ତି ଓ ଅକଥନୀୟ ଅତ୍ୟାଚାରକୁ ପରାଭୂତ କରି ଜନଶକ୍ତିର ଅପ୍ରତିଦ୍ୱନ୍ଦୀ ପୀଠ ଏବଂ ଲୋକଶାସନର ଏକଚ୍ଛତ୍ର ନିୟାମକ ରୂପେ ଗଢ଼ିଉଠିଛି । ଆଜି ସେଠି ହୁଏତ ଶାନ୍ତିମୈତ୍ରୀର କେତେ ଦୁଆ ଉଠୁଛି, କେତେ ଧୀର ମନ୍ଥର କଥା ଶୁଣାଯାଉଛି କିନ୍ତୁ ଦିନେ ଏହା ଥିଲା ନାନା ଚକ୍ରାନ୍ତ, ଷଡ଼ଯନ୍ତ୍ରର ପୀଠ । ରାଜଶକ୍ତିର ବିଲୋପ ସାଧନ କରି ଜନଶକ୍ତିକୁ ପ୍ରତିଷ୍ଠିତ କରିବା ପାଇଁ ଏହି ପାର୍ଲିଆମେଣ୍ଟରେ କେତେ ଝଡ଼ଝଞ୍ଜା ବୋହିଯାଇନି !

୮ମ ହେନେରୀ ତାଙ୍କ ବଡ଼ଭାଇ ଆର୍ଥରଙ୍କର ବିଧବା ପତ୍ନୀ କାଥାରିନ୍‌ଙ୍କୁ ବିବାହ କରିଥିଲେ । କିନ୍ତୁ ତାଙ୍କଆଡ଼ୁ ପୁଅଟିଏ ଜନ୍ମ ନ ହେବାରୁ ସେ ତାଙ୍କୁ ଛାଡ଼ପତ୍ର ଦେଇ ଆନ୍‌ବୋଲିନ୍ ନାମକ ଅନ୍ୟ ଏକ ମହିଳାଙ୍କ ପାଣିଗ୍ରହଣ କରିବା ପାଇଁ ଚାହିଁଲେ । ମାତ୍ର ରୋମ୍‌ର ପୋପ୍ କାଥାରିନ୍‌ଙ୍କ ସହିତ ତାଙ୍କର ବୈବାହିକ ବନ୍ଧନ ଛିନ୍ନ କରିବାକୁ ଅନୁମତି ଦେଲେ ନାହିଁ । ଫଳରେ ହେନେରୀ ରାଗି ଏହି ପାର୍ଲିମେଣ୍ଟ ସାହାଯ୍ୟରେ ପୋପ୍‌ଙ୍କ ସହିତ ଇଂଲଣ୍ଡର ସବୁ ସମ୍ପର୍କ ଛିଣ୍ଡାଇଦେଲେ । ପାର୍ଲିମେଣ୍ଟ ସଦସ୍ୟମାନଙ୍କର ପାଟି ବନ୍ଦ କରିବାକୁ ଏବଂ ସେମାନଙ୍କର ସବୁ କାରସାଦି ମୂଳପୋଛ କରିବାକୁ ରାଣୀ ପ୍ରଥମ ଏଲିଜାବେଥ୍ କେତେ ଚେଷ୍ଟା କରି ନ ଥିଲେ ! ଅତ୍ୟାଚାରୀ ବିଲାତସମ୍ରାଟ ପ୍ରଥମ ଚାର୍ଲସ୍‌ଙ୍କ କବଳରୁ ଦେଶକୁ ରକ୍ଷା କରିବାକୁ ଏଠି କେତେ କାରସାଦି ଚାଲି ନ ଥିଲା ! ଏଲିଅଟ୍‌ଙ୍କ ନେତୃତ୍ୱରେ ପାର୍ଲିମେଣ୍ଟ ଜପରି ଚାର୍ଲସ୍‌ଙ୍କ ବିରୁଦ୍ଧରେ କେତେକ ପ୍ରସ୍ତାବ ପାଶ୍ କରାଇ ନେବାକୁ ଚେଷ୍ଟା କଲେ, ଏଥିରେ ଅତିଷ୍ଠ ହୋଇ 'ଯେପରି ସେ ପ୍ରସ୍ତାବସବୁ ପାଶ୍ ନ ହୋଇପାରିବ ସେଥିପାଇଁ ଚାର୍ଲସ୍ ବାଚସ୍ପତିଙ୍କୁ ସୂଚନା ଦେଲେ । କିନ୍ତୁ ପାର୍ଲିମେଣ୍ଟର ଦୁଇ ଜଣ ବଳିଷ୍ଠ ସଭ୍ୟ ବଳାତ୍କାରେ ବାଚସ୍ପତିଙ୍କୁ ତାଙ୍କ ଆସନରେ

ମାଞ୍ଜବସି ସେହି ପ୍ରସ୍ତାବସବୁ ପାଶ୍ କରେଇନେଲେ । ତା'ପରେ ଗ୍ଲେଲଙ୍କ ଗ୍ଲର୍ଲସ୍ ଓ ପାର୍ଲିମେଣ୍ଟ ମଧ୍ୟରେ ତୁମୁଳ କନ୍ଦଳ । ଗ୍ଲର୍ଲସ ପାର୍ଲିମେଣ୍ଟକୁ ଭାଙ୍ଗିଦେଇ ଏଗାର ବର୍ଷକାଳ ବ୍ୟକ୍ତିଗତ ଶାସନ ଚଳାଇଲେ । ପୁଣି ଯେତେବେଳେ ଅବସ୍ଥାଚକ୍ରରେ ପଡ଼ି ଆଉଥରେ ପାର୍ଲିମେଣ୍ଟର ଅଧିବେଶନ ବସାଇଲେ ସେତେବେଳେ ତାଙ୍କ ବିରୋଧରେ ଥିବା ସଦସ୍ୟମାନେ ସୈନ୍ୟଙ୍କ ସାହାଯ୍ୟରେ ଅନ୍ୟ ସଦସ୍ୟମାନଙ୍କୁ ବାହାର କରିଦେଲେ ଏବଂ ରାଜାଙ୍କ ବିପକ୍ଷରେ ନାନା ଅଭିଯୋଗ ଆଣି ଦୋଷୀ ରୂପେ ତାଙ୍କର ବିଚାର କରାଇଲେ । ଶେଷରେ ରାୟ ଦିଆଗଲା, ଗ୍ଲର୍ଲସ୍ଙ୍କର ତାଙ୍କ ହ୍ୱାଇଟ୍ ହଲ୍ ରାଜପ୍ରାସାଦ ବାହାରେ ମୁଣ୍ଡକାଟ ହେବ । ତାହାହିଁ ହେଲା । ୧୬୪୯ ମସିହା ଜାନୁଆରୀ ୩ ତାରିଖ ଦିନ ବିପୁଳ ଜନତା ରାଜାଙ୍କ ମୁଣ୍ଡକାଟ ଦେଖିବାକୁ ଆସି ଜମାହେଲେ । ରାଜା ଗ୍ଲର୍ଲସ୍ ସମବେତ ଜନତାକୁ ଭାଷଣ ଦେଇ କିଛି ସମୟ ପ୍ରାର୍ଥନା କଲେ । ତା'ପରେ ତାଙ୍କର ମୁଣ୍ଡକାଟ ହେଲା । ଓହୋ ! କି ନୃଶଂସ କାଣ୍ଡ ! ଅତ୍ୟାଚାରୀ ରାଜାଙ୍କୁ ଶାସନ କରିବାକୁ ଅନ୍ୟ ଯେ କୌଣସି ପନ୍ଥା ଏହାଠାରୁ ଶତଗୁଣେ ଶ୍ରେୟସ୍କର ହୋଇଥାନ୍ତା । ଯାହାହେଉ ଏହି ନିର୍ଦ୍ଦୟ ନୃଶଂସ କାର୍ଯ୍ୟ ଫଳରେ ପାର୍ଲିମେଣ୍ଟର ଶକ୍ତି ମଜଭୁତ ହେଲା ଓ ବିଲାତ ଜନସାଧାରଣଙ୍କ ମତ ଜାହିର କରାଗଲା ।

ଏଇ ସେହି ପାର୍ଲିମେଣ୍ଟ । ଖୁବ୍ ନିକଟକୁ ଯିବାରୁ ଏହାର ଚେହେରାଟା ଯେମିତି ବଡ଼ ବେଆଡ଼ା ଲାଗିଲା । ଦୂରରେ ବଡ଼ ସୁନ୍ଦର ଦେଖାଯାଏ କିନ୍ତୁ ପ୍ରକୃତ ରୂପଟା ସେତେ ରମଣୀୟ ନୁହେଁ । ହେଲେ ଏଥିରେ ପ୍ରବେଶ କରିବି କିମିତି ! ଦ୍ୱାରପାଳମାନେ ତ ସହଜରେ ବାଟ ଛାଡ଼ିବେନି । ପୁରୀର ଗୋଟାଏ କାରସାଦି ମନେ ପଡ଼ିଲା । ମଠବାଡ଼ି-ମାନଙ୍କରେ ଭୋଜି ମଉଛବ ହେଲେ ସେଥିରେ ଯେତେ ଜଣ ବ୍ରାହ୍ମଣ ଖୁଆଇବାର କଥା ସେତିକି ଜଣଙ୍କୁ ଟିକେଟ୍ ମିଳେ । ସେହି ଟିକେଟ୍ ଦେଖାଇ ସେମାନେ ଭିତରକୁ ଯା'ନ୍ତି । ଯାହାଙ୍କୁ ଟିକେଟ୍ ମିଳି ନ ଥାଏ ସେମାନଙ୍କ ଭିତରୁ କେତେକ ଏହି ଭୋଜି ଉଚ୍ଛବମାନଙ୍କରେ ଅଯାଚିତ ଅତିଥି ହେବାକୁ ଏକ କୌଶଳର ଆଶ୍ରା ନିଅନ୍ତି । ଦ୍ୱାରରକ୍ଷୀ ପ୍ରଧାନ ଫାଟକର କବାଟକୁ ଅଳ୍ପ ମେଲିରଖି, ଟିକେଟ୍ ଦେଖି ଜଣ ଜଣ କରି

ଭିତରକୁ ଗଲେ । ଅନିମନ୍ତ୍ରିତ କେହି ଯିବାକୁ ଚେଷ୍ଟାକଲେ ସେ ସାଙ୍ଗେ ସାଙ୍ଗେ କବାଟ ବନ୍ଦ କରିଦିଏ । କିନ୍ତୁ କବାଟ ବନ୍ଦକଲା ବେଳକୁ କେହି ଜଣେ ପାଟିକରି ଉଠନ୍ତି, "ଗୋଡ଼ଗଲା", "ଗୋଡ଼ଗଲା" । ଦ୍ୱାରରକ୍ଷୀ ଭାବେ ଯେ, ପ୍ରକୃତରେ କବାଟ ସନ୍ଧିରେ କାହା ଗୋଡ଼ ଚାପିହୋଇ-ଯାଇଛି । ତେଣୁ ସେ ହଠାତରେ କବାଟ ମେଲା କରିଦିଏ । ଏହି ସୁବିଧାରେ କେହି ଅନିମନ୍ତ୍ରିତ ବ୍ରାହ୍ମଣ ଭିତରେ ପଶିଯାନ୍ତି । ଭାବିଲି ଇମିତି ଗୋଟାଏ କିଛି କୌଶଳ କରି ଭିତରେ ପଶିବି କି ? ମୋର ତ ଅନୁମତିପତ୍ର ଆଦୌ କିଛି ନାହିଁ । ଏ ଯେଉଁ ଉଗ୍ର ଦ୍ୱାରପାଳମାନେ ପ୍ରବେଶ ପଥ ଜଗି ରହିଛନ୍ତି ସେମାନଙ୍କୁ ଟପି ଯିବି କିମିତି ?

ଇମିତି ନାନା ଚିନ୍ତାକରି ଦ୍ୱାରପାଳମାନଙ୍କ ନିକଟକୁ ଯାଇ ଅବଲମ୍ବେ ମନର କଥା ପ୍ରକାଶ କଲି । ସେମାନେ ସାଗ୍ରହରେ ମୋର ଭିତରକୁ ଯିବାର ସମସ୍ତ ବ୍ୟବସ୍ଥା କରିଦେବେ ବୋଲି ନିର୍ଭର ବାଣୀ ଶୁଣାଇଦେଲେ । ତା' ସଙ୍ଗେ ସଙ୍ଗେ ପାର୍ଲିମେଣ୍ଟ ଭିତରେ ପ୍ରବେଶ କରିବାର ନିୟମାବଳୀ ବଖାଣିବସିଲେ । ବିଲାତର ଲୋକେ ତାଙ୍କ ନିର୍ବାଚନ ମଣ୍ଡଳୀର ଏମ୍. ପି.ଙ୍କ ଜରିଆରେ ଆଗରୁ ଦରଖାସ୍ତ କରି ଅନୁମତି ପାଆନ୍ତି । ଆଉ ଯେଉଁମାନେ ମୋପରି ବିଦେଶୀ ଥାଆନ୍ତି ସେମାନେ ତାଙ୍କର ଦୂତାବାସ ଜରିଆରେ ଅନୁମତି ପାଇଁ ଆବେଦନ କରନ୍ତି । ଯେଉଁମାନେ ଏସବୁ କରିପାରିନଥାନ୍ତି ସେମାନେ ପାର୍ଲିଆମେଣ୍ଟ ଭବନ ସାମ୍ନାରେ ଧାଡ଼ିବାନ୍ଧି ଠିଆ ହୁଅନ୍ତି । ଦ୍ୱାରପାଳମାନେ ଏହି ଧାଡ଼ିବାନ୍ଧି ଠିଆ ହୋଇଥିବା ଆଗନ୍ତୁକମାନଙ୍କର ନାମଧାମ ଲେଖି ଭିତରକୁ ପଠାଇଦିଅନ୍ତି । ଭିତରୁ ଅନୁମତି ଆସିଲେ ଏମାନେ ଦଳ ଦଳ ହୋଇ ଭିତରେ ପ୍ରବେଶ କରନ୍ତି । ମୁଁ ଏହି ଧାଡ଼ିରେ ଠିଆ ହୋଇ ମୋ ପାଳି ପଡ଼ିବାରୁ ଭିତରକୁ ଗଲି । ଭାବିଥିଲି ଭିତରଟା ବଡ଼ ଚକ୍ ଚକ୍, ଝକ୍ ଝକ୍ ହୋଇଥିବ । ମାତ୍ର ନାଇଁ ତ ! ସବୁଟା ଯେମିତି ନିହାତି ସାଧାରଣ ପରି ମନେହେଲା ।

ଏହି ବିଲାତି ଜାତିଟା ବଡ଼ ରକ୍ଷଣଶୀଳ । ପ୍ରାଚୀନ ଭଙ୍ଗାରୁଜା କୋଠା, ଧଡଡ଼ା ଖଣ୍ଡିଆ ଗାଡ଼ି ଆଦି ଏମାନଙ୍କ ଦୃଷ୍ଟିରେ ମହାନ୍ ଓ ପବିତ୍ର । ତାକୁ ସବୁ ଭାଙ୍ଗି ସୁନ୍ଦର କରି ଗଢ଼ିବା କିବା ଭଲକରି ମରାମତି

କରି ତା'ର ନୂଆ କଳେବର ଗଢ଼ିବାକୁ ଏମାନଙ୍କର ସହଜରେ ମନ ବଳେନା । ସବୁ ପୁରୁଣା ଜିନିଷକୁ ବଡ଼ ଯତ୍ନରେ ଏମାନେ ସାଇତି ରଖନ୍ତି ଏବଂ ନିହାତି ଯେତିକି ଦରକାର ସେତିକି ମରାମତି କରନ୍ତି, ସଜାଡ଼ନ୍ତି ।

ଏହି ପାର୍ଲିଆମେଣ୍ଟ ଭବନ ତିଆରି ହୋଇଥିଲା ୧୮୪୦ ଖ୍ରୀଷ୍ଟାବ୍ଦରେ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ୧୯୪୧ ମେ ତା ୧୦ ରିଖରେ ଏହା ଉପରେ ବୋମା ପଡ଼ିବାରୁ ଏ ପୋଡ଼ିଗଲା । ତେଣୁ ପୁରାତନ ଗଥିକ୍ ଢାଞ୍ଚାରେ ଏହାର ପୁନର୍ନିର୍ମାଣ କରାଗଲା । ହେଲେ ତା'ର ପ୍ରାଚୀନତ୍ୱ ବଜାୟ ରଖିବାକୁ ଯାଇ ଏମାନେ ତାକୁ ଆଧୁନିକ ରୀତିରେ ରଙ୍ଗାରଙ୍ଗି ବା ସଜାସଜି କରିନାହାନ୍ତି ।

ପାର୍ଲିଆମେଣ୍ଟ ଭିତରେ ଆଲୋଚନା ଚାଲିଥାଏ । ଆଗନ୍ତୁକ-ମାନଙ୍କ ବସିବାପାଇଁ ଏକ ପ୍ରେକ୍ଷାଳୟ ଅଛି । ତାକୁ କହନ୍ତି "Strangers' gallery" । ସେଠାକୁ ଯାଇ ବକ୍ତୃତା ଶୁଣିଲି, ମହାମାନ୍ୟ ସଦସ୍ୟ-ମାନଙ୍କର ଗତିବିଧି ଲକ୍ଷ୍ୟକଲି । ହେଲେ ସେଇଟା ଯେମିତି ମନକୁ ପାଇଲାନି । କମନ୍ସ ସଭାରେ ମାତ୍ର କେତେଜଣ ସଭ୍ୟ ଉପସ୍ଥିତ ଥାନ୍ତି । କିଏ ସାମନା ଟେବୁଲରେ ଗୋଡ଼ ପକେଇଛି, କିଏ ବଙ୍କେଇ, ମୋଡ଼େଇ ହୋଇ ବସିଛି । କିଏ ଏପଟ ସେପଟ ହେଉଛି । ଅବଶ୍ୟ ବାଚସ୍ପତି ମହୋଦୟ ବଡ଼ ଗୁରୁଗମ୍ଭୀର ଭାବରେ ବସିଥାନ୍ତି ଏବଂ ଯେ କେତେଜଣ ବକ୍ତୃତା ଦେଉଥାନ୍ତି ସେମାନଙ୍କଠାରେ ବେଶ୍ ନିଷ୍ଠା ଓ ସାବଧାନତା ପ୍ରକାଶ ପାଉଥାଏ । ହେଲେ ସବୁଟା ଯେପରି ଧୀରମନ୍ଥର । ଆସନଗୁଡ଼ିକ ନିହାତି ଶସ୍ତା ଓ ସାଧାରଣ ପରି ମନେହେଲା । ସତେ ଯେମିତି ମୁଁ ବିଲାତର କେଉଁ ଶସ୍ତା ମଦଖଟି (Pub) ଭିତରେ ପଶିଛି । ଓ ! ପୁରାତନ ପରିବେଶ ରକ୍ଷା କରିବାକୁ ବୋଧହୁଏ ଏହାର ଚେହେରା ଏପରି କରିଛନ୍ତି ।

ଏହି ହାଉସ୍ ଅଫ୍ କମନ୍ସରେ ସରକାରୀ ଦଳ ଓ ବିରୋଧୀ ଦଳଙ୍କ ବସିବାର ଜାଗା ମଝିରେ ବ୍ୟବଧାନ ଖୁବ୍ କମ୍ । ଏହି ଦୁଇ ଦଳ ଆଗେ ପରସ୍ପରଙ୍କ ବିରୋଧରେ ବକ୍ତୃତା କରୁ କରୁ ନିଜର ମତ ଜାହିର କରିବାକୁ ବଳ ବି ପ୍ରୟୋଗ କରୁଥିଲେ । ଏବେ କିନ୍ତୁ ସେସବୁ

ନାହିଁ । ଏଠାରେ କିପରି ଭାଷା ପ୍ରୟୋଗ କରାଯିବ ତା'ର ଗୋଟାଏ ପରମ୍ପରା ଅଛି । କିଏ କାହାକୁ ଗାଳି ଦେବାକୁ ଚାହିଁଲେ ସେକଥା ଟିକେ ବୁଲେଇ ବାଲେଇ କହିପାରେ, ସିଧା ଗାଳି ଦେଇ ପାରିବ ନାହିଁ । ତେଣୁ ଏଠାକାର ବକ୍ତୃତା ବଡ଼ ତାତ୍ପର୍ଯ୍ୟପୂର୍ଣ୍ଣ ଏବଂ ତା'ର ଶୈଳୀକୁ ଆୟତ୍ତ କରିବାକୁ ପଡ଼େ । ଚର୍ଚ୍ଚିଲଙ୍କ ପରି ଏଠାକାର ଅନେକ ରାଜନୀତିଜ୍ଞ ଏପରି ବକ୍ତୃତାରେ ବଡ଼ ପ୍ରବୀଣ ଥିଲେ । ଏହି ପାର୍ଲିଆମେଣ୍ଟରେ କଥା କହିବାର ଶୈଳୀ ଅନ୍ୟ ଦେଶର ବିଧାନସଭାରେ ନଜର ଦିଆଯାଏ ।

ପାର୍ଲିଆମେଣ୍ଟର ଅନ୍ୟ ଗୋଟିଏ ଅଂଶ ହେଲା "ହାଉସ୍ ଅଫ ଲର୍ଡ଼ସ୍ ।" ଏଠାକାର ସଦସ୍ୟମାନେ ହେଲେ ସମ୍ଭ୍ରାନ୍ତ ଶ୍ରେଣୀର ଲୋକ । ଯଦିଚ ଏହାର ଉପସ୍ଥାନ ସଂଖ୍ୟା ଅପେକ୍ଷାକୃତ କମ୍ ତଥାପି ସଦସ୍ୟମାନଙ୍କର ଚାଲିଚଳନ, ବେଶପୋଷାକ ବେଶ୍ ମାର୍ଜିତ ପରି ମନେହେଲା । ଦିନେ ବିଲାତର ଏହି ଲର୍ଡ଼ମାନେ ଏବଂ ଲର୍ଡ଼ସ୍ ସଭା ଖୁବ୍ ପ୍ରଭାବଶାଳୀ ଥିଲେ । କିନ୍ତୁ କାଳକ୍ରମେ ଏହାର ପ୍ରଭାବ କମିଯାଇଛି । ଏହି ସମ୍ଭ୍ରାନ୍ତ ସମ୍ପ୍ରଦାୟ ବଡ଼ ରକ୍ଷଣଶୀଳ ଏବଂ ସାମ୍ରାଜ୍ୟବାଦୀ ଓ ଏକପ୍ରକାର ଏକଛତ୍ରପନ୍ଥୀ । ଏମାନଙ୍କର ସହାନୁଭୂତି ସବୁବେଳେ ଉଗ୍ର ଶାସକମାନଙ୍କ ସପକ୍ଷରେ ଯାଇଥାଏ । ହିଟଲରଙ୍କ ସହକାରୀ ହେର ହେସ୍ ଦ୍ୱିତୀୟ ମହାଯୁଦ୍ଧ ସମୟରେ ଉଡ଼ାଜାହାଜରେ ଆସି ଯେ ବିଲାତରେ ଓହ୍ଲାଇ ପଡ଼ିଥିଲେ ତା'ର ଏକ ପ୍ରଧାନ କାରଣ ହେଲା, ଜର୍ମାନୀର ଏକଛତ୍ରବାଦୀ ଶାସକଗୋଷ୍ଠୀ ଆଶା ଓ ବିଶ୍ୱାସ କରିଥିଲେ ଯେ ରକ୍ଷଣଶୀଳ ସାମ୍ରାଜ୍ୟବାଦୀ ବିଲାତ ନିଶ୍ଚୟ ଜର୍ମାନ୍‌ମାନଙ୍କ ପ୍ରତି ସହାନୁଭୂତି ପ୍ରକାଶ କରିବ ଏବଂ ସେମାନଙ୍କୁ ସମ୍ପୂର୍ଣ୍ଣରୂପେ ପରାସ୍ତ ଓ ଧ୍ୱସ୍ତବିଧ୍ୱସ୍ତ ହେବାକୁ ଦେବନାହିଁ । ଏପରି ଭାବିବାର ଅନେକ କାରଣ ଥିଲା । ଗୋଟିଏ ଘଟଣାରୁ ସାମ୍ରାଜ୍ୟବାଦୀ ବିଲାତର ବିଶେଷତଃ ଏହାର ସମ୍ଭ୍ରାନ୍ତ ଶ୍ରେଣୀର କିପରି ନାଜି ଜର୍ମାନୀ ପ୍ରତି ସହାନୁଭୂତି ଥିଲା ତାହା ସ୍ପଷ୍ଟ ଜଣାପଡ଼େ ।

ଲର୍ଡ ରେଡଶ୍‌ଡେଲ୍ ( Lord Redesdale )ଙ୍କର ଛଅ ଝିଅ ଭିତରୁ ଇଉନିଟି ମିଟ୍‌ଫୋର୍ଡ ଥିଲେ ୪ର୍ଥ । ୧୯୩୩ ମସିହା ଗ୍ରୀଷ୍ମ ଋତୁରେ

ଏହି ୧୯ ବର୍ଷ-ବୟସ୍କା ଇଉନିଟି ବିଲାତର ଏକଚ୍ଛତ୍ରବାଦୀ ଆନ୍ଦୋଳନରେ ଯୋଗ ଦେଇଥିଲେ ଏବଂ ସେହି ବର୍ଷ ଅଗଷ୍ଟ ମାସରେ ନୁରେମ୍ବର୍ଗରେ ହେଉଥିବା ନାଜି ସମ୍ମେଳନରେ ଯୋଗଦେଲେ । ସେଠାରେ ସେ ଜର୍ମାନୀର ନୂତନ ଶାସକ ହିଟଲର୍‌ଙ୍କୁ ଦେଖି ତାଙ୍କ ପ୍ରତି ଆକୃଷ୍ଟ ହୋଇପଡ଼ିଲେ ଏବଂ ତାଙ୍କ ସହିତ ଦେଖାସାକ୍ଷାତ୍ କରିବାକୁ ମନେ ମନେ ପ୍ରତିଜ୍ଞା କରିବସିଲେ । ତାର ପର ବର୍ଷ ସେ ପାଠପଢ଼ିବାକୁ ମ୍ୟୁନିଚ୍ ସହରକୁ ଗଲେ । ସେଠାରେ ସେ ହିଟଲର୍‌ଙ୍କ ପ୍ରିୟ ରେଷ୍ଟୁରାଁ ଅଷ୍ଟେରିଆ ବାଭେରିଆ (Osteria Bavaria)କୁ ବାରମ୍ବାର ଯାଇ ଜର୍ମାନୀର ଏହି ନୂତନ ଶାସକଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ୧୯୩୫ ଫେବୃଆରୀ ମାସରେ ହିଟଲର୍ ତାଙ୍କୁ ନିମନ୍ତ୍ରଣ କଲେ ତାଙ୍କୁ ଦେଖାକରିବାକୁ । ଦୁହିଁଙ୍କ ଭିତରେ ଅପୂର୍ବ ଆତ୍ମୀୟତା ହୁଏତ ପ୍ରେମ ପ୍ରକାଶ ପାଇଲା । ବିଲାତର ସମ୍ଭ୍ରାନ୍ତ ବଂଶୀୟ ଏହି ସୁନ୍ଦରୀ ଯୁବତୀଙ୍କ ରୂପ ଓ ଗୁଣ ହିଟଲରଙ୍କୁ ମୁଗ୍ଧ କରିଥିଲା । ଇଉନିଟି ଯେତେବେଳେ କହିଲେ ଯେ ଜର୍ମାନ୍ ଓ ଇଂରେଜମାନେ ଉଭୟେ ନର୍ଡିକ୍ ସମ୍ପ୍ରଦାୟ ଲୋକ ଏବଂ ବିଲାତରେ ତାଙ୍କ ପ୍ରତି ଯଥେଷ୍ଟ ସମର୍ଥନ ରହିଛି, ଏଥିରେ ହିଲଟର ଆନନ୍ଦରେ ଆତ୍ମହରା ହୋଇଉଠିଲେ । ଦୁହେଁ ପରସ୍ପର ନିବିଡ଼ ବନ୍ଧୁତାରେ ବାନ୍ଧି ହୋଇପଡ଼ିଲେ ଏବଂ ହିଟଲର ଯୁଆଡ଼େ ଗଲେ ତାଙ୍କ ସାଙ୍ଗରେ ଇଉନିଟିଙ୍କୁ ନେଲେ । କିନ୍ତୁ ବର୍ଚ୍ଚଟେସଗାର୍ଟେନ (Barchtesgarten)କୁ ନେଲେନି କାରଣ ସେଠାରେ ତାଙ୍କର ରକ୍ଷିତା ଏଭା ବ୍ରାଉନ୍ (Eva Braun) ଥିଲେ । ହୁଏତ ହିଟଲର ଇଉନିଟିଙ୍କୁ ନିଜର ଶଯ୍ୟାସାଥୀ କରିଥିଲେ । ଏଥିରେ ଇଭା ବ୍ରାଉନ୍‌ଙ୍କର ଇଉନିଟିଙ୍କ ପ୍ରତି ରାଗ ଓ ବିଦ୍ୱେଷ ଦେଖାଦେଇଥିଲା । ସେ ଯାହାହେଉ ଇଉନିଟି ବିଲାତ ଫେରି ହିଟଲରଙ୍କ ସପକ୍ଷରେ ଯୁକ୍ତି ବାଢ଼ିଲେ ଏବଂ ବିଲାତ ଓ ଜର୍ମାନୀ ଭିତରେ ବନ୍ଧୁତା ବଢ଼ାଇବା ପାଇଁ ଆବେଦନ କରି ପତ୍ରପତ୍ରିକାରେ ଲେଖା ପ୍ରକାଶ କଲେ । କିନ୍ତୁ ସେ ଯେତେବେଳେ ଦେଖିଲେ ଯେ ଜର୍ମାନୀ ଓ ବିଲାତ ମଧ୍ୟରେ ଯୁଦ୍ଧ ହେବାର ସମ୍ଭାବନା ବଢ଼ିଚାଲିଛି ସେତେବେଳେ ସେ ତାଙ୍କ ଜିନିଷପତ୍ର ଧରି ମ୍ୟୁନିଚ୍‌କୁ ଚାଲିଗଲେ । ଶେଷ ପର୍ଯ୍ୟନ୍ତ ସେ ବିଶ୍ୱାସ କରିଥିଲେ ଏ ଯୁଦ୍ଧ କେବେ

ଘଟିବନି । କିନ୍ତୁ ଯେତେବେଳେ ଏ ଯୁଦ୍ଧ ପ୍ରକୃତରେ ଆରମ୍ଭ ହୋଇଗଲା ସେ ହତାଶ ହୋଇ ମ୍ୟୁନିଚର ଏକ ପାର୍କରେ ନିଜକୁ ନିଜେ ଗୁଳିକଲେ । କିନ୍ତୁ ଆଶ୍ଚର୍ଯ୍ୟର କଥା, ଏଥିରେ ସେ ମଲେନି । ହାସପାତାଳରେ ଚିକିତ୍ସିତ ହେଉଥିଲା ବେଳେ ହିଟଲର୍ ତାଙ୍କୁ ଯାଇ ଦେଖାସାକ୍ଷାତ କରିଥିଲେ ଏବଂ ସେ ଆରୋଗ୍ୟ ଲାଭ କରିବାରୁ ୧୯୪୦ ମସିହାରେ ତାଙ୍କୁ ବିଲାତ ପଠାଇଦେଲେ । ଯଦିଓ ଇଉନିଟିଙ୍କର ବିଲାତରେ ପୁନର୍ବାର ଆତ୍ମପ୍ରକାଶ କରିବା ଫଳରେ ନାନା ଆନ୍ଦୋଳନ, ଗଳ୍ପଗୁଜବ ସୃଷ୍ଟି ହୋଇଥିଲା ତଥାପି ତାଙ୍କ ବିରୋଧରେ କୌଣସି କାର୍ଯ୍ୟାନୁଷ୍ଠାନ କରାଯାଇନଥିଲା । ଏଥିରୁ ବିଲାତବାସୀ ବିଶେଷତଃ ତା'ର ସମ୍ଭ୍ରାନ୍ତ-ଶ୍ରେଣୀ ଲୋକଙ୍କର ହିଟଲର ଓ ତାଙ୍କ ଏକଛତ୍ରବାଦ ପ୍ରତି ମୋହର ସୂଚନା ମିଳେ ।

ବହୁକାଳ ପୂର୍ବେ ଏହି ସମ୍ଭ୍ରାନ୍ତ ଶ୍ରେଣୀର ଲୋକ ବଡ଼ ପ୍ରଭାବ-ଶାଳୀ ଥିଲେ । ତାଙ୍କ କ୍ଷମତା ପ୍ରତିହତ କରି କ୍ରମେ ବିଲାତର ଜନସାଧାରଣ ଶାସନକଳ ଅକ୍ତିଆର କଲେ । ତାହା ହୋଇ ନଥିଲେ ହୁଏତ ଇଂରେଜମାନେ ମିତ୍ରଶକ୍ତି ପକ୍ଷରେ ଲଢ଼ିନଥାନ୍ତେ ।

ପାର୍ଲିଆମେଣ୍ଟ ଭବନର କ୍ୟାଣ୍ଟିନ୍‌ରେ କିଛି ଜଳପାନ କରୁ କରୁ ଇମିତି କେତେ କ'ଣ ବିଲାତ ସମ୍ବନ୍ଧରେ ଚିନ୍ତା କରୁଥାଏ । ଉଦର ଶାନ୍ତ କରି ଗଲି ଓ୍ୱେଷ୍ଟମିନିଷ୍ଟର ଆବିକୁ । ଏହା ସେହି ପାର୍ଲିଆମେଣ୍ଟ ସ୍କୋୟାରରେ ଅବସ୍ଥିତ । ପଞ୍ଚମ ଏଡ଼ଓ୍ୱାର୍ଡ଼ ଓ ଅଷ୍ଟମ ଏଡ଼ଓ୍ୱାର୍ଡ଼ଙ୍କୁ ଛାଡ଼ିଦେଲେ ୧୦୬୬ ଖ୍ରୀଷ୍ଟାବ୍ଦରୁ ଓ୍ୱିଲିୟମ ଦି କଙ୍କରରଙ୍କଠାରୁ ବିଲାତର ସବୁ ରାଜା ଓ ରାଣୀଙ୍କର ଅଭିଷେକ ଏହିଠାରେ ହୋଇଛି । ଏହାର ଭିତରେ ସେମାନଙ୍କ ମଧ୍ୟରୁ ଅନେକଙ୍କୁ କବର ଦିଆଯାଇଛି । ଆଉ ବି ଏଠି କବର ଦିଆଯାଇଛି ବିଲାତର ବହୁ ଲେଖକ, କବି, ନାଟ୍ୟକାର ଓ ରାଜନୀତିଜ୍ଞ ଆଦି ମାନ୍ୟଗଣ୍ୟ ଲୋକଙ୍କୁ । ଚାରିଆଡ଼େ ଥିବା ବିଭିନ୍ନ ମୂର୍ତ୍ତି ଓ ଲେଖାସବୁ ବୁଲି ଦେଖିଲି । ହଠାତ୍ କ'ଣ ଦେଖି ହିଠାତ୍ କ୍ରମଓ୍ୱେଲଙ୍କ କଥା ମନେ ପଡ଼ିଲା । ଜନସାଧାରଣଙ୍କର ନେତୃତ୍ୱ ନେଇ ସମ୍ରାଟ ପ୍ରଥମ ଚାର୍ଲସଙ୍କୁ ସେ ହତ୍ୟା କଲେ, ଦେଶରେ ସାଧାରଣତନ୍ତ୍ର

ପ୍ରତିଷ୍ଠା କରି ବହୁ ପ୍ରଶାସନିକ ବିଧିବ୍ୟବସ୍ଥା ସୃଷ୍ଟି କଲେ । ତାଙ୍କୁ ରାଜା ହେବାକୁ କହିବାରୁ ସେ ନାସ୍ତିକଲେ ସତ କିନ୍ତୁ ଏକାଙ୍ଗ ଚକ୍ରବର୍ତ୍ତୀ ରୂପେ ରାଜ୍ୟର ଶାସନ ଚଳାଇଲେ । ହେଲେ ବିଲାତର ଲୋକେ ଏହି ଶାସନରେ ସନ୍ତୁଷ୍ଟ ହୋଇପାରିଲେ ନାହିଁ । ତେଣୁ କ୍ରମୱେଲଙ୍କ ଜୀବନ ବଡ଼ ନୈରାଶ୍ୟମୟ ହୋଇଉଠିଲା । ତାଙ୍କ ମୃତ୍ୟୁ ପରେ ଏହି ୱେଷ୍ଟମିନଷ୍ଟର ଆବିରେ ତାଙ୍କୁ କବର ଦିଆଗଲା ! କିନ୍ତୁ ଦୁଇବର୍ଷ ପରେ ଯେତେବେଳେ ବିଲାତରେ ପୁଣି ରାଜତନ୍ତ୍ର ପ୍ରତିଷ୍ଠିତ ହେଲା ଏବଂ ଦ୍ଵିତୀୟ ଚାର୍ଲସ ରାଜା ହେଲେ ସେତେବେଳେ ତାଙ୍କ ମୃତଦେହକୁ କବରରୁ ନେଇ ଫାଶୀ ଦିଆଗଲା ! ମଡ଼ାଟାକୁ ଫାଶୀ ଦିଆଗଲା । ସେତେବେଳକୁ ତାଙ୍କ ଦେହରେ ଅବା କ'ଣ ଥିବ । ମାଂସଚମ ତ ସଡ଼ିପଚି ନଷ୍ଟ ହୋଇ ଯାଇଥିବ । ବାକିଥିବ କେବଳ ହାଡ଼ କେତେଖଣ୍ଡ । ତାକୁ ବି ଶାନ୍ତି ମିଳିଲାନି । କ୍ରମ୍ୱେଲ ଦେଶ ପାଇଁ କେତେ କାମ କରିନଥିଲେ । କିନ୍ତୁ ଶେଷରେ ତାଙ୍କର ଏଇ ଦଶା ହେଲା ! ବିଚିତ୍ର ଏ ଦୁନିଆର ରୀତି ।

# ବିଦେଶରେ ଦେଶୀ କାରବାର

୨୩୫ ନମ୍ବର କ୍ୟାମ୍‌ବ୍ରେଜ୍‌ ଘରକୁ ଆମେ କହୁଥାଉ ଆମ ଉତ୍କଳ ଭବନ । ଲଣ୍ଡନସ୍ଥ ଓଡ଼ିଆ ଗୃହମାନେ ଏଠାକୁ ଚାଲିଆସନ୍ତି ଶନିବାର ଓ ରବିବାର ସନ୍ଧ୍ୟାରେ । ବହୁତ ଗପସପ ହୁଏ, ଆଳାପ ଆଲୋଚନା ଚାଲେ । ବିଶେଷକରି କିଏ ଓଡ଼ିଶାକୁ ଯାଉଛି, କିଏ ଓଡ଼ିଶାରୁ ଆସିଲା ଏଇଟା ହୋଇଥାଏ ଉତ୍ସାହଜନକ ଖବର । କିଏ କାହା ଜରିଆରେ ଘରକୁ କ'ଣ ପଠାଏ, ଫ୍ରକ୍‌-ବ୍ଲାଉଜ୍‌, କୋଟ୍‌-ପ୍ୟାଣ୍ଟ ଆଦି । କିଏ କାହାପାଇଁ ଦେଶରୁ କ'ଣ ଆଣିଥାଏ, ଗୁଣ୍ଡି-ଗୁଡ଼ାଖୁ, ଆଚାର-ମସଲା ପ୍ରଭୃତି । ଏହି ଆମଦାନି-ରପ୍ତାନି ବେଶ୍‌ ଆମୋଦ-ପ୍ରମୋଦ ସୃଷ୍ଟି କରେ । ଏହି ଆମୋଦ-ପ୍ରମୋଦକୁ ଆହୁରି ତେଜେଇଦିଏ ଖିଆପିଆର ବ୍ୟବସ୍ଥା । ଓଡ଼ିଆଘରର ବିଭିନ୍ନ ଖାଦ୍ୟ ରନ୍ଧାଯାଇ ପରଷାଯାଏ । କେଉଁଦିନ ହୁଏ ଭାତ, ମାଛ ତରକାରି, ତା' ସାଙ୍ଗକୁ ଭଜା-ସନ୍ତୁଳା ଆଦି । କେଉଁଦିନ ହୁଏ ପଲାଉ, ମାଂସ-ତରକାରି, ଖଟା-ଖିରି ପ୍ରଭୃତି । ବେଳେ ବେଳେ ଅତିଶୟ ଭାବପ୍ରବଣ ହୋଇ ବ୍ୟବସ୍ଥା କରୁ ଶାଗ-ପଖାଳର । ତା' ସାଙ୍ଗକୁ ଭଜାଭଜି, ବାଇ-ତରକାରି ବି ହୁଏ । ଖାଇବା ଆଗରୁ କେହି କେହି ଉତ୍ସାହୀ ବନ୍ଧୁ ଟିକିଏ ଟିକିଏ ସୋମରସ ବିତରଣ କରି ଏହି ସାମ୍ପ୍ରାହିକ ମିଳନକୁ ରଙ୍ଗିନ୍‌ ରସଭରା କରନ୍ତି ।

ମୋଟାମୋଟି ପ୍ରତି ସପ୍ତାହର ଶନି-ରବିବାରରେ ଆମ ବସାଟା ବଡ଼ ଉତ୍ସବମୁଖର ହୋଇଉଠେ । ବିଦେଶରେ ଆମ ଖାଣ୍ଟି ଦେଶୀ କାରବାର ବେଶ୍‌ ଆହ୍ଲାଦ, ଉଦ୍ଦୀପନା ସୃଷ୍ଟି କରେ । କେତେ ଭଲମନ୍ଦ କଥା ପଡ଼େ । କେତେ ହସକୌତୁକ ଆରମ୍ଭ ହୋଇଯାଏ । ବିଦେଶ ଅନୁଭୂତି ନେଇ କେତେ ବ୍ୟଙ୍ଗ-ପରିହାସ ଚାଲେ । ପରିଶେଷରେ ବୁଲାବୁଲି, ସିନେମା-ଥିଏଟର ଦେଖାର ବ୍ୟବସ୍ଥା ହୁଏ । ପଡ଼ାପଡ଼ିର

ଜଞ୍ଜାଳ ନାହିଁ, ଅନ୍ୟ କୌଣସି କର୍ମତତ୍ପରତା ନାହିଁ । ତେଣୁ ବେଶ୍ ଉପଭୋଗ୍ୟ ହୁଏ ଏହି ସାପ୍ତାହିକ ବନ୍ଧୁ ମିଳନ ।

ଆମ ବସାଘରର କେତେଟା ବିଶେଷ କାମ ଏହି ଶନିବାରର ରବିବାରେ କରିବାକୁ ହୁଏ । ଘର ଝାଡ଼ାଝୋଡ଼, ସଫାସଫି କରିବାର ଥିଲେ ଅଣ୍ଟାରେ ତଉଲିଆ ଗୁଡ଼େଇ, ଖଣ୍ଡିଏ ଲୁଗିରେ ଝାଡ଼ୁ ବାନ୍ଧି ନିହାତି ମେହେନ୍ତରର ଢଙ୍ଗରେ ସେ କାମ ସମାପନ କରାଯାଏ । ତା'ପରେ ଗେଞ୍ଜି ସାର୍ଟ ଆଦି ସଫାସଫି, ଶେଷରେ ଗାଧୁଆ ପାଳି ।

ସପ୍ତାହକରେ ଥରେ ଗାଧୁଆ । ସେଥିପାଇଁ କିନ୍ତୁ କମ୍ ହଇରାଣ ହେବାକୁ ପଡ଼େନି । ଲାଗିଥାଏ କଜି । ତେଣୁ ପ୍ରାତଃଭୋଜନ ସାରି ଖବର-କାଗଜରୁ ଦେଶ, ବିଦେଶର ବିଶେଷ ବିଶେଷ ସମ୍ବାଦ ପ୍ରତି ଦୃଷ୍ଟି ଦେଲାବେଳେ ବାରମ୍ବାର ଖବର ନେବାକୁ ପଡ଼ୁଥାଏ ଗାଧୁଆ ଘର ଫାଙ୍କ୍ ପଡ଼ିଲା କି ନାହିଁ । ଆଗରୁ ଅଙ୍ଗ-ପ୍ରକ୍ଷାଳନ ପାଇଁ ଯାବତୀୟ ସରଞ୍ଜାମ, ଯଥା—ବ୍ରସ୍, ଖିମ୍ ପାଉଡ଼ର, ସାବୁନ୍, ଟାଲକମ୍ ପାଉଡ଼ର, ଡେଟଲ ଇତ୍ୟାଦି ଓ ତା' ସାଙ୍ଗକୁ ନିଜର ବସନଭୂଷଣ ଓ କିଛି ପେନି ବ୍ୟବସ୍ଥା କରାଯାଇଥାଏ । ବହୁ ଅପେକ୍ଷା କରି ଗାଧୁଆ ଘରେ ପଶିଗଲାକ୍ଷଣି ଆରମ୍ଭ ହୋଇଯାଏ କସରତ୍ ! ଖିମ୍ ପାଉଡ଼ର ପକେଇ ବ୍ରସ୍ ସାହାଯ୍ୟରେ ଗାଧୁଆ କୁଣ୍ଡକୁ ସଫା କରିବାକୁ ହୁଏ । ବହୁ ଲୋକଙ୍କ ଦେହର ମଳି ଲାଗି ସେ କିଛି କମ୍ ଚିକଟା ହୋଇ ନ ଥାଏ । ତେଣୁ ବେଶ୍ ଟିକିଏ ପରିଶ୍ରମ କରିବାକୁ ପଡ଼େ । ତା'ପରେ ସାମାନ୍ୟ ଡେଟଲ ଛିଞ୍ଚି ତାକୁ ବିଶୋଧିତ କରିବା ପରେ ସେ କୁଣ୍ଡ-ସଂଲଗ୍ନ ନଳୀରେ ଥିବା ଛିଦ୍ରରେ ପେନିମାନଙ୍କୁ ଭର୍ତ୍ତି କରାଯାଏ । ତା'ପରେ ଯେତେବେଳେ ଗରମ ପାଣି ଧୀର ମନ୍ଥର ଗତିରେ କୁଣ୍ଡରେ ପଡ଼େ ମନରେ ଅପୂର୍ବ ଆହ୍ଲାଦ ଜାଗିଉଠେ । ଯଦି କିଛି ସାର୍ଟ, ଗେଞ୍ଜି, ସ୍ୱେଟର, ପାଇଜାମା ସଫା କରିବାର ଥାଏ ତାକୁ ଯଥାସମ୍ଭବ ସାରି ଗାଧୁଆକୁଣ୍ଡରେ ଡୁବକି ଦେବାକୁ ହୁଏ । ଦେହରେ ବି ସପ୍ତାହ ମଧ୍ୟରେ କମ୍ ମଇଳା ଜମିନଥାଏ । ତାକୁ ଘଷିମାଜି ସଫା କରିବାକୁ ସମୟ ଲାଗେ । ଏହି ପ୍ରକାରେ ବହୁ କଷ୍ଟରେ ସ୍ନାନକୃତ୍ୟ ସମାପନ କରାଯାଏ । ସପ୍ତାହକରେ ଥରେ ଏ କସରତ୍ ଦରକାର ପଡ଼େ ବୋଲି ରକ୍ଷା । ନଚେତ୍ ପ୍ରତିଦିନ ଯଦି ଗାଧୋଇବାକୁ

ପଡ଼ୁଥାନ୍ତା ତେବେ ତ ଏହି ଅଭିଯାନରେ ବହୁ ଶକ୍ତି ଓ ସମୟ ନଷ୍ଟ ହେଉଥାନ୍ତା ।

ଗାଧୋଇବା ଆଗରୁ ପାଇଖାନା ଯିବା ପର୍ବଟା କିଛି କମ୍ କଷ୍ଟଦାୟକ ହୁଏନି । ଅନ୍ୟଦିନ ତରତରରେ ପେଟସଫା କାମଟା ଯଥାତଥା କରାଯାଏ । କିନ୍ତୁ ଶନିବାର-ରବିବାରରେ ଏଇଟା ଟିକିଏ ଭଲ ଭାବରେ ବ୍ୟବସ୍ଥା କରିବାକୁ ସମୟ ମିଳେ । କିନ୍ତୁ ପାଇଖାନାରେ କମ୍ ଭିଡ଼ ନୁହେଁ । ସେଥିରେ ବି ଏକ ପ୍ରକାର କଉ । ପୁଣି ଟୟଲେଟ୍ ପେପର, ଡିଟଲ ଆଦି ଯୋଗାଡ଼ କରିବାକୁ ହୁଏ । କିନ୍ତୁ ଅନେକ ସମୟରେ ଟୟଲେଟ୍ ପେପର ସଜାଡ଼ି ରଖିବା ସମ୍ଭବ ହୁଏନି । ତେଣୁ ବେଳେ ବେଳେ ଖବରକାଗଜ ଚିରି ଏହି କୃତ୍ୟ ଚଳାଯାଏ । କେତେକ କିନ୍ତୁ ଝାଡ଼ାଯାଇ ପାଣି ମାରିବା ଜାତୀୟ ପ୍ରଥାଟା ଛାଡ଼ିନଥାନ୍ତି । ତେଣୁ ପୁରୁଣା ମଦ ବୋତଲ ବା ଟିଣଡିବା ସାହାଯ୍ୟରେ ପାଣିନେଇ ଶୌଚ କାମ ସାରନ୍ତି । ପାଟିରେ କିଏ ଗୁଣ୍ଡି ଯାକେ । କିଏ ଗୁଡ଼ାଖୁରେ ଦାନ୍ତ ଘଷେ ଏବଂ ନିହାତି ଜାତୀୟ ରୀତିରେ ଏହି ପେଟସଫା କାମ ସାଙ୍ଗ କରାଯାଏ ।

ଆମ ଭୂମି ମଣ୍ଡଳରେ ଥିବା ପାଇଖାନା, ମାନେ ମଳମୂତ୍ର-ନିଷ୍କାସନ ସ୍ଥାନଟି ଉପରେ ଖୁବ୍ କୃପା ପଡ଼େ । ସକାଳୁ ସକାଳୁ ଘରୁ ଆସିଥିବା ଚିଠିପତ୍ର ପଢ଼ି ବିଭିନ୍ନ ଭଲମନ୍ଦ ସମ୍ବାଦ ବିଷୟରେ ଆଲୋଚନା କଲାବେଳେ କିଏ ପାଇଖାନା ଯାଇଛି, ସେଇଟା କେତେବେଳେ ଖାଲି ହେବ ଏ ସମ୍ବାଦଟା ବି ଅନୁଧ୍ୟାନ କରିବାକୁ ପଡ଼େ । କିନ୍ତୁ ଯେଉଁ ପାଇଖାନାରେ ଏତେ ଲୋକ ଝାଡ଼ା ଯାଆନ୍ତି ଏବଂ ସେଥିପାଇଁ ଟୟଲେଟ୍ ପେପର, ଖବରକାଗଜ ଆଦି ବ୍ୟବହାର କରନ୍ତି ତାହାର ସାଧାରଣ ଚେହେରାଟା ସହଜରେ ଅନୁମେୟ । ସେଇଟା ମୋଟାମୋଟି ଗ୍ରେଟ ଖତଗଦା ବା ମଇଳା ପେଣ୍ଡର ରୂପ ନେଇଥାଏ । ତାକୁ ଦେଖିଲେ ଖୋଲା ପଡ଼ିଆରେ ବା ନର୍ମଳ ନଈନାଳ କୂଳରେ ବା ଉନ୍ମୁକ୍ତ ରାସ୍ତା ଉପରେ ବା ପ୍ରଶସ୍ତ ପକ୍କା ପାଇଖାନାରେ ମଳତ୍ୟାଗ କରୁଥିବା ଲୋକଙ୍କୁ ବି ଝାଡ଼ା ମାଡ଼େ ! ତେବେ ପାଇଖାନାସ୍ଥ ଜଳ ନିଷ୍କାସନ ଯନ୍ତ୍ରର ଛୁଞ୍ଚା ଚେନ୍‌ଟାକୁ ବାରମ୍ବାର ଟାଣି, ଡିଟଲ, ଫିନାଇଲ, ଆଦି ବ୍ୟବହାର

କରି ସେ ଅସଫା ଜାଗାଟାକୁ .ଯଥାସମ୍ଭବ ସଫା, ବିଶୋଧିତ କରି ପେଟ ପରିଷ୍କାର କରାଯାଏ ।

ଶନିବାର, ରବିବାରକୁ ଛାଡ଼ିଦେଲେ ସପ୍ତାହର ଅନ୍ୟ ଦିନମାନଙ୍କରେ ବିଦ୍ୟାଳୟକୁ ଯିବାର ପାଳି ଥାଏ । ତେଣୁ ନିତ୍ୟକର୍ମସବୁ ସଂକ୍ଷେପରେ ଓ ତରତରରେ ସାରି ବସଷ୍ଟାଣ୍ଡ୍‌କୁ ଦଉଡ଼ିବାକୁ ପଡ଼େ । କିନ୍ତୁ ପାଉଁରୁଟି, ଅଣ୍ଡା, ଛେନା, ସନ୍ତୁଳାସନ୍ତୁଳି ଆଦିରୁ ଗୁଡ଼ାଏ ଜଳପାନ ସ୍ୱରୂପରେ ପେଟରେ ପୂରେଇବାକୁ ହୁଏ । କାରଣ ଦିନଯାକ ବାହାରେ ବାହାରେ କଟେ । ମଧ୍ୟାହ୍ନ ଭୋଜନଟା ଯଥାସମ୍ଭବ ବିଦ୍ୟାନୁଷ୍ଠାନରେ ସାଙ୍ଗ କରାଯାଏ । କାରଣ ସେ ବାବତ୍‌ରେ ବେଶୀ ଖର୍ଚ୍ଚ କରିବାକୁ ସମ୍ବଳ ନ ଥାଏ ଏବଂ ସେ ତେଲମସଲା-ବିହୀନ ରନ୍ଧାରନ୍ଧି ଆମ ସୁଆଦଖିଆ ପାଟିକୁ ଭଲ ଲାଗେନି । ମଧ୍ୟାହ୍ନ ବିରତି ପୂର୍ବରୁ ମଝିରେ ଥରେ ସ୍ନ-ବିସ୍କୁଟ୍ ଆଦି ଉଦରସ୍ଥ କରିବାକୁ ପଡ଼େ । ତା’ପରେ ବିଦ୍ୟାନୁଷ୍ଠାନର କ୍ୟାଣ୍ଟିନ୍‌ରେ ନିଜ ଅର୍ଥବଳକୁ ଚାହିଁ ଯାହା ରୁଚିକର ମନେହୁଏ ତାହା ଖିଆଯାଏ । ସେଠାରେ ରୁଟି, ମାଖନ, ଛେନା, ଆଳୁସିଦ୍ଧ, ସିଝା ଗୋ-ମାଂସ, ମେଣ୍ଢା ମାଂସ, କୁକୁଡ଼ା ମାଂସ, ଶାକସବଜ (Salad), ମାଛ ଓ ଆଳୁଭଜା ଆଦି ମିଳେ । ଆଉ ବିଲାତି ଖାଦ୍ୟପଦ୍ଧତି ଅନୁସାରେ ଖାଇବା ଶେଷରେ ମୁହଁ ମିଠା କରିବାକୁ ବିଭିନ୍ନ ସୁସ୍ୱାଦୁ ସାମଗ୍ରୀ, ଯଥା— ଅଣ୍ଡାସର (Ice cream), ଫଳ ମିଶ୍ରଣ (Fruit Salad), ପିଠା (Pudding), ଚାଉଳ ଖିରି (Rice Pudding) ଆଦି ମିଳେ ।

ଏହି ଚାଉଳ ଖିରିଟା ବଡ଼ ଚମତ୍କାର ଭାବରେ ତିଆରି କରାଯାଏ । ବିଲାତରେ ଖାଣ୍ଟି କ୍ଷୀର ଯଥେଷ୍ଟ ମିଳେ । ପ୍ରକୃତରେ କହିବାକୁ ଗଲେ ଖାଣ୍ଟି କ୍ଷୀର ଅଖାଣ୍ଟି କ୍ଷୀର ବୋଲି ଏମିତି କିଛି ସେଠାରେ ନାହିଁ । ସବୁ କ୍ଷୀର ଖାଣ୍ଟି ଏବଂ ତାହା ବୈଜ୍ଞାନିକ ପ୍ରଣାଳୀରେ ବିଶୋଧିତ ହୋଇ ସିଲ୍‌ମରା ବୋତଲରେ ବିକ୍ରୀହୁଏ । ଏଇ ସମ୍ବନ୍ଧରେ ଗୋଟିଏ କଥା ମନେ ପଡ଼ୁଛି ।

ଭାରତରେ ତ ପ୍ରାୟ ସବୁ ଭେଜାଲ । କ୍ଷୀର ବା ସେଥିରୁ ଖସିଯିବ କମିତି ! ଆମ ଗଉଡ ବା କ୍ଷୀର ବ୍ୟବସାୟୀମାନେ ବିଭିନ୍ନ ଭାବରେ କ୍ଷୀର

ଆଣି ବିକନ୍ତି । ଏହି କ୍ଷୀରକୁ ସେମାନେ ଏକ ଗୁଣାତ୍ମକ କ୍ରମରେ ବିଭିନ୍ନ ପ୍ରକାରର କରିଥାନ୍ତି । ଗୋରସ ବା ମହିଷରସରେ ବା ଦୁଧଗୁଣ୍ଡରେ ଅଳ୍ପ ପାଣି, ମଧ୍ୟଭଲିଆ ପାଣି, ବେଶୀ ପାଣି ଦେଇ ଗ୍ରାହକଙ୍କ ମରଜିକୁ ଗୃହିଁ ବିଭିନ୍ନ ଦାମ୍‌ରେ ବିକନ୍ତି । କେହି କେହି ସେଥିରେ ସାମାନ୍ୟ ଚିନି, ଚିନାବାଦମ୍ ରସ ବା ଖଡ଼ିମଣ୍ଡ ଦିଅନ୍ତି ଏବଂ ଦରକାର ହେଲେ ମଝିରେ ମଝିରେ କୂଅ, ଗଡ଼ିଆ, ପାଇପ୍ ପାଣିରୁ ଆଞ୍ଜାକରି କିଛି ତହିଁରେ ମିଶାନ୍ତି । ତେଣୁ କ୍ଷୀର କିଣିଲାବେଳେ ଆମକୁ ବିଶେଷ ସାବଧାନ ହେବାକୁ ପଡ଼େ । କ୍ଷୀର ନୀର ତ ଅଭେଦ ଆତ୍ମା । ପାଣି କିଛି ମିଶିଲେ ମିଶୁ କିନ୍ତୁ ସେଇଟା ଯଦି ଅପରିଷ୍କାର ପାଣି ହେଲା ତେବେ ତ ଆମାଶୟ, ଝାଡ଼ା, ଟାଇଫଏଡ଼ ଆଦି ମାରାତ୍ମକ ସଂକ୍ରାମକ ରୋଗର ସମ୍ଭାବନା ରହିଛି । ତେଣୁ ଆମେ ଦୁଧ-ବିକାଳିଙ୍କୁ ଦୃଢ଼ କଣ୍ଠରେ ଖାଣ୍ଟି କ୍ଷୀର ଦିଅ, ଖାଣ୍ଟି କ୍ଷୀର ଦିଅ ବୋଲି ତାକିଦ୍ କରିବସୁ । ଏହି ଅଭ୍ୟାସର ବଶବର୍ତ୍ତୀ ଆମର ଜଣେ ଭାରତୀୟ ଥରେ ବିଲାତରେ ଏକ କ୍ଷୀର ଦୋକାନରେ ପଶି ବୋତଲେ ଖାଣ୍ଟି କ୍ଷୀର ମାଗିଲେ । ଦୋକାନୀଜଣକ ସାମାନ୍ୟ ଆଶ୍ଚର୍ଯ୍ୟ ହୋଇ କହିଲେ, "ମୋ ପାଖରେ ତ ଖାଣ୍ଟି କ୍ଷୀର ନାହିଁ । ଖାଲି କ୍ଷୀର ଅଛି," ଭାରତୀୟ ଜଣକ ପଞ୍ଜାବୀ, ବଡ଼ ଦୁର୍ଦ୍ଦାନ୍ତ ଲୋକ । ସେ ଜିଦ୍ ଧରିବସିଲେ ଯେ ତାଙ୍କର କେବଳ ଖାଣ୍ଟି କ୍ଷୀର ଦରକାର । କିନ୍ତୁ ଦୋକାନୀ ଜୋରରେ ବାରମ୍ବାର ଉତ୍ତର ଦେଲା, "ମୋର ଖାଣ୍ଟି କ୍ଷୀର ନାହିଁ, ମାତ୍ର କ୍ଷୀର ଅଛି । ତାକୁ ନେବେ ଯଦି ନିଅନ୍ତୁ" । ଏଥିରୁ ବେଶ୍ ଗୋଟାଏ ହଟ୍ଟଗୋଳ ଆରମ୍ଭ ହୋଇଗଲା । ଶେଷରେ ଜଣେ ଭଦ୍ରଲୋକଙ୍କ ମଧ୍ୟସ୍ଥତାରେ ଏ ବିବାଦ ତୁଟିଲା । ସେ ବୁଝାଇଦେଲେ ଯେ ବିଲାତରେ ଯେ କ୍ଷୀର ମିଳେ ସେସବୁ ଖାଣ୍ଟି । ସେଠି କେହି ଦୋକାନରେ ଖାଣ୍ଟି କ୍ଷୀର ମାଗେନି । ମାଗେ କ୍ଷୀର, ପାଏ ଖାଣ୍ଟି କ୍ଷୀର । ଏଁ ! ବିଲାତରେ ବିକାଯାଉଥିବା ସବୁ କ୍ଷୀର ଖାଣ୍ଟି । ଭାରତୀୟ ଭଦ୍ରଲୋକ ଜଣକ ବଡ଼ ଆଶ୍ଚର୍ଯ୍ୟାନ୍ୱିତ ହୋଇପଡ଼ିଲେ ।

ଆମ ବିଦ୍ୟାଳୟର କାଣ୍ଟିନ୍‌ରେ ସେଇ ଖାଣ୍ଟି କ୍ଷୀରରେ ସ୍ୱଳ୍ପ ସରୁ ଅରୁଆ ଚାଉଳ ଓ ବାଦାମ୍ ଆଦି ଦେଇ ଖିରି କରନ୍ତି । ଖିରି ତ ନୁହେ ପାଣିମାରି ତାକୁ ଗ୍ୱଢ଼ ପରି ଥଲ ଥଲ କରିଥାନ୍ତି । ଉପର ସରଟା ସାମାନ୍ୟ ପୋଡ଼ିଯାଇ ଏକପ୍ରକାର ପିଙ୍ଗଳବର୍ଣ୍ଣ ଧରିଥାଏ । ସେଇ

ଖିରଟା ମୋ ଓଡ଼ିଆ ପାଟିକୁ ବେଶ୍ ସୁସ୍ୱାଦୁ ଲାଗେ । ତେଣୁ ମଧ୍ୟାହ୍ନ ଭୋଜନ ବେଳକୁ ମୁଁ ଆଉ ଯାହା କଣେ ନ କଣେ ଏଇଟା ନିଶ୍ଚୟ ଖାଇବାର କଥା । ଦାମ୍ଟା ବେଶୀ ନୁହେ ଅଧ ଶିଲିଂକୁ ପୂରା ପ୍ଲେଟେ । ତା ସାଙ୍ଗରେ ପାଉଁରୁଟି ବା ଆଳୁସିଦ୍ଧ (Masked potato) ଆଦି ମିଶେଇ ସ୍ୱଳ୍ପ ମୂଲ୍ୟରେ ବେଶ୍ କିଛି ଖାଏ ।

ବିଲାତରେ ସବୁ ଖାଦ୍ୟରେ ସବୁ ଜାଗାରେ ଏଇ ଆଳୁ, ଗୋଲ ଆଳୁଟା ଖୁବ ଚଳେ । ବୁଝିପାରିଲିନ ଏ ତଥାକଥିତ ବିଲାତିଆଳୁ ପ୍ରତି ବିଲାତି ଲୋକଙ୍କର ଏତେ ପ୍ରୀତି କାହିଁକି ? ଅନୁସନ୍ଧାନ କରି ବୁଝିଲି ଯେ ବିଲାତବାସୀ ସେମାନଙ୍କର ଭୋଜନାଦି ବ୍ୟବସ୍ଥା ପାଇଁ ଯେତେ ଖାଦ୍ୟଦ୍ରବ୍ୟ ଆବଶ୍ୟକ କରନ୍ତି ସେଥିରୁ ପ୍ରାୟ ଶତକଡ଼ା ୫୦ ଭାଗ ନିଜ ଦେଶରେ ଉତ୍ପନ୍ନ କରନ୍ତି । ବାକିଟା ଅନ୍ୟ ଦେଶରୁ ଆମଦାନି କରନ୍ତି । କେବଳ ଏଇ ଆଳୁଟାର ଉତ୍ପାଦନ ଏମାନଙ୍କର ଚାହିଦାକୁ ଚାହିଁ ଯଥେଷ୍ଟ । ବିଲାତର ପାଉଁଶିଆ ମାଟିରେ ବଡ଼ ବଡ଼ ଗୋଲଆଳୁ ବେଶ୍ ଫଳେ । ତେଣୁ ଅନ୍ତତଃ ଏଥିରେ ସ୍ୱାବଲମ୍ବୀ ହେବାକୁ ପ୍ରାୟ ସବୁ ଅନ୍ନ-ବ୍ୟଞ୍ଜନରେ ଭଜା, ସିଝା ଯେ ପ୍ରକାରରେ ହେଉ ଏଥିକୁ ପରଷନ୍ତି । ବାଃ ! ଚମତ୍କାର ଜାତୀୟତା ତ ! କିନ୍ତୁ ଆମ ଦେଶରେ ତ ବିଦେଶୀ ମାଲ ପାଇଁ ଅପୂର୍ବ ମମତା । କୌଣସି ଜିନିଷ ବିଦେଶରୁ ଆମଦାନି ହୋଇଛି ଶୁଣିଲେ ଆମ ଲୋକେ ହଉ ହାଉ ହୋଇ କିଣିନେବେ । ଦେଶୀ ଜିନିଷରେ ବିଦେଶୀର ମୋହର ମାରିଦେଲେ ତାର କାଟ୍ତି ବଢ଼ିଯାଏ ।

ଯାହାହେଉ ଅନେକ ସମୟରେ ଏହି ଆଳୁ ଓ ଗୁଉଳି ଖିରକୁ ଆଶ୍ରାକରି ଆମ ଶିକ୍ଷାନୁଷ୍ଠାନରେ ମଧ୍ୟାହ୍ନ ଭୋଜନଟା ସାଙ୍ଗ କରେ । ଦିନେ ଦିନେ ହାତରେ ବେଳ ଥିଲେ ସାଙ୍ଗସାଥୀ ମେଳରେ ଯାଉ ଅଲଡ୍ୱିଚ୍‌ରେ ଥିବା ଇଣ୍ଡିଆ ହାଉସ୍, ଭାରତ ଭବନକୁ । ସେଠାରେ ଯାବତୀୟ ଭାରତୀୟ ଖାନା ଠିକଏ ଶସ୍ତାଦରରେ ବିକ୍ରୀ ହୁଏ । ବିରିଆନି-ପଲଉ, ଭାତ-ରୁଟି, ପରଟା-ପୁରୀ, ଇଡ଼ଲି-ଦୋସା, ମାଂସ ଝୋଳ, ମାଛ ଝୋଳ, ପନିପରିବା ତରକାରି, ଭଜା-ସନ୍ତୁଳା, ବେସର-ଖଟା ଆଦି ଗରମ ମସଲା ଦିଆଯାଇ ଖୁବ୍ ଚମତ୍କାର ଭାବରେ ତିଆରି ହୁଏ । ଆଗ ପଇସା ଦେଇ, ବ୍ରାହ୍ମଣ ପିଲାଏ ବ୍ରତ ହେଲାବେଳେ ଭିକ୍ଷା ମାଗିଲା

ଭଲ ଥାଳି ପଡ଼ିଲେ ଯେତିକି ଆସିବ । ଚଉକି, ଟେବୁଲ ପଡ଼ିଛି ବସି ଭୋଜନ କରିବ । ସିଝାସିଝି ବିଲାତି ଖାଦ୍ୟ ଖାଇ ଆମକୁ ଚିଟା ଲାଗିଥାଏ । ତେଣୁ ଏ ବହୁ ରାଗମସଲାଯୁକ୍ତ ଝୋଳ, ତରକାରି ଆମେ ସୁସ୍ଵା ଗିଳିଯାଉ । କେବଳ ଆମେ ନୋହୁ, ଇଣ୍ଡିଆ ହାଉସ୍‌ର ଖାନା କଥା ଶୁଣିଲେ ଆମର ବହୁତ ବିଲାତି ଓ ମାର୍କିନ ବନ୍ଧୁ ଆମ ସାଙ୍ଗରେ ବାହାରନ୍ତି ଏବଂ ସାନନ୍ଦରେ ହାତ ଲଗେଇ ଏଇସବୁ ଭାରତୀୟ ଅନ୍ନ ବ୍ୟଞ୍ଜନ ଉଦରସ୍ଥ କରନ୍ତି ଏବଂ ତାକୁ ତାରିଫ୍ କରି କହନ୍ତି । Your Indian curry is wonderful. ତୁମ ଭାରତୀୟ ତରକାରି ଚମତ୍କାର ! ସତେ !

ଯେଉଁଠି ଖାଉ, ଯେତେ ଖାଉ ସେ ଯେମିତି ଦୁଇ ତିନି ଘଣ୍ଟା ପରେ ହଜମ ହେଇଯାଇ ପୁଣି ଆରମ୍ଭ ହୋଇଯାଏ ଭୋକ । ତେଣୁ ୩ଟା ୪ଟା ବେଳକୁ ଆଉ କିଛି କେକ୍ ବିସ୍କୁଟ୍ ଖାଉ କ୍ଷୁଧା ସହିତ । ବସାକୁ ଫେରିଲା ବେଳକୁ ବାଟରୁ ବିଭିନ୍ନ ଖାଦ୍ୟ ଉପକରଣ ବିଶେଷକରି କୁକୁଡ଼ା ମାଂସ ଧରି ଆସୁ । ଦୋକାନୀମାନେ ଏହି ଗ୍ରାମପକ୍ଷୀମାନଙ୍କର ପର, ଚମଡ଼ା, ଅନ୍ତ ଆଦି ସଫା କରେଇ ପଲିଥିନ୍ ବ୍ୟାଗ୍‌ରେ ଟାଙ୍ଗିଥାନ୍ତି । ବିକ୍ରୀ କଲାବେଳେ ଓଜନ କରି ଦିଅନ୍ତି । ମେଣ୍ଢାଗୁଡ଼ିକୁ ମଧ୍ୟ ମାରି ତା'ର ଚମ ପ୍ରଭୃତି ସଫାକରି ଟାଙ୍ଗିଥାନ୍ତି । ଗ୍ରାହକ ଇଚ୍ଛା ଅନୁସାରେ କାଟି ଦିଅନ୍ତି । ଏ ଦେଶର ମେଣ୍ଢାଗୁଡ଼ିକ ଦାମୁଡ଼ି ପରି ଖୁବ୍ ବଡ଼ ବଡ଼ । ବଡ଼ ବଡ଼ ଗୋରୁ ବି ମରାଯାଇ ଟଙ୍ଗା ହୋଇଥାଏ । ଏହି ଜୀବଗୁଡ଼ିକୁ ଯେଉଁଦିନ ମାରନ୍ତି ଆମ ଦେଶପରି ସେହିଦିନ ତାକୁ ବିକିବା ଦରକାର ପଡ଼େନି । କାରଣ ଏକେ ତ ଶୀତପ୍ରଧାନ ଦେଶ । ସହଜରେ ଏହି ପଶୁ-ମାନଙ୍କର ମୃତ କଳେବର ସଡ଼େନି । ପୁଣି ତାକୁସବୁ ରାତିରେ ଶୀତଳ ଯନ୍ତ୍ର (Refrigerator)ରେ ରଖନ୍ତି । ଆଉ ମଧ୍ୟ ଗୋରୁ ହୁଅନ୍ତୁ, ମେଣ୍ଢା ହୁଅନ୍ତୁ ଏମାନଙ୍କ ଦେହରେ ଏତେ ମୋଟାର ଚର୍ବି ଥାଏ ଯେ, ଏ ମାଂସଗୁଡ଼ିକ ବହୁଦିନ ଧରି ରହି ତା'ଉପର ଚର୍ବି ହଳଦିଆ ପଡ଼ି ଫିମ୍ପି ମାଇଲେ ବି ଭିତର ମାଂସ ସେତେଟା ନଷ୍ଟ ହୁଏନି ।

ଆମପାଇଁ କାମଡେନ୍ ରୋଡ଼ରେ ଥିବା ଡ୍ରେକ୍‌ନକ୍ ଛକଟା ହୋଇଥାଏ ବଡ଼ ସୁବିଧାଜନକ । ସେଠାରେ ବିଲାତବାସୀଙ୍କ ଗ୍ରାହକ

ଅନୁସାରେ ବିଭିନ୍ନ ଖାଦ୍ୟସରଞ୍ଜାମ ଓ ଘରକରଣା ଆସବାବ ତ ମିଳେ, ଆଜି ବି ମିଳେ ଭାରତୀୟ ଲୋକଙ୍କ ପ୍ରିୟ ପନିପରିବା, ଶାକ୍‌ସବ୍‌ଜି ଇତ୍ୟାଦି । ବଡ଼ ଆଶ୍ଚର୍ଯ୍ୟ ଲାଗେ ଆମ ପରିଚିତ ଲାଉ, କଖାରୁ, ଜହ୍ନି, ବାଇଗଣ, ପୋଇ, ପାଳଙ୍ଗ ଶାଗ ଇତ୍ୟାଦି ବିଲାତରେ ଦେଖି । ଏସବୁ ଆସୁଛି କେଉଁଠୁ ? କ'ଣ ଆମ ଭାରତରୁ ? ନା, ପଚାରି ବୁଝିଲି ସେସବୁ ଆସୁଚି ସାଇପ୍ରସ୍ ଓ ଆଫ୍ରିକାରୁ ।

ବିଲାତବାସୀ ଅବଶ୍ୟ ଆମ ଏ ପନିପରିବା ଦୈନନ୍ଦିନ ଖାଦ୍ୟରେ ଖାଆନ୍ତିନି । କିନ୍ତୁ ସୁବିଧା ପାଇଲେ ସବୁ ଖାଆନ୍ତି । ବିଶେଷକରି ଆମ ତେଲ, ମସଲା, ରାଗଦିଆ ତରକାରି ବେଶ୍ ଉପଭୋଗ କରନ୍ତି ଏବଂ ରାଗ ହେଲା ବୋଲି ପାଟିକରି ଉଠନ୍ତି, Oh ! it is too hot ! କିନ୍ତୁ ନ ଖାଇ ଛାଡ଼ନ୍ତିନି । ଥରେ ଜଣେ ବୃଦ୍ଧ ସାହେବଙ୍କ ସାଙ୍ଗେ କଥାବାର୍ତ୍ତା କରୁଚି, ସେ ମହାଶୟ ପ୍ରେମରେ ଗଦଗଦ ହୋଇ ପଚାରିଲେ, "ଭାରତରେ କେଉଁଠି ଆପଣଙ୍କ ଘର ?"

ମୁଁ ଓଡ଼ିଶା, ପୁରୀ, ଜଗନ୍ନାଥ ଦେଶ ଆଦି କହି ବହୁତ ଅବତାରଣା କଲି । ବୃଦ୍ଧ ଲୋକଟି ସବୁ ଜାଣିଲା ପରି ସହର୍ଷ ବଦନରେ କହିଲେ—

Oh, yes, I know, I know. I was in Kabul during the First World War. I like your meat curry very much.

ଚମତ୍କାର ! ସେ କେଉଁଠି ପ୍ରଥମ ମହାଯୁଦ୍ଧବେଳେ କାବୁଲରେ ଥିଲେ, ଆଜି ଆମ ମାଂସ ତରକାରିକୁ ଖୁବ୍ ଭଲ ପାଉଥିଲେ । ଭଲ ପାଇଲେ ବେଶ୍ କଲେ । କିନ୍ତୁ ଓଡ଼ିଶାଟା କାବୁଲ ପାଖରେ ନା କାବୁଲଟା ଓଡ଼ିଶାରେ ! କିଏ କେଉଁଠି ! କିନ୍ତୁ ସବୁଟା ଭାରତ ବା ଓଡ଼ିଶା ବୋଲି ଭାବି ଏତେ ଗୁଡ଼ାଏ ପ୍ରଶଂସା ଆମ ମାଂସ ତରକାରିର କଲେ ।

ଗୋଟାଏ କଥା ମୋତେ ବଡ଼ ଆଶ୍ଚର୍ଯ୍ୟ ଲାଗିଲା । ଏମାନେ ତ ଆମ ରାଗମସଲାଦିଆ ତରକାରିକୁ ଏତେ ଭଲ ପାଉଚନ୍ତି, ବିଭିନ୍ନ ମସଲା ଗୁଣ୍ଡ ତ ଏଠି ବେଶ୍ ବିକୁଛନ୍ତି କିନ୍ତୁ ଏମାନେ ତାଙ୍କ ତରକାରିରେ

ଶାଗ-ମସଲା ଦେଇ ନାହାନ୍ତି କାହିଁକି ? ଥରେ ଜଣେ ସାହେବଙ୍କୁ ଏକଥା ପଚାରିଥିଲି । ସେ କହିଲେ, "ଏକଥା ସତ ଯେ, ପୂର୍ବେ ଭାରତ ଓ ପୂର୍ବ ଭାରତୀୟ ଦ୍ୱୀପପୁଞ୍ଜରୁ ବିଭିନ୍ନ ମସଲାମସଲି ଆଣି ସେଥିରେ ବ୍ୟବସାୟ କରି ଆମେ ବହୁତ ଅର୍ଥ ଉପାର୍ଜନ କରିଛୁ । ବର୍ତ୍ତମାନ ବି ସେସବୁ ଆଣି ବିକୁଛୁ, ସେଥିରେ ବେପାର କରୁଛୁ । କିନ୍ତୁ ସେସବୁ ତ ନିଜେ ଖାଇଁ ଆମ ଧନ ଅନ୍ୟମାନଙ୍କୁ ଦେଇପାରୁନା ।" ବାଃ ! ଚମତ୍କାର ଯୁକ୍ତି, ଚମତ୍କାର ଜାତୀୟତା !

ଆମେ ଆମ ରବିଭୋଜନ ପାଇଁ କୁକୁଡ଼ା କି ମେଣ୍ଢା ମାଂସ, ଆଳୁ, ପିଆଜ, ପନିପରିବା ଆଦି ଆଣି ବସାରେ ରୋଷାଇବାସ କରୁ ।

ସପ୍ତାହର ଅନ୍ୟଦିନମାନଙ୍କରେ ଆମ୍ଭେମାନେ କାର୍ଯ୍ୟବ୍ୟସ୍ତ ରହୁ । ତେଣୁ ରୋଷେଇବାସଟା ଯଥାସମ୍ଭବ ସଂକ୍ଷିପ୍ତ କରାଯାଏ । କିନ୍ତୁ ଶନିବାର, ରବିବାରରେ ବହୁ ପ୍ରକାର ଅନ୍ନବ୍ୟଞ୍ଜନ ବ୍ୟବସ୍ଥା କରିହୁଏ । ଏଣେ ରୋଷେଇବାସ ଚାଲିଥାଏ, ତେଣେ ଚାଲିଥାଏ ଖୁସି ଗପ, ଖବରକାଗଜ ପଢ଼ା, ଅତିଥି ଅଭ୍ୟାଗତ ଚର୍ଚ୍ଚା, ଘରକୁ ଚିଠିଲେଖା ଇତ୍ୟାଦି ।

ଉପର ମହଲାରେ ଥା'ନ୍ତି ଶ୍ରୀଯୁକ୍ତ ରାଧାନାଥ ମିଶ୍ର (ରାଜା) ସପରିବାରେ, ବାଦଲ ଓ ତାଙ୍କର ଭଉଣୀ ଆଶା ( ଡାକ୍ତର ଆଶାଲତା କର ) । ଆମେସବୁ ଗୋଟିଏ ପରିବାର ପରି ଚଳୁଥାଉ । ଅଲଗା ରୋଷେଇବାସ କଲେ ବି ସୁବିଧା ଅସୁବିଧାରେ ଖାଦ୍ୟ ସରଞ୍ଜାମ ମଗାଯାଉ, ଧାର ଉଧାର ଚଳେ । ବେଳେ ବେଳେ ଯା' ରୋଷେଇରେ ସେ, ତା ରୋଷେଇରେ ଏ ଖାଏ । ଅଧିକାଂଶ ଶନିବାର, ରବିବାରରେ କିନ୍ତୁ ଏକାଠି ରୋଷେଇ ହୁଏ ।

ଏମିତି ଖିଆପିଆ କରି ବେଶ୍ ଆନନ୍ଦରେ ଥାଉ । ଦୁଃଖମୟ ବିଦେଶ ରହଣୀ ଭିତରେ ଆମ ଦେଶୀୟ ଖାଦ୍ୟ ରନ୍ଧନଭୋଜନ ବେଶ୍ ଉପଭୋଗ୍ୟ ହୋଇଉଠିଲା । କିନ୍ତୁ କେତେ ମାସ ପରେ ଦେଖିଲି ମୋ ଦେହହାତ ଖୁବ୍ ଜୋରରେ କୁଣ୍ଡେଇ ହେଉଚି । ଏ କ'ଣ ! ଇମିତି କାହିଁ ହେଲା ? କ'ଣ କାଛୁ କୁଣ୍ଡିଆ ହବ କି ? ନା, ଦେହରେ ତ ସେମିତି

ସୂଚନା ମିଳୁନ । ତେବେ କ'ଣ ପ୍ରତ୍ୟହ ଘଷିମାଜି ନ ଗାଧୋଇବାରୁ ଏପରି ଘଟିଲା ! ତେଣୁ ରବିବାର ଦିନ ଭଲକରି ସାବୁନ ଲଗେଇ ଦେହକୁ ରଗଡ଼ି ରଗେଡ଼ି ଘଷି ଗାଧୋଇଲି । ତଥାପି ଏ ଦେହଗନ୍ଧରୁ ରକ୍ଷା ମିଳିଲାନି । ତା' ସାଙ୍ଗକୁ ଆଉ ଗୋଟିଏ ବ୍ୟାଧିର ସୂଚନା ମିଳିଲା । ମୁଣ୍ଡ ସବୁବେଳେ ଭାରାକ୍ରାନ୍ତ । ତା' ଭିତରେ ଯେମିତି ଗୋଟାଏ ଗୋଳମାଳିଆ ଅବସ୍ଥା ସୃଷ୍ଟି ହୋଇଛି । କୌଣସି କଠିନ କଥାରେ ମନ ପ୍ରବେଶ କରିବା, ପାଠଶାଠ ମନେରଖିବା କଷ୍ଟକର ହେଉଛି । କ'ଣ ହେଲା ? ଏ ଥଣ୍ଡା ଦେଶରେ ମୁଣ୍ଡ ଭିତରଟା କ'ଣ ବରଫ ପାଲଟିଗଲା ? କାହାକୁ ଏ ବିଷୟ କହିବାକୁ ଲାଜ ଲାଗୁଥାଏ । କିନ୍ତୁ ଏହାର ପ୍ରତିକାର ତ ନହାତି ଦରକାର । ନା, ଡାକ୍ତର ପରାମର୍ଶ କରିବାକୁ ପଡ଼ିବ, ମନେ ମନେ ଠିକ୍ କରିନେଲି ।

ବିଲାତରେ ଜାତୀୟ ଜୀବନରକ୍ଷା ଯୋଜନା (National Security Plan ) କାର୍ଯ୍ୟକାରୀ କରାଯାଉଛି । ପ୍ରତ୍ୟେକ ଛୋଟ ଛୋଟ ଅଞ୍ଚଳ ପାଇଁ ଜଣେ ଡାକ୍ତର ବା ଡାକ୍ତରାଣୀ ନିଯୁକ୍ତ ଥା'ନ୍ତି । ରୋଗ ବ୍ୟାଧିରେ ତାଙ୍କୁ ବିନା ଫିସ୍‌ରେ ପରାମର୍ଶ କରିହୁଏ ଏବଂ ତାଙ୍କଠାରୁ ଔଷଧ ଚିଠା ଲେଖାଇ ନେଲେ ସ୍ୱଳ୍ପ ଦାମରେ ଔଷଧପତ୍ର କିଣିହୁଏ । କାହାର ଚଶମା ବା ନକଲି ଦାନ୍ତ ଦରକାର ହେଲେ ସେଇ ଡାକ୍ତରଙ୍କ ସୁପାରିଶ୍‌ରେ ସେଇଟା ସହଜରେ ଓ ସ୍ୱଳ୍ପ ବ୍ୟୟରେ କରାଯାଇପାରେ ।

ଆମ ଦାୟିତ୍ୱରେ ଥା'ନ୍ତି ଜଣେ ପାର୍ଶୀ ଡାକ୍ତରାଣୀ । ସେ ଭାରତରେ ଜଣେ ସାହେବ ଡାକ୍ତରଙ୍କୁ ବିବାହ କରିଥିଲେ । ସ୍ୱାମୀଙ୍କ ମୃତ୍ୟୁପରେ ସେ ଆସି ବିଲାତରେ ବସବାସ କରି ଡାକ୍ତରୀ ବ୍ୟବସାୟ ଚଳେଇଥାନ୍ତି । ତାଙ୍କ ପାଖକୁ ଯାଇ ମୁଁ ବଡ଼ ଆବେଗମୟ ଭାବ ଓ ଭାଷାରେ ମୋର ଦୁଃଖ ବର୍ଣ୍ଣନା କଲି । ସେସବୁ ଶୁଣି ବଡ଼ ଗୁରୁଗମ୍ଭୀର ସ୍ୱରରେ ମୋତେ ଜେରାକଲେ ।

—କ'ଣ ଖାଉଛନ୍ତି ?

— ଆମ ଭାରତୀୟ ଖାଦ୍ୟ, ଭାତ, ଡାଲି, ମାଛ, ପନିପରିବା ।

—ମାଂସ ?

—ବେଳେ ବେଳେ ଖାଉଚୁ । ତେବେ ସେ ଗ୍ରାମପକ୍ଷୀ । ଏଠା ମେଣ୍ଢା ମାଂସ ଆମକୁ ରୁଚିକର ହେଉନି । ଆଉ ଗୋରୁ, ଘୁଷୁରି ତ ଆମର ଚଳିବନି । ଭାତ, ଡାଲି, ରୁଟି, ତରକାରି ଆମର ବେଶ୍ ପସନ୍ଦ ।

—ସେ ଖାଦ୍ୟ ଏଠି ଚଳିବନି । ଏଠା ଥଣ୍ଡା ଜଳବାୟୁକୁ ଠିକ ଏ ଟାଣୁଆ ଖାଦ୍ୟ ଦରକାର । ପ୍ରତିଦିନ ଅନ୍ତତଃ ୩।୪ଟା ଅଣ୍ଡା, ମେଞ୍ଚାଏ ଲେଖାଁ ଛେନା ଖାଆନ୍ତୁ । ଆଉ ଗୋମାଂସ ଯଦି ଚଳିବନି ତେବେ ସପ୍ତାହରେ ଦୁଇ ତିନଥର ମେଣ୍ଢା ମାଂସ ଖାଆନ୍ତୁ । ଆଉ ମୁଁ ଲେଖି ଦେଉଚି କିଛି ଭିଟାମିନ୍ 'ବି' କମ୍ପ୍ଲେକ୍ସ ବଟିକା କିଣିନେଇ ସେଥିରୁ ଗଣ୍ଡାକେତେ ପ୍ରତିଦିନ ଗିଳିବେ ।

ବାବା ! ଏତେ ଖାଦ୍ୟ ! ପ୍ରତିଦିନ ତିନି ଚାରିଟା ଅଣ୍ଡା । ଆମ ଦେଶ ହୋଇଥିଲେ ନିତି ଏତେ ଅଣ୍ଡା ଖାଇଲେ ତ ନାଲିରକ୍ତ ଝାଡ଼ା ଧରନ୍ତାନି ! ସେ ଯାହାହେଉ ଅଣ୍ଡା ଖାଇବି ତ ଖାଇବି, କିନ୍ତୁ ଏ ଦେଶ ଛେନା ତ ଗିଳିହେବନି । ଆମ ଦେଶର ତୁଷାରଧବଳ ଦୁଧଛେନା ନୁହେଁ । ଏ କ'ଣ ହଳଦିଆ ରଙ୍ଗର ରସାପ୍ଲୁତ କି ସ୍ପଞ୍ଜ୍‌ପରି ମୁଣ୍ଡା ମୁଣ୍ଡା ମିଳୁଚି । ତା' ଦେହରେ ଫିମ୍ପି ମାରି ଯାଇଥାଏ । ଥରେ ଦୁ'ଥର ତାକୁ ଖାଇବାକୁ ଚେଷ୍ଟା କରିଚି । କିନ୍ତୁ ବାନ୍ତି ମାଡ଼ିଆସେ । ହେଲେ ଖାଇବାକୁ ତ ହେବ !

ବେଶ୍ ହସମାଡ଼ିଲା । ବସ ରେ ଆସି ବନ୍ଧୁମାନଙ୍କୁ ସବୁ କହିଲି । ସେମାନେ କହିଲେ, "ଆମର ବି ସେମିତି ପ୍ରଥମେ ପ୍ରଥମେ ଦେହ ଖୁଣ୍ଟେଇ ହେଉଥିଲା । ଆମେ ଡାକ୍ତର ପରାମର୍ଶରେ ବାହାରେ କୌଣସି ଭେଦାଭେଦ ନ ରଖି ପୁଳାଏ ମୂଳ ଏ ମାଂସ ଖାଉଚୁ । ଅଣ୍ଡା ଓ ଛେନା ବି ବେଶ୍ ଗିଳୁଚୁ । କିନ୍ତୁ ଆପଣ ତ ଧରିଚନ୍ତି ଆପଣଙ୍କର ପିମ୍ପୁ ଖାଲି ମାଛଟାକୁ······।" ନିଷ୍ଟପ୍ପ କଥା । "ଯେ ଦେଶ ଯାଇ ସେ ଫଳ ଖାଇ" ଖାଦ୍ୟ ଯୋଜନା ବଦଳାଇବାକୁ ପଡ଼ିବ ।

ଦିନେ ରବିବାର ସକାଳେ ଅଣ୍ଡା ଛେନା ଆଦି ଭଲକରି ଖାଇ, ଖଣ୍ଡେ ଖଣ୍ଡେ ପାନ ଚଢ଼େଇ ଦଳ ବାନ୍ଧି ବୁଲି ବାହାରିଚୁ । ବା ରେ ନାନା ଖୁସି ଗପ ହସକଉତୁକ ଚାଲିଚି । ଦେଖିଲୁ ଦଳେ ଝିଅ ବିଭିନ୍ନ ବେଶପରିପାଟୀରେ ଅନ୍ୟପଟୁ ଆସୁଚନ୍ତି । ସେଇ ଝିଅମାନଙ୍କ

ବେଶଭୂଷା, ଚାଲିଚଳନ ନେଇ ଆମ ଭିତରେ ନାନା ଟୀକା-ଟିପ୍ପଣୀ ଚାଲିଛି । ଉରଭୟ ନାହିଁ । ଓଡ଼ିଆରେ କଥାବାର୍ତ୍ତା କରୁଥାଉ । ଲଣ୍ଡନ ସହରରେ କିଏ ବୁଝୁଛି ଆମ ଭାଷା ? କିନ୍ତୁ ସେ ଝିଅମାନେ ଆମ ପାଖ ଦେଇଯିବାରୁ ଆମ ପାଟିତୁଣ୍ଡ ଟିକିଏ କମିଗଲା ସାଧାରଣ ସୌଜନ୍ୟ ଖାତିରରେ । ମାତ୍ର ସେ ଝିଅମାନେ ଆମ ଆଡ଼କୁ ଚାହିଁ ବାରମ୍ବାର ଖିଲଖିଲ ହସିଉଠିଲେ, ମଧୁଗୁଞ୍ଜନରେ ପରସ୍ପରକୁ କ'ଣ କହି ଉଠିଲେ । ଅବଶ୍ୟ ସେ ସୁନ୍ଦରୀ ରୂପସୀମାନଙ୍କର ଲୀଳାୟିତ ହାସ୍ୟଭଙ୍ଗୀ ବେଶ୍ ଉପଭୋଗ୍ୟ ମନେ ହେଉଥିଲା । ଆମ ଦେଶ ଝିଅଙ୍କ ପରି ବନ୍ଧ ଚାହାଣି ସଲଜ୍ଜ ଠାଣି, ଉଦାସୀନ ବାଣୀ, ଧୀରମନ୍ଥର ଗତି ନାହିଁ । ସମସ୍ତେ ଯେମିତି ଖୋଲା ଦେହ, ଉନ୍ନତ ମସ୍ତକ, ବେପରୁଆ ଢଙ୍ଗରେ ଚାଲିଥାନ୍ତି । ସେ ରୂପ ଓ ଗଠନରେ ଅଫୁରନ୍ତ ସୌନ୍ଦର୍ଯ୍ୟ, ଲାବଣ୍ୟମୟ ଭାବଭଙ୍ଗୀ ଭରିରହିଥାଏ । ବେଶ୍ ସୁନ୍ଦର, ବେଶ୍ ମନୋମୁଗ୍ଧକର ଦେଖାଯାଉଥାନ୍ତି ।

କିନ୍ତୁ ଆମକୁ ଦେଖି ଇମିତି ହସୁଚନ୍ତି କାହିଁକି ? ହସ, ହସ, ହସ-ସମୁଦ୍ର ଯେପରି ଉଚ୍ଛୁଳି ପଡ଼ୁଚି । ଭାରି ରାଗ ଲାଗିଲା । କ'ଣ ପାଇଁ ଆମକୁ ଦେଖି ଏମିତି ହସୁଚନ୍ତି । ଆମେ ପୁରୁଷ ସେ ସ୍ତ୍ରୀ । ତାଙ୍କର ଆମକୁ ଦେଖି ସଲଜ୍ଜ ବଦନରେ ଆଡ଼େଇ ଯିବାର କଥା । କିନ୍ତୁ ଏତେ ଅବଜ୍ଞା !

ହେଲା, ସେମାନେ ଉଗ୍ର ଧଳାଣି ବାଳା, ଆମେ କୃଷ୍ଣକାୟ ଭାରତୀୟ । ବିଲାତରେ ବର୍ଣ୍ଣବୈଷମ୍ୟ ଭାବଟା ବେଶ୍ ଅଛି । ବୟସ୍କ-ମାନଙ୍କଠାରେ ସେଇଟା ଲୁଚିଛପି ଥାଏ । କିନ୍ତୁ ଯୁବକଯୁବତୀ, କିଶୋରକିଶୋରୀ ସେ ଭାବଟା ବେଳେ ବେଳେ ବେଶ୍ ଖୋଲାଖୋଲି ପ୍ରକାଶ କରନ୍ତି । ତେବେ ସେଇ ବର୍ଣ୍ଣବିଦ୍ୱେଷ କ'ଣ ଏମାନଙ୍କୁ ଏମିତି ଉଗ୍ର, ଉଚ୍ଛୃଙ୍ଖଳ କରିଚି ? କମ୍ ସାହସ ତ ନୁହେଁ ! ଆମେ ତେରଗୁଡ଼ାଏ ପୁରୁଷ ଏକାଠି ଯାଉଚୁ । ଟିକିଏ ଉରଭୟ ନାହିଁ । ଟିକିଏ ଲାଜସଙ୍କୋଚ ନାହିଁ । ନାରୀ ହୀ'ର ଆଜି ଗୋଟାଏ ମୁକାବିଲା ହେଉ । ତେଣୁ ମୁଁ ଆମ ଦଳର ନେତୃତ୍ୱ ନେଇ କ'ଣ ତାଙ୍କୁ ପଚାରିବି ତାର ଭାଷାଟା ଚୁମ୍ବକେ ମନେ ମନେ ଠିକ୍ କରିବସିଲି । ପ୍ରାୟ ଅବସ୍ଥାରେ ଆଲୋଚନା ସଭାରେ ବକ୍ତୃତା ଦେବା ଆଗରୁ ମୁଖ୍ୟ ମୁଖ୍ୟ କଥାଟା ଭାବିନିଏ । ଭାଷାଟା ବି ଅନେକ ଜାଗାରେ ମୁଖସ୍ଥ କରିଦିଏ । ପାଟି ଖୋଲିବା କ୍ଷଣି ଗଡ଼ଗଡ଼ କହିଯାଏ ।

ସେଇ ମନ୍ତଟା ପ୍ରୟୋଗ କରିବାକୁ ସ୍ଥିରକଲି । କିନ୍ତୁ ଏତେ ଆୟୋଜନକୁ ବେଳ କାହିଁ ? ସେଦିନ୍ ଝିଅମାନେ ଆଗେଇ ଆସୁଥାନ୍ତି । ସେମାନଙ୍କ ହସ ଯେମିତି ଶାଣଦିଆ ଛୁରି ପରି ଆମ ଦେହରେ ଭୁଷି ହୋଇଯାଉଥାଏ । ତେଣୁ ହଠାତ୍ ଏ ବାକ୍ୟୁଦ୍ଧରେ ଝାସଦେଲି । ବଡ଼ ପାଟିରେ ଆରମ୍ଭ କଲି—

What makes you laugh......

ତେଣିକି କଣ୍ଠନାଳୀଟା ଟିକେ ସଙ୍କୁଚିତ ହୋଇଗଲା । କାରଣ ତା'ପରେ ମିସ୍ ଲଗିବ କି କ'ଣ ହେବ ଠିକ୍ କରିପାରିଲିନି । ଏମାନେ ସମସ୍ତେ କ'ଣ ଅବିବାହିତା ? କାଳେ କିଏ ବିବାହ କରିଥିବେ । ବିବାହ କରିବାର ବୟସ ବୋଧହୁଏ ଏମାନଙ୍କ ଭିତରୁ ଅନେକଙ୍କର ବହୁ ଆଗରୁ ଟପିଗଲଣି ! ହେଲେ ବିଲାତରେ ମହିଳାମାନଙ୍କର ବୟସ ଅନ୍ଦାଜ କରିବା ବଡ଼ କଠିନ କଥା । ପ୍ରସାଧନର ପ୍ରାଚୁର୍ଯ୍ୟରୁ ସେଇଟା ସହଜରେ ସମ୍ଭବ ହୁଏନି । ଆମ ଦେଶ ହୋଇଥିଲେ କିଏ ମୁଣ୍ଡରେ ଲୁଗା ଦେଇଛି । କିଏ ସିନ୍ଦୂର ପିନ୍ଧିଛି ଇତ୍ୟାଦିରୁ କିଛି ବୁଝି ହୁଅନ୍ତା । ଓଃ ! ଆମ ଦେଶକଥା ଚୁଲିକି ଯାଉ । ବିଲାତରେ ଏ ଅପମାନର କିପରି ପ୍ରତିରୋଧ କରାଯିବ, ପ୍ରତିଶୋଧ ନିଆଯିବ ସେ କଥା ଚିନ୍ତା କରାଯାଉ । ଗାଲଗୁଡ଼ାକ ମୋ ତୋଟିରେ ଗଜ ଗଜ ହେଉଥାଏ । ହଠାତ୍ ମନକୁ ଆସିଲା ସେମାନଙ୍କୁ "Madam" ବୋଲି ସମ୍ବୋଧନ କରିବି । କିନ୍ତୁ ସେଥିରେ ତ ସେମାନେ ଅପମାନିତ ବୋଧ ନ କରି ସେମାନଙ୍କୁ ଖୋସାମତ କରୁଛି ବୋଲି ଧରି ନେବେ । ଯାହାହେଉ......

What makes you laugh, madam ?

ସାଙ୍ଗେ ସାଙ୍ଗେ ହସ ବନ୍ଦ । ଉତ୍ତର ନାସ୍ତି । ଗମ୍ଭୀର ନିସ୍ତବ୍ଧତା । ମୋର ସାହସ ବଢ଼ିଗଲା । ପୁଣି ଜୋରରେ ହାଙ୍କିଲି –

What made you laugh ?

ଜବାବ୍ ଦିଅ, ଏତେ ହସୁଥିଲ, ମନେ ମନେ ଭାବୁଥାଏ । ତାଙ୍କ ଭିତରୁ ଜଣେ ଚତୁର୍ଥା ଯୁବତୀ ସହାସ୍ୟ ବଦନରେ ପଚାରିଲେ—

: You are all from India, we believe.

: Yes we are. What then ?

: In India do males even put on lipstick ?

ପୁଣି ସେମାନେ ହସି ଉଠିଲେ ।

ଏଁ, ଭାରତରେ କ'ଣ ପୁରୁଷମାନେ ବି ଲିପଷ୍ଟିକ୍ ଲଗାନ୍ତି ? ଏ କି କଥା ? ହଠାତ୍ କିଛି ବୁଝି ପାରିଲିନି । ପରେ ପରେ ବନ୍ଧୁମାନଙ୍କ ମୁହଁକୁ ଚାହିଁ କଥାଟାର ମର୍ମ ଅନୁମାନ କରିନେଲି । ଓ ! ଆମ ପାନ-ବୋଳା ଅଧରକୁ ଦେଖି···ସାଙ୍ଗେ ସାଙ୍ଗେ ଆମ୍ଭେମାନେ ବି ହସିଉଠିଲୁ । ଉଭୟ ପକ୍ଷର ହସ ମିଶି ଗୋଟାଏ ବିଚିତ୍ର, ଆନନ୍ଦମୟ ପରିସ୍ଥିତି ସୃଷ୍ଟି କଲା । ଯାଃ, ଅନୁମାନଟା ଭୁଲ ହୋଇଗଲା ! କଥାଟାକୁ ସୁଧାରିବାକୁ ଯାଇ ପାନର ମାହାତ୍ମ୍ୟ ସମ୍ବନ୍ଧରେ ଗୋଟାଏ ଗ୍ରେଟକୋଟର ବକ୍ତୃତା ଆରମ୍ଭ କରିଦେଲି । ସବୁ ଶୁଣି ସେ ମହିଳାଦଳ ସହାସ୍ୟ ବଦନରେ ଆମକୁ ଟପି ଚାଲିଗଲେ । ଯାହାହେଉ ପାନଖିଆଟା ଯେ ଏତେବଡ଼ ରୋମାଞ୍ଚକର ପରିସ୍ଥିତି ସୃଷ୍ଟି କରିପାରିଲା ଏଇ ବିଷୟ ନେଇ ନାନା ଗପସପ କରି କାମ୍ଡେନ୍ ରୋଡ଼ ଟିଉବ ଷ୍ଟେସନ ପର୍ଯ୍ୟନ୍ତ ଗଲୁ ।

ବିଲାତରେ ଟିଉବ୍ ଟ୍ରେନ୍ ବ୍ୟବସ୍ଥାଟା ବଡ଼ ଚମତ୍କାର । ଜନଗହଳିରୁ ନିଜକୁ ରକ୍ଷାକରି ଏଥିରେ ସୁବିଧାରେ ଯାତାୟାତ କରିହୁଏ । ପ୍ରାୟ ୩୦୦ ଫୁଟ ତଳେ ଏହି ଟ୍ରେନ୍ ଲାଇନଗୁଡ଼ିକ ବେଶ୍ କୌଶଳରେ ତିଆରି ହୋଇଛି । ଏହା ସାହାଯ୍ୟରେ ମୁଖ୍ୟ ଲଣ୍ଡନ ସହରର ଯେ କୌଣସି ଆଡ଼େ ଯାଇହେବ । ଟିଉବ୍ ଷ୍ଟେସନଗୁଡ଼ିକ ବିଦ୍ୟୁତ୍ ଆଲୋକରେ ଭରା । ପ୍ଲାକାର୍ଡ଼, ପୋଷ୍ଟର ଚାରିଆଡ଼େ ମରିଚି । ସହଜରେ ଜାଣି ହେବନି, ଉପରେ ଅଛ ନା ମାଟିତଳେ ।

ମାଟିତଳକୁ ଓହ୍ଲାଇବାକୁ ଉପରକୁ ଉଠିବାକୁ ଖୁବ୍ ଭଲ ବ୍ୟବସ୍ଥା । ବିଦ୍ୟୁତ୍-ଚାଳିତ ପାହାଚ (Escalator) ସବୁବେଳେ ଘୂରି ଚାଲିଥାଏ । ଉପରେ ପକ୍କା ଚଟାଣ, ତଳେ ପକ୍କା ଚଟାଣ । ତା' ମଝିରେ ଯୋଡ଼ା ପାହାଚଗୁଡ଼ାକ ସବୁବେଳେ ବୁଲୁଥାଏ । ପୁଣି ସେଥିରୁ ଉପରୁ ତଳକୁ ଯିବା ପାଇଁ ଗୋଟାଏ ଓ ତଳୁ ଉପରକୁ ଉଠିବା ପାଇଁ

ଆଜି ଗୋଟାଏ ଏପରି ହଲେ ଘୂର୍ଣ୍ଣିସୂମାନ ପାହାଚ-ଭେଲା ସବୁବେଳେ ଦଉଡ଼ୁଥାନ୍ତି । ଏହି ଚଳନଶୀଳ ପାହାଚର ଦୁଇପଟେ ବାଡ଼ ଥାଏ । ପ୍ରଥମେ ପ୍ରଥମେ ଏଥିରେ ଯିବାଆସିବା କରିବାକୁ ମୋତେ ଟିକିଏ ଡର ଲାଗୁଥିଲା । କ କଥା ଏ ! ଲୋକେ କହନ୍ତି ହାଲଲା ପାଣିରେ ଗୋଡ଼ ଦବନା । ଆଜି ଏ ଦୌଡ଼ିଲା ପାହାଚରେ ଯିବ କମିତି ! କାଳେ କେଉଁଠି ପଡ଼ିଯିବି କ ବାଡେଇ ହୋଇଯିବି ସେଥିପାଇଁ ଟିକିଏ ଗୁନଆ ଲାଗୁଥାଏ; କନ୍ତୁ ପ୍ରକୃତରେ ଡରିବାର କିଛି କାରଣ ନାହିଁ । ପାହାଚ ଗୁଡ଼ାକ ଗୋଟାଏ ବଡ଼ ଖୋପ ଭିତରେ ଘୂରୁଥାଏ । ପାଖରେ କିଛି ଫାଙ୍କ ନାହିଁ । ତେଣୁ ଖସି ପଡ଼ିବ କୁଆଡ଼େ ? ଯଦି ଦୈବାତ୍ ପାହଚ ଉପରେ ଗୋଡ଼ ଖସିଯିବ ତେବେ ସେ ତୁମକୁ ନେଇ ତଳେ ବା ଉପରେ ସିମେଣ୍ଟ ଚଟାଣ ଉପରେ ପକେଇଦେବ । କାରଣ ତଳ ଓ ଉପର ଚଟାଣ ପାହାଚକୁ ଇମିତି ଲାଗିଯାଇଚ ଯେ ତା' ଭିତରେ ଗୋଟାଏ ଗ୍ରୋଟ ପୁଡ଼ିଆ ବି ଯିବା ଅସମ୍ଭବ । ଆଉ ଏତେ ବଡ଼ ମଣିଷଟା ପଶିବ କୁଆଡ଼ୁ ?

ଏହି ଘୂର୍ଣ୍ଣାୟମାନ ପାହାଚରେ ଯିବାଆସିବା କରିବା କ୍ରମେ ମୋର ଅଭ୍ୟାସ ହୋଇଯାଇଥାଏ । ତଥାପି ଏଥିରେ ଗୋଡ଼ ଦେଲାକ୍ଷଣି ମୁଁ ଟିକିଏ ଥତମତ ହେଇପଡ଼େ । କିନ୍ତୁ ଲଣ୍ଡନର କର୍ମରତ ନରନାରୀ ଯେମିତି ଲୀଳାୟିତ ଭଙ୍ଗୀରେ, ଉଦ୍‌ବେଗଶୂନ୍ୟ ଗତିରେ ଏହି ଘୂର୍ଣ୍ଣାୟମାନ ପାହାଚରେ ଉପରୁ ତଳକୁ, ତଳୁ ଉପରକୁ ଯା'ଆସ କରନ୍ତି ତାହା ଦେଖିବାର କଥା । ବେଳେ ବେଳେ ଏହି ବେଗଶୀଳ ପାହାଚର ଗତି ଅନେକଙ୍କୁ ଯଥେଷ୍ଟ ମନେହୁଏନା । ସେମାନେ ଏହା ଉପରେ ଠିଆହେବା ପରିବର୍ତ୍ତେ ଦଉଡ଼ି ଦଉଡ଼ି ଏକାଥରକେ ଏକାଧିକ ପାହାଚ ଡେଇଁ ଚାଲିଥାନ୍ତି । ଫଳରେ କ୍ଷଣକରେ ତଳେ ପହଞ୍ଚିଯା'ନ୍ତି, ଉପରକୁ ଉଠିପଡ଼ନ୍ତି ।

ମାଟିତଳ ଷ୍ଟେସନଗୁଡ଼ିକର ବ୍ୟବସ୍ଥା ଅତି ଚମତ୍କାର । ଜାଗା ସଙ୍କୁଚିତ ହେଲେ ବି ସେଥିରେ ବୁକିଂ ଅଫିସ୍, ଯାତ୍ରୀମାନଙ୍କ ଆଶ୍ରୟ ନେବାପାଇଁ ଛାୟାମଣ୍ଡପ, ସିଗାରେଟ୍, ଚକୋଲେଟ୍ ଆଦି ବିକିବାର ଦୋକାନ ବା ଯନ୍ତ୍ର ସବୁ ଥାଏ । ଏହି ବିକିବା ଯନ୍ତ୍ରଗୁଡ଼ାକ ମଣିଷ ପରି କାମ କରନ୍ତି । ଏଗୁଡ଼ାକ ଗୋଟାଏ ଗୋଟାଏ ଛୋଟ ଲୁହା ଆଲମାରି ପରି

ଦେଖାଯାଏ । ତା’ ଦେହରେ ଥିବା ଖୋପରେ ନର୍ଦ୍ଦିଷ୍ଟ ଦାମ୍‌ଟା ନର୍ଦ୍ଦିଷ୍ଟ ମୁଦ୍ରା ଆକାରରେ ପୂରାଇଦେଲେ ସିଗାରେଟ୍ ବା ଚକୋଲେଟ୍ ଯାହା ରହିଥିବ ତା’ର ପୁଡ଼ିଆ ତଳେ ବାହାରି ଆସିବ । ଏହି କୌତୁକ ଦେଖିବାକୁ ଆମେ ବି ଏହି ବଳିବା କଳରୁ ଚକୋଲେଟ୍ ସିଗାରେଟ୍ ଆଣିଲୁ । ଟିକେଟ୍ କରି ପ୍ଲାଟଫର୍ମରେ ଯାଇ ଦେଖିଲୁ ଟ୍ରେନ୍ ଆସିନି । ରେଲ ଲାଇନ୍‌କୁ ଚାହିଁଲି । ମାଟି ଭିତରେ ସୁଡ଼ଙ୍ଗ ତିଆରି କରି ରେଲରାସ୍ତା କରାଯାଇଛି । ଉପର ଗୋଲେଇକୁ ଲାଗି ଇଲେକ୍ଟ୍ରି ଲାଇନ୍ ଯାଇଛି । ତାହାର ସାହାଯ୍ୟରେ ଟ୍ରେନ୍ ଯିବା ଆସିବା କରେ । ଗାଡ଼ି ପହଞ୍ଚିବାରୁ ଆମେ ସେଥିରେ ଉଠିବାକୁ ଲସରପସର ହୋଇ ଧାଇଁଲୁ । ରବିବାର ହେଉ ଲୋକଗହଳ ଥାଏ । ତେଣୁ ସାଙ୍ଗେ ସାଙ୍ଗେ ସିଟ୍ ମିଳିଲାନି । ଠିଆହୋଇ ଯିବାକୁ ପଡ଼ିଲା । ଆମକୁ ଏ ସବୁଟା ଏକ ଅଭିନବ ଅଭିଜ୍ଞତା ପରି ମନେହେଉଥାଏ । ଟିକିଏ ଟିକିଏ କଥାରେ ଆମେ ହେଁ ହେଁ, ହସି ଉଠୁଥାଉ । ଏଇଟା ଯେପରି ସାହେବମାନଙ୍କୁ ବଡ଼ ବେଆଡ଼ା ଲାଗୁଥାଏ । ସେମାନେ ଗୁମ୍‌ମାରି ବସିଥାନ୍ତି । କିଏ ଖବରକାଗଜ ପଢ଼ୁଥାଏ । କିଏ କୌଣସି ପତ୍ରପତ୍ରିକା ଦେଖୁଥାଏ । କେତେବେଳେ କିଏ ଆମ ଢଙ୍ଗରଙ୍ଗକୁ ଦେଖି ଟିକିଏ ହସିଦେଉଥାଏ । କିନ୍ତୁ ସେଇଟା ଫୁଲ୍ଲୁଲା ଫୁଲଫାଙ୍କିଆ ହସ ନୁହେ । ବଡ଼ ସଙ୍କୁଚିତ ଓ ସଂଯତ । ଖାଲି ସ୍ମିତ ବଦନରେ ଓଠ ଦାଢ଼ାକୁ ସାମାନ୍ୟ ଦ୍ୱିଧା କରୁଥାନ୍ତି । କିଏ ବିରକ୍ତିରେ ମୁହଁ ଫୁଲାଉଥାନ୍ତି ବା କ୍ଷୀଣ କଣ୍ଠରେ ପ୍ରତିବାଦ କରି ଉଠୁଥାନ୍ତି । କିନ୍ତୁ ଅଧିକାଂଶ ନୀରବ, ଅନାସକ୍ତ । ବଡ଼ ବିଚିତ୍ର ଜାତି । କଥା କହିବାରେ ଏତେ କୃପଣ !

ଯେଉଁ ବୟସ୍କ ବା ବୃଦ୍ଧ ଦମ୍ପତି ଯାଉଥାନ୍ତି ସେମାନେ ତାଙ୍କ ବୈବାହିକ ଜୀବନର ବିପଣୀ ଯେମିତି ଏହି ଟିଉବ୍ ଟ୍ରେନ୍‌ରେ ଖୋଲି-ଦେଇଥାନ୍ତି । ଚୁପ୍‌ଚୁପ୍ ହୋଇ କେତେ କ’ଣ କଥାବାର୍ତ୍ତା କରୁଥାନ୍ତି । କେତେ କ’ଣ ଆଳାପ-ଆଲୋଚନା ଚାଲିଥାଏ । କିନ୍ତୁ ଭାଷା ବଡ଼ ସଂକ୍ଷିପ୍ତ, ଅଭିନୟ ମାତ୍ରା ବେଶୀ । କିଏ ଯାଉଚନ୍ତି, ଆସୁଚନ୍ତି ସେମାନଙ୍କ ପ୍ରତି ସେତେ ଲକ୍ଷ୍ୟ ନଥାଏ । କେବଳ କେତେବେଳେ କମିତି ଅନ୍ୟମାନଙ୍କ-ଆଡ଼କୁ ଚାହିଁଦେଉଥାନ୍ତି । ସେହି ଦୃଷ୍ଟିଭଙ୍ଗୀରୁ ସେମାନଙ୍କ ରାଗ-ଅନୁରାଗ, ହର୍ଷ-ବିଷାଦର ଯାହା ସୂଚନା ମିଳୁଥାଏ ।

ଅନେକ ଯୁବକଯୁବତୀ ଯୋଡ଼ ଯୋଡ଼ ହୋଇ ବୁଲିବାହାରିଥାନ୍ତି । ପରସ୍ପରକୁ ଯାବୁଡ଼ି ଧରି ଅନେକଟା ତାଙ୍କ ପ୍ରେମ କାରବାର ଚଳେଇଥାନ୍ତି ସେହି ମାଟିତଳ ଟ୍ରେନ୍‌ରେ । ଏତେ ଲୋକ ଯେ ସେ ଭିତରେ ଭର୍ତ୍ତି ହୋଇଥାନ୍ତି ସେ କଥାଟା ତାଙ୍କର ଖିଆଲ ପଡ଼ି ନଥାଏ । କି ଦରକାର ? ଯେଝା କାମ ବା ଅକାମରେ ଯେ ଯାଉଚନ୍ତି । ସେ ବିଷୟରେ ଚିନ୍ତା କରିବା ବା ସେଥିରେ ହସ୍ତକ୍ଷେପ କରିବା କାହାର କ'ଣ ଲୋଡ଼ା ! ସ୍ୱାଧୀନ ଦେଶ, ସମସ୍ତେ ସ୍ୱାଧୀନ !

ହାଇଡ୍ ପାର୍କ କର୍ଣ୍ଣରରେ ଟିଉବ୍ ଷ୍ଟେସନରୁ ବାହାରି ପାର୍କ ଭିତରେ ପଶିଲୁ । ଏତେ ସମୟ ମାଟିତଳେ ରହି ପୁଣି ଖୋଲା ଜାଗାକୁ ବାହାରିଲାରୁ ମନଟା ବେଶ୍ ଖୁଲ୍‌ସ୍ ଲାଗିଲା । ଅବଶ୍ୟ ଟିଉବ୍ ଟ୍ରେନ୍‌ରେ ଯିବା ଯେ ଖରାପ ଲାଗିଲା ତା' ନୁହେଁ । ମୁଁ ତ ବିଲାତର ଭଲମନ୍ଦ ସବୁଟାକୁ ମନ ପୂରେଇ ଉପଭୋଗ କରୁଥାଏ । ପ୍ରତ୍ୟେକ ପରିସ୍ଥିତିରୁ କିଛି ନା କିଛି ତଥ୍ୟ ଆହରଣ କରିବାକୁ ଚେଷ୍ଟା କରୁଥାଏ । ଯାହାକୁ ପାଉଥାଏ ତାକୁ ଏଣୁ ତେଣୁ ପଚାରି ନାନା କଥା ବୁଝୁଥାଏ । ଯେତେବେଳେ ବିଭିନ୍ନ ଷ୍ଟେସନରେ ଗାଡ଼ି ରହୁଥାଏ ଚାରିଆଡ଼କୁ ଚାହିଁ ଚାହିଁ କରି ବୁଝେ, କିଏ କ'ଣ କରୁଚି । କେଉଁଠି କ'ଣ ଚାଲିଚି । କିନ୍ତୁ ସେ ସାଧାରଣ ମାଟିତଳ ଟ୍ରେନ୍‌ରେ ବା ଷ୍ଟେସନ୍‌ରେ ବିଶେଷ କ'ଣ ଦେଖିହେବ ବା ବୁଝିହେବ ? ହେଲେ ଗୋଟିଏ କଥା ବେଶ୍ ସ୍ପଷ୍ଟ ମନେହେଲା । ସମସ୍ତେ ବଡ଼ ଚଞ୍ଚଳ, ବଡ଼ ତରତର । ଖାଲି ଦଉଡ଼ାଦଉଡ଼ି କରୁଚନ୍ତି । ଏଇ ଦଉଡ଼ାଦଉଡ଼ିଟାର ମାତ୍ରା ସପ୍ତାହର ଅନ୍ୟ ଦିନମାନଙ୍କରେ ଖୁବ ବେଶୀ । କିନ୍ତୁ ସେଦିନ ରବିବାର, ଛୁଟିଦିନ ହେଲେ ବି ଲୋକେ କିଛି କମ୍ କର୍ମତତ୍ପର ନଥାନ୍ତି । କିନ୍ତୁ କୁଆଡ଼େ ଯାଉଚନ୍ତି ଏମାନେ, ଏ ରବିବାରଟାରେ ? ଖାଲି ଆମୋଦପ୍ରମୋଦ ପାଇଁ ତ ! ସେଥିଯୋଗେ ଏତେ ବ୍ୟଗ୍ର, ବିବ୍ରତ କାହିଁକି ?

ଏଇ ହାଇଡ୍ ପାର୍କ ପ୍ରଥମେ ରାଜା ଅଷ୍ଟମ ହେନେରୀଙ୍କର ଶିକାର ଜଙ୍ଗଲ ଥିଲା । ପ୍ରଥମ ଚାର୍ଲସ୍‌ଙ୍କ ରାଜତ୍ୱକାଳରେ ଏହାକୁ ସର୍ବସାଧାରଣଙ୍କ ବ୍ୟବହାର ପାଇଁ ଛାଡ଼ିଦିଆଗଲା । ଦ୍ୱିତୀୟ ଜର୍ଜଙ୍କ ସ୍ତ୍ରୀ ରାଣୀ କାରୋଲିନ ଏଥିର ସର୍ପିଳ ଜଳାଶୟ (Serpentine) ଟା

ଖୋଳାଇଥିଲେ । ଏହି ଜଳାଶୟରେ ବହୁତ ଲୋକ ଜଳକ୍ରୀଡ଼ା କରିବାକୁ, ନୌକା ବିହାର କରିବାକୁ ଆସନ୍ତି, ବିଶେଷତଃ ଖରାଦିନେ। ଏହାର ଦକ୍ଷିଣ ପୂର୍ବରେ ହାଇଡ୍ ପାର୍କ କର୍ନର, ଏଠି ଜନଗହଳି ଖୁବ୍ ବେଶୀ ଏଇପଟେ ଆସ୍‌ଲେ ଭବନ (Asley house) ବିଦ୍ୟମାନ ଯେଉଁଠି ୱେଲିଙ୍ଗଟନ୍‌ର ଡିଉକ୍ (Duke of Wellington) ବାସ କରୁଥିଲେ । ବର୍ତ୍ତମାନ ସେଠାରେ ତାଙ୍କ ସ୍ମୃତି ଉଦ୍ଦେଶ୍ୟରେ ଏକ ଯାଦୁଘର ତିଆରି ହୋଇଛି । ଏହାର ଉତ୍ତର-ପୂର୍ବରେ ବକ୍ତାଙ୍କ କୋଣ (Speakers'corner) ଯେଉଁଠି ବହୁ ବିଜ୍ଞ ବ୍ୟକ୍ତି ଧର୍ମନୀତି, ରାଜନୀତି ଆଦି ସମ୍ବନ୍ଧରେ ବକ୍ତୃତା କରନ୍ତି । ଏମାନଙ୍କୁ ସାବୁନ୍ ବାକ୍ସ ବକ୍ତା (Soap-box Orator) ବୋଲି କହନ୍ତି । କିନ୍ତୁ ଯେ ତାଙ୍କୁ ଯାହା କହନ୍ତୁ ସେ ବିଚାରମାନେ ତାଙ୍କ ଶକ୍ତିମନ୍ତେ ପାଠିକରି ଯୁକ୍ତି ବାଢ଼ି ବକିଚାଲିଥାନ୍ତି । ଶନିବାର ଓ ରବିବାରର ଆସର ସେଠାରେ ଖୁବ୍ ଜୋରରେ ଚାଲେ । ବହୁତ ଲୋକ ସେ ବକ୍ତୃତା ଶୁଣୁଥାନ୍ତି । ବହୁ ଲୋକ ତୀବ୍ର ପ୍ରଶ୍ନବାଣ ହାଣୁଥାନ୍ତି । ବହୁତ ଲୋକ ମୁହଁ ମୋଡ଼ି ଚାଲିଯାଉଥାନ୍ତି । କିନ୍ତୁ ଲୋକଗହଳି ଖୁବ୍ ଥାଏ । ମନ ହେଉଥାଏ ମୁଁ ନିଜେ ଯାଇ ଗୋଟାଏ କାଠ ପିଣ୍ଡି ଉପରେ ଠିଆହୋଇ କିଛି ଭାଷିବି । ହେଲେ ସାହସ ପାଇଲିନି ।

ଗୋଟିଏ ଖୋଲା ଜାଗା ଦେଖି ବସିପଡ଼ିଲି । ପାଗଟା ବେଶ୍ ଶୁଖିଲା ଥାଏ । ତେଣୁ ବେଶ୍ ଆରାମ ଲାଗିଲା । ହେଲେ ମୋ ମନରେ ଯେପରି ଘୋର ନୈରାଶ୍ୟ । କାହିଁ କେଉଁଠି କଣ ? ବିଶେଷ କିଛି ତ ଦେଖିବାକୁ ମିଳିଲାନି । ଶୁଣିଥିଲି ହାଇଡ୍ ପାର୍କ ବଡ ରୋମାଞ୍ଚକର ଜାଗା । ହେଲେ କାହିଁ କୁଠି ରୋମାଞ୍ଚ ? ହଁ, କେତେକ ମହିଳା, ଯୁବତୀ ଏକାକିନୀ ସାଥୀହୀନା ହୋଇ ବୁଲୁଛନ୍ତି । କିଏ କହିଲା ଏମାନଙ୍କୁ Hallo ବୋଲି କହିଲେ ସେମାନେ ଯଦି Hallo ବୋଲି ଉତ୍ତର ଦେବେ ତେବେ ବୁଝିବାକୁ ପଡ଼ିବ ଯେ ସେମାନଙ୍କର କେହି ନିର୍ଦ୍ଦିଷ୍ଟ ସାଥୀ ନାହିଁ ଏବଂ ସେମାନେ ତୁମକୁ ସଙ୍ଗସୁଖ ଦେଇପାରନ୍ତି । କିନ୍ତୁ ତାର ପ୍ରତିବଦଳରେ କିଛି ପାଉଣ୍ଡ ଶ୍ରାଦ୍ଧ କରିବାକୁ ପଡ଼ିବ ସଙ୍ଗିନୀଙ୍କର ଖାଦ୍ୟପେୟର ବ୍ୟବସ୍ଥା ଓ ଚିତ୍ତ ବିନୋଦନ ପାଇଁ । ଆମ ଭିତରେ ଯେ ଉଗ୍ର ରସିକ ଥିଲେ ସେ ଉଠିପଡ଼ି

କୌଣସି ମହିଳାଙ୍କୁ ଏକାକିନୀ ଦେଖି Hallo, Hal'o ବୋଲି କହି ବୁଲିଲେ । ଆମେ ବହୁଁାରତ ନେହରେ ଗୃହ୍ଣିଁଥାଉ । କିନ୍ତୁ କିଛି ଫଳ ହେଲାନି । କିଏ କେଉଁଠି ଟିକିଏ ହସିଦେଇ, କିଏ ମୁହଁ ଫୁଲେଇ ଚାଲିଗଲେ ।

ଆଜି ରବିବାର । ସଞ୍ଜବେଳକୁ କେତେ ଭାରତୀୟ ବନ୍ଧୁ ଆସି ବସାରେ ଯୁଟିବେ । କେତେ ଖୁସିଗପ, କେତେ ଆଳାପ ଆଲୋଚନା ହେବ । ଆଜି ପୁଣି ଘରକୁ ଚିଠି ଲେଖିବା ପାଳି । ସବୁ କାମସାରି ଖଟରେ ପଡିବା ପୂର୍ବରୁ ପିଲାଙ୍କୁ ଦି ଧାଡି ସୁଖଦୁଃଖ ଲେଖିବାକୁ ହେବ । ତେଣୁ ତର ତର ହୋଇ ବସ୍ ଷ୍ଟାଣ୍ଡ୍ ଆଡେ ମୁହାଇଲୁ । ଏତେବେଳକୁ ହାଇଡ୍ପାର୍କରେ ଯନ୍ତ୍ରସଙ୍ଗୀତର ଆସର ଜୋରରେ ଜମିଆସିଥାଏ ।

## ବିଲାତର ଗଙ୍ଗା-ଯମୁନା ଥେମସ୍ ନଦୀ

ବିଲାତରେ ତଥାକଥିତ ଗ୍ରୀଷ୍ମଋତୁ ବିଦାୟ ନେଇ ଆସିଥାଏ ଶୀତ । ଏଠାରେ ପ୍ରାୟ ଦୁଇଟା ଋତୁ, ଗ୍ରୀଷ୍ମ ଓ ଶୀତ, କିନ୍ତୁ ବର୍ଷା ସବୁଦିନେ । ସେଠାକାର ଶୀତ ଆମ ଦେଶ ତୁଳନାରେ ଖୁବ୍ ପ୍ରବଳ । କ୍ରମେ ଶୀତ ବଢ଼ି ଧଳା ଧଳା ପତଳା ବରଫ ଚୂକୁଡ଼ା ଆକାଶରୁ ତୁଳା ଛୁଇଁଲା ପରି ପଡ଼ୁଥାଏ । ଗଛଲତାରୁ ପତ୍ର ଝଡ଼ି ପଡ଼ୁଥିବାରୁ ସବୁଟା ଖଣ୍ଡିଆ, ଶୁଖିଲା ଝଟାପରି ମନେ ହେଉଥାଏ । ତା ଦେହରେ ବରଫ ମେଞ୍ଚା ମେଞ୍ଚା ଲାଗି ବଡ଼ ବିଚିତ୍ର ଦେଖାଯାଉଥାଏ । ଏଇ ବରଫ ରାସ୍ତାଘାଟରେ ଯିବାଆସିବା ବେଳେ ବେଶପୋଷାକରେ ବି ପଡ଼ି ଏକ ସୂକ୍ଷ୍ମ ଧବଳ ଆସ୍ତରଣ ସୃଷ୍ଟି କରେ । ଆକାଶ ସବୁବେଳେ ମେଘାଚ୍ଛନ୍ନ । ସବୁଟା ଅନ୍ଧାରିଆ ଅନ୍ଧାରିଆ । ମଧ୍ୟାହ୍ନ ସମୟରେ ମଧ୍ୟ ସୂର୍ଯ୍ୟଦେବ ପ୍ରଭାହୀନ । ବେଳେ ବେଳେ ଚାରିଆଡ଼େ କୁହୁଡ଼ି ଘୋଟିଯାଇ ଚଳାଚଳ ପାଇଁ ମହା ଅସୁବିଧା ସୃଷ୍ଟି କରୁଥାଏ । ଦିନରେ ବି ବାଟ ଦେଖାଯାଏ ନା । ବରଫ ଓ ବର୍ଷା ପାଣିରେ ରାସ୍ତାଘାଟ ପଚ୍ ପଚ୍ ଖସଡ଼ା ହୋଇଯାଏ । ଖୁବ୍ ସାବଧାନତା ସହକାରେ ଯିବାଆସିବା କରିବାକୁ ପଡ଼େ । କାରଣ ତଳକୁ ଚାହିଁ ଚାଲିଲେ ଆଗରେ କାହା ସହିତ ବାଡ଼େଇ ହୋଇଯିବା ଡ଼ର । ପୁଣି ଆଗକୁ ଚାହିଁ ଚାଲିଲେ କେଉଁଠି ଗୋଡ଼ ଖସିଯାଇ ଚିତ୍‌ପଟାଙ୍ଗ ହୋଇ ପଡ଼ିଯିବାର ଭୟ ।

ମୁଁ ପଡ଼ିଥାଏ ମହା ଅସୁବିଧାରେ । ବିଲାତ ଯିବା ଆଗରୁ ବହୁ ଲୋକ କହିଥାନ୍ତି, "ସେ ଦେଶରେ ଭଲ ଜୋତା ମିଳେନି । ଏଠୁ ବାଟା ଆମ୍ଭାସଡ଼ର ଜୋତା ହଳେ ନେଇଯାନ୍ତୁ, ଖୁବ୍ ଉପକାରରେ ଲାଗିବ ।" ସେମାନଙ୍କ ଉପଦେଶ ଶିରୋଧାର୍ଯ୍ୟ କରି ହଳେ ଆମ୍ଭାସଡ଼ର ଜୋତା କିଣିଥିଲି ତାକୁଇ ଆଶ୍ରାକରି ବିଲାତ-ବୈତରଣୀ ପାର ହୋଇଯିବି ବୋଲି ।

କିନ୍ତୁ ଫଳ ହେଲା ଓଲଟା । ଭାରତରେ ସେ ଜୋତା ମୋ ଗୋଡ଼କୁ ବେଶ୍ ହେଉଥିଲା ! କିନ୍ତୁ ସେଠାରେ ଥଣ୍ଡା ପ୍ରକୋପରୁ ତା'ର ଚମଡ଼ା ସଙ୍କୁଚିତ ହେଲା କି ସେଠାର ପ୍ରଚୁର ଖିଆପିଆ ଯୋଗେ ମୋ ବପୁ ଅନ୍ତତଃପକ୍ଷେ ମୋଟା ହୋଇଯିବାରୁ ସେଥିଯୋଗେ ଗୋଡ଼ ଦି'ଟା ଫୁଲିଗଲା କି କ'ଣ ଯେମିତି ଶୀତ ବଢ଼ିଚି ସେ ଜୋତା ମୋ ଗୋଡ଼କୁ ଆଉ ନ ହୁଏ । ବହୁ ଚେଷ୍ଟାକରି ପାଦ ତା' ଭିତରେ ପୂରାଏ । ହେଲେ ଚାଲିଲାବେଳକୁ ମହାକଷ୍ଟ । ଆଗେ ଚାଇନାରେ ଝିଅମାନଙ୍କର ତଥାକଥିତ ସୌନ୍ଦର୍ଯ୍ୟ ବଢ଼ାଇବାକୁ ଏକ ଅଦ୍ଭୁତ କୌଶଳ ଅବଲମ୍ବନ କରୁଥିଲେ । ସେମାନଙ୍କର ଏକ ବିଶେଷ ଧାରଣା ଥିଲା ଯେ ସ୍ତ୍ରୀମାନଙ୍କର ପାଦ ଯେତେ ଛୋଟ ହେବ ସେ ସେତେ ସୁନ୍ଦରୀ ରୂପେ ପରିଗଣିତ ହେବେ । ତେଣୁ ସେ ପିଲାଦିନରୁ ଝିଅମାନଙ୍କ ପାଦକୁ କାଠ ଖୋଳଦେଇ ଖୁବ୍ ଜୋରରେ ବାନ୍ଧି ଦିଅନ୍ତି । ଆଉ ଖୋଲନ୍ତିନି । ସେଥିରେ ସେ ବିଚାରୀମାନଙ୍କୁ ମହାକଷ୍ଟ ହୁଏ । ପାଦ ଭିତର ବାନ୍ଧେଣି ଉପରେ କଟ କଟ, ଚଗ ଚଗ ହୁଏ । ଚଲାଚଲି ବୁଲାବୁଲିରେ ମହା ଅସୁବିଧା କିନ୍ତୁ ବାନ୍ଧେଣି କେହି ଖୋଲନ୍ତିନି । ହେଉନା ଯେତେ କଷ୍ଟ । ଝିଅ ତ ସୁନ୍ଦରୀ ହେବ । ମାତ୍ର ମୁଁ ତ ଚାଇନା ସୁନ୍ଦରୀ ହେବିନି । ମୋ ଭାଗ୍ୟରେ କାଇଁକି ଏ ଦୈବୀ ବିପଦ ।

ଯେତେ କଷ୍ଟ ହେଲେ ବି ଏ ଦୁଃଖରୁ ନିସ୍ତାର ପାଇବାର ବାଟ ନଥିଲା । ଆଉ ହଳେ ନୂଆ ଜୋତା କିଣିବାକୁ ସମ୍ବଳର ଅଭାବ । ପୁଣି ସେ ଦାମିକା ଭାରତୀୟ ଜୋତା ଫୋପାଡ଼ ଦେବାକୁ ଇଚ୍ଛା ହେଲାନି । ଅନ୍ୟ ଜୋତା ହୋଇଥିଲେ ତାକୁ ଟଣାଟଣି କରି ବା କେଉଁଠୁ ଖୋଲି ସିଲାଇ କରି ତା'ର ଭିତର ଆୟତନ ବଢ଼ାଇ ହୋଇଥାନ୍ତା । ମାତ୍ର ସେ ଆମ୍ବାସଡ଼ର ଜୋତା ଏତେ ମଜଭୁତ୍ ଯେ ବିନା ନ କାଟିଲେ ତା' ଚମଡ଼ାକୁ ଝିଙ୍କେଇବା ଅସମ୍ଭବ । ଆଉକିଛି ଉପାୟ ନାହିଁ । ହଉ ପଛେ କଷ୍ଟ ପିନ୍ଧିବାକୁ ପଡ଼ିବ । ଯେଉଁ ଉପକାରୀ ବନ୍ଧୁମାନେ ଏ ମୂଲ୍ୟବାନ୍ ମଜଭୁତ ଜୋତା କିଣିବାକୁ ସଦୁପଦେଶ ଦେଇଥିଲେ ମନେ ମନେ ସେମାନଙ୍କ ଉପରେ ଭାରି ରାଗିଲି । ସେ ବାଟା ଦୋକାନୀ ବି କମ୍ ଖରାପ ଲୋକ ନୁହେଁ । ଜୋତା କିଣିଲା ବେଳେ ମୁଁ ପ୍ରଚାର କଲା ଭଳି ବାରମ୍ବାର କହିଚି ମୋ ବିଲାତ ଯିବା କଥା । ବାଛି ବାଛି ବେଶୀ

ଦାମିକା ଜୋତା ହାଜକ ଦେଲ; କନ୍ତୁ ଏହାର ଉପର ସାଇଜଟା ଦେଇ-ପାରିଲାନ । ସେ ବଡ଼ ସାଇଜ ଜୋତା ହୁଏତ ତା’ ପାଖରେ ନଥିବ ! ତେଣୁ ଯାହା ପାଖରେ ଥିଲ ତା’କୁ ମୋତେ ଧରେଇ ଦେଇ ତା’ର ଚତୁର ବ୍ୟାବସାୟିକ ବୁଦ୍ଧିକୁ କାର୍ଯ୍ୟରେ ଲଗେଇଦେଲା ।

ଏଇଟା ଆମ ଦେଶର ଅନେକ ଦୋକାମୀଙ୍କ କଦର୍ଯ୍ୟ ଅଭ୍ୟାସ । ଯେଉଁ ଜନଷଟା ସେ ବିକବାକୁ ଗ୍ହୁଁଥିବେ ସେଇଟା ସେ ତୁମକୁ ସମର୍ପି-ଦେବାକୁ ମହା ବିକଳ, ଅବଶ୍ୟ ପଇସା ନେଇ । ନାନା ପ୍ରକାର କଥା କହ୍ବ ତୁମକୁ ଭଳାଭଳ କରଦେବେ, ଉଚତ ଦର ଅପେକ୍ଷା କଛୁ ବେଶୀ ନେବାକୁ ଚେଷ୍ଟା କରବେ । କନ୍ତୁ ସେ ଜନଷ ସମ୍ବନ୍ଧରେ କୌଣସି ବୈଜ୍ଞାନକ ବା ଅର୍ଥନୈତକ ତଥ୍ୟ ଯୋଗାଇପାରବେନ । ମାତ୍ର ବିଲାତରେ କୌଣସି ବଡ଼ ଦୋକାନକୁ ଗଲେ ସେଠାରେ ବିକ୍ରେତା ବା ବିକ୍ରୟିତ୍ରୀ ପ୍ରତ୍ୟେକ ଜନଷ ବିଷୟରେ ବହୁ ମୂଲ୍ୟବାନ୍ କଥା କହନ୍ତ ଯାହା ଶୁଣିଲେ ମନରେ ବେଶ୍ ସନ୍ତୋଷ ଆସେ । ମୁଁ ମନେ ମନେ ସେ ବାଟା ଦୋକାମୀକୁ ବି ବହୁତ ଗାଳଦେଲ । କନ୍ତୁ ପିନ୍ଧିବାରେ ଯେତେ କଷ୍ଟ ହେଲେ ବି ସେ ଆମ୍ବାସାଡ଼ର ଜୋତାକୁ ଆଉ ଛାଡ଼ପାରିଲନ ।

ଦିନେ ସକାଳୁ ବସାରୁ ବାହାରି ବସଷ୍ଟାଣ୍ଡ୍‌ରେ ପହଞ୍ଚିଲା ବେଳକୁ ଟିକଏ ଡେରି ହୋଇଯାଇଥାଏ । ଯେଉଁ ବସ୍‌ରେ ଗଲେ ଆମ ଶିକ୍ଷା ଅନୁଷ୍ଠାନରେ ବେଳାରେ ପହଞ୍ଚିଯାଉ ସେଇଟା ଗ୍ଲିଯାଇଥାଏ । ମହା-ବିପଦ ! ତେଣୁ ଦଉଡ଼ିଲୁ କ୍ୟାମ୍‌ଡ଼େନ ଟାଉନକୁ । ସେଠାରୁ ଟିଉବ୍ ଟ୍ରେନ୍ ଧରି ଆମ ଲକ୍ଷ୍ୟ ସ୍ଥଳରେ ପହଞ୍ଚିବୁ । ବସନ ଭୂଷଣ ଅସମ୍ଭାଳ ଅବସ୍ଥାରେ ଲସରପସର ହୋଇ ଦଉଡ଼ୁ ଦଉଡ଼ୁ ଦେଖିଲୁ ଗୋଟିଏ ଘରୋଇ ମଟର ଗାଡ଼ି ଯାଉଚ । ତା’ର ଗ୍ଳକ ଏକାକୀ ଗାଡ଼ିରେ ବସି ତାକୁ ବୀରଦର୍ପରେ ଆଗକୁ ଚଳାଉଥାନ୍ତ । ତାଙ୍କୁ ହାତ ଠାରି ଅଟକାଇଲୁ ଏବଂ ଆମକୁ ଥୋଡ଼ାଏ ବାଟ ଆଗେଇ ଦେବାକୁ ଅର୍ଥାତ୍ “ଲିଫ୍‌ଟ” ଦେବାକୁ ଅନୁରୋଧ କଲୁ । ସେ ସାନନ୍ଦରେ ରାଜିହେଲେ । ବିଲାତରେ ଲିଫ୍‌ଟ ବ୍ୟବସ୍ଥାଟା ବେଶ୍ ଗ୍ଲେ । କେଉଁଠି ଅସୁବିଧାରେ ପଡ଼ି ଯଦି କୌଣସି ଘରୋଇ ମଟରବାଲାଙ୍କୁ “ଲିଫ୍‌ଟ” ପାଇଁ ଅନୁରୋଧ କରିବ ସେ ବିନା ଦ୍ୱିଧାରେ ଅନେକ କ୍ଷେତ୍ରରେ ସେଥିରେ ରାଜି

ହୋଇଯାନ୍ତି । ଆମ ଦେଶର ମଟରଚାଳକମାନଙ୍କ ପରି ବାଟ କାଟି ଚାଲିଯାନ୍ତିନ । ଏହାର କାରଣ ବୋଧହୁଏ ଆମ ଲୋକଙ୍କ ପରି ତାଙ୍କର ବିଶେଷ ପାରିବାରିକ ଜଞ୍ଜାଳ ନ ଥାଏ । ତେଣୁ କୌଣସି ବାହାର ଲୋକକୁ ସାହାଯ୍ୟ କରିବାରେ, ଏପରିକି ସେମାନଙ୍କ ସହିତ ଆତ୍ମୀୟତା ପାତିବାର ସୁଯୋଗ ପାଇଲେ ସେଇଟା ପ୍ରାୟ ସେମାନେ ଛାଡ଼ନ୍ତିନ ।

ବାହାରୁ ଯାହା ଜଣାପଡ଼ୁଥିଲା ସେ ଗାଡ଼ିଟି ବେଶ୍ ପୁରୁଣା । ପୁରୁଣା ଜିନଷ ପ୍ରତି ସେ ଦେଶ ଲୋକଙ୍କର ଅପାର ମମତା । ବହୁ ପୁରୁଣା ଗାଡ଼ି ମଟର ଦୋକାନମାନଙ୍କରେ ଥୁଆ ହୋଇଥାଏ । ବହୁ ଦାମ୍‌ରେ ବି ସେସବୁ ବିକ୍ରି ହୁଏ । ଯେଉଁଦିନ ଭଲ କ୍ରିକେଟ୍, ଫୁଟବଲ ଆଦି ଖେଳ ଥିବ ସେଦିନ ଭଲକ ଭଲ ପୁରୁଣା ଗାଡ଼ି ଧରି ଖେଳ-ରସିକ, ଖେଳ-ରସିକାମାନେ ବାହାରି ପଡ଼ିବେ । ଏଇଟା ତାଙ୍କ ରକ୍ଷଣଶୀଳ ଚରିତ୍ରର ଗୋଟାଏ ଲକ୍ଷଣ ।

ଗାଡ଼ିଟା ବାହାରୁ ପୁରୁଣା ଦେଖାଯାଉଥିଲା କିନ୍ତୁ ଭିତରେ ବସି ଦେଖିଲି ବେଶ୍ ଆରାମଦାୟକ । ଆମ ଦେଶର ଅନେକ ଗାଡ଼ି ପରି ଖଟ୍ ଖଟ୍, ମଚ୍ ମଚ୍ ନାହିଁ କି ଇଞ୍ଜିନ୍ ଦେହରୁ ବଜ୍ର-ଗର୍ଜନ ପରି ଶବ୍ଦ ବାହାରୁନି । ତା' ଭିତରେ ଆସନ ଜମେଇ ଦେଇ ଜୋରରେ ଗାଡ଼ି ଚଳେଇବାକୁ ଭଦ୍ରଲୋକଙ୍କୁ ଅନୁରୋଧ କଲୁ । ସେ ହସହସ ବଦନରେ ଆଗକୁ ମାଡ଼ିଚାଲିଲେ । ମୁଁ ଆଗ ସିଟ୍‌ରେ ବସି ତାଙ୍କ ସହିତ ଆତ୍ମୀୟତା ଜମେଇ ଦେଇଥାଏ । କି କାମ କରନ୍ତି, ଘରେ କିଏ କିଏ ଅଛନ୍ତି ଇତ୍ୟାଦି ବହୁ କଥା ତାଙ୍କୁ ପଚାରୁଥାଏ । ସେ ମହାନନ୍ଦରେ ସବୁ-କଥା କହୁଥାନ୍ତି । କିନ୍ତୁ ମୋର ସାଙ୍ଗସାଥୀମାନେ ଏଥିରେ ଯେମିତି ବିରକ୍ତ ହୋଇ ଉଠୁଥାନ୍ତି । ଏତେ ଗପ କ'ଣ ! ଶିକ୍ଷାନୁଷ୍ଠାନରେ କେମିତି ଶୀଘ୍ର ପହଞ୍ଚିବା ସେ କଥା ନ ବୁଝି.........

ସେ ଭଦ୍ରଲୋକ ତାଙ୍କ ଦପ୍ତରକୁ ଯାଉଥାନ୍ତି । ତେଣୁ ସେ ଆମକୁ ଆମ ଲକ୍ଷ୍ୟସ୍ଥଳରେ ପହଞ୍ଚାଇବାର ଅସାମର୍ଥ୍ୟ ଦୁଃଖର ସହିତ ପ୍ରକାଶ କରି ଆମକୁ ଇଉଷ୍ଟନ ଟିଉବ ଷ୍ଟେସନରେ ଓହ୍ଲାଇ ଦେଲେ । ଆମେ ସେତିକରେ କୃତାର୍ଥ । ସାଙ୍ଗେ ସାଙ୍ଗେ ଆମେ ସେଠାରୁ ଟିଉବ ଟ୍ରେନ୍ ଧରି ଓ୍ୱାଟଲୁ ଷ୍ଟେସନ ପର୍ଯ୍ୟନ୍ତ ଗଲୁ । କିନ୍ତୁ ସେଠାରୁ

କେଉଁବାଟେ ଗଲେ ଷ୍ଟାମ୍ଫୋର୍ଡ଼ ଷ୍ଟ୍ରିଟ୍‌ରେ ଥିବା ଆମ ଶିକ୍ଷା ଅନୁଷ୍ଠାନରେ ପହଞ୍ଚିବୁ ସେ ବାଟ ଆମକୁ ଜଣା ନଥିଲା; ତେଣୁ ନାନା ଅରମା ବାଟ ଦେଇ, ଯାଁ'କୁ ତାଁ'କୁ ପଚାରି କୌଣସିମତେ ଆମ ଲକ୍ଷ୍ୟସ୍ଥଳରେ ପହଞ୍ଚିଲୁ । ଏପଟ, ସେପଟ, ଲସରପସର ହୋଇ ଧାଇଁବା ଫଳରେ ଦେହରୁ ଶୀତ ଛୁଡ଼ିଯାଇଥାଏ । ଆଶ୍ଚର୍ଯ୍ୟ କଥା ଆମେ ବସ୍‌ରେ ଯାଇଥିଲେ ଯେତେବେଳେ ଆମ ଶିକ୍ଷାନୁଷ୍ଠାନରେ ପହଞ୍ଚିଥାନ୍ତୁ ପ୍ରାୟ ସେତିକି ବେଳେ ସେଠାରେ ପହଞ୍ଚିଗଲୁ । କ୍ଲାସ୍ ଆରମ୍ଭ ହୋଇ ନଥାଏ । ଅନ୍ୟ ବିଦ୍ୟାର୍ଥୀମାନେ ଆସି ପହଞ୍ଚୁଥାନ୍ତି ଧଇଁସଇଁ ହୋଇ ।

ବିଲାତରେ ସମୟାନୁବର୍ତ୍ତୀତାଟା ଖୁବ୍ ନଗଦ । ଠିକ୍ ସମୟରେ କ୍ଲାସ୍‌ରେ ବା କାମରେ ସମସ୍ତେ ଯୋଗ ଦିଅନ୍ତି । ସେଥିପାଇଁ ବିଶେଷ ଧମକ ବା ତାକିଦ୍ ଦରକାର ହୁଏନି । ବେଳାରେ ଯେଝା ଦପ୍ତରରେ ପହଞ୍ଚିବାକୁ ଲୋକେ ଏକ ପ୍ରକାର ଦଉଡ଼ୁଥିବେ । ଆମ ଦେଶରେ ଯେମିତି ବହୁ କ୍ଷେତ୍ରରେ ନାନା ଆଳ ବାହାନା ଦେଖାଇ ନାନା କଟାଳ ବା ଜୁଲୁମ୍ କରି ଡେରିରେ ଅଇଲେ ବି ହାଜର୍ ପକାଇବାକୁ ଲୋକେ ଜିଦ୍ ଧରନ୍ତି ସେଠାରେ ସେ ସବୁ ନାହିଁ । ସେ ଦେଶରେ ରହି ସମୟାନୁବର୍ତ୍ତୀତାଟା ଆମର ଯେମିତି ଅଭ୍ୟାସରେ ପଡ଼ିଯାଇଥାଏ । ତେଣୁ ଟ୍ରେନ୍, ମଟର ବସ୍ ଯେଉଁଥିରେ ହେଉ ଯାଇ, ଧାଇଁ ଧପଡ଼ି ବେଳାରେ କ୍ଲାସ୍‌ରେ ପହଞ୍ଚୁ । ସେଦିନ କିନ୍ତୁ କେଜାଣି କାହିଁକି ଆମ ମୁଦ୍ରଣ ବିଦ୍ୟାଳୟ ଗୋଟେ ଦିନ କ୍ଲାସ୍ ପରେ ବନ୍ଦ ହୋଇଗଲା । ଶିକ୍ଷାର୍ଥୀମାନେ ଆନନ୍ଦରେ ଡିଆଁ ମାଇଲେ । ବିଲାତରେ ଆମ ଦେଶପରି ଦିନେ ଦୁଇ ଦିନ ହୋଇ ବର୍ଷ-ତମାମ୍ ଛୁଟି ହୁଏନି । ପ୍ରତି ସପ୍ତାହରେ ଶନିବାର, ରବିବାର ଛୁଟି । ବାକି କେବେ କା ଦିନେ ଦୁଇଦିନ ଅନ୍ୟ ଛୁଟି ହୁଏ । ବଡ଼ ଛୁଟି ହେଲା, ଇଷ୍ଟର ହଲିଡ଼େଜ୍ ଯେ କି ପ୍ରାୟ ସାତ ଦିନ ଖଣ୍ଡେ ହୁଏ । ଆଉ ବଡ଼ ଦିନ ଛୁଟି ଯେ କି ଆଉ ଟିକିଏ ଲମ୍ବା । ଆମ ସ୍କୁଲ କଲେଜରେ ଯେମିତି ଅନେକ ସମୟରେ ଅଧା ଛୁଟି ହୁଏ ସେସବୁ ସେଠାରେ ପ୍ରାୟ ନାହିଁ । ମାତ୍ର ଦୈବାତ୍ ସେଦିନ କୌଣସି କାରଣରୁ ଛୁଟି ହୋଇଯିବାରୁ ଶିକ୍ଷାର୍ଥୀଙ୍କ ମନରେ ମହାନନ୍ଦ । କିଏ କୁଆଡ଼େ ଯିବେ ଯୋଜନା କରି ବାହାରି ପଡ଼ିଲେ ।

ମୋର ବନ୍ଧୁମାନେ କୁଆଡ଼େ ବିଶେଷ କାମରେ ଚାଲିଗଲେ । ମୁଁ ପଡ଼ିଗଲି ଏକା । ବସା ତ ବହୁ ଦୂରରେ । ସେଠାକୁ ଏତେ ସଅଳ ଫେରିଯିବା ଦରକାର ନାହିଁ । ଗଲେ ତ ବଡ଼ ନଗ୍ଣ୍ଠିଆ ଲାଗିବ । ଘର କଥା ମନେ ପଡ଼ିବ । ଠିକ୍ କଲି, ଷ୍ଟ୍ରାଣ୍ଡ୍ ରୋଡ଼, ଅଲ୍ଡ୍‌ଓ୍ୱିଚ୍ ଆଡ଼େ ବୁଲିବି । ସଞ୍ଜ ହେଲେ ବସାକୁ ଫେରିବି । ତାହା ହିଁ କଲି । ପଏଦଲରେ ଓ୍ୱାଟରଲୁ ବ୍ରିଜ୍ ପର୍ଯ୍ୟନ୍ତ ଗଲି । ସେଇଠି ବସ ସବୁ ଅଟକନ୍ତି । ଭାବିଲି ସେଠାରୁ ବସ୍‌ଟିଏ ଧରି ଭିକ୍ଟୋରିଆ ଷ୍ଟେସନ୍‌କୁ ଯିବି । ସେଇଟା ଗୋଟାଏ ବଡ଼ ଷ୍ଟେସନ୍, ବେଶ୍ ଚୋକ ଜାଗା । ସେଇ ବାଟ ଦେଇ ବହୁଲୋକ ଯା'ଆସ କରନ୍ତି । ଦେଖିବା ସେଠାରେ ଚଳପ୍ରଚଳ ହେଉଥିବା ଲୋକଙ୍କ ଢଙ୍ଗରଙ୍ଗ, ଆଗ୍ରହ ବ୍ୟବହାର କମିତ ! ପୁଣି ଭାବିଲି, ଅଯଥା କାଇଁକି ମୂଲ୍ୟବାନ୍ ପେନଗୁଡ଼ାକ ନଷ୍ଟ କରି ଗୋଟାଏ ରେଲଷ୍ଟେସନକୁ ଯିବି ! ସେଠାରେ ଗୁଡ଼ାଏ ଲୋକ ତ ଜମା ହୋଇଥିବେ, ଅସ୍ତବ୍ୟସ୍ତ ହୋଇ ଏଣେତେଣେ ଧାଁଧପଡ଼ କରୁଥିବେ । ଲଣ୍ଡନରେ ସେ ଦୃଶ୍ୟ ବା କେଉଁ ବିରଳ । ଯେଉଁ ରେଲ ଷ୍ଟେସନକୁ ଯା'ଅ ସେଇ ଦୃଶ୍ୟ, ହାତରେ ବ୍ୟାଗ୍, ସୁଟ୍‌କେଶ୍ ଧରି ଲୋକେ ଧାଇଁଥିବେ । ବରଂ ପାଦ ଦୁଇଟା ଉପରେ ନିର୍ଭର କରି ଏଣେ ତେଣେ ବୁଲାଯାଉ । ସେଥିରେ ହୁଏତ ଲଣ୍ଡନର କୌଣସି ଗୁପ୍ତ ମାହାତ୍ମ୍ୟ, ଗୋପନ କଥା ଆଖିରେ ପଡ଼ିଯିବ । ଚାଲିବାକୁ ଆରମ୍ଭ କରିଦେଲି । ହେଲେ ବାଟା ଜୋତା ଦି'ଟା ଯେମିତ ଭଗାରି ହେଇଥାନ୍ତି । ପଦଯାତ୍ରା ଆରମ୍ଭ କରିବା ସାଙ୍ଗେ ସାଙ୍ଗେ ସେମାନେ ଆର୍ତ୍ତନାଦ କରିଉଠିଲେ । କିନ୍ତୁ ସେଥିକି ଖାତିର ନକରି ଆଗେଇ ଚାଲିଲି ।

ଆଖି ପଡ଼ିଲା ଥେମସ୍ ନଦୀ ଉପରେ । ହଉ, କିଛି ନ ହେଲେ ବି ବିଲାତର ଗଙ୍ଗା-ଯମୁନା ଏଇ ଥେମସ୍ ନଦୀ କୂଳେ କୂଳେ ବୁଲି ଏହାର ରୂପଶ୍ରୀ ଦର୍ଶନ କରାଯାଉ । ରୂପଶ୍ରୀ ? ଛିଃ, ଛିଃ କି ଗୋଳିଆ ଅପରିଷ୍କାର ପାଣି ! ଏ ବା କି ନଈ ! ଗୋଟାଏ ସରୁଆ ନାଳ ପରି ଦିଶୁଚି । ଠାଏ ଠାଏ ଆମ କଟକ ତାଳଦଣ୍ଡା କେନାଲ୍ ପରି ଅଣଓସାରିଆ । କି କଥା ଏ ! ମହାନଦୀ ନାମ ରହିଲା ଗୁପତେ କ୍ଷୁଦ୍ର ଥେମସ୍ ଆଜ ବିଖ୍ୟାତ ଜଗତେ ! କବିଙ୍କ ଭାଷା ସ୍ମରଣ କରି ମନଟା କୋହକୋହ

ହୋଇଉଠିଲା । ଭାବିଲି, ଏ ବୃଥା ଭାବନା ! ଏଇ ଥେମସ୍ ନଦୀ ଯେତେ ଶ୍ରେଷ୍ଠ ହେଲେ ବି ଏହାର କୂଳ-ଉପକୂଳ ଏକ ବିରାଟ ସଭ୍ୟତାର, ଏକ ମହାନ୍ ଜାତିର ପୀଠ ହୋଇଉଠିଛି । ନା, ଏହାରି ଜଳରେ ମୁଁ ସଂକଳ୍ପ କରିବି, ଗଙ୍ଗେ ଚ ଯମୁନେ ଚୈବ ଗୋଦାବରୀ ସରସ୍ୱତୀ, ନର୍ମଦେ ସିନ୍ଧୁକାବେରୀ ଜଳେଽସ୍ମିନ୍ ସନ୍ନିଧିଂ କୁରୁ । ହେ ଗଙ୍ଗା ଯମୁନା ଆଦି ଭାରତର ବିଖ୍ୟାତ ନଦନଦୀ ସକଳ ! ତୁମେ ଏଠି ଆବିର୍ଭୂତ ହୁଅ ମୁଁ ତୁମ ଜଳରେ ସଂକଳ୍ପ କରିବି ! କିନ୍ତୁ କି ସଂକଳ୍ପ ? ହଁ, ଯେଉଁଥି ପାଇଁ ପ୍ରାଣପାତ କରି ଏ ଦୂର ଦେଶକୁ ଦଉଡ଼ି ଆସିଛି, ଯାହାର ରୂପଶୋଭା, ବଜାରବିପଣୀ ଦେଖିବାକୁ ଏ ଶଯ୍ୟା ଜୋଡାର ଦୌର୍ଭାଗ୍ୟ ସତ୍ତ୍ୱେ ଆଗକୁ ମାଡ଼ିଚାଲିଛି ସେ ଆଶା ଫଳବତୀ ହେଉ, ମୋର ମନସ୍କାମନା ପୂର୍ଣ୍ଣହେଉ······ତଥାସ୍ତୁ ! ମନେ ମନେ ସଂକଳ୍ପ ସାଙ୍ଗକଲି ।

ଥେମସ୍ ନଦୀ ! ବିଲାତ ଦେଶର ବ୍ୟବସାୟ-ବାଣିଜ୍ୟ, ଆମୋଦ-ପ୍ରମୋଦରେ ଏହାର ଅପୂର୍ବ ଭୂମିକା । ପଶ୍ଚିମରେ କଟ୍‌ସ୍ୱଲ୍ଡ଼ ନାମକ ଏକ ଜାଗାରୁ ବାହାରି ଅକ୍‌ସଫୋର୍ଡ଼ ସହର ଆଡ଼କୁ ବହିଆସିଛି । ସେଠାରୁ "ଗୋରିଂ ଗ୍ୟାପ୍" ଦେଇ କ୍ରମେ ପ୍ରଶସ୍ତ ହୋଇ ଉଠିଛି ଏବଂ ଧୀର ଶାନ୍ତ ରୂପରେ ପୂର୍ବ ଦିଗକୁ ଗତି କରିଛି । ଥେମସ୍‌ର ଏହି ଅଂଶରେ ବିଲାତର ଅକ୍‌ସଫୋର୍ଡ଼, ଆବିଂଡ଼ନ୍ , ହେନ୍‌ଲେ ଅନ୍ ଥେମସ୍, ମାର୍ଲୋ, ମେଡ଼େନ୍ ହେଡ଼୍ , ଓ୍ୱିଣ୍ଡସର୍ ଆଦି ପୁରାତନ ସହରମାନଙ୍କ ମଧ୍ୟରେ ବହୁ ନୌକା ଯାତାୟାତ କରେ ବ୍ୟବସାୟବାଣିଜ୍ୟ ଓ ଜଳକେଳି ଉଦ୍ଦେଶ୍ୟରେ । ଏହା ପରେ ଥେମସ୍ ନଦୀ ଲଣ୍ଡନ ସହର ଦେଇ ବହିଯାଇଛି । ଅବଶ୍ୟ ଏହି ନଦୀର ଦୃଶ୍ୟ ବେଶ୍ ମନୋରମ ହେଲେ ବି କବି ସ୍ପେନସର୍‌ଙ୍କ ବର୍ଣ୍ଣିତ ରୁଚିର ସୁନ୍ଦର ଥେମସ୍ (Sweet Thames)ର ମାହାତ୍ମ୍ୟ ଉପଲବ୍ଧି କରିପାରିଲିନି । ଏହା କୂଳରେ ଥିବା ବନାନୀ, ବଗିଚା ଉଠିଯାଇ ସେମାନଙ୍କ ସ୍ଥାନରେ ବହୁ କୋଠାବାଡ଼ି ନିର୍ମିତ ହୋଇଛି । ବୃଦ୍ଧପିତା ଥେମସ୍ (Old father Thames)ଙ୍କର ଆଉ ପୂର୍ବ ରୂପ ନାହିଁ । ତଥାପି ଏ ବିଲାତର ବିଖ୍ୟାତ ଥେମସ୍ ନଦୀ ! ବହୁ ସମୟ ଧରି ଓ୍ୱାଟରଲୁ ବ୍ରିଜ୍‌ର ବାଡ଼କୁ ଆଉଜି ଏହାକୁ ତନ୍ନ ତନ୍ନ କରି ଖୁଣ୍ଟିଲି । ହଁ, ଶ୍ରେଷ୍ଠ ନଦୀଟିଏ ହେଲେ କ'ଣ ହେବ, ବିଲାତବାସୀ

ସେମାନଙ୍କ ବ୍ୟବସାୟ-ବାଣିଜ୍ୟ, ଆନନ୍ଦ-ଉତ୍ସବରେ ଏହାକୁ ବେଶ୍ ବ୍ୟବହାର କରୁଛନ୍ତି ।

ଆଖି ଫେରେଇ ଲଣ୍ଡନ ସହରକୁ ଚାହିଁଲି । କି ବିରାଟ ଜନପଦ; କି ଜନସମାଗମ ! ହେଲେ କ'ଣ ଏହାର ମାହାତ୍ମ୍ୟ, କ'ଣ ଏହାର ଗୌରବ ! ସାମୁଏଲ୍ ଜନ୍‌ସନ୍‌ଙ୍କ କବିତା ମନେପଡ଼ିଲା—

Here malice, rapine, accident conspire
And now a rabble rages, now a fire
Their ambush here relentless ruffians lay
And here the fell attorney prowls for prey.

ବିଦ୍ୱେଷ, ଡକାୟତି ଓ ଦୁର୍ଘଟଣାର ସଙ୍ଗମସ୍ଥଳୀ ଏ ଲଣ୍ଡନ ସହର । ଏଠି କେତେବେଳେ ଜନସଂଘର୍ଷ ଲାଗେ ତ କେତେବେଳେ ଘରପୋଡ଼ି ହୁଏ । ଏଠା ନିର୍ଦ୍ଦୟ ନିର୍ମମ ଗୁଣ୍ଡାମାନଙ୍କ ଆଡ୍‌ଡ଼ା ଜାଗା ଏବଂ ଏଇଠାରେ ଅଯୋଗ୍ୟ ଆଇନଜ୍ଞ ତାର ଶିକାର ପାଇଁ ଘୁରିବୁଲେ ।

ଏହା ଅବଶ୍ୟ ଜନ୍‌ସନ୍‌ଙ୍କ ସମୟର ଲଣ୍ଡନ । ତଥାପି ଆଜି ଏ ଉକ୍ତି ପୂରା ପ୍ରଯୁଜ୍ୟ ପରି ମନେହେଉଛି । କେବଳ ଲଣ୍ଡନ କାହିଁକି ପୃଥିବୀର ଯେ କୌଣସି ବଡ଼ ବଡ଼ ସହର ସମ୍ବନ୍ଧରେ ଏହା କୁହାଯାଇପାରେ । ଆମ ଦେଶର କଲିକତା, ବମ୍ବେ ପ୍ରଭୃତି ବି ସେଥିରୁ ବାଦ୍ ଯିବେନି । ବରଂ ତା' ସାଙ୍ଗରେ ଆଉକିଛି ଯୋଡ଼ା ଯାଇପାରେ । ଠକ ଦୋକାନୀ, ଅକର୍ମା ଟାଉଟର ଓ କୁଚକ୍ରୀ ରାଜନୀତିଜ୍ଞଙ୍କ ଚରାଭୂଇଁ ।

ତେବେ ଲଣ୍ଡନ ସହରର କେଉଁଠି କଣ ସୌନ୍ଦର୍ଯ୍ୟ, ମାହାତ୍ମ୍ୟ ଲୁଚିରହିଛି ? ମହାକବି ଓ୍ୱାର୍ଡ଼ସ୍‌ଓ୍ୱର୍ଥ କହିଛନ୍ତି—

Earth has not anything to show more fair
Dull would he be who could pass by
A sight so touching in its majesty !

ନାହିଁ ଧରାପରେ ରମ୍ୟ ଏହି ସୁଷମାର ପଟାନ୍ତର
କେବଳ ପାଷଣ୍ଡ ଯିନା ଚାଲିଯିବ ନ ଦେଖି,
ଏ ପ୍ରାଣଥରା ରୂପର ସମ୍ଭାର !

କିନ୍ତୁ କାହିଁ ସେ ରୂପସମ୍ଭାର ? କିଛି ତ ମୋ ଚର୍ମନେତ୍ରକୁ ଦେଖାଯାଉନ !

ରେ ଲଣ୍ଡନ ! କାହିଁ ତୋ ବେଶ ମୋହନ
ଯେ ରୂପେ ମୋହିଲୁ ତୁ କବି-ନୟନ ?

କାହିଁ ଜ୍ଞାନ ନେତ୍ର ତ ଉନ୍ମିଳିତ ହେଉନାହିଁ । କବି କାଳିଦାସଙ୍କ ଭାଷାରେ—

ମନ୍ଦଃ କବିଃ ଯଶଃ ପ୍ରାର୍ଥୀ !

ଖିଆଲ କବିତ୍ୱ କରିବାକୁ ଚାହିଁଲେ କ'ଣ ହବ ! ସେଥିପାଇଁ କ୍ଷମତା ଥିବା ଦରକାର ! ତେବେ ବି ମନ ଶାନ୍ତ ହେଉ ନଥାଏ । ନାନା ଚିନ୍ତା ମୁଣ୍ଡ ଭିତରେ ଜାଗି ଉଠୁଛି । କ'ଣପାଇଁ ଏ ବଡ଼ ବଡ଼ ସହରରେ ଲୋକଗୁଡ଼ାକ ମଶାମାଛି ପରି ସାଲୁ ସାଲୁ ହେଉଛନ୍ତି ! ଏ ସହରମାନଙ୍କର ଚେହେରା ତ ପୂର୍ବେ ନିଶ୍ଚୟ ବଡ଼ କଦର୍ଯ୍ୟ ଥିବ । ଧୂଳିମାଟି ଏପରି କି ପଙ୍କକାଦୁଅଭରା ରାସ୍ତାଘାଟ, ମଇଳା ଜାକିଲା ଗଳିକନ୍ଧି, ପୋକଜୋକପୂର୍ଣ୍ଣ ଗଛଲତା ନେଇ ଏ ସହର ସୃଷ୍ଟି ହୋଇଥିବ । ଏବର ସୁବିସ୍ତୃତ ପାର୍କମଇଦାନ ତ ନଥିଲା । କ୍ରମେ ଅବଶ୍ୟ ରାସ୍ତାଗୁଡ଼ାକୁ ଚଉଡ଼ା ଓ ପକ୍‌କା କରାଗଲା । କେତେ ନୂଆରାସ୍ତା ତିଆରି ହେଲା । ତଥାପି ଯାତାୟାତ ପାଇଁ ମହା ଅସୁବିଧା । ଯେତେ ରାସ୍ତାଘାଟ, ଯେତେ ଯାନବାହାନ ଥିଲେ ବି ସେସବୁ ସହରର ଜନସାଗର ପାଇଁ ଯେପରି ନିଅଣ୍ଟ ! ଏ ବିଶାଳ ପୃଥିବୀର ଉପରଭାଗ ଏଥିପାଇଁ ଯଥେଷ୍ଟ ନ ହେବାରୁ ଲୋକେ ମାଟିତଳେ, ଖୋଲା ଆକାଶରେ ଯାତାୟାତ କରୁଛନ୍ତି ତଥାପି ଯେପରି ଏ ସମସ୍ୟାର ସମାଧାନ ହୋଇପାରୁନି । ଏଣେ କିନ୍ତୁ ସହର ସଂଖ୍ୟା ଓ ତହିଁରେ ଜନସଂଖ୍ୟା ବଢ଼ିଚାଲିଛି । ଫଳରେ ବହୁ ବୃକ୍ଷଲତା, ବଣଜଙ୍ଗଲ କଟା ହେଉଛି । ପୃଥିବୀର ପ୍ରାକୃତିକ ଶ୍ୟାମଳିମା ବହୁ ପରିମାଣରେ ନଷ୍ଟ ହୋଇଗଲାଣି । ବିଚିତ୍ର ମନୁଷ୍ୟର ବୁଦ୍ଧି ! ଏକ ପକ୍ଷରେ ଏ ଧ୍ୱଂସଲୀଳା, ଅନ୍ୟପକ୍ଷରେ ଏହି ବୃକ୍ଷଲତା, ଫଳଫୁଲଭରା ପରିବେଶକୁ ଫେରାଇ ଆଣିବାକୁ ଲୋକେ ଚେଷ୍ଟା କରୁଛନ୍ତି ପାର୍କ-ମଇଦାନ, ଉଦ୍ୟାନ-ବଗିଚା ! ଘର ସାମ୍ନାରେ, ଛାତ ଉପରେ

କେତେ ଗଛଲତା ଲଗାଇ କୃତ୍ରିମ ସୌନ୍ଦର୍ଯ୍ୟ ସୃଷ୍ଟି କରୁଛନ୍ତି । କିନ୍ତୁ ସେସବୁ ପୂର୍ବ ପ୍ରାକୃତିକ ପରିବେଶକୁ ପରିହାସ କଲା ପରି ଲାଗେ ।

ଏସବୁ ଦୃଷ୍ଟିରୁ ଚିନ୍ତା କଲେ ଲଣ୍ଡନ ସହର ବେଶ୍ ରମଣୀୟ, ବେଶ୍ ଚିତ୍ତାକର୍ଷକ ମନେହୁଏ । ଏଠି ବହୁମହଲାର କୋଠା ଥିଲେ ବି ଆମେରିକାର ବଡ଼ ବଡ଼ ସହରମାନଙ୍କରେ ଥିବା ନଭଶ୍ଚୁମ୍ବୀ କୋଠାବାଡ଼ି (Sky scrapers) ବେଶୀ ନାହିଁ । ପ୍ରାୟ ଗୋଟିଏ ଘରକୁ ଗୋଟିଏ ପରିବାର ଏମାନଙ୍କର ନୀତି । ବହୁତଳ ବିଶିଷ୍ଟ ଫ୍ଲାଟ୍‌ଘର ପ୍ରତି ଲଣ୍ଡନ-ବାସୀଙ୍କର ଯେପରି ମହା ବିତୃଷ୍ଣା । ସହରଟା ଖୁବ୍ ବ୍ୟାପକ । ମଝିରେ ମଝିରେ ବିସ୍ତୃତ ପାର୍କମଇଦାନ । ଅନେକଟା ଏହା ଉଦ୍ୟାନ-ନଗରୀ (Garden city) ପରି ମନେହୁଏ ।

କିନ୍ତୁ ଲଣ୍ଡନର ଏପରି ପରିବେଶ, ଆକାର ପ୍ରକାରର କାରଣ କ'ଣ ? ବୋଧହୁଏ ରୋମାନ୍‌ମାନେ ବିଲାତର ଏହି ଅଂଶରେ ଯେଉଁ ପାଚିରୀ (Roman walls) ତିଆରି କରିଥିଲେ ତା' ଭିତରେ ଲଣ୍ଡନ ସହରର ଅଭିବୃଦ୍ଧି ନ ଘଟି ଏହାର ବାହାରେ ଜନବସତି ଗଢ଼ିଉଠିଲା । ଫଳରେ ଫୁଲ୍‌ଫାଙ୍କିଆ ଭାବରେ ଘରଦ୍ୱାର କରିବାକୁ ବେଶ୍ ସୁବିଧା ମିଳିଲା । ତା'ପରେ ଇଂରେଜମାନେ ବଡ଼ ଖେଳପ୍ରକୃତିର ଲୋକ ହେଲେ ବି ଅତି ଖେଳପ୍ରିୟ ଜାତି । ବିଭିନ୍ନ ଖେଳ କସରତ, ଘୋଡ଼ା ଦଉଡ଼, କୁକୁର ଦଉଡ଼ର ସୁବିଧା ପାଇଁ ବହୁ ପାର୍କ-ମଇଦାନ ସୃଷ୍ଟି କରିଚନ୍ତି । ମହାରାଣୀ ଭିକ୍ଟୋରିଆଙ୍କ ରାଜତ୍ୱ ସମୟରେ ଏହି ପାର୍କ ମଇଦାନ ସବୁ ବଢ଼ିଗଲା ଲଣ୍ଡନ ସହରକୁ ସରସ ସୁନ୍ଦର କରିବାକୁ । ତଥାପି କ'ଣ ଏହି ଭୂମିଖଣ୍ଡକୁ ପୂର୍ବ ପ୍ରାକୃତିକ ଶ୍ୟାମଳିମା ଫେରିଆସିଛି ? କଦାପି ନୁହେଁ । ମନୁଷ୍ୟର ଏହି ବ୍ୟାପକ ଚେଷ୍ଟା ମହାବ୍ୟର୍ଥତାରେ ପରିଣତ ହୋଇଛି । ମୋଟ କଥା ହେଲା, ପୃଥିବୀର ବୃକ୍ଷଲତାଭରା, ନଦୀ-ସମୁଦ୍ର ସମ୍ବଳିତ ପ୍ରାକୃତିକ ପରିବେଶ ଭିତରେ ମନୁଷ୍ୟ ପରି ଏକ ବିଚିତ୍ର ଜୀବର ସୃଷ୍ଟି ହେଲା । କିନ୍ତୁ ସେହି ମନୁଷ୍ୟ ତା'ର ଶକ୍ତିସାମର୍ଥ୍ୟ ସଭ୍ୟତାସଂସ୍କୃତି ବଢ଼ିବା ସଙ୍ଗେ ସଙ୍ଗେ ପ୍ରକୃତିକୁ ବିଜୟ କରିବାକୁ ଚେଷ୍ଟାକଲା ଏବଂ ପ୍ରାକୃତିକ ପରିବେଶର ଭାରସାମ୍ୟ ପ୍ରତି ଦୃଷ୍ଟି ନଦେଇ ବଣଜଙ୍ଗଲ କାଟି ମହାଦର୍ପରେ ଗଢ଼ିଲା ସହର, ଜନପଦ ।

ତିଆରି କଲା କୋଠାବାଡ଼ି, ରାସ୍ତାଘାଟ । କିନ୍ତୁ ସେଥିରେ ଯେମିତି ସେ ସୁଖଶାନ୍ତି ପାଇପାରିଲାନି । ବିକଳ ହୋଇ ଖୋଜିଲା ତାର ପୂର୍ବର ସେ ପ୍ରାକୃତିକ ପରିବେଶ । ତେଣୁ ଘର ସାମନାରେ, ଛାତ ଉପରେ ଗଛଲଟା ଲଗେଇ କଲା ଉଦ୍ୟାନ, ବଗିଚାର ସୃଷ୍ଟି, ସହର ଭିତରେ ତିଆରି କଲା ପାର୍କ ମଇଦାନ । ବସ୍ତୁତଃ ଭାବେ ସୂକ୍ଷ୍ମ ଉଦ୍ୟାନ । କିନ୍ତୁ କାହିଁ ସେ ପୂର୍ବ ବନବନାନୀର ଶୋଭା, କାହିଁ ଏ ମାଳମାଳ ଧଳା କୋଠାବାଡ଼ି ସୁଲମ୍ବ କଳାକଳା ରାସ୍ତା ଭିତରେ ଗଛଲଟାର କେତେଟା ଛୋଟ ଛୋଟ ଟାପୁ !

ପୁଣି ଟିକିଏ ଲଣ୍ଡନ ସହରଆଡ଼କୁ ଚାହିଁଲି । ସାମନାରେ ଭିକ୍ଟୋରିଆ ଏମ୍ବ୍ୟାଙ୍କମେଣ୍ଟ, ଷ୍ଟ୍ରାଣ୍ଡ ଷ୍ଟ୍ରିଟ୍, ଅଲ୍‌ଡ଼ଓ୍ୱିଚ୍, କିଙ୍ଗସ୍‌ଓ୍ୱେ, ଆଦି । ଯେଉଁଦିନ ଷ୍ଟାମ୍‌ଫୋର୍ଡ ଷ୍ଟ୍ରିଟ୍‌ରେ ଆମର କ୍ଲାସ୍ ଥାଏ ଆମେ ବସ୍‌ରେ ଏଇ କିଙ୍ଗସ୍‌ଓ୍ୱେ ଓ ଅଲ୍‌ଡ଼ଓ୍ୱିଚ୍ ଦେଇ ଓ୍ୱାଟରଲୁ ବ୍ରିଜ୍ ପର୍ଯ୍ୟନ୍ତ ଆସୁ ଏବଂ ସେଠାରେ ଓହ୍ଲାଇ ପଦଯାତ୍ରା କରୁ ଆମ ଶିକ୍ଷା ଅନୁଷ୍ଠାନକୁ । ଅବଶ୍ୟ ଅଳ୍ପ ବାଟ । ଅଧ ମାଇଲଏ ଖଣ୍ଡେ ଚାଲିବାକୁ ହୁଏ । କ'ଣ କଟକ ପୁରୀ ହୋଇଛି ଯେ ରିକ୍‌ସା ଯାନରେ ଚାଲିଯିବ ! ସେଠାରେ ଚାଲେ ବସ୍, କୋଚ୍, ଟ୍ୟାକ୍‌ସି । ବସ୍ କୋଚ୍ ତ ବଡ଼ ବଡ଼ ରାସ୍ତା ଦେଇ ଯାଏ । ଏତେ ଅଳ୍ପ ବାଟକୁ ଟ୍ୟାକ୍‌ସି ଯିବ କାହିଁକି, ମିଳିବ ବା କୁଆଡ଼ୁ ? ତେଣୁ ପଦବ୍ରଜରେ ଯିବା ଛଡ଼ା ଉପାୟ ନାହିଁ । ଶିକ୍ଷା ଅନୁଷ୍ଠାନକୁ ଗଲାବେଳେ ବା ସେଠାରୁ ଆଇଲା ବେଳେ ମନ ଚଞ୍ଚଳ, ଗୋଡ଼ ଚଞ୍ଚଳ, ପେଟ ବିକଳ, ତେଣୁ ଚାରିଆଡ଼କୁ ଭଲ ଭାବରେ ଲକ୍ଷ୍ୟ କରିହୁଏନି । କେଉଁଠି କଣ ଚାଲିଛି ବା ହେଉଛି ତାହା ଦେଖିହୁଏନି । ଅବଶ୍ୟ ଯେଉଁଦିନ ଅଲଡ଼ଓ୍ୱିଚ୍‌ସ୍ଥ ଭାରତ-ଭବନ (India House)କୁ ଯାଉ ମଧ୍ୟାହ୍ନ ଭୋଜନ ପାଇଁ ବା ଅନ୍ୟ କାମରେ ସେତେବେଳେ ଚାରିଆଡ଼କୁ ଟିକିଏ ଚାହିଁହୁଏ । କିନ୍ତୁ ସେ ସମୟରେ ବି କାର୍ଯ୍ୟଚାପରେ କି ଭୋକଦାଉରେ ଭଲ କରି କିଛି ଦେଖି ହୁଏନି । ତେଣୁ ସେଦିନ ଯେତେବେଳେ କୌଣସି କର୍ମଜଞ୍ଜାଳ ନଥିଲା, ହାତରେ ବି ଟିକିଏ ବେଶୀ ସମୟ ଥିଲା, ଭାବିଲି ଲଣ୍ଡନ ସହରର ସେ ପାଖଟା ଟିକିଏ ଭଲକରି ଦେଖିନେବି ।

ପଦବ୍ରଜରେ ଆଗେଇ ଚାଲିଲି । ମନେ ମନେ ଠିକ୍ କଲି ପ୍ରଥମେ ଥେମସ୍ ନଦୀକୂଳର "ସାଉଥ୍ ବ୍ୟାଙ୍କ୍"କୁ ଯିବି । ତାହାହିଁ କଲି ।

ସେଠାରୁ ଲଣ୍ଡନର ଦୃଶ୍ୟ ଖୁବ୍ ମନୋହର । ଏହି ମହାନଗରୀର ବହୁ ବିଖ୍ୟାତ ଅନୁଷ୍ଠାନ ଓ କୋଠାବାଡ଼ି ଏଠାରୁ ଦେଖାଯାଏ । ସୂର୍ଯ୍ୟ ଅସ୍ତ ହୋଇଆସୁଥାନ୍ତି । ଥେମସ୍ ନଦୀରେ ଦ୍ରୁତ ଗତିରେ ଯା'ଆସ କରୁଥାନ୍ତି ବହୁ ଯନ୍ତ୍ରଚାଳିତ ନୌକା । ସମ୍ମୁଖରେ ପାର୍ଲାମେଣ୍ଟ ଭବନ ଓ ଓ ୱେଷ୍ଟମିନଷ୍ଟର ଆବେ । ବିଗ୍‌ବେନ୍‌ର ରୂପଟା ଖୁବ୍ ସ୍ପଷ୍ଟ ଦେଖାଯାଉଥାଏ । ବେଶ୍ ଚମତ୍କାର ପରିବେଶ । ମନ ହେଉଥାଏ ସେହିଠାରେ ବହୁ ସମୟ ରହି ଲଣ୍ଡନ ସହରର ସାନ୍ଧ୍ୟକାଳୀନ ଶୋଭା ଦେଖିବି । ପୁଣି ଭାବିଲି, ଗୋଟିଏ ଜାଗାରେ ଏତେ ସମୟ ରହିବା ଠିକ୍ ହେବନି । ଆଉ ତ କେତେ କୁଆଡ଼େ ଯିବାର ଅଛି । ଆଜି ଏ ଏତିକିରେ ଥାଉ । ସୁବିଧା ଦେଖି ଆଉ କେବେ ଏଠାକୁ ଆସିବି ।

ୱେଷ୍ଟମିନଷ୍ଟର ବ୍ରିଜ୍ ପାଖରୁ ବସ୍-ବାହନରେ ଷ୍ଟ୍ରାଣ୍ଡ ରୋଡ଼୍ ଗଲି । ସେଠାରେ ଏଣେ ତେଣେ ବୁଲି ଦେଖାଦେଖି ଆରମ୍ଭ କରିଦେଲି । କଣ ବା ଦେଖିବି ! ଖାଲି ତ ଦୋକାନ ବଜାର । ବହୁ ପ୍ରକାର ମନୋହରୀ ଜିନିସ, ପ୍ରସାଧନ ସାମଗ୍ରୀ, ପୋଷାକପତ୍ର ବିକ୍ରି ହେଉଥାଏ । ବହୁ ଲୋକ ଯା'ଆସ କରୁଥାନ୍ତି ଖୁବ୍ ହର୍ଷୋତ୍‌ଫୁଲ୍ଲ ଭାବରେ । ମୁଁ ଯେମିତି ସେମାନଙ୍କ ଭିତରେ ଟୋକାଏ ବିରାଟ ପ୍ରଶ୍ନବାଚୀ । ତାଙ୍କ ସାଙ୍ଗରେ ମିଶିପାରୁନଥାଏ । କିମିତି ବା ମିଶିବି ? ତାଙ୍କର ସାଙ୍ଗସାଥୀ ଗହଣରେ କେତେ ଖୁସି ଗପ, କେତେ ଥଟ୍ଟା ପରିହାସ, କେତେ କଣାକଣି, ଚାଲିଥାଏ, ମୁଁ କିନ୍ତୁ ଏକା । କଣାକଣି ନାହିଁ । ଖାଲି ସବୁର ଦର୍ଶନାଭିଳାଷୀ । ଆଖି ପୂରେଇ ସବୁ ଦେଖୁଥାଏ, ମଣିଷ ଗୁଡ଼ାଙ୍କୁ, ଜିନିଷପତ୍ରକୁ । କଣ ବା କିଣିବି, କେଉଁଠୁ ବା କିଣିବି ! ଲଣ୍ଡନରେ ଦୋକାନ ବଜାର ଏତେ ଯେ ତାକୁ ତ ଖାଲି ଦେଖିବା ସମ୍ଭବ ନୁହେଁ । କେବଳ ଅକ୍‌ସଫୋର୍ଡ଼ ଷ୍ଟ୍ରିଟ୍ ଓ ରିଜେଣ୍ଟ ଷ୍ଟ୍ରିଟ୍‌ରେ ଯେତେ ଦୋକାନ ଅଛି ତାକୁ ତ କଳନା କରିବା ଅସମ୍ଭବ । ଖୋଦ୍ ଇଂରେଜମାନେ ତ ଯାହା ଦୋକାନ ବଜାର ଖୋଲିଛନ୍ତି । ପୃଥିବୀର ବିଭିନ୍ନ ଦେଶର ଲୋକ ବି ଏଠି କମ୍ ବିପଣୀ ଖୋଲି ନାହାନ୍ତି ! ଏଠାରେ ସବୁ କିସମର ଲୋକ ଦେଖିବାକୁ ମିଳନ୍ତି । ବୁର୍ଖାପିନ୍ଧା ଆରବ ରମଣୀଙ୍କଠାରୁ ଆରମ୍ଭକରି ସ୍ଲିଭଲେସ୍ ସ୍କାର୍ଟ ପିନ୍ଧା ଇଉରୋପୀୟ ଯୁବତୀ ପର୍ଯ୍ୟନ୍ତ ସମସ୍ତଙ୍କୁ ଏଠି ଦେଖିବାକୁ ମିଳେ । ସମସ୍ତେ ଯେଝା କାମରେ ଲାଗିଥାନ୍ତି, କାହାକୁ ବାଛ

ବାସନ୍ଦ ନାହିଁ । ଯିବାଆସିବାରେ କିଛି ଅସୁବିଧା ନାହିଁ ।

ନାଲି ବସ୍ ମାଟିତଳ ରେଲ ଯୋଗେ ସବୁ ବଜାରରେ ଶସ୍ତାରେ ସୁବିଧାରେ ବୁଲିହୁଏ । କେବଳ ସକାଳ ୮ଟାରୁ ୧୦ଟା ଏବଂ ସନ୍ଧ୍ୟା ୫ଟାରୁ ୭ଟା ବେଳେ ଯାନବାହନରେ ବେଶୀ ଭିଡ଼, ନୋହିଲେ ଅନ୍ୟ ସମୟରେ ଯିବାଆସିବା ଆଦୌ ଏକ ସମସ୍ୟା ନୁହେ । ନାଇଟସ୍ ବ୍ରିଜ୍‌ରେ ଓ ସ୍ଲୋଆନ୍ ଷ୍ଟ୍ରିଟ୍‌ର ହାରଡ଼ସ୍‌ରେ କିଣାକିଣି କରିବା ବେଶ୍ ଆମୋଦଦାୟକ । ଦୋକାନ ଭିତରେ ପଶିଗଲା ପରେ ବିକ୍ରେତା ବିକ୍ରେତ୍ରୀମାନେ ତୁମ କିଣିବା କ୍ଷମତାର ଗୋଟେ ମୋଟାମୋଟି ଅଟକଳ କରିନିଅନ୍ତି ଏବଂ ସେହି ଅନୁସାରେ ତୁମକୁ ଜିନିଷ ଯୋଗାଇଦିଅନ୍ତି । ରିଂଜେଣ୍ଟ ଷ୍ଟ୍ରିଟ୍‌ର ସେଲଫ୍ରିଜ୍‌ରେ ଅତ୍ୟାଧୁନିକ ରୁଚିର ପୋଷାକପତ୍ର ମିଳେ । ଆଉ ମଧ୍ୟ ଲିବର୍ଟି, ଡିକିନ୍‌ସନ ଓ ଜୋନସନ୍ ହାରଲେ, ମାର୍କସ ଓ ସ୍ପେନସର୍ ଆଦି ବହୁତ ବିଖ୍ୟାତ ଦୋକାନ ଅଛି ।

ଖାଲି ଷ୍ଟ୍ରାଣ୍ଡ୍ ରୋଡ଼ରେ କିଛି କମ୍ ଦୋକାନ ବଜାର ନାହିଁ । ଗୋଟିଏ ସନ୍ଧ୍ୟାରେ ପୂରା ଏ ଅଞ୍ଚଳଟା ଭଲ କରି ଦେଖିବାର ପ୍ରବଳ ଆକାଙ୍‌କ୍ଷା । ତେଣୁ ଅନେକ ଦୋକାନର ଖାଲି ପ୍ରଦର୍ଶନୀ ଗବାକ୍ଷ (Show window) ଦେଖି ସନ୍ତୁଷ୍ଟ ହେଉଥାଏ । ଦେଖିଲି ଗୋଟାଏ ଜାଗାରେ ପୁରୁଣା ପୋଷାକପତ୍ରସବୁ ସଜଡ଼ା ହୋଇ ରଖାଯାଇଛି ବିକ୍ରି ଉଦ୍ଦେଶ୍ୟରେ । କୋଟ୍, ପ୍ୟାଣ୍ଟ୍, ଓଭରକୋଟ୍ ଆଦି ସଫାସୁତରା ହୋଇ ଏପରି ସୁନ୍ଦର ଭାବରେ ରଖାଯାଇଥାଏ ଯେ ତାକୁ ସହଜରେ କେହି ସନ୍ଦେହ କରିବନି ପୁରୁଣା ବୋଲି । କେବଳ ସେସବୁ ଯେଉଁ ଆଲମାରିରେ ରଖାଯାଇଥାଏ ତା ଦେହରେ ମରାଯାଇଥିବା କ୍ଷୁଦ୍ର ବିଜ୍ଞାପନଟି ଦେଖିଲେ ବୁଝିହେବ ଯେ ସେସବୁ ହାଲୁକା ଯେଉଁ ନୁହନ୍ତି ତେଉଁ ।

ଆମ ଦେଶରେ ଅବଶ୍ୟ ଏ ପୁରୁଣା ପୋଷାକ କାରବାର ହୁଏ, ବିଶେଷରେ ଗରମ ପୋଷାକର । କେତେକ ବ୍ୟବସାୟୀ ସଂସ୍ଥା ଅଛନ୍ତି ଯେଉଁମାନେ କବରଖାନାରୁ, ଡାକ୍ତରଖାନାରୁ ଯୋଗାଡ଼ କରନ୍ତି ବା ବଡ଼ ଲୋକଙ୍କଠାରୁ କିଣନ୍ତି ଏଇ ପୁରୁଣା ପୋଷାକପତ୍ର । ତାକୁ ସବୁ ମରାମତି, ସଫାସୁତରା କରି ବିକ୍ରି କରନ୍ତି । ଗ୍ରାହକ ବି ମିଳନ୍ତି ଖୁବ୍ । ଗରିବ

ଲୋକେ ଶୀତ ଦାଉରୁ ନିଜକୁ ରକ୍ଷାକରିବାକୁ ନୂଆ ଗରମ ପୋଷାକ କିଣି ପାରନ୍ତିନି । ତେଣୁ କେତେକେ ଏହି ପୁରୁଣା ପୋଷାକ କିଣି ଦେହରେ ଦିଅନ୍ତି । ଏଇଟା କେବଳ ସହର-ସଭ୍ୟତାରେ ଚଳେ । ମଫସଲ ଲୋକେ ଶୀତରେ ଯେତେ କଷ୍ଟ ପାଇଲେ ବି ପରପିନ୍ଧା ପୁରୁଣା ପୋଷାକ ପିନ୍ଧିବାକୁ କୁନ୍ଥକୁନ୍ଥ । ଅବଶ୍ୟ ଭାରତ ଗରିବ ଦେଶ । ତେଣୁ ସେଠାରେ ଏହି ପୁରୁଣା-ପ୍ରୀତିର ଯଥାର୍ଥତା ଥାଇପାରେ । କିନ୍ତୁ ବିଲାତ ପରି ସଭ୍ୟସମୃଦ୍ଧ ଦେଶରେ ଏ ବ୍ୟବସ୍ଥା ? ବିଲାତ ଯେତେ ସମୃଦ୍ଧ ହେଲେ ବି ଏଠି ଗରିବ ଲୋକ ଅଛନ୍ତି । ଅନେକ ଚତୁର ବ୍ୟବସାୟୀ ଅଛନ୍ତି । ଯେଉଁମାନେ ଭଲ ପୁରୁଣା ପୋଷାକ ପାଇଲେ ତାକୁ ସଫାସୁତରା କରି ନୂଆ ପୋଷାକ ସ୍ୱଭାବରେ ବିକ୍ରି କରନ୍ତି । ଭାରତରେ ଏପରି କାରବାର ଚାଲେ ବୋଲି ମୁଁ ଶୁଣିଚି କିନ୍ତୁ ଅନ୍ୟ ଦେଶରେ ଯେ ଏଇଟା ଏକ ଚତୁର ବ୍ୟାବସାୟିକ ମନ୍ତ୍ର ସେଇଟା ମୁଁ ଅଙ୍ଗରେ ଲଭିଇଥିଲି ।

ଭାରତ ଛାଡ଼ିବା ପୂର୍ବରୁ ଅନେକ ବନ୍ଧୁ ସଦୁପଦେଶ ଦେଇଥାନ୍ତି ବିଲାତରେ ସୁଖସ୍ୱାଚ୍ଛନ୍ଦ୍ୟରେ ଚଳିବାପାଇଁ ଯେଉଁସବୁ ବସନଭୂଷଣ ଦରକାର ସେଥିରୁ ଯଦି କିଛି ଅଭାବ ଥିବ ତାକୁ ଏଡେନ୍‌ରୁ କିଣି ନେବାକୁ । କାରଣ ଏଡେନ୍‌କୁ ବହୁ ଶ୍ରେଣୀର ଜିନିଷ ଆସେ, ଯାହା ଉପରେ ଆମଦାନୀ କର ପଡେନି । ତେଣୁ ଶସ୍ତାରେ ମିଳେ । ଶସ୍ତା କଥାଟା ଶୁଣି ସ୍ୱସ୍ତିରେ ଟିକିଏ ନିଶ୍ୱାସ ମାରିଲି । ବିଲାତରେ ଚଳିବାକୁ ବହୁତ କିଛି ଜିନିଷପତ୍ର ଦରକାର । କିନ୍ତୁ ଏତେସବୁ କିଣିବାକୁ ଯଥେଷ୍ଟ ସମ୍ବଳର ଅଭାବ । ତେଣୁ ମନେ ମନେ ଠିକ୍ କଲି କିଣାକିଣି ତାଲିକାରୁ ଯାହାଟା ଊଣା ଅଛି ତାକୁ ଏଡେନ୍‌ରେ ଭରଣା କରିବି ।

ଏଡେନ୍‌ରେ କିଏ କୁଆଡେ ବୁଲିବୁଲି କଲେ ଖୁଲସ୍ ମନରେ । ମୁଁ କିନ୍ତୁ ଖାଲି ଓର ଉଣ୍ଡୁଥାଏ କେମିତି ସୁବିଧା ପାଇଲେ କେତେଟା ଜିନିଷ ଶସ୍ତାରେ କିଣିଦେବି । ଖୋଜି ଖୋଜି ବାହାର କଲି ଗୋଟେ ହାଲକା ରାତି ପୋଷାକ (ନାଇଟ୍‌ଡ୍ରେସ୍) ଓ ଖଣ୍ଡେ ସୂତାର ଉପର-କୋଟ୍ । ଏଇ ସୂତା ଉପର-କୋଟ୍‌ଟା ନରମ ଫୁଲ-ତଉଲିଆ କନାରେ ତିଆରି । ଗାଧୋଇ ସାରି ସେଇଟାକୁ ପିନ୍ଧି ଗାଧୁଆ ଘରୁ ଆସିବାକୁ ହୁଏ । ବଡ଼ ଆଶ୍ଚର୍ଯ୍ୟ କଥା ! ଗୋଟେ ତ ଗରମ କନାର ଉପର-କୋଟ ଅଛି ।

ସେଇଟାକୁ ପିନ୍ଧି ଗାଧୋଇବା ଘରୁ ଆସିଲେ ଖରାପ କଣ ହୁଅନ୍ତା ! ହୋଟେଲରେ ଥରେ ଗାଧୋଇବା କଥା । ସେଥିପାଇଁ କାହିଁ ଏତେ ଆୟୋଜନ ? ଆମ ଦେଶରେ କେତେ ଲୋକଙ୍କର ଖଣ୍ଡେ ଗାମୁଛାରେ ଗାଧୋଇବା, ପୂଜାଉଜା, ଦୋସଢ଼ା, ବାହାପିନ୍ଧା ଆଦି ସବୁ କାମ ଚଳେ । ଆଉ ମୁଁ ବିଲାତ ଯାଉଚି ବୋଲି ଏତେ ସଜବାଜ ! ସଜବାଜ ତ ଦରକାର । ବିଲାତ ଚଳଣି, ବିଲାତ ଆଦବକାଏଦା ସବୁ ମାନି ଚଳିବାକୁ ପଡ଼ିବ । ସେଥିରେ ତ୍ରୁଟି, ଅବହେଳା ଅକ୍ଷମଣୀୟ ।

ଯାହାହେଉ ବହୁ ଦରଦାମ୍ କାଟକସୁର କରି ହଲେ ବାହାପିନ୍ଧା ପୋଷାକ ଆଉ ଖଣ୍ଡିଏ ସୂତା ଉପର-କୋଟ୍ କିଣିଲି ପରେ ମନେ ମନେ ବଡ଼ କୃତକୃତ୍ୟ ହୋଇଉଠିଲି । ଯାହାହେଉ ବଡ଼ ସହଜରେ ଶସ୍ତାରେ କେତେଟା ଜିନିଷ କିଣା ହୋଇଗଲା । ଏଥିରେ ପ୍ରଫୁଲ୍ଲ ହୋଇ ଅନ୍ୟ ଗୋଟିଏ ଦୋକାନରୁ ଖଣ୍ଡିଏ ଟେରିଲିନ୍ ସାର୍ଟ ବି କିଣିଲି । ଆଉ ଚିନ୍ତା ନାହିଁ । ସାହେବ ହେବାର ସମସ୍ତ ଉପକରଣ ପ୍ରସ୍ତୁତ । ବିଲାତରେ ପହଞ୍ଚିବା ପର୍ଯ୍ୟନ୍ତ ଏ ଏଡ଼େନ୍ କାରବାରଟା ମନରେ ମୋର ବେଶ୍ ଚମତ୍କାର ପ୍ରଭାବ ପକାଇଲା । ବହୁବାର ବନ୍ଧୁମାନଙ୍କୁ ମୋ କୃତିତ୍ୱର କାହାଣୀଟା ବଖାଣିଗଲି । କିନ୍ତୁ ବିଲାତରେ ଯାଇ ଯେତେବେଳେ ପ୍ରଥମ ଗାଧୁଆ ପର୍ବରେ ମୋର ଏଡ଼େନ୍-କିଣା ଫୁଲ ତଉଲିଆ କନାର ଉପର-କୋଟ୍‌ଟା ଅଙ୍ଗଲଗି କଲେ ସେ ଫୁର୍‌ଦିନେ କେଉଁଠି ଚିରିଗଲା । ସାଙ୍ଗେ ସାଙ୍ଗେ ମନରେ ସନ୍ଦେହ ଜାଗିଉଠିଲା । ଏଇଟା ସେକେଣ୍ଡ୍ ହାଣ୍ଡ୍ କି ? ହଁ, ସେକେଣ୍ଡହାଣ୍ଡ୍ ବୋଧହୁଏ । ଠାଏ ଠାଏ ବଡ଼ ପତଳା, ଛିଣ୍ଡା ଛିଣ୍ଡା ଦେଖା ଯାଉଚି । ବଡ଼ ଦୁଃଖର କଥା ! ଜାହାଜରେ ବ୍ୟବହାର କରି ଜିନିଷଟାକୁ ପୁରୁଣା କରିବନି, ସବୁ ସାହେବୀ ଆସବାବ୍ ଖୋଦ୍ ସାହେବ ଦେଶରେ ବ୍ୟବହାର କରିବି, ଏଥିପାଇଁ ଯାକୁ ସାଇତି ରଖିଥିଲି । ଏ କଣ ଦେହ ଛୁଇଁ ଛୁଇଁ ଛିଣ୍ଡିବାକୁ ଆରମ୍ଭ କଲାଣି । ଏ ସାହେବୀ କାରବାର କଣ ମୋତେ ସମ୍ଭବନି କି !

ପୁଣି ମନକୁ ପ୍ରବୋଧ ଦେଲି । ନା, ସେମିତି କାହିଁ ହବ ! ଏତ ସୂକ୍ଷ୍ମ ପତଳା କାମ, ସରୁ ତଉଲିଆ କନାରେ ତିଆରି । ଯାକୁ ସାବଧାନରେ ବ୍ୟବହାର କରିବାର କଥା । ଜିନିଷଟା ତ ବେଶ୍ ମଜଭୁତ

ଜଣାପଡ଼ୁଚ । ଇମିତି ଭାବ ସୂତାର ଶକ୍ତ ପରୀକ୍ଷା କରିବାକୁ ଯେମିତି ଟିକିଏ ତାକୁ ଟାଣି ଦେଇଚ ଫଡ଼୍‌ଦିଶେ ସେଥିରୁ ଥୋଡ଼ାଏ ଫାଟିଗଲା । ମୁଁ ହାଁ ମୁହେଁ ପୂରେଇଦେଲି । ଆହା-ହା ଏତେ ସୁନ୍ଦର ଜିନିଷଟାକୁ କେତେ ହେଁ ଚିରିଦେଲି । ବ୍ୟବହାର ପାଇଁ ଉପଯୁକ୍ତ ହେଉ ନ ହେଉ ଏ ଦାମୀ ପୋଷାକଟା ଯେତେବେଳେ ଏତେ କଷ୍ଟରେ ଏତେ ସଉକରେ କିଣି ଆଣିଥିଲି ତାକୁ ଅନ୍ତତଃ ଦେଖି ଦେଖି ମନର ଅରମାନ ମେଣ୍ଟାଇ ପାରିଥାନ୍ତି । କିନ୍ତୁ ତାକୁ ହଠାତ୍ ଚିରିଦେଲି ! ଚିରିଦେଲି କଣ ସେତ ଚିରିଗଲା । ତେବେ ଏଇଟା କଣ ସତରେ ସେକେଣ୍ଡ ହାଣ୍ଡ୍ ।

ଏଥରମ୍ ମୁଁ ହା କାନ୍ଦେନି, କାନ୍ଦିଲେ ଦୁଆର ଦେଇ କାନ୍ଦେ । ମନକଥା ମନରେ ମାରିଲି । ସାଙ୍ଗେ ସାଙ୍ଗେ ଦଉଡ଼ିଯାଇ ନାଇଟ୍ ଡ୍ରେସ୍‌ଟାକୁ ପରୀକ୍ଷା ନିରୀକ୍ଷା କଲି । ନା ସେ ଉପର-କୋଟ୍‌ଟା ଯାହାହେଉ ପଛକେ ଏ ରାତି ପୋଷାକଟା ଠିକ୍ ଅଛି । ତଥାପି ମନକୁ ସନ୍ଦେହ ଛୁଉଁଥାଏ । ପ୍ରତିଦିନ ରାତିରେ ପିନ୍ଧିଲା ବେଳେ ତାକୁ ଭଲ କରି ଦେଖେ । ହଉ ହେଲା, ଗୋଟାଏ ଜିନିସ ମିନା ମାରି ପଡ଼ିଲା, ଏଇଟା ତ ଠିକ୍ ଅଛି । ଆଉ ଟେରିଲିନ୍ ସାର୍ଟଟା ? ହଁ, ସେ ବି ଠିକ୍ ଅଛି । ଏଗୁଡ଼ା କଦାପି ସେକେଣ୍ଡ୍ ହାଣ୍ଡ୍ ନୁହେ । ମୁଁ ଅର୍ଥନୀତିର ଛାତ୍ର । ସାଙ୍ଗେ ସାଙ୍ଗେ ଏଡ଼େଇନ୍ କାରବାରର ଲାଭକ୍ଷତି ହିସାବ ଫର୍ଦ୍ଦଟା ମନେ ମନେ ଆଙ୍କି ଦେଲି । ନା, ମୋଟାମୋଟି ବିଚାର କଲେ ଏ ଶସ୍ତା କିଣାକିଣିଟା ବେଶ୍ ସୁବିଧାଜନକ ହୋଇଚ । ହେଲେ ଆଉ ସେ ଫୁଲ-ତଉଲିଆ କନାର ଉପର-କୋଟ୍‌ଟାକୁ ବ୍ୟବହାର କରୁନଥାଏ । ତାକୁ କେବଳ ଟାଙ୍ଗି ଦେଇଥାଏ ଦେଖିବା ପାଇଁ, ଦେଖାଇବା ପାଇଁ । ମନେ ମନେ ଭାବିଲି, ଏଥିରୁ ବି ତ କିଛି ଆନନ୍ଦ ମିଳୁଚ । ଯାହାର କଣ ମୂଲ୍ୟ ନାହିଁ ? ନିଶ୍ଚୟ ଅଛି ।

କିନ୍ତୁ ରାତି ପୋଷାକ ଓ ଟେରିଲିନ୍ ସାର୍ଟକୁ ଦସ୍ତୁରମତ ବ୍ୟବହାର କରୁଥାଏ । ସପ୍ତାହେ ଖଣ୍ଡେ ଇମିତି ଚୁଳିଲା । ସେ ସବୁକୁ ସଫା କରିନଥାଏ । ଏକେତ ଧୁଆଧୋଇର ଦୁଃଖ । ଦ୍ୱିତୀୟରେ କିଛି ଅଜଣା ଆଶଙ୍କା ମନକୁ ଘାରୁଥାଏ । ଇମିତି ତ ବେଶ୍ ରହିଚନ୍ତି । ଯଦି ପାଣି ଲାଗିଲେ କିଛି ଆପଦ-ବିପଦ ଥାଏ ! ତେଣୁ ଏ ସଫାସଫି କର୍ମଟା ଯେତେଦୂର ସମ୍ଭବ ଗଡ଼େଇଲି । କିନ୍ତୁ ଶେଷରେ ଯେଉଁଦିନ ଏ ଦୁଇ

ଦ୍ରବ୍ୟକୁ ଧୋଇ ଟାଙ୍ଗିଦେଲି ମନରେ ଗୋଟାଏ ଛନକା ପଶିଗଲା । ଗ୍ରଞ୍ଚି ପୋଷାକ ହଳକ ଶୁଖିବା ସାଙ୍ଗେ ସାଙ୍ଗେ ଇମିତି ସଙ୍କୁଚିତ ହେବାକୁ ଆରମ୍ଭ କରିଦେଲା ଯେ ତାକୁ ବେଶୀ ଶୁଖେଇବାକୁ ସାହସ ହେଲାନି । ଦରଶୁଖିଲା ଅବସ୍ଥାରେ ଆଣି ସାଇତି ରଖିଲି । ମନେ ମନେ ନିଜକୁ ସାନ୍ତ୍ୱନା ଦେଲି ଯେ, ଧୂଆ ହେଲେ ସବୁ ଲୁଗା ତ ଅଳ୍ପ ବହୁତ ଜାକି ହୋଇଯାଏ । ଏତ ଏଡେନର ଗରମ ଜଳବାୟୁରୁ ଥଣ୍ଡା ବିଲାତ ଦେଶକୁ ଆସିଚି । ହୁଏତ ବିଲାତ ଜଳବାୟୁ ତା' ଦେହରେ ଗଲାନି । ଥୋଡାଏ ଦିନ ପିନ୍ଧାପିନ୍ଧି କଲେ ଏଠାକାର ଜଳବାୟୁରେ ସେଟା ଅଭ୍ୟସ୍ତ ହେଇଯିବ, ଯେମିତି ଆମେ ଅଭ୍ୟସ୍ତ ହେଉଚୁ ।

ଇମିତି କେତେ କଣ ଉତ୍ସାହପ୍ରଦ ଚିନ୍ତା କରି ରାତିରେ ଯେତେ-ବେଳେ ତାକୁ ପିନ୍ଧିବସିଲି ଅବସ୍ଥା ବଡ ଅସୁବିଧାଜନକ ହୋଇଉଠିଲା । ଏ କଣ ! ଏତ ଗୋଡଭିତରେ ଆଦୌ ପଶୁନି । ଅଣ୍ଟାଯାଏ ଯିବ କିମିତି ? ବହୁଚେଷ୍ଟାକରି କ୍ରମେ କ୍ରମେ ତାକୁ ଉପରକୁ ଟାଣିଲି । କୌଣସିମତେ ଲାଭିତଳ ପର୍ଯ୍ୟନ୍ତ ନେଲା ପରେ ଆଉ ତାକୁ ଊର୍ଦ୍ଧ୍ୱଗାମୀ କରିହେଲାନି । ମାରଓ୍ୱାଡୀ ବୟୂଷ୍କା ମହିଳା ଶାଢ଼ୀ ପିନ୍ଧିଲା ପରି ପେଟଟା ଆଗକୁ ଝୁଙ୍କି ରହିଲା । ବଡ ବେଆଡ଼ା ଦେଖାଗଲା । କିନ୍ତୁ ସେଥିକି ଚିନ୍ତା ନାହିଁ । କାରଣ ଶରୀରର ସେ ଅଂଶଟାତ ତାର ସାର୍ଟ ତଳେ ରହିବ । କିନ୍ତୁ ତଳପଟ ଆସି କଣ ପେଣ୍ଡାରେ ରହିଲାଣି ! ଆଶ୍ଚର୍ଯ୍ୟ କଥା ! ଥରେ ଧୂଆରେ ଏତ ଇମିତି ସଂକ୍ଷିପ୍ତ କଳେବର ହୋଇଗଲା । ଆଉ କେତେବାର ଧୂଆରେ ତ ବିଣ୍ଡା ପାଲଟି ଯାଇପାରେ । ଏଇମିତି କି ଉପାଦାନରେ ତିଆରି କି ! ରବର ତ ବି ଏତେ ସଙ୍କୁଚିତ ହୁଅନ୍ତାନି । ହଉ, କଣିଚି ତ । ଯେତେ ଦିନ ପାରେ ଯେ କୌଣସି ଉପାୟରେ ସ୍ୱା'କୁ ବ୍ୟବହାର କରିବି ବୋଲି ନିଜକୁ ବୋଧ ଦେଲି । ଟେରିଲିନ୍ ସାର୍ଟଟା କିନ୍ତୁ ଅନେକଟା ଏ ବ୍ୟଥାରୁ ରକ୍ଷାକଲା । ଧୋଇବା ପରେ ରଙ୍ଗଟା ଟିକିଏ ଫିକା ପଡ଼ିଗଲେ ବି ତାର ଦୈର୍ଘ୍ୟ ପ୍ରସ୍ଥ ଅନେକଟା ଅକ୍ଷୁଣ୍ଣ ରହିଲା । ମନେ ମନେ ଏଡେନ୍ ସହର ଉପରେ ଖୁବ୍ ବିରକ୍ତ ହେଲି । ସେଠାକାର ଅଧିବାସୀ, ବ୍ୟବସାୟୀଙ୍କୁ ଖୁବ୍ ଗାଳିଦେଲି । ସେତିକିରୁ ଯାହା ସାନ୍ତ୍ୱନା ପାଇଲି । କିନ୍ତୁ କେତେ ଦିନ ପରେ ଗ୍ରଞ୍ଚି ପୋଷାକ ହଳକ ଯେତେବେଳେ ପୂରା ବିଣ୍ଡା ପାଲଟି ଗଲା ଏବଂ ସାର୍ଟର

ରଙ୍ଗ ପୂରାପୂରି ଲୁଛିହୋଇ କେବଳ ଠାଏ ଠାଏ ତାର ପୂର୍ବ ଗୌରବର ସୂଚନା ଦେଲା, ସେତେବେଳେ ନିଜର ଦୁର୍ବୁଦ୍ଧି ଓ ଅପାରଗପଣକୁ ଶତ ଧିକ୍କାର କଲି । ଶସ୍ତାରୁ ହୀନସ୍ଥା !

ଷ୍ଟ୍ରାଣ୍ଡ୍ ରୋଡ଼ର ବହୁ ଦୋକାନ ଭିତରେ ପଶି ଦେଖାଦେଖି କଲି । ଅନେକ ଜିନିଷ ସଜଡ଼ା ହୋଇ ରଖାଯାଇଥାଏ । ବହୁ ଗ୍ରାହକ ଜୁଟିଯାଇଥାନ୍ତି । ବିକ୍ରେତା ବିକ୍ରେତ୍ରୀ ଗ୍ରାହକ ଅନୁସାରେ ସାମଗ୍ରୀ ଯୋଗାଇବାରେ ବ୍ୟସ୍ତ କିଛି କିଣିବାକୁ ମନ ହେଉଥାଏ । କିନ୍ତୁ ପାଖରେ ପାଣ୍ଠି ନାହିଁ । ଭାବିଲି ଏଥିରୁ ଗୋଟିଏ ଦି'ଟି ଭଲ ଜିନିଷ ଲୁଚେଇ ଉଠେଇନେଲେ କିମିତି ହୁଅନ୍ତା ! ଧରାପଡ଼ିବାର ଆଦୌ ଭୟ ନାହିଁ । ଯେଉଁ ଯୁବକ, ଯୁବତୀ, ବୟସ୍କ ଭଦ୍ରଲୋକ ବା ମହିଳା ଜିନିଷ ବିକିବାରେ ନିଯୁକ୍ତ ଅଛନ୍ତି ସେମାନେ ଏତେ ବ୍ୟସ୍ତ ଓ ଅନ୍ୟମନସ୍କ ଯେ କେହି କୌଣସି ଜିନିଷ ଲୁଚେଇ ନେଲେ ତାକୁ ଧରିବା ତାଙ୍କ ପକ୍ଷରେ କଷ୍ଟକର । ଏ ଦୋକାନ ଚୋରି (Shop-lifting) କାରବାରଟା ଲଣ୍ଡନରେ ବେଶ୍ ଚାଲେ । ଏ ଚୋରି, ଭଦ୍ର ଚୋରି ସାଧାରଣତଃ ଧନିକ ଶ୍ରେଣୀ ଓ ତାଙ୍କ ମହିଳାମାନେ କରନ୍ତି । ସୁନା ଓ ହୀରାର ଗହଣା, ଘଣ୍ଟା ଓ ମନୋହର ଜିନିଷ ପ୍ରଭୃତି ବିକାଯାଉଥିବା ଦୋକାନ ମାନଙ୍କରେ ପଶି ସେଥିରୁ ଗୋଟିଏ ଦିଓଟି କୋଟ୍‌ଷ୍ଟ, ମୋଜାଷ୍ଟ, ବ୍ଲାଉସ୍‌ଷ୍ଟ, ଟୋପିଷ୍ଟ କରି ସୁନ୍ଦେ ବାହାରିଯାନ୍ତି ।

ଏହି ଦୋକାନ ଚୋରି ସମ୍ବନ୍ଧରେ ଗୋଟିଏ ବିଚିତ୍ର କାହାଣୀ ଶୁଣିଥିଲି । ଥରେ ଜଣେ ଭଦ୍ରଲୋକ ଗୋଟିଏ ମନୋହର ଦୋକାନ ଭିତରେ ପଶିଯାଇ ଦେଖିଲେ ଖୁବ୍ ଭିଡ଼ ଜମିଛି । ମନେ ମନେ ଠିକ୍ କଲେ କେତେଟା ଜିନିଷ ମାରିନେବେ । ଗୋଟାଏ ବୁଦ୍ଧି ପାଞ୍ଚିଲେ । ଦୋକାନର ମାଲିକ ଜଣେ ଦୁର୍ବଳ ବୃଦ୍ଧ ଲୋକ । ସେ ଗୋଟିଏ କଣରେ ବସିଥାନ୍ତି । ବାହାରକୁ ତାଙ୍କ ମୁଣ୍ଡଟା କେବଳ ଦିଶୁଥାଏ । ଆଖି ଦୁଇଟି ତାଙ୍କର ବନ୍ଦ ଅଛି କି ଖୋଲା ଅଛି କହିହେବନି । ଆଗନ୍ତୁକ ଭଦ୍ର ଲୋକଙ୍କୁ ପରିସ୍ଥିତିଟା ଖୁବ୍ ସୁବିଧାଜନକ ମନେ ହେଲା । ସେ ମାଲିକଙ୍କୁ ଯାଇ କହିଲେ ଯେ ସେ ଗୋଟିଏ ସରକାରୀ ସଂସ୍ଥାରୁ ଆସିଛନ୍ତି ଦୋକାନ ସବୁ ତନଖି ଦେଖିବାକୁ, କେତେ ଓ କେଉଁ ପ୍ରକାରର ଭଦ୍ର ଚୋରି ସେଠାରେ

ହେଉଛି । ବିଭିନ୍ନ ଦୋକାନରୁ ଏହି ଵିବରଣୀ ନେଇ ତାର ଗୋଟାଏ ବ୍ୟାଖ୍ୟା କରିବାକୁ ହେବ ଏବଂ ଏହି ବ୍ୟାଧିର ନିରାକରଣ ପାଇଁ ଉପଚାର ଠିକ୍ କରିବାକୁ ପଡ଼ିବ । ବୃଦ୍ଧ ମାଲିକ ତାଙ୍କ ପ୍ରସ୍ତାବରେ ହଁ ଭରିଲେ । ଭଦ୍ରଲୋକ ଗୃହଆଡ଼େ ବୁଲି ତାଙ୍କ କାମ ଆରମ୍ଭ କଲେ ଏବଂ ସୁବିଧା ଦେଖି ଗୋଟିଏ ଭଲ ଝରକଲମ, ଗୋଟାଏ ସୁନ୍ଦର ଟାଇ ଓ ହଳେ ମୋଜା ପକେଟସ୍ଥ କଲେ । ଦୋକାନ ଛାଡ଼ିବା ଆଗରୁ ମାଲିକଙ୍କ ପାଖକୁ ଯାଇ ନିଜର ଗବେଷଣା ସମ୍ବନ୍ଧରେ ଏକ ବିସ୍ତୃତ ବକ୍ତୃତା ଦେଲେ । କିନ୍ତୁ ତାଙ୍କର ମନେ ହେଲା ସେ ମାଲିକ ଯେମିତି ତାଙ୍କୁ ସନ୍ଦେହ-ଚକ୍ଷୁରେ ଦେଖୁଚନ୍ତି । ତେଣୁ ନିଜର ସଚ୍ଚୋଟ ପଣିଆ ଦେଖେଇବାକୁ ପକେଟରୁ ମୋଜା ହଳକ କାଢ଼ି ନିଜର ଖାରଖ ଦେଖେଇ କହିଲେ—

: ଦେଖନ୍ତୁ ମୁଁ ଯୃାʼକୁ ଦୋକାନରୁ ଉଠେଇନେଲି କିନ୍ତୁ କେହି ଜାଣି ପାରିଲେନି । ଯୃାʼର ଦାମ୍ଟା ନିଅନ୍ତୁ ।

ବୃଦ୍ଧ ଦାମ୍ଟା ନେଇ ସାମାନ୍ୟ ହସି କହିଲେ, “ବାକି ସେ କଲମଟା ଓ ଟାଇଟା ମୋର ଆପଣଙ୍କୁ ଉପହାର ।”

ଭଦ୍ରଲୋକ ଏକବାରେ ଆଶ୍ଚର୍ଯ୍ୟ ହୋଇଗଲେ । ଟିକିଏ ବିବ୍ରତ ହୋଇ କହିଲେ, ତାକୁ ମୁଁ ତା ଜାଗାରେ ରଖିଦେଇଥାନ୍ତି । ତେବେ ଆପଣ ଯେତେବେଳେ ସେ କଥା ଉଠେଇଲେଣି ତାକୁ ବି ନିଅନ୍ତୁ ଯଥା-ସ୍ଥାନରେ ରଖେଇଦେବେ । ଏତିକି କହି ଭଦ୍ରଲୋକ ତରତରରେ ଦୋକାନ ଛାଡ଼ିଲେ । କିନ୍ତୁ ଦୁଆର ମୁହଁରେ ସାଧାରଣ ପୋଷାକରେ ଠିଆ ହୋଇଥିଲେ ଜଣେ ଗୁଇନ୍ଦା । ସେ ତାଙ୍କୁ ଅଟକାଇ ସାଙ୍ଗରେ ଧରିନେଲେ, ବୋଧହୁଏ ଥାନାକୁ ।

ଏକଥା ଭାବି ମୁଁ ମନେ ମନେ ଆତଙ୍କିତ ହୋଇଉଠିଲି । ଯାହା ଯେଉଁଠି ସମ୍ଭବ ତାକୁ ଆଖିରେ ଦେଖିବି କିନ୍ତୁ ସେଥିରେ ହାତ ଦେବିନି । କେଜାଣି କେଉଁଠି ଗୁଇନ୍ଦା ଯଦି ଲୁଚି ରହିଥିବେ······

ଷ୍ଟ୍ରାଣ୍ଡ୍ ରୋଡ଼ରୁ ଅଲ୍ଡ଼ଓ୍ୱିଚରେ ଥିବା ଆମ ଦୂତାବାସ ଭାରତ-ଭବନକୁ ଗଲି । ଏଇଟା ମୁଖ୍ୟ ଭାରତ-ଭବନ । ଏହାର ଶାଖା ଦପ୍ତର ଅନ୍ୟଠାରେ ଅଛି । ଅବଶ୍ୟ ବହୁଥର ବିଭିନ୍ନ କାର୍ଯ୍ୟରେ ଏଠାକୁ

ଆସିଛି । କିନ୍ତୁ ସମୟ ଅଭାବରୁ ତାର ପ୍ରକୃତ ରୂପ ଦେଖିବା ଏବଂ ତାର ମାହାତ୍ମ୍ୟ ଉପଲବ୍ଧି କରିବା ସମ୍ଭବ ହୋଇନଥିଲା । ତେଣୁ ଆଜି ସମୟ ଓ ସୁବିଧା ମିଳିଥିବାରୁ ତା'ର ସଦ୍‌ବ୍ୟବହାର କରିବାକୁ ସେହି ବିରାଟ ଘର ଭିତରେ ପଶିଲି । ଭାରତରେ ଥିଲାବେଳେ ଏଠାକାର କାର୍ଯ୍ୟକଳାପ ସମ୍ବନ୍ଧରେ ବହୁତ କିଛି ଶୁଣିଛି । କେତେ କ'ଣ ଖବର-କାଗଜରୁ ପଢ଼ିଛି । ଆଜି ସେ ସମ୍ବନ୍ଧରେ ପ୍ରତ୍ୟକ୍ଷ ଜ୍ଞାନ ଅର୍ଜନ କରିବାର ସୁଯୋଗ ମିଳିଥିବାରୁ ମନଟା ଉତ୍‌ଫୁଲ୍ଲ ହୋଇଉଠିଲା । ନା, ଆଜି ଭାରତ-ଭବନ ଭଲକରି ଦେଖାଯାଉ । ଅବଶ୍ୟ ଏ ଚଲାବୁଲାରେ ଭୋକମାହା ବଢ଼ିଯାଇଥିଲା । ପେଟ ପାଟିକରି ଉଠିଲା ପରି ଜଣାଗଲା; ତଥାପି ତାକୁ କୌଣସିମତେ ସବରିତ୍ କରି କର୍ମପଥରେ ଆଗେଇଲି ।

ଭାରତ-ଭବନଟି ବେଶ୍ ବ୍ୟାପକ । ବାହାରୁ ବିଲାତର ଅନ୍ୟ ଘର ପରି ଜଣାପଡ଼ିଲେ ବି ଭିତରକୁ ଗଲେ ଏହାର ମାହାତ୍ମ୍ୟ ଉପଲବ୍ଧି କରିହୁଏ । ମହାତ୍ମାଗାନ୍ଧି ଓ ଜଓ୍ୱାହାରଲାଲ ନେହୁରୁ ଆଦି ଆମ ଜାତୀୟ ନେତାଙ୍କ ଫଟୋ ଦେଖି ମହା ଜାତୀୟ ଭାବରେ ମନଟା ଓତପ୍ରୋତଃ ହୋଇଉଠିଲା । ସ୍ୱଦେଶରେ ଥିଲେ ଅନେକ ସମୟରେ ଏହି ଦେଶ-ବରେଣ୍ୟ ମହାମାନବଙ୍କ ପ୍ରତି ଯଥୋଚିତ ସ୍ନେହ, ଶ୍ରଦ୍ଧା, ଭକ୍ତି ଦେଖେଇ ହୁଏନି; କିନ୍ତୁ ବିଦେଶରେ ସେମାନଙ୍କର ଚିତ୍ର-ରୂପ ଦେଖି ସେମାନଙ୍କ ପ୍ରତି ନୀରବ ନିଶ୍ଚଳ ସଭକ୍ତି ପ୍ରଣାମ ଅର୍ପଣ କଲି । କିନ୍ତୁ ସେଥିପାଇଁ ବେଶୀ ସମୟ ନିୟୋଗ କରିପାରିଲିନି, ଭାରତ-ଭବନ ସମ୍ବନ୍ଧରେ ସମ୍ୟକ୍ ଜ୍ଞାନ ଆହରଣ କରିବାର ବ୍ୟାକୁଳତା ହେତୁ । ଚଟାଣଉଡ଼ ବେଶ୍ ସଫା ଚକ୍ ଚକ୍ ଦେଖାଯାଉଥାଏ । ମୁଁ ବୀର ଦର୍ପରେ ଅତ୍ୟଧିକ ଆଗ୍ରହ ଉତ୍‌କଣ୍ଠା ସହ ଆଗେଇଲି । ଭାରତ ଭବନର ବିଭିନ୍ନ ଦପ୍ତରରେ କାମ ଚାଲିଥାଏ । ତଳ ମହଲାର ଏକ ଲମ୍ବ ବଖରାରେ ସୂଚନା କେନ୍ଦ୍ର (Documentary Centre) ଖୋଲାଯାଇଛି । ଏହିଠାରେ ଭାରତ ସମ୍ବନ୍ଧରେ ତଥ୍ୟ ସମ୍ବଳିତ ଚଳଚିତ୍ର ସବୁ ପ୍ରଦର୍ଶିତ ହୁଏ । ଏଠାରେ ବି ଗୋଷ୍ଠୀକାଠିର ସଭାସମିତି କରାଯାଏ । ଏହିପରି କେତେଟା ବ୍ୟବସ୍ଥା ଛାଡ଼ିଦେଲେ ଭାରତ-ଭବନର ଅନ୍ୟାନ୍ୟ କାର୍ଯ୍ୟକଳାପ ମୋର ସେତେ ପସନ୍ଦ ହେଲାନି ।

ଭାରତ ପରି ଏକ ବିରାଟ ଦେଶର ଐଶ୍ବର୍ଯ୍ୟ, ସଂସ୍କୃତି ସମ୍ବନ୍ଧରେ ଯାହାସବୁ ଏହି ଦୂତାବାସରେ ଦେଖିବାର କଥା ସେମିତି ବିଶେଷ କିଛି ମୋ ଆଖିରେ ପଡ଼ିଲାନି । ବିଲାତ ଦେଶ ସହିତ ଆମର ଯାହା ସମ୍ପର୍କ ସେ ଦୃଷ୍ଟିରୁ ଏହି ଭବନଟି ଖୁବ୍ କର୍ମମୁଖର ହୋଇଥିବ ବୋଲି ଆଶା କରିଥିଲି । କିନ୍ତୁ ନା ତ ! ସବୁଟା ଯେପରି ଧୀର ମନ୍ଥର ଗତିରେ ଚାଲିଚି । କେଉଁଠି କେତେ ଜଣ କଣ କାମ କରୁଚନ୍ତି । କିଏ କିଏ ଏଣେ ତେଣେ ଯା'ଆସ କରୁଚନ୍ତି । ମଝିରେ ମଝିରେ ଅବଶ୍ୟ ଚା'ପାନ ପର୍ବ ଚାଲିଚି । ଜାଗାଟା ଅନେକାଂଶରେ ଭାରତ ପରି ଲାଗେ । ଲାଗିବା ସ୍ୱାଭାବିକ । ଭାରତ-ଭବନ ଭାରତ ପରି ଲାଗିବନି ତ ଆଉ କ'ଣ ବିଲାତ ପରି ଲାଗିବ !

ଭାରତ ଭବନରେ ଥିବା ପାଠାଗାରରେ ଯାଇ ପହଞ୍ଚି ଖବର-କାଗଜ ସବୁ ଦେଖିବାରେ ଲାଗିଲି । ଅନେକ ଭାରତୀୟ ଓ ବିଲାତି ସମ୍ବାଦ ପତ୍ର ଓ ଅନ୍ୟାନ୍ୟ ପତ୍ରପତ୍ରିକା ପଡ଼ିଛି । ଅନେକ ଭାରତୀୟ ବିଶେଷତଃ ଶିକ୍ଷାର୍ଥୀ ଯୁବକ ବସି ପଢ଼ାପଢ଼ି କରୁଥାନ୍ତି । ବିକଳରେ ମୁଁ ସେ ପତ୍ରପତ୍ରିକାଗୁଡ଼ିକ ଘାଣ୍ଟି ପକାଇଲି, ଓଡ଼ିଶା ଖବର କେଉଁଠି କଣ ଅଛି ଦେଖିବାକୁ । କିନ୍ତୁ କାହିଁ ? କେତେ ତ କ'ଣ ସମ୍ବାଦ ବିସମ୍ବାଦ ବଡ଼ ଅକ୍ଷର, ଛୋଟ ଅକ୍ଷରରେ ଛପା ହୋଇଚି କିନ୍ତୁ ଆମ ଓଡ଼ିଶା କି କିଛିକି ଖବର ? କିଛି ନାହିଁ । କିଏ ପଚାରୁଛି ଓଡ଼ିଶାକୁ ? ଆମର ତ ସେମିତି ପ୍ରସିଦ୍ଧ ପତ୍ରପତ୍ରିକା ନାହିଁ । ଯେ କେତୋଟି ଖବରକାଗଜ ଅଛି ତା'ର ସର୍ବଭାରତୀୟ ସ୍ତରରେ କି ଆନ୍ତର୍ଜାତିକ କ୍ଷେତ୍ରରେ କାଟ୍‌ତି ନାହିଁ । ସେଠାରେ ବି ଏପରି କିଛି ବିଶେଷ ଘଟଣା ସାଧାରଣତଃ ଘଟୁନି ଯାହାକି ପ୍ରସିଦ୍ଧ ବିଲାତି ଖବରକାଗଜରେ ଜାଗା ପାଇବ । ଓଡ଼ିଶା ବୋଲି ଗୋଟାଏ ଜାଗା ଅଛି, ଏ କଥା ଏମାନଙ୍କର ଭୂଗୋଳବେତ୍ତାମାନେ ବି ଜାଣିନଥିବେ ।

ଗୋଟିଏ କଥା ମନେପଡ଼ିଲା । ଦିଲ୍ଲୀରେ ହେଉଥିବା କୌଣସି ଏକ ସମ୍ମିଳନୀରେ ଯୋଗ ଦେଇଥାଏ । ଅନ୍ୟ ଏକ ପ୍ରଦେଶର ଜଣେ ଉଚ୍ଚପଦସ୍ଥ ଅଫିସର ମୋର ବକ୍ତୃତା, ବଚନିକା ଆଦି ଶୁଣି ମୁଗ୍‌ଧ ହୋଇ ପଚାରିଲେ "ଆପଣ କେଉଁଠୁ ଆସିଚନ୍ତି ?" "ଓଡ଼ିଶାରୁ" ବୋଲି ସଗର୍ବେ ସାଙ୍ଗେ ସାଙ୍ଗେ ଉତ୍ତର ଦେଲି । ଭଦ୍ରଲୋକ ହସି ହସି ମୋତେ

ଟିକିଏ ଖୋସାମତି କରିବା ଢଙ୍ଗରେ କହିଲେ "ଓ ! ଓଡ଼ିଶାରୁ ? ଓଡ଼ିଶା ଟା ବଙ୍ଗଳାରେ ନା ?" ମୁଁ ସ୍ତମ୍ଭୀଭୂତ ହୋଇଗଲି । ଓଡ଼ିଶା ଟା ପୁଣି ବଙ୍ଗଳାରେ ! ଏ ତ ଆମ ଦିଲ୍ଲୀ ସହର କଥା, ଆଉ ବିଲାତ ରାଜଧାନୀ ଲଣ୍ଡନରେ ଆମ ପ୍ରଦେଶର ଖବର କିଏ ରଖିବ ! ଭାବିଲି, ଆମ ଓଡ଼ିଶା-ବିଖ୍ୟାତ ସମାଜ, ପ୍ରଜାତନ୍ତ୍ର ଏଠିକି ଆସୁନ ! ସେମାନଙ୍କର ହକରମାନେ କେଉଁଠି ପାଟିରେ ତାଙ୍କ ନାଁଗୁଡ଼ାକ ଚିଲାନ୍ତି । ଧେତ୍, ସେସବୁ କାହିଁକି ଏଠିକି ଆସିବ ! ଭାରତର ଅନ୍ୟ ପ୍ରଦେଶରତ ତାକୁ ପାଇବା କଷ୍ଟକର ଆଉ ସେସବୁ ବିଲାତ ଭୂମି ମାଡ଼ିବେ କିମିତି !

ବିଲାତ ଦେଶକୁ ଆମ ଓଡ଼ିଆ ଖବରକାଗଜ ଯିବା ସମ୍ବନ୍ଧରେ ମୋର ଏଥି ଭିତରେ ସାମାନ୍ୟ ଅନୁଭୂତି ହୋଇଯାଇଥାଏ । ବିଲାତରେ ପହଞ୍ଚିବା ପରେ ନିଜ ଦେଶର ଖବର ଜାଣିବା ପାଇଁ ମନ ମୋର ଭାରି ବିକଳ ହୋଇଉଠିଲା । କିମିତି ଆମ ୨୦୩୫ ନମ୍ବର କାମଡ଼େନ୍ ରୋଡ଼ ବସାକୁ ଓଡ଼ିଆ ସମ୍ବାଦପତ୍ର ଖଣ୍ଡିଏ ଆସିବ ସେଥିପାଇଁ ବହୁତ ଚେଷ୍ଟା କଲି । କିନ୍ତୁ କିମିତି ଆସିବ ? ଖବରକାଗଜର ଦାମ୍ ଅବଶ୍ୟ ନଗଣ୍ୟ କିନ୍ତୁ ଡାକ ମାହାସୁଲ ତ ଖୁବ୍ ବେଶୀ ପଡ଼ିବ । ଘରକୁ ଚିଠି ଲେଖିଲି ପିଲାମାନଙ୍କୁ ନିର୍ଦ୍ଦେଶ ଦେଇ ଯେ ଚିଠିରେ ଏଣୁତେଣୁ ବିଷୟ ସବୁ ବେଶୀ ନ ଲେଖି ଓଡ଼ିଶାର ବିଶିଷ୍ଟ ଖବର ସବୁ ସମ୍ବାଦପତ୍ରରୁ ସଂଗ୍ରହ କରି ମୋ ପାଖକୁ ଚିଠିଦ୍ୱାରା ଜଣାଇବେ । ଅତି ଆମୋଦଦାୟକ ବା ଚମକପ୍ରଦ ଖବର ଥିଲେ ତାକୁ ଖବରକାଗଜରୁ କାଟି ସ୍ୱାକାରରେ ମୋ ପାଖକୁ ରପ୍ତାନି କରିବେ । ସେମାନେ ବି ସେମାନଙ୍କ ସାଧ୍ୟମତେ ଏ ପିତାଦେଶ ପାଳନ କଲେ । ବହୁ ଚେଷ୍ଟା କରି ସେମାନେ ଅନେକ ସମ୍ବାଦ ପଠାଇଲେ । ତେବେ ସେଥିରେ ବେଶୀ ରହୁଥାଉଥାଏ ମାଲଗୋଦାମ ଛକବଜାରର ଦରଦାମ, ସାହିବସ୍ତିମାନଙ୍କର ମାରପିଟ, କଳାତକରାଳ ବିଷୟ । ଏଥିରେ କି ମୋ ମନ ସନ୍ତୁଷ୍ଟ ହୁଏ ! ଖଣ୍ଡିଏ ଦୈନିକ ଓଡ଼ିଆ ସମ୍ବାଦପତ୍ର ମାଗଣା ପାଇବା ଆଶାରେ ବିଲାତ ସମ୍ବାଦସବୁ "ଲଣ୍ଡନ ଚିଠି" ଆକାରରେ "ସମାଜକୁ" ପଠାଇଲି । ଭାବିଥିଲି ଏତିକରେ ବୋଧହୁଏ ଆମକୁ ପ୍ରତିଦିନର "ସମାଜ" ଖଣ୍ଡେ ଖଣ୍ଡେ ମାଗଣାରେ ମିଳିଯିବ । କିନ୍ତୁ "ସମାଜର" କର୍ମକର୍ତ୍ତାମାନେ ଯେଉଁଦିନ

କାଗଜରେ ମୋ ଲଣ୍ଡନ ଚିଠି ବାହାରେ କେବଳ ସେହି ଦିନମାନଙ୍କର କାଗଜରୁ ଖଣ୍ଡିଏ ଖଣ୍ଡିଏ ଆମ ନିକଟକୁ ପଠାଇଲେ । ସେତିକରେ ଆମେ ଯେମିତି କୃତାର୍ଥ ହୋଇଗଲୁ । ଆଉ ବେଶୀ ଆଶା କଲୁନି । ଯେ କେତେଖଣ୍ଡ କାଗଜ ମିଳିଲା ତାକୁ ପଢ଼ି ଆମ ମନସାଧ ମେଣ୍ଟାଇଲୁ । କେତେଦିନ ପରେ ଆମ "ଲଣ୍ଡନ ଚିଠି" ବନ୍ଦ । "ସମାଜ" ବି ବନ୍ଦ !

ଭାରତ ଭବନର ସେ ବିରାଟ ପାଠାଗାରରେ ବହୁ ସମ୍ବାଦପତ୍ର ଲେଉଟାଇ ଲେଉଟାଇ ଶେଷରେ ଓଡ଼ିଶାର କୌଣସି ଖବର ନ ପାଇ ନିରାଶ ହେଲି । ଆଉ କ'ଣ ଏଣେ ତେଣେ ଟିକିଏ ଦେଖାଦେଖି କରି ମନ ଦୁଃଖରେ ସେଠାରୁ ବାହାରିଆସିଲି । ସନ୍ଧ୍ୟା ହୋଇଯାଇଥାଏ । ତେଣୁ ବସାକୁ ଫେରି ରାତ୍ରି ଭୋଜନର ବ୍ୟବସ୍ଥା କରିବାର କଥା । କିନ୍ତୁ ଏ ଫୁଲ୍‌ଫାଙ୍କିଆ ବୁଲାବୁଲିର ଶେଷ ପର୍ବଟା ଏପରି ଦୁଃଖଦାୟକ ହେଲା ଯେ ସାଙ୍ଗେ ସାଙ୍ଗେ ବସାମୁହାଁ ବସ୍ ଧରିବାକୁ ଇଚ୍ଛା ହେଲାନି । ଏଣେ କିନ୍ତୁ ଭୋକ ଭୀଷଣ । ତେବେ କେଉଁଠି କ'ଣ ଟିକିଏ ଖାଇ ଆଉ ଗୋଟାଏ ଦିଟା କଣ ଦେଖି ଆଜିର ଏ ବୁଲାଚଲା ଅଭିଯାନଟା ମଧୁରେଣ ସମାପନ କରାଯାଉ ।

ଏମିତି ଭାବି ପାଖରେ ଥିବା କୌଣସି ରେଷ୍ଟୁରାଁରେ ଦୁଇଟା ସାଣ୍ଡଓ୍ଵିଚ୍ ଖାଇ କପେ ଚା' ପିଇ ଜଠରଜ୍ଵାଳା ଶାନ୍ତ କଲି । ଭାବିଲି ପୁଣି ଯିବି କୁଆଡ଼େ ? ବୁଲି ବୁଲି ପାଦ ଦି'ଟା ଥକି ପଡ଼ିଥାନ୍ତି । ପୁଣି ସେ ଚପା ଆମ୍ବାସଡ଼ରର ଜୋତା ଦି'ଟା କିଛି କମ ଅଦ୍ଵନ୍ଦ୍ଵା ସାଧୁନଥିଲେ । ନା' ବେଶୀ ଦୂର ଯିବା ସମ୍ଭବ ନୁହେଁ । ଆଖ ପ ଖରେ ଗୋଟାଏ ଦି'ଟା କ'ଣ ଭଲ ଭଲ ଜାଗା ଦେଖି ଆମର ସେ ବେଣ୍ଟମେଣ୍ଟ ବସାକୁ ଫେରିବି । ବ୍ୟାଗରୁ ଲଣ୍ଡନ ମାନଚିତ୍ର ଓ ଦର୍ଶନୀୟ ସ୍ଥାନମାନଙ୍କର ନକ୍ସା କାଢ଼ି ତନ୍ନ ତନ୍ନ କରି ଦେଖିଲି । ଅଳ୍ପଦୂରରେ "ଆମ୍ବାସଡ଼ର" ରଙ୍ଗମଞ୍ଚ । ଜୋତା ଦିଟାଙ୍କ ଦୌରାତ୍ମ୍ୟରୁ ଆମ୍ବାସଡ଼ର ନାଁଟା ମୋତେ ବଡ଼ ବିରକ୍ତି-କର ବୋଧହେଉଥାଏ । ତେବେ ଶୁଣିଥାଏ, ସେ ରଙ୍ଗମଞ୍ଚରେ "ମାଉସ୍‌ ଟ୍ରାପ୍" ନାଟକ ବହୁଦିନ ଧରି ଚାଲିଛି । ଥିଏଟର ତ ଦେଖିବା ସମ୍ଭବ ନୁହେଁ କାରଣ ଆଗରୁ ଟିକେଟ୍ ଆୟୋଜନ କରାଯାଇନି । ତେବେ ସେ ବିଖ୍ୟାତ ରଙ୍ଗମଞ୍ଚର ବାହ୍ୟରୂପଟା ଅନ୍ତତଃ ଦେଖାଯାଉ ।

କାଳକ ଥିଏଟରଟା ମୋର ବଡ଼ ପ୍ରିୟ । ବଲାତ ଆସିବା ପରେ ଦୁଇଥର ଖଣ୍ଡେ ଥିଏଟର ଦେଖିବାକୁ ଯାଇଥିଲି । ଯେତେବେଳେ ସମୟ ମିଳେ ଥିଏଟର ଦେଖିବାକୁ ଇଚ୍ଛା ହୁଏ; କିନ୍ତୁ ଟିକେଟ୍ ମିଳେନି । ଶନି ରବିର ଛଅ ମାସ ଆଗରୁ ଚେଷ୍ଟା ନ କଲେ ଥିଏଟର ଟିକେଟ୍ ପାଇବା ଅସମ୍ଭବ । ପାଠପଢ଼ା, ବୁଲାବୁଲି ଭିତରେ ଥିଏଟର ଟିକେଟ୍ ଖୋଜି ସଂଗ୍ରହ କରିବା କଷ୍ଟକର ହୋଇପଡ଼େ । ପୁଣି ସବୁସେ ବଡ଼ା ପୈସା ! ଟିକେଟ୍ ଦାମ୍ ତ କିଛି କମ୍ ନୁହେ । ତେଣୁ ଯେତେବେଳେ ସମୟ ମିଳେ ସିନେମା ଯାଉଥିଲି । ସିନେମା ଟିକେଟ ସହଜରେ ମିଳିଯାଏ । ତାର ଦାମ ଅପେକ୍ଷାକୃତ କମ୍ । ପୁଣି ଗୋଟିଏ ଟିକେଟ୍‌ରେ ଦୁଇଟି ସିନେମା ଦେଖିହେବ । ଦୁଇଟା ଶୋ, ଗୋଟାକ ପରେ ଗୋଟାଏ ଲଗେଇ ଲଗେଇ ଦେଖାହୁଏ । ଆମ ବାରିପଦା ସଟ୍‌ଲ ଟ୍ରେନ ପରି, ଯେଉଁଠି ଇଚ୍ଛା ସେଠି, ସେଥିରେ ଢୁକି ହବ । ଯେତେବେଳେ ଇଚ୍ଛା ଚାଲି ଆସିପାରିବ । ଭିତରେ ଗଲେ ବି ଯେଉଁଠାରୁ ଦେଖିଥିବ ପୁଣି ସେଯାଏ ଦେଖିହବ । ଇଚ୍ଛା ହେଲେ ପୂରା ସିନେମାଟା ଆଉଥରେ ଦେଖି ପାରିବ । ଗହଳି ନାହିଁ । ଗୋଳମାଳ ନାହିଁ । ଆମ ଦେଶରେ ଠିକ୍ ଓଲଟା । ଏଠି ଥିଏଟର ଦେଖିବାକୁ ଲୋକ ଜୁଟନ୍ତିନି । କିନ୍ତୁ ସିନେମାରେ ମାର୍‌ପିଟ୍, ଟିକେଟ୍‌ରେ କଳାବଜାର ଚାଲେ ।

ସିନେମା ଯିବାକୁ ଇଚ୍ଛା ନଥାଏ । ଭାବିଲି ଆଜି ସୁବିଧା ଅଛି । ଗୋଟାଏ ଥିଏଟର ଯଦି ଦେଖି ହୁଅନ୍ତା ! କିନ୍ତୁ ଟିକେଟ୍ ତ କରାଯାଇନି । ଥିଏଟର ଦେଖିବ କିମିତି । ଆଗ ଥିଏଟର ଘର ଯେ ଯାଏ । ଯଦି ଦୈବାତ୍ କିଛି ସୁବିଧା ହୋଇପାରେ । ଆମ ଦେଶରେ ଟିକେଟ୍ ନଥିଲେ ଅନେକ ସମୟରେ ସଦାଶୟ ଥିଏଟର ବା ସିନେମା ମାଲିକମାନେ ଅଧିକା ଚଉକି ପକାଇଦେଇ ଆମ ମନୋବାଞ୍ଛା ପୂର୍ଣ୍ଣ କରନ୍ତି । ଏଠି ଯଦି ସେମିତି କାହା ହୃଦୟରେ କରୁଣା ହୁଏ···

ଆମ୍ବାସଡରରେ ପହଞ୍ଚିଲି ବେଳକୁ ଥିଏଟର ଆରମ୍ଭ ହୋଇ ଯାଇଥାଏ । ହଲର ଦରଜା ପ୍ରଭୃତି ବନ୍ଦ । ସବୁ ଶୂନ୍‌ଶାନ୍, କେବଳ ଦୋ ଘର କେତେଜଣ ବୁଲାବୁଲି କରୁଥାନ୍ତି । ବାକି ଦରଓ୍ୟାନ ଆଉ ଥିଏଟର

କର୍ମଚାରୀଗଣ । ଆରେ ଟିକେଟ୍ କାଉଣ୍ଟର ତ ଖୋଲା ଅଛି । ଯୁବତୀ ଜଣେ ତଳକୁ ଚାହିଁ କଣ ଭାବୁଚନ୍ତି କି ଦେଖୁଚନ୍ତି । ଟିକେଟ୍ ବିକ୍ରୀ ତେବେ ବନ୍ଦ ହୋଇନି । ଆଜି ବୋଧହୁଏ ଲୋକ ହେଉନାହାନ୍ତି । ଆମ ଦେଶରେ ତ ଅନେକ କ୍ଷେତ୍ରରେ ଲୋକ ହେଲେ ବସ୍ ଛାଡ଼େ । ଦେଖଣାହାରୀ ଜୁଟିଲେ ଥିଏଟର ଆରମ୍ଭ ହୁଏ । ଏଠି ବି ସେମିତି ଚାଲିଚି । ସହର୍ଷ ବଦନରେ ଟିକେଟ୍ କାଉଣ୍ଟର ପାଖକୁ ଆଗେଇଲି । ସେଠାରେ ବସିଥିବା ଯୁବତୀଙ୍କୁ ସମ୍ମାନେ ସମ୍ଭାଷଣ କରି କହିଲି—A ticket please, ଖଣ୍ଡିଏ ଟିକେଟ୍ ଦିଅନ୍ତୁ । ସାଙ୍ଗେ ସାଙ୍ଗେ କଷ୍ଟସଞ୍ଚିତ ୫ ପାଉଣ୍ଡିଆ ନୋଟ୍ଟିଏ ବଢ଼ାଇଦେଲି । ଯୁବତୀ ଜଣକ ସସମ୍ଭ୍ରମେ ମୋ ଆଡ଼କୁ ଚାହିଁଲେ । କଣ ହେଲା ? ଟିକେଟ୍ ମାଗୁଚି-ଦେବେ । ଆଉ ମୋତେ ଚାହିଁଚନ୍ତି କଣ ? ମୋ ପ୍ରେମରେ ପଡ଼ିଗଲେ କି ! ନିଜ ଚେହେରା, ବେଶଭୂଷାରେ ଟିକିଏ ଆଖି ପକେଇଦେଲି । ନା, ସେମିତି ଦୁର୍ଘଟଣାର ଭୟ ନାହିଁ । ତେବେ ଡେରି କରୁଚନ୍ତି କାହିଁକି ! ତେଣେ ଥିଏଟର ଆଗେଇଯିବ । ଇମିତି ଭାବି କଣ୍ଠନାଳୀଟାକୁ ସଫା କରି ରାଗ ମିଶା ସ୍ୱରରେ କହିଲି —

Can I have a ticket please ?
Ye ba aa means !

ଭଲ ! ଓ ! Yes, by all means.
Then give me a ticket please !

But of what date and what class ? Tickets only from 6th July available !

ଯୁବତୀ ଜଣକେ ତାଙ୍କ କଥା କହିବାର ନିଜସ୍ୱ ଭଙ୍ଗୀରେ ଏତକ ପ୍ରକାଶ କଲେ । ଏଁ ! କେବଳ ଜୁଲାଇ ୬ ତାରିଖରୁ ଟିକେଟ୍ ମିଳିବ । ସେଇଟା ବୋଧହୁଏ ଡିସେମ୍ବର ମାସ । ପରିସ୍ଥିତିଟା ବୁଝିଯିବା ପରେ ଦେହରେ ଗୋଟାଏ ମଧୁକମ୍ପନ ଚାଲି ଆସିଲା । କଣ୍ଠଧ୍ୱନିର ଉତ୍ଫୁଲ୍ଲତା କମିଗଲା । ତା'ପରେ ଚେଲେଇକରି ଭଦ୍ରମହିଳାଙ୍କ କରୁଣା ଭିକ୍ଷା କରିବସିଲି । "ନା, ଆଜି ସନ୍ଧ୍ୟା ଶୋ ପାଇଁ ଯଦି ଟିକେଟ୍ ଖଣ୍ଡିଏ ମିଳନ୍ତା..." ତା ସାଙ୍ଗେ ସାଙ୍ଗେ ମୁଁ କମିତି

ଥିଏଟରକୁ ଘର ଭଲପାଏ, ବାହାରର ସବୁ ସାଂସ୍କୃତିକ ଅନୁଷ୍ଠାନ ସମ୍ବନ୍ଧରେ କିପରି ସମ୍ୟକ୍ ଜ୍ଞାନ ଆହରଣ କରିବାକୁ ମୁଁ ଚାହେଁ ଇତ୍ୟାଦି ଇତ୍ୟାଦି କହି ଗ୍ରେଟକାଟର ବକ୍ତୃତାଟିଏ ଆରମ୍ଭ କରିଦେଲି । ଭଦ୍ରମହିଳା ସବୁ ଶୁଣିଲେ କି ନାହିଁ କେଜାଣି ମୁହଁ ଶୁଖେଇ ଅଙ୍ଗୁଳି ସଙ୍କେତରେ "House Full" ବୋର୍ଡ଼କୁ ଦେଖେଇଦେଲେ । ମୋ ମୁହଁ ଶୁଖିଗଲା । ଅବଶ୍ୟ ସେ "ମାଉସ୍‌ଟ୍ରାପ୍" ନାଟକ ପରେ ଦେଖିଲି । ନ ଦେଖିଥିଲେ ମନରେ ମହାଦୁଃଖ ରହିଯାଇଥା... । କାରଣ ଆଗାଥା କ୍ରିଷ୍ଟିଙ୍କ ଏହି ରୋମାଞ୍ଚକର ଅପରାଧମୂଳକ କାହାଣୀ ନାଟ୍ୟ ରୂପରେ ବାହାରରେ ୨୦ ବର୍ଷରୁ ଅଧିକ କାଳ ଚାଲି ଏକ ରେକର୍ଡ ସୃଷ୍ଟି କଲା ।

ତା'ପରେ ଏଣେତେଣେ ଟିକିଏ ବୁଲି କାହ୍ନୁ ବାଉଁକୁ ଚାହିଁ ବସାକୁ ଫେରିଲି । ବାଟଯାକ ଚାରିଆଡ଼କୁ ଲକ୍ଷ୍ୟ କରୁଥାଏ । କିଣ ଏ ସହରର ବୈଚିତ୍ର୍ୟ ! ସବୁଆଡ଼େ ତ ଏକ ପ୍ରକାର କୋଠା, ଏକ ପ୍ରକାର ଦୋକାନୀ, ଏକ ପ୍ରକାର ଯାନବାହନ, ଏକ ପ୍ରକାର ଲୋକ । ଯେତେ ଯୁଆଡ଼େ ଗଲେ ବି ଗୋଟାଏ ଜାଗାରେ ରହିଲା ପରି ଲାଗୁଛି । ଯେମିତି ମାୟାପୁରୀରେ ଆଲିସ୍ (Alice in Wonder land) କେତେ କୁଆଡ଼େ ବୁଲି, କେତେ କଣ ଦେଖିଲା ପରେ ଭାବିଲା ଯେ ସେ ଯେଉଁଠି ଥିଲା ସେଇଠି ରହିଛି ! ମୁଁ ବି ଆମ ସେଇ ବେଣ୍ଟମେଣ୍ଟ ଘରେ ରହିଛି ।

# କିନ୍ ପ୍ୟାଣ୍ଟ୍ ଓ ମିନି ସ୍କାର୍ଟ୍

ଲଣ୍ଡନର ରାତ୍ରିଶୋଭା ଦେଖିବାକୁ ଅନେକ ଦିନରୁ ମନଥାଏ । ଅବଶ୍ୟ ଏଥିମଧ୍ୟରେ ଖ୍ରୀଷ୍ଟମସ୍ ସମୟରେ ଅକ୍ସଫୋର୍ଡ ଷ୍ଟ୍ରିଟ୍ ପିକାଡିଲି, ଟେମ୍ସ୍ ଆଉ ଶ୍ୟାଙ୍ଗ୍ସ୍ ଆଉର ଆଲୋକସଜ୍ଜା ଦେଖିଥାଏ । କେଣ୍ଟ ଚମତ୍କାର ଆଲୋକ ରୋଶଣୀ କରନ୍ତି ବିଲାତବାସୀ ତାଙ୍କର ଏଇ ବଡ଼ଦିନ ପର୍ବରେ । ରାତିରେ ବି ଯିବା ଆସିବା ବେଳେ ରାସ୍ତାଘାଟର ରୂପ ଦେଖିଛି । ସବୁଆଡ଼ ଚକ୍ ଚକ୍ ଝକ୍ ଝକ୍ ଦେଖାଯାଉଥାଏ ! ଖାଲି ଆଲୋକସଜ୍ଜା ଦେଖି ମନରେ ଯେମିତି ସନ୍ତୋଷ ଆସୁନଥାଏ । ଏତେ ବଡ଼ ସହରଟାରେ ଲୋକେ ରାତି କଟାନ୍ତି କିମିତି । ବହୁ ରାତି ପର୍ଯ୍ୟନ୍ତ ତ ଚାରିଆଡ଼ କର୍ମମୁଖର ଥାଏ । ତେଣିକି ସକାଳ ପର୍ଯ୍ୟନ୍ତ କଣ ସବୁ ଶୂନ୍ସାନ୍ ହୋଇଯାଏ ? କେଜାଣି ? ରାତିରେ ନିଦ ଭାଙ୍ଗିଲେ ମୁଁ କାନ ଡେରି ଶୁଣେ । ତଥାପି ବାହାରେ ଯାନବାହନର ଶବ୍ଦ ଶୁଣାଯାଉଥାଏ । ତେବେ ଏ ସହର କଣ ଆଦୌ ନୀରବ, ନିଃଶବ୍ଦ ହୁଏନି ! ନା, ସହର ରାତିର ପ୍ରକୃତ ରୂପଟା ଦେଖିବାକୁ ହେବ । କିନ୍ତୁ କିମିତି ? ଏକୁଟିଆ ତ ରାତିଯାକ ବାହାରେ ରହିହେବନି । କେଉଁଠି ଗୁଣ୍ଡା ବଦମାସ୍ ଥିବେ ।

ଦିନେ ଶନିବାରଆ ବାହାରି ପଡ଼ିଲି ମୋର ସହପାଠୀ ରସିକ ବନ୍ଧୁ ଭୌମିକଙ୍କୁ ସାଙ୍ଗରେ ଧରି । ବନ୍ଧୁଙ୍କୁ ଆଗରୁ ମନକଥା କହିଥାଏ । ସେ ଆଶ୍ୱାସନା ଦେଇ କହିଲେ, କିଛି ଚିନ୍ତା ନାହିଁ, ଚାଲ ରାତିଟାଯାକ ବାହାରେ କଟାଇବା । କହିଦେଇଥିଲି ସତ କିନ୍ତୁ ବସାରୁ ବାହାରିଲା ବେଳକୁ ମନଟା ଟିକିଏ ଦୁରୁଦୁରୁ ହେଲା । ମୋ ଶୋଇବା ଖଟଖଣ୍ଡିକରୁ ରାତିକ ପାଇଁ ହେଲେ ବି ଅଲଗା ରହିବା କଥା ଭାବିଲା ବେଳକୁ ମନଟା କୋହକୋହ ହୋଇଉଠିଲା । କାରଣ ଯେତେ ଯୁଆଡ଼େ ଯାଏ, ଯେତେ ଯୁଆଡ଼େ ବୁଲାବୁଲି କରେ ଶେଷରେ ଅନ୍ତତଃ ବସାଘର ସାଙ୍ଗେ ଭଡ଼ାରେ

ମିଳିଥିବା ସେ ପୁରୁଣା ଖଟ ଖଣ୍ଡିକରେ ସେଇ ଭଡ଼ାସୂତ୍ରରେ ମିଳିଥିବା କମ୍ବଳ ଖଣ୍ଡେ ଦୁଇ ଖଣ୍ଡ ଘୋଡ଼େଇ ହୋଇ କେତେଘଣ୍ଟା ନ ଶୋଇଲେ ତ ଭଲ ଲାଗିବନି । କେତେ ଲୋକ ମୋ ଆଗରୁ ସେ ଖଟରେ ଶୋଇଥିବେ, କେତେ ଲୋକ ସେ କମ୍ବଳ ଘୋଡ଼େଇ ହୋଇଥିବେ; ହେଲେ ଏଇ କେତେ ମାସ ଭିତରେ ମୋର ସେମାନଙ୍କ ସହିତ ଅପୂର୍ବ ଆତ୍ମୀୟତା ଗଢ଼ିଉଠିଥାଏ । ସେ ଖଟ ଉପରେ ଶରୀରଟା ମେଲାଇ ପଡ଼ିଗଲେ କି ଆରାମ ! କେତେ ସୁଚିନ୍ତା ଦୁଶ୍ଚିନ୍ତା ମନକୁ ଚାଲିଆସେ । ଯେତେ ରାତି ହେଉ ପଛକେ ସେ ଖଟରେ ଆସି ନ ଶୋଇଲେ ଶାନ୍ତି ମିଳିବନି । ତେଣୁ ପୂର୍ବ ରାତିଟା ବାହାରେ କଟାଇବା ଅସମ୍ଭବ । ଥୋଡ଼ାଏ ବୁଲାବୁଲି କରି ଫେରିବାକୁ ପଡ଼ିବ ।

ଭୌମିକ କିନ୍ତୁ ଏ କଥାକୁ ପସନ୍ଦ କଲାନି । କହିଲା "ଧେତ୍ ! ଏଇ ଖଟକୁ ଫେରିବାକୁ ଏତେ ବିକଳ ! ବହୁତ ଭଲ ଜାଗା ମିଳିବ ରାତି କଟାଇବାକୁ ।"

ଭୌମିକର ପାରିପାର୍ଶ୍ୱିକ ପରିସ୍ଥିତି ଓ ଜୀବନ-ଦର୍ଶନ ମୋଠାରୁ ଭିନ୍ନ । ସେ ରହୁଥାଏ ଜଣେ ଗୃହ-କର୍ତ୍ତ୍ରୀ (Land Lady)ଙ୍କ ଘରେ, ଶଯ୍ୟା ଓ ପ୍ରାତଃଭୋଜନ (Bed and breakfast) ମୂଲ୍ୟରେ । ବିଲାତରେ ଏହି ବେଡ୍ ଆଣ୍ଡ ବ୍ରେକ୍‌ଫାଷ୍ଟ ପଦ୍ଧତିଟା ବେଶ୍ ଚଳେ । ରାତିରେ ଭଡ଼ା ନେଇଥିବା ଘରେ ଶୋଇବ ଏବଂ ସକାଳେ ଗୃହକର୍ତ୍ତ୍ରୀ ପ୍ରାତଃ-ଭୋଜନ ପାଇଁ ରୁଟି ମାଖନ ଆଦି ଯାହା ଦେବେ ତାକୁ ଖାଇ ଚାହା ପିଇ କାମକୁ ଯିବ । ପୁଣି ଫେରିବ ସନ୍ଧ୍ୟା ବା ରାତିକୁ । ଆମ ଦେଶର "ମେସ୍" ବ୍ୟବସ୍ଥା ସେଠାରେ ସେତେ ଚଳେନି । ଅନେକ ଆଗନ୍ତୁକ ବି କାହା କାହା ଘରେ ପଇସାଦିଆ ଅତିଥି (Paying guest) ଭାବରେ ରହନ୍ତି । ଏସବୁ ବ୍ୟବସ୍ଥା ଯେମିତି ବିଲାତର ଅର୍ଥନୀତି ସହିତ ଜଡ଼ିତ । ବହୁ ଲୋକ ବିଲାତକୁ ଆସନ୍ତି ପାଠ ପଢ଼ିବାକୁ, ବୁଲିବାକୁ, ବ୍ୟବସାୟ ବା ସରକାରୀ କାର୍ଯ୍ୟର ତଦ୍‌ବିର କରିବାକୁ । ସେମାନେ ବେଡ୍ ଆଣ୍ଡ୍ ବ୍ରେକ୍‌ଫାଷ୍ଟ୍ ବା ପେଇଂ ଗେଷ୍ଟ ସୂତ୍ରରେ ରହିବାରୁ ସେଠାକାର ଅଧିବାସୀମାନେ ବେଶ୍ କିଛି ରୋଜଗାର କରିପାରନ୍ତି । ସେମାନଙ୍କର ତ ଗୁଡ଼ାଏ ପାରିବାରିକ ଜଞ୍ଜାଳ ନଥାଏ । ତେଣୁ ଜଣେ

ଦି ଜଣଙ୍କୁ ସେମାନଙ୍କ ଘରେ ଚଳେଇନେବା ତାଙ୍କ ପକ୍ଷରେ କଷ୍ଟକର ହୁଏନି ।

ସୌଚିକ ତା' ଗୃହକର୍ତ୍ତ୍ରୀଙ୍କ ଘରେ ଗୋଟିଏ ବଖରା ଭଡା ନେଇ ଥାଏ । ଯେତେବେଳେ ଇଚ୍ଛା ସେଠାକୁ ଫେରିଆସିପାରେ ଏବଂ ଇଚ୍ଛାମତେ ସେଠି ରନ୍ଧନ, ବ୍ୟସନ ବ୍ୟବସ୍ଥା କରେ । କେବଳ ଗୋଟିଏ କଥା ମନା, ସୋରିଷ ତେଲରେ ରନ୍ଧାରନ୍ଧି ନିଷିଦ୍ଧ । କାରଣ ସୋରିଷ ତେଲ ତାତିଲେ ସେଥିରୁ ଯେ କଡ଼ା ଗ୍ୟାସ୍ ବାହାରେ ସେ ନାକରେ ବାଜିଲାକ୍ଷଣି ସାହେବ ସାହେବାଣୀମାନେ ଅଣନିଶ୍ୱାସୀ ହୋଇଯାନ୍ତି । ସେ ସୋରିଷ ବାଷ୍ପ ( Mustard gas) କେଉଁଠି ମାରାତ୍ମକ । ତେଣୁ ସାହେବ ସାହେବାଣୀମାନେ ତାଙ୍କ ରୋଷେଇବାସରେ ସୋରିଷ ତେଲ ବ୍ୟବହାର କରନ୍ତିନି । ଯିଏ ବ୍ୟବହାର କରନ୍ତି ଭାରତୀୟ ଓ ପାକିସ୍ଥାନୀମାନେ ।

ଏ ସମ୍ବନ୍ଧରେ ମୋର ଏକ ବିଚିତ୍ର ଅଭିଜ୍ଞତା ଘଟିଥିଲା । ରସେଲ ସ୍କୋୟାର୍ ପାଖରେ କେତେକ ଭାରତୀୟ ଓ ପାକିସ୍ଥାନୀ ହୋଟେଲ ଅଛି । ବନ୍ଧୁମାନଙ୍କ ଗହଣରେ ବହୁବାର ସେଠାକୁ ଯାଇ ମନତୃପ୍ତି କରି ଭାରତୀୟ ଭୋଜନ ଖାଇଛି । ଥରେ କୁଆଡେ ବୁଲି ବୁଲି ରସେଲ ସ୍କୋୟାର ପାଖରେ ପହଞ୍ଚିଲା ବେଳକୁ ମୋତେ ଭାରି ଭୋକ ହେଉଥାଏ । ବିଲାତରେ ଆଉ ଯାହା ଆଶ୍ଚର୍ଯ୍ୟଜନକ ଥାଉ ନଥାଉ ବିଲାତି ଭୋକର ପଟାନ୍ତର ନାହିଁ । ସଗର ସୁତମାନେ ମାଟି ଖାଇଯିବାରୁ ସାତ ସମୁଦ୍ରର ସୃଷ୍ଟି ହେଲା । ଗ୍ରୀନଲାଣ୍ଡରେ ଆଗେ କେଉଁଠି ଦୁର୍ଭିକ୍ଷ ପଡ଼ିବାରୁ ସେମାନେ ପ୍ରଥମେ ଘାସ ଖାଇଲେ ତା'ପରେ ମାଟି ଭକ୍ଷଣ କଲେ । ଏ କଥା ସହଜରେ ବିଶ୍ୱାସ କରିହୁଏନି । କିନ୍ତୁ ଲଣ୍ଡନର ଭୋକ ଥରେ ଅନୁଭବ କଲେ ଏ ସମ୍ବନ୍ଧରେ କୌଣସି ସନ୍ଦେହର ଅବକାଶ ରହିବନି । ମୁଁ ସେଦିନ ଏପରି ଭୋକରେ ଆଉଟ ପାଉଟ ହୋଇଯାଇଥିଲି ଯେ କୁଟାକାଠି ଖାଇଯାଇଥାନ୍ତି । ଖାଇବି, ଖାଇବି ବୋଲି ବିକଳ ହୋଇ ଉଠିଲି କିନ୍ତୁ ଖାଇବି କେଉଁଠି ?

ଖାଇବାକୁ କଣ ଜାଗା ଅଭାବ ! ଲଣ୍ଡନଯାକରେ ହୋଟେଲ ରେଷ୍ଟୁରାଁ ଭରିଯାଇଛି । କିନ୍ତୁ ସେଠାକୁ ଗଲେ ପେଟ ବିକଳରେ ସିନା

କିଣି ଏଣୁତେଣୁ ଖାଇବାଏ କିନ୍ତୁ ତୃପ୍ତି ଆସେନି । ସେଇ ମାଛ ଓ ଆଳୁଭଜା (Fish and chips), ରୋଟି ଓ ଡ଼ିମ୍ବ (Bread and eggs), ଆଳୁ ସିଝା ଓ ମାଂସ ତରକାରି (Masked potato and curry) ଇତ୍ୟାଦି ଖାଇ ଖାଇ ଚିଡ଼ା ଲାଗିଥାଏ କିନ୍ତୁ ଭାରତ ଭବନ ଓ ଭାରତୀୟ ହୋଟେଲମାନଙ୍କରେ ଯେଉଁ ଖାଦ୍ୟ ପରିବେଷଣ କରାଯାଏ ସେ ଏକେବାରେ ଅପୂର୍ବ ଲାଗେ । ତେଣୁ ଭାବିଲି ରସେଲ ସ୍କୋୟାରକୁ ଯେତେବେଳେ ଆସିଛି ପାଖରେ ଥିବା ଭାରତୀୟ ବା ପାକିସ୍ଥାନ ହୋଟେଲରେ ଖାଇବି । କିନ୍ତୁ ସେ ହୋଟେଲମାନଙ୍କୁ କେଉଁ ବାଟେ ଯିବାକୁ ହବ ଠିକ୍ ଭାବରେ ଜାଣି ନଥାଏ । ବିଲାତର ପୋଲିସ୍‌ମାନଙ୍କ କାର୍ଯ୍ୟଦକ୍ଷତା, ସାହାଯ୍ୟକାରିତା ସମ୍ବନ୍ଧରେ ବହୁତ ଶୁଣିଥାଏ, ବହୁତ ବି ଦେଖିଥାଏ । ଏହି ଧନବାନ୍ଧବ, ଦୁଃଖୀଶୋଦର ପୋଲିସ୍ କନେଷ୍ଟବଲଙ୍କୁ ଗେହ୍ଲାରେ "ବବି" (Bobby) ବୋଲି କହନ୍ତି । ଏହି ବବିଙ୍କୁ ସବୁଜାଗାର ଠିକଣା ଜଣା । କେହି ରାସ୍ତା ଭୁଲିଗଲେ ବା ତାଙ୍କ ଗନ୍ତବ୍ୟ ସ୍ଥାନକୁ ବାଟ ନପାଇଲେ ସେ ଏହି ବବିଙ୍କ ସାହାଯ୍ୟ ନଅନ୍ତି । କେବଳ ସେତିକି ନୁହେଁ । କୌଣସି ସ୍ଥାନରେ ଗୋଳମାଳ ଲାଗିଲେ ବା କୌଣସିଠାରେ ଦୁର୍ଘଟଣା ଘଟିଲେ ଏମାନେ କେଉଁଠୁ ଆସି ଜୁଟିଯାଆନ୍ତି ଓ ସାଙ୍ଗେ ସାଙ୍ଗେ ସବୁ ସଜାଡ଼ିଦିଅନ୍ତି । ଏମିତି ଜଣେ ସଦାଶୟ ବବି ହଠାତ୍ ମୋର ଦେଖା ହୋଇଗଲେ । ମୁଁ କୃତକୃତ୍ୟ ହୋଇ ତାଙ୍କୁ ଭାରତୀୟ ବା ପାକିସ୍ଥାନୀ ହୋଟେଲକୁ ଯିବାର ବାଟ ପଚାରିଲି । ସେ ମୋତେ ସବିସ୍ତୃତ ବିବରଣୀ ଦେଇ ଶେଷରେ ଯେଉଁ ଭଣିତା କଲେ ମୁଁ ସେଥିରେ ନ ହସି ରହିପାରିଲିନି । ସେ ନିର୍ବିକାର ଭାବରେ କହିଲେ, "ଏଇ ବାଟେ ଯାଆନ୍ତୁ । ଯେଉଁଠି ପୋଡ଼ିଷ ବାସ୍ନା ନାକରେ ବାଜିବ ସେଇଠି ଭାରତୀୟ ଓ ପାକିସ୍ଥାନୀ ହୋଟେଲ । କିଛି ଅସୁବିଧା ହବନି । ସେ ହୋଟେଲମାନଙ୍କ କାନ୍ଥରେ ବହୁ ଅସରପା ବି ଦେଖିବେ ।" କି ଆଶ୍ଚର୍ଯ୍ୟ ! ଭାରତୀୟ ଓ ପାକିସ୍ଥାନୀ ହୋଟେଲ ଚିହ୍ନିବାର କଣ ଏ ଏକମାତ୍ର ସଙ୍କେତ ! ପୋଡ଼ିଷ ବାସ୍ନା ଓ ଅସରପା ! ଭାବିଲି କଣ ବିଦ୍ରୂପ କରି ଇମିତି କହିଲେ ! କାଇଁ ନାଁ ତ ! ତାଙ୍କ ମୁହଁକୁ ଚାହିଁ ଦେଖିଲି ସେମିତି ଲକ୍ଷଣ କିଛି ନାହିଁ ।

ଯାହା ହେଉ କାଳବିଳମ୍ବ ନକରି ହୋଟେଲ ଅଡ଼େ ମୁହାଁଇଲି । ପୋଲିସର କଥା ଶୁଣି ମୋତେ ବାଟଯାକ ହସ ଲାଗୁଥାଏ । ଚାଲିଲା ବେଳେ ଚାରିଆଡ଼କୁ ଚାହୁଁଥାଏ କେଉଁଠି ଅସରପା ମହାତ୍ମା ଦେଖାଦେବେ ! ମଝିରେ ମଝିରେ ଦୀର୍ଘ ନିଃଶ୍ୱାସ ନେଉଥାଏ, କେଉଁଠି କଣ ସୋରିଷ ବାସ୍ନା ନାକରେ ବାଜିବ । ପ୍ରକୃତରେ ନିର୍ଦ୍ଦିଷ୍ଟ ସ୍ଥାନରେ ପହଞ୍ଚିଲାବେଳକୁ କଡ଼ା ପୋଡ଼ା ସୋରିଷ ତେଲ ବାସନା ବାରିପାରିଲି । ଆଉ ଅସରପା ? ସେ ମହାତ୍ମା କେଉଁଠି ଥିବେ ! ବେଶୀ ସମୟ ଅପେକ୍ଷା କରିବାକୁ ପଡ଼ିଲାନି । ଖାଇଲା ବେଳେ ଗଣ୍ଡାକେତେ ସେଥିରୁ କାନ୍ଥରେ ଧାଁ ଧପଡ଼ କରିବାର ଦେଖିଲି । ନିତାନ୍ତ ନିର୍ଭୁଲ ସଙ୍କେତ ! ଅସରପାଙ୍କୁ ଦେଖି ଅବଶ୍ୟ ଟିକିଏ ଘୃଣା ଲାଗିଲା । କିନ୍ତୁ ସୋରିଷତେଲ ବାସନାରେ ମୋ ଭୋକ ଦ୍ୱିଗୁଣ ବଢ଼ିଯାଇଥାଏ ।

ମୋର ବନ୍ଧୁ ଭୌମିକ ଜଣେ ବଙ୍ଗାଳୀ । କୌଣସି ମତେ ଚେଷ୍ଟା କରି ମୋର ବହୁ ଆଗରୁ ବିଲାତ ଚାଲିଆସିଥାଏ ଏବଂ ନିଜର ଆର୍ଥିକ ସମ୍ବଳ ବଢ଼ାଇବା ପାଇଁ କେଉଁଠି କେମିତି ସୁବିଧା ଦେଖି କାମ କରି କିଛି କିଛି ଉପାର୍ଜନ କରେ । ବିଲାତରେ ପାଠ ପଢ଼ିବା ସଙ୍ଗେ ସଙ୍ଗେ ଅଳ୍ପ କିଛି ରୋଜଗାର କରିବାର ପନ୍ଥା ଅବଲମ୍ବନ କରିବା କଷ୍ଟକର ନୁହେଁ । କାରଣ ସେ ଦେଶରେ ଯେତେ ଶିଳ୍ପସଂସ୍ଥା ଅଛି, ଯେତେ ବାଣିଜ୍ୟ କାରବାର ଚାଲେ ତା'ର ଚାହିଦା ମେଣ୍ଟାଇବାକୁ ଯଥେଷ୍ଟ ବିଲାତି ଲୋକ ମିଳନ୍ତିନି । ବିଶେଷତଃ ଛୋଟ ଛୋଟ କାମ କରିବା ପାଇଁ ଲୋକଙ୍କର ଖୁବ୍ ଅଭାବ ପଡ଼େ । ଦୋକାନମାନଙ୍କରେ ଜିନିଷପତ୍ର ବାନ୍ଧିବା, ବିକିବା, ବୁହାବୁହି କରିବା, ଟ୍ରକ୍, ବସ୍, କୋଚ୍ ଆଦି ଚଳାଇବା, ବିଭିନ୍ନ ଦପ୍ତରରେ ସହକାରୀ ରୂପେ କାମ କରିବା ଏସିଆ ଆଫ୍ରିକା ଲୋକଙ୍କର ପ୍ରାୟ ଏକଚାଟିଆ । କିଛି ନ ହେଲେ ପାଠ ପଢ଼ି ସାହେବ ହୋଇ ଫେରିବାକୁ ବିଲାତ ଯାଇଥିବା ଭାରତୀୟ, ପାକିସ୍ତାନୀ ଲୋକଙ୍କ ପାଇଁ ହୋଟେଲମାନଙ୍କରେ ବୋଷେଇଆ, ପରଷୁଣୀ, ବାସନମଜାଳୀ, ରେଷ୍ଟୁରାଁ ଓ କଫିହାଉସମାନଙ୍କରେ ବେହେରା ଚାକିରି ପାଇବା ଆଦୌ କଷ୍ଟକର ନୁହେଁ । ସାହେବମାନେ ତ ବଡ଼ ବଡ଼ କାମରେ ବ୍ୟସ୍ତ । ଏସବୁ ଛୋଟ କାମ ତାଙ୍କୁ ପସନ୍ଦ ହେବ କୁଆଡୁ !

ତେବେ ସାହେବମାନେ ଯେ ଶ୍ରେଷ୍ଠ କାମକରନ୍ତନି କି ଏସୀୟ ଲୋକମାନେ ବଡ଼ ବଡ଼ କାମ ନ କରନ୍ତି ଏପରି ନୁହେଁ । ବହୁ ଭାରତୀୟ ଡାକ୍ତର ବି ସେଠାରେ ଖୁବ୍ ମଜାରେ ଅଛନ୍ତି । ମୋଟାମୋଟି କଥା ହେଲା ବିଲାତଟା ସାହେବଙ୍କ ଦେଶ । ସେମାନେ ଏସିଆ ଓ ଆଫ୍ରିକାର ଲୋକଙ୍କ ଅପେକ୍ଷା ଶିକ୍ଷା ଓ କାରିଗରି ବିଦ୍ୟାରେ ଖୁବ ଧୁରନ୍ଧର । ତେଣୁ ଭଲ ଭଲ ଚାକିରି ତାଙ୍କ ଭାଗ ପଡ଼େ । କିନ୍ତୁ ଇଷ୍ଟର ଓ ବଡ଼ଦିନ ଆଦି ଛୁଟିମାନଙ୍କରେ ସାହେବ ସାହେବାଣୀମାନେ ଦପ୍ତର ଖାଲି କରି ବୁଲିଯା'ନ୍ତି ବୁଲାବୁଲି, ଫୁର୍ତ୍ତି କରିବାକୁ । ସେତିକିବେଳେ ଖୁବ ଚଡ଼ା ଦରମା ବା ମଜୁରିରେ କେତେକ ତଳିଆ ଯାଗାରେ କାମ କରିବାକୁ ସୁବିଧା ମିଳେ ଆମ ଏସିଆ ଆଫ୍ରିକାର ଲୋକଙ୍କୁ । ଏହି ସୁଯୋଗରୁ ଭୌମିକ ପୂରା ଫାଇଦା ଉଠାଉଥାଏ ।

ସକାଳେ ତ ଗୃହକର୍ତ୍ତ୍ରୀଙ୍କ ପରଷା ଖାଇ ବାହାରେ । ଖରାବେଳେ ଆମ ଶିକ୍ଷା ଅନୁଷ୍ଠାନରେ ନୋହିଲେ ଅନ୍ୟ କେଉଁଠି ଖାଏ । କେତେବେଳେ କିମିତି ରାତିରେ ବି ବାହାରେ ଖାଏ । ନଚେତ୍ ବସାରେ ଯେ ଷ୍ଟୋଭ୍ ରଖିଥାଏ ତା' ସାହାଯ୍ୟରେ କିଛି ପନିପରିବା ବା ମାଛ ମାଂସ ସିଦ୍ଧ କରି ପାଉଁରୁଟି ଦେଇ ଖାଏ । ବେଳେ ବେଳେ ପାଖରେ ବେଶୀ ପାଉଣ୍ଡ ଥିଲେ ଜଣେ ଜଣେ ବାନ୍ଧବୀଙ୍କୁ ସାଙ୍ଗରେ ଧରି ସଞ୍ଜରେ ବସାକୁ ଫେରେ । ପିଆ ଖିଆ ପରେ ଇଚ୍ଛା ହେଲେ ବାନ୍ଧବୀଙ୍କ ଗହଣରେ ସିନେମା ଥିଏଟର ଯାଏ କିମ୍ବା ଅନ୍ୟାନ୍ୟ ଆମୋଦ ପ୍ରମୋଦରେ ରାତି କଟାଏ । ଗୃହକର୍ତ୍ତ୍ରୀ ଓ ତାଙ୍କର ଦୁଇ ଝିଅ କିନ୍ତୁ ଭୌମିକର ଏ ପ୍ରକାର କାରବାରକୁ ଆଦୌ ପସନ୍ଦ କରନ୍ତନି । ହେଲେ ମୁହଁ ଫାଉଁ ଫାଉଁ କରନ୍ତି ସିନା ପାଟି ଫିଟେଇ କିଛି କହନ୍ତନି । କାରଣ ବିଲାତର ଲୋକେ ବ୍ୟକ୍ତିଗତ ସ୍ୱାଧୀନତା ନେଇ ଏତେ ସଜାଗ ଯେ ଯେତେ ଅପ୍ରୀତିକର ହେଲେ ବି ପର କଥାରେ ସହଜରେ ଖୋଲାଖୋଲି ମନ୍ତବ୍ୟ ଦିଅନ୍ତନି ।

ଭୌମିକ ଯେ ଭଡ଼ାଘର ମାଲିକେ ଗୃହକର୍ତ୍ତ୍ରୀଙ୍କର ଦୁଇ ଯୁବତୀ ଝିଅଙ୍କୁ ଦଖଲ କରିବାକୁ ଚେଷ୍ଟା କରୁନଥାଏ ଏପରି ନୁହେଁ । କିନ୍ତୁ ସେମାନେ ବହୁ ସମୟରେ ଯୁ'ଙ୍କୁ ହତାଶ କରି ସେମାନଙ୍କର ଯୁବକ ବନ୍ଧୁ

(Boy friend)ମାନଙ୍କ ସାଙ୍ଗରେ ବାହାରେ ବିହାର କରିବାକୁ ଚାଲିଯାନ୍ତି । ତେଣୁ ଭୌମିକ ଏକ ପ୍ରକାର ପାଲଟା ଆକ୍ରମଣ କଲା ପରି ବାହାରୁ ପ୍ରେମିକା ଯୋଗାଡ଼ କରେ । ଫଳରେ ଗୃହକର୍ତ୍ତ୍ରୀ ଓ ତାଙ୍କର କନ୍ୟା ଯୁଗଳ ଭୌମିକକୁ ଦଖଲ କରିବାକୁ ଦ୍ୱିଗୁଣ ଦମ୍ଭରେ ଲାଗି ପଡ଼ନ୍ତି । ଭୌମିକର ଦର ସେମାନଙ୍କ ନିକଟରେ ଟିକିଏ ଚଢ଼ିଯାଏ । ସେ ବେଶ୍ ବୁଝିଥାଏ ଯେ ବାହାରୁ ବେଳେ ବେଳେ ବାନ୍ଧବୀ ଆମଦାନି ନ କଲେ ବସାର ବାନ୍ଧବୀମାନଙ୍କ ପ୍ରେମର ଉଷ୍ମତା ଅତୁଟ ରହିପାରିବନି । ଭୌମିକର ଏହି ପରକୀୟା ପ୍ରୀତିର ଆଉ ଗୋଟିଏ କାରଣ ବି ଥିଲା । ସେ ଯେଉଁ ଅସଲ ଉଦ୍ଦେଶ୍ୟ ଯୋଗେ ସେ ଗୃହକର୍ତ୍ତ୍ରୀଙ୍କ କନ୍ୟାରନ୍ତ ଦୁହିଁଙ୍କୁ ଆଶ୍ରା କରି ବସେ ସେଥିପାଇଁ ସେମାନେ ଧରାଛୁଆଁ ଦିଅନ୍ତି ନି । ବେଶ୍ ପିଆପିଇ କରନ୍ତି, ଭଲ ଖୁସି ଗପ କରନ୍ତି, ନାଚଗୀତ ଆସରମାନଙ୍କୁ ଯାଇ ଖୁବ୍ ଫୁର୍ତ୍ତି କରନ୍ତି କିନ୍ତୁ ଶଯ୍ୟାସାଥୀ ହେବାକୁ ମଙ୍ଗନ୍ତିନି । ତେଣୁ ଭୌମିକ ବାଧ୍ୟ ହୋଇ ବେଳେ ବେଳେ ଅନ୍ୟ ଆଶ୍ରା ନେଉଛି ।

ଭାରତ ବା ଏସିଆର ରସିକ ଲୋକମାନେ ବିଲାତରେ ଯେଉଁ ପ୍ରେମପସରା ମେଲନ୍ତି ତାର ନାୟିକା ହେବାପାଇଁ ଖାଣ୍ଟି ବିଲାତି ଯୁବତୀ ପ୍ରାୟ ମିଳନ୍ତିନି । ଦ୍ୱିତୀୟ ମହାଯୁଦ୍ଧ ପରେ ଅର୍ଥନୈତିକ ଦୁର୍ଗତି ହେତୁ ଜର୍ମାନୀ, ଇଟାଲୀ, ପୋଲାଣ୍ଡ ପ୍ରଭୃତି ଦେଶର ବହୁ ଲୋକ ବିଲାତ ପଳାଇ ଆସିଥିଲେ । ସେମାନଙ୍କ ବଂଶର ମହିଳା ଓ ଯୁବତୀମାନେ ବିଭିନ୍ନ ଦପ୍ତରରେ ନାନା କାମ କରି ଜୀବିକା ଉପାର୍ଜନ କରୁଥାନ୍ତି । ଅନେକ ଯୁବତୀ କୌଣସି କୌଣସି କ୍ଲବ୍ ବା କଫି ହାଉସରେ ପରିଚାରିକା, ବୋଲକାରିଣୀ ହିସାବରେ ପେଟ ପୋଷୁଥାନ୍ତି । କେହି କେହି ବେଶ୍ୟାବୃତ୍ତି କରନ୍ତି । କିଏ ବା ମଡ଼େଲ ରୂପେ ବହୁ କିଛି ଉପାର୍ଜନର ଫନ୍ଦା ଧରନ୍ତି । ଏଇମାନେ ସହଜରେ ଓ ସ୍ୱଳ୍ପ ବ୍ୟୟରେ ଏସିଆ, ଆଫ୍ରିକାର ଲୋକଙ୍କୁ ପ୍ରେୟସୀ ରୂପେ ମିଳିଯାନ୍ତି ।

ସାଧାରଣତଃ ଖାଣ୍ଟି ବିଲାତି ଧନିକ ପରିବାରର ଝିଅମାନେ କଳା ବା ଶାମଳ ରଙ୍ଗର ଲୋକଙ୍କ ସହିତ ପ୍ରେମ କାରବାର କରିବା ତ ଦୂରର କଥା ସେମାନଙ୍କ ସାଙ୍ଗେ କଥାବାର୍ତ୍ତା କରିବାକୁ କୁଣ୍ଠାବୋଧ

କରି ପରି ଜଣାପଡ଼ନ୍ତି । ବିଲାତର ଗରିବ ଝିଅ ବି ସମସ୍ତଙ୍କର ଶାଳୀ ହୁଅନ୍ତିନ । ସେମାନେ ପ୍ରାୟ ତାଙ୍କ ନିର୍ଦ୍ଦିଷ୍ଟ ପରିଧି ମଧ୍ୟରେ ବୁଲାବୁଲି କରନ୍ତି । ତାଙ୍କୁ ଆମ ପ୍ରେମ-ପରିସର ମଧ୍ୟକୁ ଟାଣିବା ବଡ଼ କଷ୍ଟକର ବ୍ୟାପାର ହୋଇଉଠେ ।

ବିଲାତ ପ୍ରଭୃତି ପାଶ୍ଚାତ୍ୟ ଦେଶମାନଙ୍କରେ ସାଧାରଣ ପ୍ରେମ କାରବାର ଚାଲେ ବାଳକ ବନ୍ଧୁ (boy friend) ଓ ବାଳିକା ବାନ୍ଧବୀ (Girl friend) ମାଧ୍ୟମରେ । ଏହି ବାଲ୍ୟ ବନ୍ଧୁ ପ୍ରଥା ଏକ ଭିନ୍ନ ଧରଣର । ଅନ୍ତତଃ ଆମ ଦେଶର ପ୍ରଣୟ, ବିବାହ ମାଧ୍ୟମଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଆମ ଦେଶରେ ବିବାହ ପରେ ଯୁବକ ଯୁବତୀଙ୍କ ମଧ୍ୟରେ ପ୍ରେମ ପ୍ରଣୟର ସୂତ୍ରପାତ ହୁଏ । କିନ୍ତୁ ସେ ଦେଶରେ ଆଗ ପ୍ରଣୟରୁ ଆରମ୍ଭ ହୁଏ ଏବଂ ତାହା ବିଭିନ୍ନ ପର୍ଯ୍ୟାୟ ଦେଇ ଗତି କରି ଶେଷରେ ବିବାହ ବନ୍ଧନରେ ପରିଣତ ହୁଏ । ଝିଅପୁଅମାନଙ୍କର ଖେଳ ବୁଲିବାର ସମୟ ହେଲେ ସେମାନଙ୍କର ବାପମା ବା ଅଭିଭାବକମାନେ ସେମାନଙ୍କୁ ତାଙ୍କର ବାଳକ ବନ୍ଧୁ ଓ ବାଳିକା ବାନ୍ଧବୀମାନଙ୍କ ସହିତ ବିହାର କରିବାର ସୁବିଧା ଦିଅନ୍ତି । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଏମାନଙ୍କର ଆତ୍ମୀୟତା ବଢ଼େ । ମଝିରେ ମଝିରେ ଏହି ସାଙ୍ଗ ସାଥୀମାନଙ୍କର ପରିବର୍ତ୍ତନ ଘଟୁଥାଏ । ନାନା ଉତ୍‌ଥାନପତନ ଓ ଯୋଗାଯୋଗ ପରେ ପ୍ରାପ୍ତ ବୟସରେ ଜଣେ ଯୁବତୀ ସହିତ ଜଣେ ଯୁବକ ପ୍ରେମାଶକ୍ତ ହୋଇ ପଡ଼ନ୍ତି ଏବଂ ସେମାନେ ପରସ୍ପରକୁ ବିବାହ କରନ୍ତି ପିତାମାତାଙ୍କ ଅନୁମତି ନେଇ ବା ସେମାନଙ୍କ ବାଧା ସତ୍ତ୍ୱେ ।

ଇଉରୋପୀୟ ସମାଜର ଏହି ପୂର୍ବରାଗ ପ୍ରଥା ଯୁବକଯୁବତୀଙ୍କ ଜୀବନରେ ବଡ଼ ଗୁରୁତ୍ୱପୂର୍ଣ୍ଣ । ଏହା ପୁଣି ପରସ୍ପର ସହିତ ମିଳନ (dating), ପରସ୍ପରକୁ ଆଲିଙ୍ଗନ (necking) ଆଦି ସ୍ତର ଦେଇ ଗତି କରି ଶେଷରେ ନିର୍ବନ୍ଧ (Engagement) ପର୍ଯ୍ୟାୟରେ ପହଞ୍ଚେ । ତାର କେତେ ସମୟ ପରେ ହୁଏ ବିବାହ, ଅବଶ୍ୟ ଏହି ପୂର୍ବରାଗ ପ୍ରଥା ଅନେକଟା ଆମ ଦେଶରେ ଏବେ ଚଳିଲାଣି । କିନ୍ତୁ ଆମ ଦେଶରେ ଯେମିତି କିଶୋର ଅବସ୍ଥାରୁ ପୁଅଝିଅଙ୍କୁ ଅଲଗା ଅଲଗା ରଖିବାର ସମାଜନୀତି ପ୍ରଚଳିତ ଅଛି ତାଙ୍କ ଦେଶରେ ସେଇଟା ଚଳେନି । ସେ

ଦେଶର ସ୍ତ୍ରୀପୁରୁଷମାନେ ନିତାନ୍ତ କୋମଳ ବୟସରୁ ପରସ୍ପର ସହିତ ସ୍ନେହଶ୍ରଦ୍ଧାରେ ବାନ୍ଧିହୁଅନ୍ତି ଏବଂ କ୍ରମେ ତାହା ପ୍ରେମପ୍ରଣୟରେ ପରିଣତ ହୁଏ ।

ଏହି ପ୍ରେମପ୍ରଣୟର ସ୍ରୋତ ସବୁ ଜାଗାରେ ଯେ ସ୍ୱଚ୍ଛ ନିର୍ମଳ ଭାବରେ ଗତିକରେ ତାହା ନୁହେଁ । ଅନେକ ସ୍ଥଳରେ ତାହା ନାନା କଳହ-କନ୍ଦଳ, ଶଠତା-ଶତ୍ରୁତା ହେତୁ ଦୂଷିତ ଓ କଳଙ୍କିତ ହୋଇ-ପଡ଼େ । କେଉଁଠି କେଉଁଠି ଏହି ପ୍ରେମ କାରବାର ପୂର୍ଣ୍ଣତା ଲଭି କରି ବିବାହରେ ପରିଣତ ହେବା ପରେ ପରେ ଛିଡ଼ିବାକୁ ଆରମ୍ଭ କରେ ଏବଂ ଶେଷରେ ଗ୍ରାଡ଼ପତ୍ରରେ ତାର ପରିସମାପ୍ତି ଘଟେ । ବାସ୍ତବିକ୍ ବିଲାତ-ବାସୀଙ୍କ କର୍ମମୟ ଜୀବନ ଭିତରେ ଏହି ପ୍ରଣୟ, ବିବାହ ବହୁ ଝିଙ୍ଗଝଞ୍ଜା ସୃଷ୍ଟି କରେ ଏବଂ ବହୁ ସମୟ ବି ନିଏ ।

ଅଳ୍ପ ବୟସରେ ବାଳକ ବାଳିକାମାନଙ୍କର ସ୍ୱଭାବତଃ ପରସ୍ପର ପ୍ରତି ଅନେକଟା ଈର୍ଷା-ଦ୍ୱେଷ ପ୍ରକାଶ ପାଏ । ସେମାନେ ଯେ ସେ ବୟସରେ ପରସ୍ପର ପ୍ରତି ଆକୃଷ୍ଟ ହୁଅନ୍ତି ତାହା କେବଳ ଖେଳ କଉତୁକ ପାଇଁ । ସେଥିରେ କେତେବେଳେ ବନ୍ଧୁତା, କେତେବେଳେ ଶତ୍ରୁତା ଜାଗି ଉଠେ । କିନ୍ତୁ କୌଣସିଟା ଚିରସ୍ଥାୟୀ ହୋଇପାରେ ନି । ପୁଣି ଏହି ବାଳକବାଳିକାମାନଙ୍କ ଦଳ ବିଭିନ୍ନ କାରଣରୁ ବଢ଼ୁଥାଏ, ଛିଣ୍ଡୁଥାଏ । ତେବେ ଅନ୍ୟ ଗୋଟିଏ ଶକ୍ତି ଯାହାକୁ କେନ୍ଦ୍ର କରି ଏହି ବାଳକ-ବାଳିକା କିଶୋର-କିଶୋରୀଙ୍କ ଦଳ ସୃଷ୍ଟି ରହେ, ସେ ହେଉଛି କୋମଳ ବୟସରେ ବିଭିନ୍ନ ଜୀବନଦର୍ଶନ ଏବଂ ପରସ୍ପରର ଅଙ୍ଗପ୍ରତ୍ୟଙ୍ଗ ସମ୍ବନ୍ଧରେ ଗୁପ୍ତ ଜ୍ଞାନ ଆହରଣ କରିବାର ପ୍ରାକୃତିକ ପ୍ରବୃତ୍ତି । ପଢ଼ାପଢ଼ି ସମୟରେ ଏମାନେ ବିଦ୍ୟାଳୟରେ ଥାନ୍ତି । ସେଠାରେ ଏହି ମିଳାମିଶା, ବନ୍ଧୁତା-ଶତ୍ରୁତା ଚାଲେ । କିନ୍ତୁ ସେଠାର ନିୟମ-ଶୃଙ୍ଖଳା ମଧ୍ୟରେ ବିଶେଷ କିଛି ବ୍ୟଭିଚାର ବା ଅବିଦ୍ୟା ସମ୍ଭବପର ହୁଏ ନାହିଁ । କିନ୍ତୁ ଅନ୍ୟ ସମୟରେ, ଖେଳାଖେଳିର ଆଢ଼ୁଆଳରେ ପ୍ରେମାଅଁକର କାରବାରଟା ଜମି ଉଠେ ।

ଯେଉଁ ଧନିକମାନଙ୍କର ପିଲାମାନଙ୍କ ପାଇଁ ଶାସିକା (Gover-ness) ରଖିବାର କ୍ଷମତାଥାଏ ସେମାନେ ତାଙ୍କ ପିଲାମାନଙ୍କୁ ଏହି

ଶାସିକାମାନଙ୍କର ତତ୍ତ୍ୱାବଧାନରେ ଗ୍ରହଣ କରାଯାଉଛି ଏବଂ ସେହି ଶାସିକା-
ମାନେ ସେମାନଙ୍କର ପଢ଼ାପଢ଼ି, ଖେଳାବୁଲାର ତତ୍ତ୍ୱ ନେବା ସଙ୍ଗେ
ସଙ୍ଗେ ବିଭିନ୍ନ ଆଦବ୍‌କାଏଦା ଆଦି ସମ୍ବନ୍ଧରେ ଶିକ୍ଷା ଦେଇ ସେମାନଙ୍କୁ
ସୁନାଗରିକ ରୂପେ ଗଢ଼ିବାର ଦାୟିତ୍ୱ ନିଅନ୍ତି । ବିଲାତରେ ଶାସିକା ଓ
ଶିକ୍ଷୟିତ୍ରୀମାନେ ସହଜରେ ମାଆର ସ୍ଥାନ ଅଧିକାର କରିବସନ୍ତି ।
ଫଳରେ ବାଳକବାଳିକାମାନଙ୍କର ଜୀବନ ଗଠନରେ ଏମାନଙ୍କର
ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ ହୋଇ ପଡ଼େ । କିନ୍ତୁ ଅନେକ କ୍ଷେତ୍ରରେ
ଶାସିକାମାନଙ୍କର ଦୁର୍ବୁଦ୍ଧିରୁ ବହୁ ବାଳକବାଳିକା, କିଶୋରକିଶୋରୀ
ବିପଥଗାମୀ ହୁଅନ୍ତି । କୌଣସି କୌଣସି ଶାସିକା ନିଜ ଜୀବନର ହତାଶ
ପ୍ରେମ ବା ନଷ୍ଟ ପ୍ରେମର ଭରଣା କରିବାକୁ ଯାଇ କିଶୋରକିଶୋରୀଙ୍କ
ଅବୈଧ ପ୍ରେମକାରବାରକୁ ସେମାନଙ୍କ ପିତାମାତା ବା ଅଭିଭାବକ
ଅଭିଭାବିକାଙ୍କ ଆଖିର ଆଢୁଆଳରେ ଉତ୍ସାହିତ କରି ନାନା ବିଭ୍ରାଟ
ସୃଷ୍ଟି କରନ୍ତି । କେହି କେହି ବୟସ୍କା ବା ବୃଦ୍ଧା ଶାସିକା ନିଜ
ତତ୍ତ୍ୱାବଧାନରେ ଥିବା କୌଣସି ତରୁଣ ସହିତ ଖୋଦ୍ ନିଜେ ଅବୈଧ
ପ୍ରେମ କାରବାର ଆରମ୍ଭ କରିଦିଏ । ତେଣୁ ଅନେକ ବାପ ମା ନିଜ
ପିଲାମାନଙ୍କ ଉପରେ ପ୍ରକାରାନ୍ତରେ ତୀକ୍ଷ୍ଣ ଦୃଷ୍ଟି ରଖିଥାନ୍ତି ଏବଂ
ସେମାନେ କିପରି ପଢ଼ାପଢ଼ି କରୁଛନ୍ତି, କାହା ସାଙ୍ଗେ ବନ୍ଧୁତା ପାତୁଛନ୍ତି
ଏବଂ କିପରି ଆଦବ୍‌କାଏଦା ଶିଖୁଛନ୍ତି ସେଥିପ୍ରତି ଲକ୍ଷ୍ୟ ଦିଅନ୍ତି ।
ସେଥିରେ କିଛି ବେଆଡ଼ା ଦେଖିଲେ ଶାସିକାମାନଙ୍କ ଜରିଆରେ କିମ୍ବା
ନିଜେ ସେଇଟାକୁ ସଜାଡ଼ି ଦିଅନ୍ତି । ବିଶେଷ କରି ସେମାନଙ୍କ ପିଲାମାନଙ୍କର
ବନ୍ଧୁବାନ୍ଧବୀ ପରିସରଟାକୁ ନିଜ ରୁଚି ଅନୁସାରେ କୌଶଳ କ୍ରମେ
ନିୟନ୍ତ୍ରଣ କରିବାକୁ ଚେଷ୍ଟା କରନ୍ତି ।

ଯାହାଙ୍କର ଶାସିକା ରଖିବାର କ୍ଷମତା ନାହିଁ ସେମାନେ
ସେମାନଙ୍କର ପିଲାମାନଙ୍କୁ ଇଚ୍ଛାମତେ ଖେଳବୁଲ କରିବାର ସୁବିଧା ଦେଇ
ନିଜ ନିଜର ବିହାରବ୍ୟସନରେ ବ୍ୟସ୍ତ ରହନ୍ତି । ଆମ ଦେଶପରି
ସେମାନଙ୍କର କଠିନ ସାମାଜିକ ଶୃଙ୍ଖଳା ବା ପରିବାର ବନ୍ଧନ ନାହିଁ ।
ସ୍ୱାମୀ-ସ୍ତ୍ରୀ, ପୁଅ-ଝିଅ ସମସ୍ତଙ୍କର ଅଖଣ୍ଡ ସ୍ୱାଧୀନତା । ପ୍ରତ୍ୟେକେ
ନିଜ ନିଜ ବାଟରେ ଯାନ୍ତି । ସ୍ୱାମୀସ୍ତ୍ରୀଙ୍କର ଯଦିଓ ଗୃହକର୍ମରେ,

ସନ୍ତାନସନ୍ତତିଙ୍କର ରକ୍ଷଣାବେକ୍ଷଣରେ ପରସ୍ପର ସହିତ ସହଯୋଗ ଥାଏ ତଥାପି ଆମୋଦପ୍ରମୋଦ ଆଦିରେ ଉଭୟେ ପ୍ରାୟ ସ୍ୱାଧୀନ । ଦିନସାକ ଦୁହେଁ ଯେଝା କାମରେ ଯା'ନ୍ତି । ସାଧାରଣ ପରିବାରର କ୍ୱଚିତ୍ ସ୍ତ୍ରୀ କିଛି ନା କିଛି କାମ ନ ଧରି ଦିନସାକ ନିଜ ଘରେ ରହେ । ସେ ଯୁଆଡ଼େ ଯାଉ ବା ଥାଉ ସଞ୍ଜ ହେଲେ ସ୍ୱାମୀସ୍ତ୍ରୀ ଏକାଠି ହୁଅନ୍ତି ଓ ନିଜର ସନ୍ତାନସନ୍ତତିଙ୍କ ସଙ୍ଗେ ମିଶନ୍ତି । ତା'ପରେ ସାଂସାରିକ ଜୀବନର କାର୍ଯ୍ୟକ୍ରମ ଆରମ୍ଭ ହୁଏ । ଏଇଟା ତହିଁ ଆରଦିନ ସକାଳ ପର୍ଯ୍ୟନ୍ତ ଚାଲେ । ସକାଳେ ପୁଣି ପ୍ରାତଃ କୃତ୍ୟ ଓ ପ୍ରାତଃ ଭୋଜନ ଶେଷ କରି ସେମାନେ ଯେଝା ବାଟରେ ଯା'ନ୍ତି । ସମ୍ଭବ ହେଲେ ସ୍ୱାମୀସ୍ତ୍ରୀ ପୁଅଝିଅଙ୍କ ସହିତ ଘରେ ଏକାଠି ମଧ୍ୟାହ୍ନଭୋଜନ କରନ୍ତି ନଚେତ୍ ସେଇଟା ବି ବାହାରେ ସମ୍ପନ୍ନ କରାଯାଏ । ପୁଅ ଝିଅମାନଙ୍କର ବୟସ ହେଇଗଲେ ଏବଂ ସେମାନେ କିଛି ରୋଜଗାର କରିବାର ବାଟ ଧରିଲେ ଯେଝା କଥା ସେ ବୁଝନ୍ତି । ସେଥିରେ କାହାର ଉପର ଆପତ୍ତି ପ୍ରାୟ ନଥାଏ । ଯାହା ଥାଏ ସେ୍ କେବଳ ପରସ୍ପରକୁ ସାମାନ୍ୟ ସାହାଯ୍ୟ କରିବା ଭିତ୍ତିରେ ।

କେବେ ବାହାରେ ଆହାର-ବିହାର କରିବାକୁ ଗଲାବେଳେ ବାପମା'ମାନେ ଇଚ୍ଛା ହେଲେ ତାଙ୍କ ପିଲାମାନଙ୍କୁ ସାଙ୍ଗରେ ନିଅନ୍ତି ନୋହିଲେ ନାହିଁ । ଗରିବ ଶ୍ରେଣୀର ଲୋକମାନେ ସେମାନଙ୍କର ପିଲାପିଲିଙ୍କର ପଢ଼ାପଢ଼ି ପା'ଇଁ, ବିଶେଷତଃ ଉଚ୍ଚ ଶିକ୍ଷା ପାଇଁ ବ୍ୟାକୁଳ ଥିଲାପରି ଜଣାପଡ଼ନ୍ତିନି । ଏହି ପିଲାମାନେ ଗ୍ରେଟ ଅବସ୍ଥାରେ ସ୍କୁଲକୁ ଯା'ନ୍ତି । ହେଠାରେ ଯେ ଭଲ ଫଳ ଦେଖାଇ ସରକାରୀ ବୃତ୍ତି ବା ସାହାଯ୍ୟ ପାଇଲା ସେ ବେଶୀ ପଢ଼େ ନୋହିଲେ ନାହିଁ । ତେଣିକି ବାପ-ମା'ମାନେ ସେମାନଙ୍କର ପିଲାମାନଙ୍କୁ କୌଣସି କାରଖାନାରେ ଶିକ୍ଷାନବିସ୍ (Apprentice) ହିସାବରେ ଭର୍ତ୍ତି କରିଦିଅନ୍ତି ବା କୌଣସି କାମରେ ଲଗାଇଦିଅନ୍ତି । ବିଲାତରେ ତ ଖୁଣ୍ଟିବାକୁ ଖୁଣ୍ଟିହିଁ ଲୋକଙ୍କର ଅଭାବ ! ତେଣୁ କିଛି ରୋଜଗାର କରିବାର ଧନ୍ଦା ଧରିବା ଏହି ପିଲାମାନଙ୍କ ପକ୍ଷରେ କଷ୍ଟକର ହୁଏ ନି ।

ମୋ'ର ବିଲାତ ରହଣୀ ବେଳେ ଏକ କୌତୂହଳମୟ ଘଟଣା ଘଟିଥିଲା । ସେଠାର କ୍ଷୀର ବ୍ୟବସାୟୀମାନେ ନିଜ ମାଲବୁହା ମଟରଗାଡ଼ି

(van)ରେ ଆସି ବରାଦ ମୁତାବକ ଘରେ ଘରେ କ୍ଷୀର ଦେଇଯା'ନ୍ତି । ସପ୍ତାହ ଶେଷରେ ଆସି ଖାଲି ବୋତଲ ଓ ପଇସା ନିଅନ୍ତି । ସେଠି କ୍ଷୀରଟା ଅନ୍ୟାନ୍ୟ ଜିନିଷ ତୁଳନାରେ ଶସ୍ତାରେ ଓ ସହଜରେ ମିଳିଯାଏ । ସକାଳୁ ଉଠିଲା ବେଳକୁ ଦ୍ୱାର ମୁହଁରେ ସିଲବନ୍ଧା କ୍ଷୀର ବୋତଲ ଥୁଆ ହୋଇଥାଏ । ପଢ଼ିବାକୁ ବା ଅନ୍ୟ କାମରେ ଯିବା ଆଗରୁ ଗ୍ଲାସେ ପିଇ ଖାଇବାରେ କିଛି ଅସୁବିଧା ହୁଏ ନି । ଆମ ସାଙ୍ଗସାଥୀଙ୍କ ଭିତରୁ କେହି କେହି ସକାଳେ କ୍ଷୀର ପିଅନ୍ତି । ତାଙ୍କୁ ବି ବେଶ୍ ସୁବିଧା । ବାଃ ! ବଡ଼ ଚମତ୍କାର ତ ! ଏ ବିରାଟ ଲଣ୍ଡନ ସହରର ବିପୁଳ ବାସିନ୍ଦାମାନଙ୍କ ପାଇଁ ଏଡ଼େ ସୁବିଧାରେ କ୍ଷୀର ମିଳିଯାଉଛି ! ପୁଣି କାନ୍ଥରେ ବାଡ଼ରେ ବିଜ୍ଞାପନ ମରିଛି, Drinka a pinta a day ! ମାନେ ପ୍ରତିଦିନ ଗୋଟିଏ ପାଏଣ୍ଟ୍ କ୍ଷୀର ପିଅ । କିନ୍ତୁ ଆମ ଦେଶରେ ପିଲାଙ୍କ ପାଇଁ ସାମାନ୍ୟ ଖାଣ୍ଟି କ୍ଷୀର ଯୋଗାଡ଼ କରିବା ମହାକଷ୍ଟ ।

ଥରେ ଦେଖିଲି ଆମକୁ ଯେଉଁ ବୟସ୍କ ଲୋକଟି କ୍ଷୀର ଆଣି ଯୋଗାଉଥିଲା ସେ ନ ଆସି ୧୨।୧୪ ବର୍ଷର ଜଣେ ସୁସ୍ଥ ସୁନ୍ଦର ବାଳକ ସେ କାମ କରୁଛି । ସେ ପିନ୍ଧିଥାଏ ସବୁଜ ରଙ୍ଗର ଜିନ୍ ନଳୀ ପ୍ୟାଣ୍ଟ୍ । ଉପରେ ଦେଇଥାଏ ଖଣ୍ଡିଏ ଟିସାର୍ଟ ଓ ତା ଉପରେ ଉଲର ଏକ ମୋଟା ଫୁଲୁକା ସ୍ୱେଟର (Pull-over) ପଚାରି ବୁଝିଲି ଏ ହେଉଛି ସେ ଲୋକଟାର ପୁଅ । ବାପ ଦେହ ଖରାପ ଥିବାରୁ ଏ ତାର କାମ ଚଳେଇ ନେଉଛି । କଥାଟା ଶୁଣି ମୋତେ ଭାରି କଷ୍ଟ ଲାଗିଲା । ଆହା-ହା ! ଏଡ଼େ ଛୋଟ ପିଲାଟିଏ ଏ ଥଣ୍ଡା ଦେଶରେ ଏତେ ସକାଳୁ ଉଠି କାମ କରୁଛି ! ମୋତେ ଇମିତି ଛୋଟିକିଏ ଛୋଟିକିଏ କଥାରେ କଷ୍ଟ ଲାଗେ । କିନ୍ତୁ ଏଥିରେ ବୈଚିତ୍ର୍ୟ କଣ ଅଛି ? ଆମ ଦେଶର ଗରିବମାନଙ୍କ ଘରେ ପିଲାଏ ତ ୭।୮ ବର୍ଷ ଦିନରୁ ବାପ ମା'ଙ୍କୁ ନାନା କାମରେ ସାହାଯ୍ୟ କରନ୍ତି । ଦୁସ୍ଥ ହରିଜନ ପିଲାଏ ତ ନିଘୋଟ ଶୀତ ଦିନରେ ଖୋଲା ଦେହରେ କେତେ କାମଧନ୍ଦା କରନ୍ତି । ତେବେ ବିଲାତ ଯାଇଥିଲି ବୋଲି ମୋ ମନଟା ବୋଧହୁଏ ବିଳାସୀ ପାଲଟି ଯାଇଥିଲା ନା କଣ ଏ ଘଟଣା ମୋତେ ଭାରି ବାଧିଲା । ସେ ଦୁଧ ବିକାଳି ପୁଣି ଆସି ତା' କାମରେ ଯୋଗ ଦେବାରୁ ତାକୁ ପଚାରିଲି, କାଇଁକି ସେ ତା' ଛୋଟ ପୁଅଟାକୁ ପାଠ ନ ପଢ଼େଇ

କାମରେ ଲଗେଇବ ? ସେ କର୍କଶ କଣ୍ଠରେ ଅଶୁଦ୍ଧ ଇଂରାଜୀରେ ଯାହା ଉତ୍ତର ଦେଲା ସେଇଟାର ମର୍ମ ଶୁଦ୍ଧ ଭାଷାରେ ହେଲା, "Wty should I s nd that bastard to school at my expense ? He should have got national scholarship to continue his studies !"

"ମୁଁ କାହିଁ ସେ ଜାରଜକୁ ମୋ ଖର୍ଚ୍ଚରେ ସ୍କୁଲ୍‌କୁ ପଠେଇବି ? ସେ ଯଦି ଜାତୀୟ ବୃତ୍ତି ପାଇଥାନ୍ତା ତେବେ ଅଧିକ ପଢ଼ିଥାନ୍ତା !" ଅକାଟ୍ୟ ଯୁକ୍ତି !

ଆମେ ବିନଥାଇ ବୁଲି ବାହାରିଥାଉ । ଭୌମିକ ସାଙ୍ଗରେ କଥାବାର୍ତ୍ତା କରି ଠିକ୍ କରିଥାଏ ପ୍ରଥମେ କେତେଟା ପାର୍କ ମଇଦାନରେ ବୁଲିବୁ । ରାତି ହେଲେ ଅନ୍ଧାର ବଜେ କରିବୁ ।

ପ୍ରଥମେ ଗଲୁ ରିଜେଣ୍ଟ ପାର୍କକୁ । ସେଇଟା ଆମ କାମ୍‌ଡେନ୍ ରୋଡ଼ରୁ ବେଶୀ ଦୂର ନୁହେଁ । ସେଠାରେ ଗୋଟାଏ ଚିଡ଼ିଆଖାନା ଅଛି । ତାକୁ ବୁଲି ଦେଖିଲୁ । ସେଇଟା ସେତେ ବଡ଼ ନୁହେଁ । ସେଥିରେ ବିଶେଷ ବିଚିତ୍ର ଜୀବଜନ୍ତୁ କିଛି ନଥାନ୍ତି । ଆଗରୁ ଶୁଣିଥାଉ ଯେ ପାଶ୍ଚାତ୍ୟ ଜଗତର ସର୍ବବୃହତ୍ ପାଣ୍ଡା ଚି-ଚି (chi-chi) ସେଠାରେ ଅଛି । ପାଣ୍ଡା କି ପ୍ରକାର ଜନ୍ତୁ ? ତାକୁ ଦେଖିବାକୁ ଆମେ ବଡ଼ ବ୍ୟାକୁଳ । କିନ୍ତୁ ଏ କଣ ? ଏ ତ ଆମ ଦେଶ ବଣ ବିରାଡ଼ି ପରି ଦିଶୁଚି । ଅବଶ୍ୟ ଠେକୁଆ ପରି ଡିଆଁ ଡେଇଁ କରୁଚି । ଗଛ ପତ୍ର ଖାଉଚି । ହଁ, ତା' ଦେହସାକ ବଡ଼ ବଡ଼ ରୁମ । ଗୋରା, ପେଟ ଧଳା । ଏଥିରେ ବୈଚିତ୍ର୍ୟ କଣ ଅଛି ? ବିଲାତ ଶୀତପ୍ରଧାନ ଦେଶ । ଏଠି ତ ମେଣ୍ଢା, କୁକୁର ସମସ୍ତଙ୍କ ଦେହରେ ବଡ଼ ବଡ଼ ରୁମ ! କିନ୍ତୁ ମଣିଷଙ୍କ ଦେହରେ କାହିଁକି ବଡ଼ ବଡ଼ ରୁମ ନାହିଁ ? ବୋଧହୁଏ ହୋଇଥାନ୍ତା କିନ୍ତୁ ସେମାନେ ବହଳ ପୋଷାକ ପିନ୍ଧି ଲୋମଶ ହେବା ଦୁଃଖରୁ ରକ୍ଷା ପାଇଚନ୍ତି । ଆଉ ଧଳା ? ଏଠି ତ ଶୀତ ପ୍ରଭାବରୁ ପୁରୁଷ ସ୍ତ୍ରୀ, ଗୋରୁ ଗାଈ, ମେଣ୍ଢା କୁକୁର ଏପରିକି ଘୁଷୁରି ଗୁଡ଼ାକ ପ୍ରାୟ ଧଳା । ଆଉ ପାଣ୍ଡାର ଦେହଟା ଠାଏ ଠାଏ ଧଳା ହେବାରେ ବୈଚିତ୍ର୍ୟ କଣ ଅଛି !

ମୋ ମନଟା ଫିକା ପଡ଼ିଗଲା । ନା, ଏଠି ସେମିତି ବିଶେଷ କିଛି ଦେଖିବାର ନାହିଁ । ଖାଲି ମଣିଷ ମେଳା ମେଳା । ପୁରୁଷ-ସ୍ତ୍ରୀ, ଯୁବକ-ଯୁବତୀ, ବାଳକ-ବାଳିକା ବହୁତ ଜମିଛନ୍ତି । ବିଲାତର ଲୋକମାନେ ଖୁବ୍ ଭ୍ରମଣପ୍ରିୟ । ନିଜ ଦେଶରେ, ବାହାରେ ବୁଲିବୁଲି କରିବାକୁ ଏମାନେ ଖୁବ୍ ଭଲପାନ୍ତି । ଆଗେ ତ ସାହେବସାହେବାଣୀମାନେ ବିଦେଶରେ ଏତେ ବୁଲିବାକୁ ଯାଉଥିଲେ ଯେ ତତ୍କାଳୀନ ବିଲାତ ସମ୍ରାଟ ସାମ୍ରାଜ୍ଞୀ ଆଦେଶନାମା ଜାରି କରି ସେମାନଙ୍କୁ ସେଥିରୁ ନିବର୍ତ୍ତାଉଥିଲେ ।

ଦେଖିଲି ପାର୍କଟା ଖୁବ୍ ଲୋକାରଣ୍ୟ ହୋଇ ଉଠିଛି । ସମସ୍ତେ ବୁଲିବୁଲି, ହସକୌତୁକରେ ମାତିଉଠିଥାନ୍ତି । ବିଶେଷକରି ଯୁବକ-ଯୁବତୀ, କିଶୋର-କିଶୋରୀମାନେ । ପୁଅମାନେ ପିନ୍ଧିଥାନ୍ତି ସାଧାରଣତଃ ଜିନ ନଳୀ ପ୍ୟାଣ୍ଟ୍, ଅନେକ ରଙ୍ଗର, ଅନେକ ଭଳିର । ସେଗୁଡ଼ିକ ଏପରି ସିଲେଇ ହୋଇଥାଏ ଯେ ସିଲେଇ ଜାଗାମାନଙ୍କରେ ଗୋଟାଏ ଗୋଟାଏ ହାଡ଼ ବାହାରି ପଡ଼ିଥାଏ । କିନ୍ତୁ ଏହି ନଳୀ ପ୍ୟାଣ୍ଟଗୁଡ଼ିକ ଖୁବ୍ ମଜଭୁତ । ସେଗୁଡ଼ିକର ପକେଟ ସବୁ ସାମନାରେ ବା ପଛପଟେ, ଅଣ୍ଟାରେ, ଆଣ୍ଠୁ ପାଖେ, ବଳା ଗଣ୍ଠିରେ ଥାଏ । ଏହି ଜିନ୍ ସାଙ୍ଗକୁ ପିନ୍ଧିଥାନ୍ତି ଟି-ସାର୍ଟ । ତା' ଉପରେ କାହାର ପୂରା, କାହାର ଅଧା ସ୍ୱେଟର । ଏହି ବାଳକ ଓ ଯୁବକମାନେ ଭାରି କ୍ଷିପ୍ରମସ୍ତିଷ୍କ ଓ ଉଗ୍ର । ବଡ଼ ବେଆଡ଼ା ଓ ବେହୁସିଆର ଭାବରେ ଡିଆଁଡେଇଁ ବୁଲିବୁଲି କରୁଥାନ୍ତି । ଏମାନଙ୍କୁ ଟେଡ଼ି ବୟଜ୍ (Teddy boys) ବୋଲି କହନ୍ତି । ସାଧାରଣ ଇଂରେଜମାନଙ୍କର ସହନଶୀଳତା ଓ ଭଦ୍ର ବ୍ୟବହାର ଏମାନଙ୍କର ପ୍ରାପ୍ୟ ନାହିଁ । କଳା ଗୋରା ଭେଦଭାବ ଏମାନଙ୍କ ଭିତରେ ଭରି ରହିଲା ପରି ମନେହୁଏ ।

କିଶୋରୀ ଓ ଯୁବତୀମାନଙ୍କର ମୋଟାମୋଟି ଏକ ଭାବ । ତାଙ୍କ ବେଶଭୂଷା ବି ଅନେକଟା ବେଆଡ଼ା ଓ ଅସଜ୍ଜିତ । ସେମାନେ ପିନ୍ଧିଥାନ୍ତି ସାଧାରଣତଃ ଛୋଟ ଘାଗରା (mini skirt) । ଏଥିରେ ତାଙ୍କ ଜଙ୍ଘର ଅଧପର୍ଯ୍ୟନ୍ତ ଉଲଗ୍ନ ଥାଏ । ତା'ପରେ ଯେ ଉପର ଖୋଳ (tops) ଫେସନ ଚାଲିଥାଏ ସେଥିରେ ବ୍ଲାଉସ୍‌ଟା ତାଙ୍କ ଅଙ୍ଗଯୌବନକୁ ପୂରା ଆବୃତ କଲାପରି ମନେ ହୁଏନି । ଅବଶ୍ୟ ଯେ ବ୍ଲାଉସ୍ ଉପରେ ଯେଉଁମାନଙ୍କର ସ୍ୱେଟର ଥାଏ ସେମାନଙ୍କର ବକ୍ଷ, ଉଦର ଆଦି

ସେଥିରେ ଘୋଡ଼େଇ ହୋଇପଡ଼ିଥାଏ । କିନ୍ତୁ ଅନେକ ସ୍ମାର୍ଟ ବା ଫୁର୍ତ୍ତିବାଜ୍ ହେବା ପାଇଁ ସ୍ୱେଚ୍ଛାରେ ପିନ୍ଧିନଥାନ୍ତି । ଆମ ଦେଶରେ ଯୁବତୀ ଓ ରମଣୀମାନେ ଯେପରି ବିଭିନ୍ନ ବସନ ଭୂଷଣ ଦ୍ୱାରା ନିଜ ଅଙ୍ଗ ସୌଷ୍ଠବର ବିଭିନ୍ନ ଆକର୍ଷଣୀୟ ଅଂଶକୁ ଘୋଡ଼ାଇ ଲୁଚାଇ ରଖିବାର ଚେଷ୍ଟା କରନ୍ତି ସେପରି ବ୍ୟାକୁଳତା ଏଠି ବାହାରିବାଲାମାନଙ୍କଠାରେ ଦେଖିଲିନି । ବରଂ ମନେ ହେଲା ସେମାନେ ନିଜ ଅଙ୍ଗର ଆବରଣକୁ ଗୋଟାଏ ଅଦରକାରୀ, ଅବାଞ୍ଛିତ ବ୍ୟବସ୍ଥା ବୋଲି ମନେ କରୁଥାନ୍ତି ଏବଂ ସମ୍ଭବ ହେଲେ ସେସବୁକୁ କାଢ଼ି ଫୋପାଡ଼ ଦେବାରେ ସେମାନଙ୍କର କୁଣ୍ଠା ନଥାଏ ।

ହେଲେ ଏ ନଳୀ ପ୍ୟାଣ୍ଟ ଓ ମିନି ସ୍କାର୍ଟ କାହିଁକି ? ଆଗେ ସାହେବମାନେ ଯେପରି କଷାକଷି ପ୍ୟାଣ୍ଟ ପିନ୍ଧୁଥିଲେ ଏବେ ବାଳକ ଓ ଯୁବକମାନେ ସେଇ ଫେସନ ଧରିଛନ୍ତି । ସେମାନଙ୍କ ମୁଣ୍ଡର ବାଳ ବି ଖୁବ୍ ଲମ୍ବା ଲମ୍ବା । ବାଃ ! ଏତ ଠିକ୍ ପୂର୍ବ କାଳର ଢଙ୍ଗ । ହେଲେ ଆଗେ ତ ସାହେବମାନେ ଆମ ଦେଶର ଯୁବତୀଙ୍କ ପରି ତାଙ୍କ ଲମ୍ବା ବାଳରେ ବେଣୀ କରି ସେଥିରେ ରିବନ୍ ବାନ୍ଧୁଥିଲେ । ଏମାନେ କଣ ସେଇଆ କରିବେ ? କରିପାରନ୍ତି । ଅସମ୍ଭବ କଣ ! ଯୁଗ ବଦଳି ଯାଉଛି । ତା' ସାଙ୍ଗେ ସାଙ୍ଗେ ରୁଚି ବି ବଦଳି ଯାଉଛି । ସଭ୍ୟତାର ଚକ ଘୁରି ଆସୁଛି ।

ଯୁବତୀମାନଙ୍କର ବେଶଭୂଷା ମୋଟାମୋଟି ବଡ଼ ଫୁଲଫାଙ୍କିଆ । କିନ୍ତୁ କାହିଁକି ? କଣ ପୁରୁଷମାନଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ? ପୁଅମାନଙ୍କର ଏ ଚାପା ନଳୀ ପ୍ୟାଣ୍ଟର ବି ଉଦ୍ଦେଶ୍ୟ ସେହିପରି ଯୁବତୀମାନଙ୍କୁ ଆକର୍ଷଣ କରିବା ପାଇଁ ଉଦ୍ଦିଷ୍ଟ ହୋଇପାରେ । କାଳକ ତ ପୁରୁଷ ଓ ସ୍ତ୍ରୀମାନେ ପରସ୍ପରକୁ ଆକର୍ଷଣ ଓ ଲୋଭାୟିତ କରିବାକୁ ବେଶଭୂଷା ଓ ସାଜସଜ୍ଜା ହୁଅନ୍ତି । ଆଦିମ ଯୁଗରେ କିନ୍ତୁ ପୁରୁଷମାନେ ସ୍ତ୍ରୀମାନଙ୍କ ଅପେକ୍ଷା ନିଜକୁ ଅଧିକ ସାଜସଜ୍ଜାରେ ମଣ୍ଡିତ କରୁଥିଲେ । ପୁରୁଷ ଥିଲା ଦଳ ଓ ଗୃହର କର୍ତ୍ତା । ତାର ଶକ୍ତିସାମର୍ଥ୍ୟ ଉପରେ ନିର୍ଭର କରୁଥିଲା ଦଳର ବା ଗୃହର ନିରାପତ୍ତା ଓ ସୁଖଶାନ୍ତି । ତେଣୁ ସେ

ସବୁବେଳେ ନିଜକୁ ଶକ୍ତିମାନ୍, ରୂପବାନ୍ କରିବାକୁ ଚେଷ୍ଟା କରୁଥିଲା । ଯେଉଁଠି ଯାହା ସୁନ୍ଦର ବା ମୂଲ୍ୟବାନ୍ ଜିନିଷ ଦେଖୁଥିଲା ତାକୁ ଆଣି ନିଜ ଅଙ୍ଗରେ ମଣ୍ଡୁଥିଲା । ଛବିଳ ସୁନ୍ଦର ପର, ନରମ ଚିକ୍କଣ ଗ୍ଲାଲ, ବିଭିନ୍ନ ରଙ୍ଗର ବଲ୍କଲ, ହାତୀ ଦାନ୍ତ, ଶାମୁକା, କଉଡ଼ି, ମାଳି, କାଇଁଅ ଆଦି ପୁରୁଷ ଦେହରେ ଶୋଭା ପାଉଥିଲା । ଏପରିକି ଅନେକ ଆଦିବାସୀ ପୂର୍ବ କାଳରେ ବିଭିନ୍ନ ପଶୁପକ୍ଷୀଙ୍କ ହାଡ଼, ମୁଣ୍ଡ, ଶିଙ୍ଘ ଦେହରେ ମଣ୍ଡି ହେଉଥିଲେ । ଆଫ୍ରିକାରେ ଏପରି କେତେକ ଅସଭ୍ୟ ଜାତି ଥିଲେ ଯେ ମଣିଷ ଶିକାର କରି ନିଜ ବୀରତ୍ୱର ଚିହ୍ନ ସ୍ୱରୂପ ସେମାନଙ୍କ ମୁଣ୍ଡର ମାଳ ବେକରେ ଝୁଲଉଥିଲେ । ଯାହା ବେକରେ ଯେତେ ମୁଣ୍ଡର ମାଳ ଥିଲା ସେ ସେତେ ବୀର ବୋଲି ପରିଗଣିତ ହେଉଥିଲା । କିନ୍ତୁ ଯାହା ବେକରେ ମୁଣ୍ଡ ମାଳ ନଥିଲା ସେ ସେମାନଙ୍କ ଗୋଷ୍ଠୀ ଭିତରେ ହତାଦର ପାଉଥିଲା । ଏପରିକି କୌଣସି ସ୍ତ୍ରୀ ତାକୁ ବିଭା ହେବାକୁ ଇଚ୍ଛା କରୁ ନଥିଲେ । କିମିତି ଇଚ୍ଛା କରନ୍ତେ ! ସେ ମଣିଷ ମାଇଚିନା, ନପୁଂସକଟେ !

ପୂର୍ବ କାଳରେ ସ୍ତ୍ରୀ ଥିଲା ପୁରୁଷର ସେବିକା ବା ଦାସୀ । ସେ ଘରକାମ କରେ, ପିଲା ଜନ୍ମକରି ସେମାନଙ୍କୁ ପାଳେ । ପୁରୁଷମାନେ ସେମାନଙ୍କୁ ଯାହା ପିନ୍ଧିବାକୁ ଦିଅନ୍ତି ସେମାନେ ତାହା ପିନ୍ଧନ୍ତି । ତେଣୁ ସୁନ୍ଦର ଆଉ ଦାମିକା ଜିନିଷ ସେମାନଙ୍କ ଭାଗରେ ପଡ଼ିବ କୁଆଡ଼ୁ ? ସେମାନେ ସୁନ୍ଦର ବେଶଭୂଷା ଦ୍ୱାରା ପୁରୁଷମାନଙ୍କ ମନକୁ ଆକର୍ଷଣ କରିବା କଥା ଉଠୁ ନଥିଲା । ପୁରୁଷମାନେ ସେମାନଙ୍କୁ ବଳାତ୍କାରେ ଦଖଲ କରି ରଖୁଥିଲେ । ଏଥିଯୋଗୁ ଆଦିମ ଯୁଗରେ ପୁରୁଷମାନେ ବିଭିନ୍ନ ବେଶ ପୋଷାକ ଓ ସାଜସଜ୍ଜାରେ ମଣ୍ଡି ହେଉଥିବେଳେ ସ୍ତ୍ରୀମାନଙ୍କର ବେଶଭୂଷା ଥିଲା ନିତାନ୍ତ ସାଧାରଣ । କାହା କାହା ଦେହରେ କିଛି ବି ଆବରଣ ନଥିଲା ।

ଏ ବିଷୟରେ ପୁରୁଷ ଜାତିଟା ଯେମିତି ପଶୁପକ୍ଷୀମାନଙ୍କର ଅନୁକରଣ କରୁଥିଲା । ପଶୁରାଜ ସିଂହର କେଶର ତାର ଅଙ୍ଗସୌଷ୍ଠବର ମହତ୍ତ୍ୱ ବୃଦ୍ଧି କରେ; କିନ୍ତୁ ସିଂହୀ ଦେହରେ ସେପରି କିଛି ସୌନ୍ଦର୍ଯ୍ୟର ଉପାଦାନ ନାହିଁ । ନବ ମେଘ ଦର୍ଶନରେ ମୟୂର ତାର ସ୍ୱର୍ଣ୍ଣଚିହ୍ନିତ

ଚନ୍ଦ୍ରକାପୁଚ୍ଛକୁ ଛତ୍ରାକାରେ ମେଲାଇ, ଗ୍ରୀବାସ୍ଥିତ ରଙ୍ଗୀନ୍ ରେଶମୀ ପରପୁଞ୍ଜକୁ ଫୁଲାଇ ତାର ପ୍ରେୟସୀର ଗୃହପଟେ ମୁକୁଟ ମଣ୍ଡିତ ମସ୍ତକକୁ ହଲାଇ ନାଚେ ମୟୂରୀର ମନ ଆକର୍ଷଣ କରିବାକୁ ତାକୁ ପ୍ରେମା-, ଶକ୍ତ କରିବାକୁ । କିନ୍ତୁ ମୟୂରୀ ଦେହରେ ସେପରି କିଛି ବିଶେଷ ଭୂଷଣ ବା ସୌନ୍ଦର୍ଯ୍ୟ ନାହିଁ, ଯାହା ସାହାଯ୍ୟରେ ସେ ତାର ପ୍ରେମିକକୁ ଆକୃଷ୍ଟ କରି ପ୍ରେମନିବେଦନ କରିବ । ଆଦିମ ଯୁଗର ସ୍ତ୍ରୀ-ପୁରୁଷଙ୍କ ମଧ୍ୟରେ ପ୍ରେମପ୍ରଣୟର ରୀତିଟା ଏହି ପ୍ରକାର ଥିଲା । କିନ୍ତୁ ସଭ୍ୟତାର ଅଭିବୃଦ୍ଧି ପରେ ନାରୀ-ଜାଗରଣ, ନାରୀ-ସ୍ୱାଧୀନତା ପ୍ରକାଶ ପାଇଲା ଏବଂ କ୍ରମେ ପ୍ରେମ-ପ୍ରଣୟର ରୀତିଟା ବଦଳିଗଲା । ମହିଳାମାନେ ତାଙ୍କ ଇଚ୍ଛାମତେ ବେଶଭୂଷା ହେଲେ । ଆଜିକାଲିର ସ୍ୱାଧୀନ ଯୁଗରେ ସ୍ତ୍ରୀ ଓ ଯୁବତୀମାନେ ତାଙ୍କ ସାଜସଜ୍ଜା ଓ ବେଶଭୂଷା ପାଇଁ ସେମାନଙ୍କର ପୁରୁଷ ସାଥୀଙ୍କ ଇଙ୍ଗିତ ବା ମରଜି ଉପରେ ନିର୍ଭର କରୁନାହାନ୍ତି । ସେମାନେ ତାଙ୍କ ଇଚ୍ଛାମତେ ବିଭିନ୍ନ ଢଙ୍ଗର ବେଶପୋଷାକ ପିନ୍ଧି ପୁରୁଷ ମନକୁ ଆକର୍ଷଣ କରିବାକୁ ଚେଷ୍ଟା କରୁଚନ୍ତି । ପୁରୁଷମାନେ ପିନ୍ଧୁଚନ୍ତି ସରଳ, ନିରାଡମ୍ବର ପୋଷାକ, କିନ୍ତୁ ମହିଳାମାନେ ଯଥାସମ୍ଭବ ଆଡମ୍ବରପୂର୍ଣ୍ଣ, ଚକ୍‌ଚକ୍ ବେଶଭୂଷା ଓ ଅଳଙ୍କାରରେ ନିଜକୁ ବିମଣ୍ଡିତ କରୁଚନ୍ତି । କେବଳ ସେତିକି ନୁହେଁ, ସ୍ତ୍ରୀମାନଙ୍କର ଚେହେରାକୁ ସରସସୁନ୍ଦର କରିବା ପାଇଁ ନାନା ପ୍ରସାଧନ ସାମଗ୍ରୀ ତିଆରି ହେଉଚି ଏବଂ ତାଙ୍କ ଅଙ୍ଗ ଶୋଭାରେ କିଛି ଅଭାବ ଥିଲେ ତାକୁ ଭରଣା କରିବାକୁ କୃତ୍ରିମ ବାଳ, କୃତ୍ରିମ ଚୁଳ ଆଦି ବିଭିନ୍ନ ସରଞ୍ଜାମର ଉତ୍ପାଦନ କରାଯାଉଚି ।

ସ୍ତ୍ରୀମାନଙ୍କର ବେଶପୋଷାକରେ ଉନ୍ନତି ଘଟିବା ସଙ୍ଗେ ସଙ୍ଗେ ପୁରୁଷମାନଙ୍କ ବେଶପୋଷାକରେ କ୍ରମେ ଅଧୋଗତି ଘଟିଲା । ସାହେବମାନଙ୍କର ଆଗ କାଳରେ ବେଶ ପୋଷାକରେ ଯେ ବାହୁଲ୍ୟ ଥିଲା ସେ କମି ଆସିଲା । ସେମାନେ ପିନ୍ଧିଲେ ସାଧାସିଧା ପ୍ୟାଣ୍ଟ୍ କୋଟ୍ । ଭିତର କୁନ କୋଟଟା ବି କୁଆଡେ ଉଭେଇଗଲାଣି । ଭାରତ ପ୍ରଭୃତି ଦେଶରେ ପୁରୁଷମାନେ ଯେଉଁଠି ଆଗେ ମହିଳାମାନଙ୍କ ପରି ଖଡୁ, କଣ୍ଠି, ବଳା, କୁଣ୍ଡଳ ପ୍ରଭୃତି ପିନ୍ଧୁଥିଲେ ସେମାନେ ସେସବୁ ଛାଡ଼ି ସାଧାସିଧା ପୋଷାକ ପିନ୍ଧିଲେ । ଏହାର କାରଣ ? ବୋଧହୁଏ ଆଜିକାଲିର ଯୁବକର,

ବ୍ୟବସାୟ ଆଦି କରିବାର ସୁବିଧା ପାଇଁ ପୁରୁଷମାନଙ୍କର ପୋଷାକପତ୍ରରେ ଏ ପରିବର୍ତ୍ତନ ଆବଶ୍ୟକ ପଡ଼ିଲା । କିନ୍ତୁ ବିଲାତର ପ୍ରାୟ ସବୁ ପୁରୁଷଲୋକ କଳା ବା ନୀଳ ପୋଷାକ ପିନ୍ଧନ୍ତି । କାହିଁକି ? ବିଲାତରେ ବହୁତ କଳକାରଖାନା ଥିବାରୁ ସବୁବେଳେ ଆକାଶରୁ କଳା କୋଇଲା ଗୁଣ୍ଡି ବୃଷ୍ଟି ହେଉଛି । ସେଗୁଡ଼ିକ ପଡ଼ିଲେ କଳା ବା ନୀଳ ପୋଷାକ ମଇଳା ଦିଶିବନି । କିନ୍ତୁ ଧଳା ବା ଅନ୍ୟ ରଙ୍ଗର ପୋଷାକ ପିନ୍ଧିଲେ ସେ ଜଲ୍‌ଦି କଳା ଓ ମଇଳା ହୋଇଯିବ ଏବଂ ତାକୁ ବାରମ୍ବାର ବଦଳାଇବା ଓ ସଫା କରିବା ଦରକାର ପଡ଼ିବ । ଏଣୁ ଯୋଗେ ବୋଧହୁଏ ଏତେ କଳା ଓ ନୀଳ ପୋଷାକର ପ୍ରଚଳନ ଘଟିଛି ।

ବିଲାତର ପୁରୁଷମାନଙ୍କ ବେଶପୋଷାକ ସମ୍ବନ୍ଧରେ ଆଉ ଗୋଟିଏ କଥା ମନକୁ ଆସେ । ପ୍ରାୟ ଅଷ୍ଟାଦଶ ଶତାବ୍ଦୀରୁ ପାଶ୍ଚାତ୍ୟ ଦେଶର ବେଶଭୂଷା ଫ୍ରାନ୍‌ସର ଫେସନ ଅନୁସାରେ ନିୟନ୍ତ୍ରିତ ହେଉଥିଲା । ଫରାସୀ ରାଜଦରବାରର ପାରିଷଦମାନେ ଯେପରି ପୋଷାକପତ୍ର ପିନ୍ଧୁଥିଲେ ସାରା ଇଉରୋପର ଏପରିକି ଅନ୍ୟ ଦେଶର ସମ୍ଭ୍ରାନ୍ତ ପରିବାର ଓ ଧନିକ ଶ୍ରେଣୀର ଲୋକମାନେ ତାହାର ଅନୁକରଣ କରୁଥିଲେ । ଏ ପୋଷାକ ପରିଚ୍ଛଦ ଥିଲା ଖୁବ୍ ଉଚ୍ଚଧରଣର ଓ ବିଭିନ୍ନ କିସମର । ଏହାର ପ୍ରଭାବ ଅବଶ୍ୟ ବିଲାତର ସମ୍ଭ୍ରାନ୍ତ ବ୍ୟକ୍ତିମାନଙ୍କ ଉପରେ ବିଶେଷ ଭାବରେ ପଡ଼ିଥିଲା । କିନ୍ତୁ ସେମାନେ ରାଜଦରବାରରେ ସୀମାବଦ୍ଧ ନରହି ତାଙ୍କ ମଫସଲ ଜମିଦାରୀରେ ବାସ କରୁଥିଲେ । ସେଠାରେ ସେମାନଙ୍କର ଘୋଡ଼ାଚଢ଼ା, କୋକଶିଆଳୀ (Fox) ଶିକାର ଆଦି ଥିଲା ସାଧାରଣ ବ୍ୟସନ । ଏଣୁ ଘୋଡ଼ାଚଢ଼ା ଓ ଶିକାର ପାଇଁ ସାଧାସିଧା ଓ ଖୋଲଓ୍ୱାଡ଼୍ ପୋଷାକର ଆବଶ୍ୟକତା ପଡ଼ିଲା ଏବଂ ସେମାନେ ସେଥି ଅନୁସାରେ ତାଙ୍କର ପୋଷାକ ପରିଚ୍ଛଦ ତିଆରି କଲେ । ସେହିମାନଙ୍କର ଅନୁକରଣରେ ବୋଧହୁଏ ବିଲାତର ସାଧାରଣ ଲୋକେ ସେମାନଙ୍କ ବେଶପୋଷାକକୁ ସାଧାସିଧା କଲେ ।

ଆଉ ଗୋଟିଏ ପ୍ରଭାବ ବି ଏଥିରେ କାମ କଲା । ଫ୍ରାନ୍‌ସର ଲମ୍ବାର୍ଡ଼ିରୁ ଯେଉଁ ବଣିକମାନେ ବିଲାତରେ ଆସି ସୁଧରେ ମହାଜନୀ

କାରବାର କଲେ ଏବଂ ଯେଉଁମାନଙ୍କ ନାମାନୁସାରେ ବିଲାତର ବ୍ୟାଙ୍କ ଅଞ୍ଚଳ ଲମ୍ବାର୍ଡ ଷ୍ଟ୍ରିଟ୍ ବୋଲି ନାମିତ ହେଲା ସେମାନେ ସାଧାସିଧା ପୋଷାକ ପିନ୍ଧୁଥିଲେ । ଫ୍ରାନ୍ସକୁ ଏହି ବଣିକ ପୋଷାକ ଇଟାଲୀର ବ୍ୟବସାୟୀ ଅଞ୍ଚଳ ନେପ୍ଲସ୍‌ରୁ ଆସିଥିଲା । ବିଲାତବାସୀ ସାଧାରଣତଃ ବ୍ୟବସାୟୀ ଜାତି ହୋଇଥିବାରୁ ଏବଂ ଏମାନେ ତାଙ୍କର ବ୍ୟବସାୟ ପାଇଁ ପ୍ରଥମେ ଲମ୍ବାର୍ଡିର ବଣିକମାନଙ୍କଠାରୁ ଓ ପରେ ଲମ୍ବାର୍ଡଷ୍ଟ୍ରିଟ୍‌ରୁ ଅର୍ଥ ଆହରଣ କରୁଥିବାରୁ ଏହି ବ୍ୟବସାୟୀମାନେ ସାଧାସିଧା ବେଶ ଧରିଲେ ।

କିନ୍ତୁ ପ୍ରକୃତରେ ବିଭିନ୍ନ ଦେଶର ପୋଷାକପତ୍ରର ମୂଳନୀତି ହେଲା ଜଳବାୟୁଗତ ଆବଶ୍ୟକତା । ଦ୍ୱିତୀୟରେ ସମାଜ ଓ ରାଜଦରବାରର ରୁଚି ପୋଷାକପରିଚ୍ଛଦର ଶୈଳୀକୁ ନିୟନ୍ତ୍ରିତ କରିଥାଏ । ତୃତୀୟ ଓ ଅତି ବଳିଷ୍ଠ ନୀତି ଏହି ପୋଷାକ ପରିଚ୍ଛଦ ମାଧ୍ୟମରେ ପୁରୁଷ ଓ ସ୍ତ୍ରୀମାନେ ପରସ୍ପରକୁ ଆକର୍ଷଣ କରିବାର ବ୍ୟାକୁଳତା ଭିତ୍ତିରେ ପ୍ରତିଷ୍ଠିତ । ଆଜକାଲିକା ସମାଜରେ ମହିଳାମାନେ ଯେତେ ଶିକ୍ଷିତା ଓ ଆଧୁନିକା ହେଲେ ବି ସେମାନଙ୍କ ଭିତରୁ ଅଧିକାଂଶ ନିଜର ସୁଖସମ୍ଭୋଗ ପାଇଁ ପୁରୁଷମାନଙ୍କ ଉପରେ ନିର୍ଭର କରନ୍ତି । ରତିକ୍ରୀଡ଼ା ପାଇଁ ସେମାନଙ୍କର ଶକ୍ତିସାମର୍ଥ୍ୟ କେତେ, ସେମାନେ ତାଙ୍କ ସ୍ତ୍ରୀମାନଙ୍କୁ ସମାଜରେ କେତେ ଉଚ୍ଚସ୍ଥାନ ଦେଇପାରିବେ ଏବଂ ସେମାନଙ୍କର ପିଲାମାନଙ୍କର ରକ୍ଷଣାବେକ୍ଷଣ ପାଇଁ ସେମାନେ କେତେଦୂର ସମର୍ଥ ହେବେ ଏହି ସବୁ କଥା ବିଚାର କରି ମହିଳାମାନେ ନିଜର ବେଶଭୂଷା, ଚାଲିଚଳନ ଦ୍ୱାରା ଉପଯୁକ୍ତ ପୁରୁଷମାନଙ୍କ ଦୃଷ୍ଟି ଆକର୍ଷଣ କରିବାକୁ ଓ ସେମାନଙ୍କୁ ପତିରୂପେ ପାଇବାକୁ ଚେଷ୍ଟା କରନ୍ତି । ପୁରୁଷମାନେ ବି ତାଙ୍କ ଚେହେରା ଓ ବେଶପୋଷାକ ଦ୍ୱାରା ମହିଳାମାନଙ୍କୁ ଆକର୍ଷଣ କରିବାକୁ ଚେଷ୍ଟା କରନ୍ତି । ଏହି ଯୋଗେ ପାଶ୍ଚାତ୍ୟ ଦେଶମାନଙ୍କରେ ପୁରୁଷମାନେ ସେମାନଙ୍କର ପୋଷାକ ପରିଚ୍ଛଦ ପିନ୍ଧିବାରେ ସେମାନଙ୍କର ଯୌନ ଅଙ୍ଗ (Genatal orgens) ଓ ଜଙ୍ଘ ପ୍ରଭୃତି ଯେତେଦୂର ସମ୍ଭବ ଦେଖାଇବାକୁ ଚେଷ୍ଟା କରନ୍ତି । ଏହି ଯୋଗେ ସେମାନେ ଆଗେ କଷିଲା ପ୍ୟାଣ୍ଟ୍

ପିନ୍ଧୁଥିଲେ ଏବଂ ତାଙ୍କ ଲାଞ୍ଜଲଗା କୋଟ୍‌ର ସାମନା ଲମ୍ବପାଖରୁ ତଳକୁ କାଟି ଖୋଲା ରଖାଯାଉଥିଲା ।

ଆଜକାଲି ଯୁବକମାନେ ଯେ କଷିଲା ପ୍ୟାଣ୍ଟ ପିନ୍ଧୁଚନ୍ତି ଏବଂ ତାକୁ ଲମ୍ବତଳକୁ ଖସେଇ ରଖୁଛନ୍ତି ତାର ଉଦ୍ଦେଶ୍ୟ ହେଲା ସେମାନଙ୍କ ଯୌନ ଅଙ୍ଗସବୁକୁ ଯେତେଦୂର ସମ୍ଭବ ଉନ୍ମୁକ୍ତ ରଖିବା । ମହିଳାମାନେ ବି ଏହି ନୀତି ଅନେକଟା ଅନୁସରଣ କରୁଚନ୍ତି ।

କିନ୍ତୁ ଭାରତ ପ୍ରଭୃତି କେତେକ ପ୍ରାଚ୍ୟ ଦେଶମାନଙ୍କର ନୈତିକତା ଟିକଏ ଯେମିତି ବେଶୀ । ଆମ ଦେଶର ଲୋକମାନେ ସାଧାରଣତଃ କୁଞ୍ଚକରି ଲୁଗା ପିନ୍ଧନ୍ତି । ଲୁଗା ପିନ୍ଧନ୍ତୁ, ପାଇଜାମା ପିନ୍ଧନ୍ତୁ ତା' ଉପର ଲମ୍ବା ପଞ୍ଜାବୀ ବା କୁର୍ତ୍ତା ପିନ୍ଧି ନିଜର ଯୌନ ଅଙ୍ଗକୁ ସମ୍ପୂର୍ଣ୍ଣ ରୂପେ ଘୋଡ଼ାଇ ରଖନ୍ତି ।

ଭାରତୀୟ ମହିଳାମାନେ ଯେ ଓଢ଼ଣା ଦେଇ ଶାଢ଼ୀ ପିନ୍ଧନ୍ତି ତାର ଉଦ୍ଦେଶ୍ୟ ବଡ଼ ମହତ୍ ପରି ଜଣାଯାଏ । ପୁରୁଷମାନଙ୍କର ଯୌନ ଅଙ୍ଗ (Eroti cregion) ଗୋଟିଏ କିନ୍ତୁ ମହିଳାମାନଙ୍କର ଏହା ଶରୀରର ବିଭିନ୍ନ ସ୍ଥାନରେ, ଯଥା—କଟି, ଜାନୁ, ବକ୍ଷ, ଓଷ୍ଠ, ଗଣ୍ଡଦେଶ, ଚିବୁକ ଆଦିରେ ଅବସ୍ଥିତ । ଭାରତୀୟ ମହିଳାମାନଙ୍କର ଶାଢ଼ୀ, ବ୍ଲାଉସ୍ ପିନ୍ଧିବାର ଶୈଳୀ ଲକ୍ଷ୍ୟ କଲେ ମନେହେବ ସେ ଯେପରି ସେମାନଙ୍କର ଯୌନ ଅଙ୍ଗଗୁଡ଼ିକ ଆବୃତ୍ତ ରଖିବାପାଇଁ ଉଦ୍ଦିଷ୍ଟ । ପ୍ରଧାନ ଯୌନ ଅଙ୍ଗ କଟି ଓ ଜାନୁଦେଶକୁ ସେମାନେ ଘେର ଓ କୁଞ୍ଚଦ୍ୱାରା ଆବୃତ୍ତ ରଖନ୍ତି । ବକ୍ଷସ୍ଥଳକୁ ଶାଢ଼ୀ ଘେରାଇ ଓ କାଞ୍ଚଲା ବା ବ୍ଲାଉସ ଦ୍ୱାରା ଘୋଡ଼ାନ୍ତି । ମୁଣ୍ଡରେ ଲୁଗା ଦେଇ ଗଣ୍ଡ ଦେଶର ଆବରଣ ସୃଷ୍ଟି କରନ୍ତି । ମୁସଲମାନ ମହିଳାମାନେ ତ ବୁର୍ଖା ସାହାଯ୍ୟରେ ସେମାନଙ୍କର ସାରା ଦେହକୁ ଘୋଡାଇ ରଖନ୍ତି ।

କିନ୍ତୁ ପାଶ୍ଚାତ୍ୟ ଦେଶର ମହିଳାମାନଙ୍କ ବେଶ-ପୋଷାକ ନୀତି ସମ୍ପୂର୍ଣ୍ଣ ଅଲଗା । ସେମାନେ ସେମାନଙ୍କର ଯୌନ ଅଙ୍ଗଗୁଡ଼ିକୁ ଉନ୍ମୁକ୍ତ ରଖିବାକୁ ଚେଷ୍ଟା କଲାପରି ଜଣାଯାଏ । ସେମାନେ ଯଦିତ ସେମାନଙ୍କର ପ୍ରଧାନ ଯୌନ ଅଙ୍ଗ ଦୁଇଟି ଯଥା—ଜାନୁ-କଟୀ ଅଂଶ ଓ ବକ୍ଷସ୍ଥଳକୁ ସ୍କାର୍ଟ

ଓ ବ୍ଲାଉଜ୍ ଦ୍ୱାରା ଆବୃତ ରଖନ୍ତି ତଥାପି ସେଗୁଡ଼ିକ ପୂରା ଲୋକଲୋଚନରୁ ଲୁଚେଇ ରଖିବା ଯେପରି ସେମାନଙ୍କର ଉଦ୍ଦେଶ୍ୟ ନୁହେଁ । ତେଣୁ ସେମାନେ ତାଙ୍କ ସ୍କାର୍ଟକୁ ଏପରି କଷିଲା କରନ୍ତି ଯେଉଁଥିରେ କି ତାଙ୍କ ଜାନୁ ଓ କଟୀର ସୁଷମା ଅନେକଟା ପରିଲକ୍ଷିତ ହେବ । ସେହିପରି ଅନେକ ଯୁବତୀ ଓ ମହିଳା ବ୍ଲାଉଜ୍‌ଦ୍ୱାରା ସେମାନଙ୍କର ବକ୍ଷସ୍ଥଳକୁ ଆବୃତ କଲେ ବି ଉରଜମାନଙ୍କୁ ଚୁପି, ଘୋଡ଼େଇ ନରଖି ସେମାନଙ୍କୁ ଯଥାସମ୍ଭବ ଫୁଲ୍ଲଫାଙ୍କା ରଖନ୍ତି ।

ଏସବୁ ଦେଖିଲେ ମନେହୁଏ ଭାରତୀୟ ମହିଳାମାନେ ତାଙ୍କ ଅଙ୍ଗସୌଷ୍ଠବକୁ ଘୋଡ଼ାଇ ରଖି କେବଳ ହାବଭାବ, ଠାଣି ଭଙ୍ଗୀରେ ପୁରୁଷମାନଙ୍କୁ ଆକର୍ଷଣ କରିବାକୁ ଚେଷ୍ଟା କରନ୍ତି; କିନ୍ତୁ ପାଶ୍ଚାତ୍ୟ ଦେଶର ମହିଳାମାନେ ସେହି ଉଦ୍ଦେଶ୍ୟରେ ତାଙ୍କ ରୂପବିଭବର ବିଜ୍ଞାପନ ଦେଲାପରି ତାକୁ ଯେତେଦୂର ସମ୍ଭବ ଫୁଲ୍ଲଫାଙ୍କିଆ ରଖନ୍ତି । ଅବଶ୍ୟ ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବରୁ ଆମ ଦେଶର ରମଣୀ ବିଶେଷକରି ଯୁବତୀମାନଙ୍କ ବେଶ ପୋଷାକରେ ଅନେକ ପରିବର୍ତ୍ତନ ଘଟିଛି । ଅନେକ ସ୍କାର୍ଟ-ବ୍ଲାଉଜ୍ ଏପରିକି ପ୍ୟାଣ୍ଟ ସାର୍ଟ ପିନ୍ଧୁଚନ୍ତି । ଏବେ ସେମାନେ ବେକଠାରୁ ଅଣ୍ଟାପର୍ଯ୍ୟନ୍ତ ପୂରା ବ୍ଲାଉଜ୍ ପିନ୍ଧୁନାହାନ୍ତି । ଆଉ ବ୍ଲାଉଜ୍‌ର ହାତ ବେକଠାରୁ କହୁଣି ପର୍ଯ୍ୟନ୍ତ ଯାଉନାହିଁ । ସେଇଟା ଏବେ ହେଲାଣି ହାତକଟା (Sleeveless), ବେକ ପାଖଟା ଖୋଲା, ଲମ୍ବାରେ କେବଳ ସ୍ତନ ତଳଯାଏ ଯାଉଚି । ଏଇଟା ଯେପରି ପାଶ୍ଚାତ୍ୟ ରମଣୀମାନଙ୍କ ଉପର-ବିହୀନ, ତଳ-ବିହୀନ (Topless,bottomless) ବେଶପୋଷାକର ଅନୁକରଣରେ ନିୟନ୍ତ୍ରିତ ହେଲାପରି ମନେହୁଏ । ଏଣେ ପୁଅମାନେ ରଙ୍ଗିନ ଛିଟ କନାର ପ୍ୟାଣ୍ଟ, ଜାମା ପିନ୍ଧି, ଲମ୍ବା ବାଳ ରଖି ଝିଅମାନଙ୍କ ବେଶଭୂଷା ଓ ପୋଷାକ-ପରିଚ୍ଛଦର ଅନୁକରଣ କରୁଚନ୍ତି । ଝିଅମାନଙ୍କ ଭିତରୁ ଅନେକେ ପୁଅମାନଙ୍କ ପରି ପ୍ୟାଣ୍ଟସାର୍ଟ ପିନ୍ଧୁଚନ୍ତି । ତେଣୁ ବେଳେ ବେଳେ କିଏ ବାଳକ, କିଏ ବାଳିକା, କିଏ ଯୁବକ କିଏ ଯୁବତୀ ଠିକ୍ କରି ଜାଣିବା କଷ୍ଟକର ହୋଇପଡ଼େ । ପ୍ରାଚ୍ୟ ଦେଶ କଣ ପାଶ୍ଚାତ୍ୟ ଦେଶ କଣ ସବୁଠାରେ ତରୁଣତରୁଣୀଙ୍କର ବେଶପୋଷାକ ଯେମିତି ବଦଳି ଯାଉଚି ।

ବିଲାତର ରିଜେଣ୍ଟ ପାର୍କରେ ଦେଖିଲି, ଅନ୍ୟଠାରେ ବି ଦେଖିଛି, ଅଧିକାଂଶ ବାଳିକା ଓ ଯୁବତୀଙ୍କ ନିମ୍ନାଙ୍ଗର ଆବରଣ ଖୁବ୍ କମ୍ । ସେ ଯେଉଁ ମିନି ସ୍କାର୍ଟ ବା କୁନି ଘାଗରା ପିନ୍ଧିଛନ୍ତି ସେଥିରେ ତାଙ୍କର ଜାନୁ ଅଂଶ ପୂରା ଆବୃତ ହେଉନାହିଁ । ଏତେ ଛୋଟ ସ୍କାର୍ଟ ପିନ୍ଧିବା ବିରୋଧରେ ଏକ କ୍ଷୀଣ ଆନ୍ଦୋଳନ ବିଲାତ ଓ ଇଉରୋପର ଅନ୍ୟ ଦେଶମାନଙ୍କରେ ଚାଲିଥିଲା । ଏ ସମ୍ବନ୍ଧରେ ଅନେକ ଆପତ୍ତି ଅଭିଯୋଗ ଉଠିଥିଲା । କିନ୍ତୁ କିଏ ସେଥିକି ଖାତିର କରୁଛି ! ଯୁବକମାନେ ନଳୀ କଷିଲା ପ୍ୟାଣ୍ଟ, ଯୁବତୀମାନେ କୁନି ସ୍କାର୍ଟ ପିନ୍ଧି ରିଜେଣ୍ଟ ପାର୍କରେ ଆନନ୍ଦ-ବିହାରରେ ବ୍ୟସ୍ତ ଥାନ୍ତି । ବଡ଼ ବିଚିତ୍ର ଓ କୌତୂହଳମୟ ପରିସ୍ଥିତି । ଆଦିମ ଯୁଗରେ ତ ପୁରୁଷ-ସ୍ତ୍ରୀ ପ୍ରାୟ ପୂରା ଉଲଗ୍ନ ଥିଲେ । ସଭ୍ୟତାର ଅଭିବୃଦ୍ଧି ସଙ୍ଗେ ସଙ୍ଗେ ସେମାନେ ଦେହରେ ଦେଲେ ଆବରଣ । କିନ୍ତୁ ସେଇ ଆବରଣ କ୍ରମେ ଯେପରି ସଙ୍କୁଚିତ ଓ ସଂକ୍ଷିପ୍ତ ହେବାରେ ଲାଗିଛି ସେଥିରୁ ମନେ ହେବ ସତେ ଯେମିତି ସେମାନେ ପୁଣି ସଭ୍ୟତାର ପୂର୍ବ ଅବସ୍ଥାକୁ ଫେରି ଯିବାକୁ ଚେଷ୍ଟା କରୁଛନ୍ତି ।

ରିଜେଣ୍ଟ ପାର୍କର ସେହି ବାଳକ-ବାଳିକା ଯୁବକ-ଯୁବତୀଙ୍କ ବେଶ ପୋଷାକ ମୋତେ ବଡ଼ ବେଆଡ଼ା ଲାଗୁଥାଏ । ଭାବିଲି ରକ୍ଷଣଶୀଳ ବ୍ରିଟିଶ୍ ଜାତି ଏ ବିଭ୍ରାଟ ବରଦାସ୍ତ କରୁଛି କିପରି ? କେବଳ ବିଲାତରେ ନୁହେଁ ସାରା ପୃଥିବୀରେ ଯେମିତି ଗୋଟାଏ ନୂତନ ଦର୍ଶନ, ନୂତନ ଧର୍ମ, ଆରମ୍ଭ ହୋଇଯାଇଛି । ବିପୁଳ ବିଭବଶାଳୀ, ଅକଳନ୍ତି ଧନ ସମ୍ପଦରେ ଭରା ଆମେରିକାରେ ତ ପୁଣି ହିପ୍‌ପୀ ସମ୍ପ୍ରଦାୟର ଉଦ୍‌ଭବ ହେଲା ! କିନ୍ତୁ କିପରି ଓ କାହିଁକି ହେଲା ?

ଆମେରିକାରେ ତ ଧନର ଅଭାବ ନାହିଁ । ଚାକିରି ଓ ବ୍ୟବସାୟର ସୁବିଧା ଯଥେଷ୍ଟ; ତେବେ କିଣ ପାଇଁ ଏ ବିଚିତ୍ର ଲଗାମଛଡ଼ା, ଯାବତୀୟ କୁକର୍ମର ପୂଜାରୀ ଏ ହିପ୍‌ପୀ ଦଳ ବାହାରିଲେ । ଅଦ୍‌ଭୁତ ଏମାନଙ୍କର ବେଶପୋଷାକ, ଅଦ୍‌ଭୁତ ଏମାନଙ୍କର ଆଚାରବ୍ୟବହାର । ଏହି ଯୁବକମାନେ ଲମ୍ବା ଲମ୍ବା ବାଳ, ଦାଢ଼ି ରଖୁଛନ୍ତି । ସେ କୁଚିର୍ କଟା ବା କୁଣ୍ଡା ହୁଏ । ସେଥିରେ ଉକୁଣୀ ବି ରହନ୍ତି । ରୁଷିଆରେ ଜାରଙ୍କ ଶାସନ କାଳରେ କେଉଁଠି ରୁଷ୍‌ମାନେ ଲମ୍ବିତ ଘନ ଦାଢ଼ି ରଖୁଥିଲେ ଏବଂ

ସେଥିରେ କେଉଁଠି ବହୁ ଗ୍ରେଟ ଗ୍ରେନ ଗାର୍ଟ ଏପରିକି ଛିଟପିଟ ଅସରପା ରହୁଥିଲେ । ହିପିମାନଙ୍କ ନିଶ ଦାଢ଼ୀ ଓ ବାଳରେ ସେମିତି କିଛି ଜୀବ ରହିବା ଅସମ୍ଭବ ନୁହେଁ । ଏହି ହିପିମାନଙ୍କ ଭିତରୁ କେତେକ ଗେରୁଆ ଲୁଗା ପିନ୍ଧି, ଖୋଳ କରତାଳ ବଜେଇ ପୁଣି ପରି ତୀର୍ଥ ଜାଗାମାନଙ୍କରେ 'ହରେ କୃଷ୍ଣ ହରେ ରାମ' କହି ସଂକୀର୍ତ୍ତନ କରୁଚନ୍ତି । ଅନେକେ କଣ୍ଠି କଉପୁନି ପିନ୍ଧି ମାଳି ଗଡ଼େଇ ସାଧୁ ମହାରାଜା ସାଜୁଛନ୍ତି ଓ ଯୋଗ, ତପ ସାଧନା କରୁଚନ୍ତି ଏବଂ ଚିଲମରେ ଗଞ୍ଜେଇ ଟାଣୁଚନ୍ତି ।

ଏହି ହିପିମାନେ ଯେଉଁଠି ଯାହା ପୋଷାକ ପାଆନ୍ତି ପିନ୍ଧନ୍ତି । ସାଧାରଣତଃ ରଙ୍ଗିନ୍ ଛିଟର ପଞ୍ଜାବି, ତା' ଉପରେ ଶୀତ ଦାଉରୁ ରକ୍ଷା ପାଇବାକୁ କୋଟ୍ ବା ସ୍ୱେଟର ଚଢ଼ାନ୍ତି । ପ୍ୟାଣ୍ଟ୍ଟା ସାଧାରଣତଃ ଜିନ୍ କନାର । ସେଥିରେ ପୁଣି ବହୁ ଜାଗାରେ ପଟି ପଡ଼ିଥାଏ । ପାଦରେ ଦିଅନ୍ତି ଚଟି, ଜୋତା ଯାହା ମିଳିଲା । କାନ୍ଧରେ ପଡ଼ିଥାଏ ଖଣ୍ଡେ ଖଣ୍ଡେ ବ୍ୟାଗ୍ ବା କାବୁଲି ଲୁଗା ବେପାରୀଙ୍କ ପରି ଗୋଟେ ଗୋଟେ ବୋଝଗୁ । ସେଥିରେ ତାଙ୍କର ଲୁଗାପଟା ଓ ଅନ୍ୟାନ୍ୟ ଯାବତୀୟ ଆବଶ୍ୟକ, ଜିନିଷମାନ, ଯଥା—କଣ୍ଠି-ମାଳି, ଛୁରି-କଇଞ୍ଚି ଗଞ୍ଜେଇ ଚିଲମ ଆଦି ଥାଏ । ସାଙ୍ଗରେ ଥାନ୍ତି ସେମାନଙ୍କର ପ୍ରେୟସୀ, ବେଶ୍ ସୁନ୍ଦରୀ ଯୁବତୀ । ଏମାନଙ୍କର ବେଶଭୂଷା ତାଙ୍କ ଯୁବକ ସାଥୀମାନଙ୍କ ପରି ବଡ଼ ବିଚିତ୍ର । ସେମାନେ ବି ବେଳେ ବେଳେ ପିନ୍ଧନ୍ତି ଇରାନୀ ରମଣୀମାନଙ୍କ ପରି ଛିଟ ପଞ୍ଜାବି, ଟାଣନ୍ତି ଚିଲମ, କରନ୍ତି ସଂକୀର୍ତ୍ତନ । ଏମାନେ ଖାଆନ୍ତି ଯେଉଁଠି ଯାହା ସୁବିଧାରେ ମିଳିଲା । ରହନ୍ତି ଯେଉଁଠି ଯାହା ଜାଗା ପାଇଲେ । କେଉଁଠି ପାନ୍ଥ ନିବାସରେ ଆଡ୍ଡା କଲେଣି ତ କେଉଁଠି ପଥପାର୍ଶ୍ୱରେ ବା ଖୋଲା ପଡ଼ିଆରେ । ଜୁଟନ୍ତି ବହୁତ ଦେଖଣାହାରୀ,— ପ୍ରେମିକ, ରସିକ, ସ୍ଥାନୀୟ ଯୁବକ । ଏହି ହିପ୍ପୀ ଝିଅମାନଙ୍କୁ କେନ୍ଦ୍ର କରି ଚାଲେ କେତେ ରଙ୍ଗରସ । ଆରମ୍ଭ ହୋଇଯାଏ ବହୁ ରୋମାଞ୍ଚକର ପ୍ରେମ କାରବାର, ବ୍ୟଭିଚାର ବି । ବହୁତ ଗୀତନାଚର ଆସର, ହସ-ତାମସା ଚାଲେ, ବହୁ କଡ଼ା କଡ଼ା ମାଦକ ଦ୍ରବ୍ୟର ବି ବ୍ୟବହାର ହୁଏ ।

ଏମାନଙ୍କର ମୋଟାମୋଟି ଉଦ୍ଦେଶ୍ୟ ହେଲା ବେହିସିଆବି, ବେଆଡ଼ା ଭାବରେ ଜୀବନକୁ ଉପଭୋଗ କରିବା । ବେହିସିଆବି,

ବେଆଡ଼ା ବୋଲି ଏଚେଷ୍ଟା ! ଏକେବାରେ ଲଗାମ୍ ଛଡ଼ା ! ସଭ୍ୟ, ଧନିକ ମାର୍କିନ ଯୁବକ-ଯୁବତୀମାନଙ୍କର ଏ ଦଶା କାହିଁକି ? ଦୀର୍ଘଦିନବ୍ୟାପୀ ଭିଏତ୍‌ନାମ ଯୁଦ୍ଧରେ ଆମେରିକାର ଯେ ବହୁ ଧନବଳ ଜନବଳର କ୍ଷତି ଘଟିଲା, ତାର ପ୍ରଭାବ ଯୁବକ-ଯୁବତୀମାନଙ୍କ ଉପରେ ପଡ଼ିଲା, ବେକାରି ବଢ଼ିଲା । ସମାଜରେ ଦିନେ ଖୁବ୍ ସୁଖ ସ୍ୱଚ୍ଛନ୍ଦରେ ରହୁଥିଲେ ବେଳକୁ ଆଜି ଦିନେ ଅଭାବ-ଅନଟନରେ ଘାଣ୍ଟି ହେଲେ । ବହୁ ସୈନ୍ୟ ଭିଏତ୍‌ନାମ ଯୁଦ୍ଧରେ ପ୍ରାଣ ହରାଇବାରୁ ତାର ତୀବ୍ର ପ୍ରତିକ୍ରିୟା ସମାଜ ଉପରେ ଚକ୍ର ପ୍ରଭାବ ପକାଇଲା ।

ଜାଣି ତ ଆମେରିକାର ବିରାଟ ଜଡ଼ବାଦୀ ସଭ୍ୟତା ତାର ଅଧିବାସୀଙ୍କୁ ଅନେକଟା ଉଦ୍ଭଟ କରିଛି । ତା' ସାଙ୍ଗକୁ ଭିଏତ୍‌ନାମ ଯୁଦ୍ଧର ଅର୍ଥନୈତିକ ଓ ସାମାଜିକ ପ୍ରତିକ୍ରିୟା ଆମେରିକାନ୍‌ମାନଙ୍କ ମଧ୍ୟରୁ ଅନେକଙ୍କୁ ଅତିଷ୍ଠ କରି ପକାଇଛି । ସେଥିରେ ପ୍ରଭାବିତ ହୋଇ ସେ ଦେଶର ବିଶେଷତଃ ଗରିବ ଶ୍ରେଣୀର ଯୁବକ-ଯୁବତୀ ନିଜର ମାନସିକ ଭାରସାମ୍ୟ ରକ୍ଷା ନ କରିପାରି ସାଜିଛନ୍ତି ହିପ୍‌ପୀ । କୌଣସି ଭଲମନ୍ଦ ସୁବିଧା ଅସୁବିଧା କଥା ବିଚାର ନକରି ଯାଯାବର ବେଶରେ ଦେଶବିଦେଶ ବୁଲୁଛନ୍ତି ।

ଏହି ବେଆଡ଼ା, ଉଦ୍‌ଭଟ ହିପ୍‌ପୀ ସଭ୍ୟତା ପୃଥିବୀର ବିଭିନ୍ନ ଦେଶରେ ଦେଖାଦେଇଛି । ଏହା ଏକ ପ୍ରକାର ବିପ୍ଳବ ଏବଂ ଏହାର ମୂଳ କାରଣ ଅର୍ଥନୈତିକ ଓ ସାମାଜିକ ଦୁର୍ଗତି ଏବଂ ଆଧୁନିକ ଯୁଗର ନବ ବଂଶଧରମାନଙ୍କର ଖାମଖିଆଲି, ବେହୁସିଆରି ମନୋଭାବ । ଏହି ଖାମଖିଆଲି, ବେହୁସିଆରି ମନୋଭାବ ବି ବିଲାତରେ ଦେଖା ଦେଇଛି, ଅବଶ୍ୟ ଅନ୍ୟ କାରଣରୁ । ବ୍ରିଟିଶ୍ ଲୋକେ ଦିନେ ଥିଲେ ବିରାଟ ସାମ୍ରାଜ୍ୟ, ଅସୀମ କ୍ଷମତାର ଅଧିକାରୀ । ଆଗେ ଯେକୌଣସି ବିଲାତି ଯୁବକ ଆଶା କରୁଥିଲା, ସ୍ୱପ୍ନ ଦେଖୁଥିଲା ସେ ଦିନେ କେଉଁଠି ଲର୍ଡ କି ବଡ଼ଲାଟ କି ଜଙ୍ଗୀ ଲାଟ ହେବ ବା ଦେଶବିଦେଶରେ କୌଣସି ଉଚ୍ଚ ଚାକିରି କରିବ, ନୋହିଲେ ସାମ୍ରାଜ୍ୟର କୌଣସି ଅଞ୍ଚଳରେ ବେପାର ବାଣିଜ୍ୟ କରି ହେବ ବିପୁଳ ସମ୍ପତ୍ତିର ଅଧିକାରୀ । ଯୁବତୀମାନଙ୍କର ବି ଆଶା ଆକାଂକ୍ଷା ପୂରଣ କରିବାର ଆଗେ ବହୁ ସୁବିଧା ଥିଲା । ଅନ୍ତତଃ ସେ କେଉଁ ଲର୍ଡ,

ବଡଲାଟଙ୍କର ପ୍ରେୟସୀ ବା କେଉଁ ଉଚ୍ଚ ପଦସ୍ଥ ସରକାରୀ କର୍ମଚାରୀ ବା ଶିଳ୍ପପତିଙ୍କର ଅର୍ଦ୍ଧାଙ୍ଗିନୀ ହୋଇପାରିଥାନ୍ତେ । ଏବେ ସେ ସୌଭାଗ୍ୟ ନାହିଁ । ଦ୍ୱିତୀୟ ମହାଯୁଦ୍ଧ ପରେ ବ୍ରିଟିଶ ସୌଭାଗ୍ୟ ରବି ଅସ୍ତମିତ ହୋଇଯାଇଛନ୍ତି । ସାମ୍ରାଜ୍ୟର ପ୍ରାୟ ସବୁଦେଶ ସ୍ୱାଧୀନ ହୋଇ ଏମାନଙ୍କ ହାତଛଡା ହୋଇଗଲେଣି । ତେଣୁ ଆଜକାଲର ବ୍ରିଟିଶ ଯୁବକ ଯୁବତୀ ସେମାନଙ୍କ ପୂର୍ବପୁରୁଷମାନଙ୍କର ସୌଭାଗ୍ୟ ସୁବିଧା ହରାଇ ଏକ ଅପ୍ରକାଶ୍ୟ, ଅଘୋଷିତ ବିପ୍ଳବର ଶିକାର ହୋଇଛନ୍ତି । ଅନେକଟା ସେହି କାରଣରୁ ଜନ୍ ପ୍ୟାଣ୍ଟ୍, ମିନିସ୍କାର୍ଟ ପିନ୍ଧି ବେଆଡ଼ା, ବେହୁରିଆଣ ଭାବରେ ଜୀବନକୁ ଉପଭୋଗ କରିବାର ଚେଷ୍ଟା କରୁଛନ୍ତି ।

---

## କୃଷ୍ଣ ଗୋଟିକେ ଗୋପିକା ଗୋଟିଏ

ରଜେଣ୍ଟ ପାର୍କରେ ଯେତେବେଳେ ମୁଣ୍ଡ, ଆଖି କାର୍ଯ୍ୟବ୍ୟସ୍ତ ଥିଲେ ପେଟ ତାର ଆକୁଳ ଆବେଦନ ମଝିରେ ମଝିରେ ଶୁଣାଉଥାଏ ତା' କଥା ଟିକ ଚିନ୍ତା କରିବାକୁ ! ଗୃହଆଡ ନେମିତ୍ତ ଟିକଏ ଅନ୍ଧାରିଆ ହୋଇ ଆସିଲ ରାତ୍ରିର ଆଗମନରେ ଏହି ଆବେଦନଟା ଆନ୍ଦୋଳନରେ ପରିଣତ ହେଲା । ଆଉ କିଛି ଭଲ ଲାଗିଲାନି । ତେଣେ ଭୌମିକ ଖାଲି କୁନ୍ଦ ପକାଉଥାଏ, 'ଚାଲ ଯିବା' 'ଚାଲ ଯିବା', କହି । ତେଣୁ ଅବିଳମ୍ବେ ସେ ପାର୍କରୁ ବାହାରିଯାଇ ନିକଟସ୍ଥ ଏକ ରେଷ୍ଟୁରାଂରେ କିଛି ଜଳପାନ କରି ପୁଣି ବୁଲି ବାହାରିଲୁ ।

ଚାଲି ଚାଲି ଯାଉଥାଉ । ଦେଖିଲି ଠାଏ ଠାଏ କଣିଆ ଅନ୍ଧାରିଆ ଜାଗାରେ ଯୁବକ-ଯୁବତୀ ଦଳ ଦଳ ହୋଇ ଠିଆ ହୋଇ ପରସ୍ପରକୁ କୋଳାକୋଳି କରୁଚନ୍ତି । କିନ୍ତୁ ଏତ କେବଳ କୋଳାକୋଳି ନୁହେଁ, ଖାଣ୍ଟମତ ଉପପ୍ରୀତି । ଆଗରୁ ଅନେକ ଏପରି ଦୃଶ୍ୟ ମୁଁ ଦେଖିଥିଲି । ହେଲେ କାର୍ଯ୍ୟବ୍ୟସ୍ତତା ହେତୁ ସେସବୁ ବିଶେଷ ଭାବରେ ଲକ୍ଷ୍ୟ କରି ନଥିଲି । କାହାକୁ ପଚାରି ଏ ସମ୍ବନ୍ଧରେ ସବିଶେଷ ତଥ୍ୟ ସଂଗ୍ରହ କରିବା ସମ୍ଭବ ନୁହେଁ । ତେବେ ଆଜି ଭୌମିକ ସାଙ୍ଗରେ ଥିବାରୁ ତାକୁ ନାନା କଥା ପଚାରି ନିଜର ସନ୍ଦେହ ମୋଚନ କରିବାରେ ଲାଗିଲି । ବିଚିତ୍ର ଏ ଘଟଣା ! ରାସ୍ତାଘାଟରେ ଏ ଅବିଦ୍ୟା ! ଏତେ ଲୋକ ଯା'ଆସ କରୁଚନ୍ତି । ସେମାନେ ସବୁ ଦେଖୁଚନ୍ତି । ଏମାନଙ୍କର ଲଜ୍ଜା ସଙ୍କୋଚ ବୋଲି କଣ କିଛି ନାହିଁ ?

"କିଛି ନାହିଁ ।" ଜଣେ ନିରପେକ୍ଷ ଗବେଷକ ଢଙ୍ଗରେ ଭୌମିକ ତାର ଭାଷଣ ଆରମ୍ଭ କଲା । ଏଇଟା ଏମାନଙ୍କର ନିତ୍ୟନୈମିତ୍ତିକ କାର୍ଯ୍ୟ । ରାସ୍ତାଘାଟରେ, କ୍ଲବ ମୈଦାନରେ, ଗଛ ତଳେ, ବୃନ୍ଦାମୂଳେ କୁକୁର-କୁକୁରୀଙ୍କ ପରି ଏ କାରବାର ଚାଲେ । ଏବେ ଗୋଟିଏ ଆଇନ୍ ହେବା ଫଳରେ ଟିକିଏ ଏହାର ମାତ୍ରା କମିଯାଇଛି ନୋହିଲେ ଅବସ୍ଥା ଏକବାରେ ଅକଥନୀୟ ଅଦର୍ଶନୀୟ ଥିଲା । ଯୁବକ ଯୁବତୀମାନେ ବହୁ ବର୍ଷ ପର୍ଯ୍ୟନ୍ତ ଏହି ଉପାୟରେ ସଂଯମ ରକ୍ଷା କରନ୍ତି ।

: ସଂଯମ ରକ୍ଷା କରନ୍ତି ନା ସ୍ଖଳନର ଚରମ ସୀମାକୁ ଯାଆନ୍ତି ?

: ଯାହା ବୁଝ ।

ମୋତେ ଚିନ୍ତା କରିବାକୁ ଯେମିତି କିଛି ଖୋରାକ୍ ମିଳିଗଲା । କଣ ଏ କଥା ! ଅବଶ୍ୟ ମନୁଷ୍ୟର ଏ ପଶୁପ୍ରକୃତିଟା ଚିରନ୍ତନ । ସବୁ ଦେଶରେ ସବୁ ସମାଜରେ ଏ ବ୍ୟଭିଚାରଟା କୌଣସି ନା କୌଣସି ପ୍ରକାରରେ ରହିଛି । ଅନେକ ସ୍ଥଳରେ ଏହା ଅତି ଜଘନ୍ୟ ଉତ୍କଟ ରୂପ ନେଇଥାଏ । କିନ୍ତୁ କାହିଁକି ଏସବୁ ଘଟେ ? କଣ ପାଇଁ ଅମୃତସନ୍ତାନ ମାନବ ଯେ ସହସ୍ର ସହସ୍ର ବର୍ଷର ସାଧନା ଓ ଚେଷ୍ଟା ଫଳରେ ନିଜ ପଶୁ ପ୍ରବୃତ୍ତିକୁ ଦମନ କରି ସଭ୍ୟତା ଓ ଭଦ୍ରତାର ବାଟ ଧରିଛି, ସେ ଏ ଅସଭ୍ୟ ପ୍ରଥା ଅବଲମ୍ବନ କରୁଛି !

ଏଥିରେ ବିଚରା ମନୁଷ୍ୟକୁ ଦୋଷଦେଇ କିଛି ଲାଭ ନାହିଁ । ଦୋଷ ହେଉଛି ତାର ପଶୁ ପ୍ରକୃତିର ଓ ଶାରୀରିକ ଉପାଦାନର । ପୁରୁଷ, ସ୍ତ୍ରୀ ଉଭୟଙ୍କର ପ୍ରଯୋଜନ ( Reproduction ) ପ୍ରକ୍ରିୟା ପ୍ରକୃତିଗତ । ଏହି ପ୍ରଯୋଜନ ଶକ୍ତି ଏକ ତରଳ ରାସାୟନିକ ଦ୍ରବ୍ୟ ଆକାରରେ ସମ୍ପୃକ୍ତ ଯୌନ ଅଙ୍ଗରେ ଜମା ହୋଇ ରହେ ଏବଂ ତାହାର ନିଷ୍କାସନ ( Evacuation ) ପାଇଁ ସେ ମନୁଷ୍ୟର ସାରା ଶରୀର ଓ ମନ ଉପରେ ପ୍ରବଳ ଚାପ ପକାଏ । ଏହି ପ୍ରଯୋଜନ ଶକ୍ତି କିଶୋର ଅବସ୍ଥାରୁ ଉଦ୍ଭବ ହୁଏ । ତାର ନିଷ୍କାସନର ଉଚିତ ପନ୍ଥା ହେଲା ବିବାହ । କିନ୍ତୁ ଏହି ବିବାହ ପାଇଁ ଯୁବକ ଯୁବତୀଙ୍କୁ ବହୁକାଳ ଅପେକ୍ଷା କରିବାକୁ ପଡେ । ତେଣୁ ଏହି ପ୍ରଯୋଜନ ଶକ୍ତିର ନିଷ୍କାସନ ବିବାହବିଧି ଏକ ଦୁରୂହ ବ୍ୟାପାର ହୋଇ

ପଡେ । କେବଳ ଅବିବାହିତ ଯୁବକ ଯୁବତୀ ନୁହନ୍ତି, ବହୁ ବିଧବା-ବିପତ୍ନିକ, ବିବାହିତ ପୁରୁଷ-ସ୍ତ୍ରୀ ବି ଏହି ପ୍ରକ୍ରିୟାର ଶିକାର ହୁଅନ୍ତି ।

ଆମ ହିନ୍ଦୁ ସମାଜର ପୂର୍ବ ପୁରୁଷମାନେ କୋମଳ ବୟସରୁ ବାଳକ-ବାଳିକାମାନଙ୍କର ବିବାହ ସମ୍ପନ୍ନ କରି ଏ ସମସ୍ୟାର ଏକ ପ୍ରକାର ସମାଧାନ କରିଥିଲେ । କିନ୍ତୁ ବାଲ୍ୟ ବିବାହରେ ଅସୁବିଧା ବହୁତ । ତରୁଣ ଅବସ୍ଥାରୁ ଯୌନ ପ୍ରକ୍ରିୟାରେ ଲିପ୍ତ ରହିଲେ ମାନସିକ ଓ ଶାରୀରିକ ଦୁର୍ବଳତା ସୃଷ୍ଟି ହୁଏ । ବହୁ ପୁତ୍ରକନ୍ୟା ଜାତ ହୁଅନ୍ତି ଯେଉଁମାନଙ୍କ ମଧ୍ୟରୁ ଅନେକ ଖୁବ୍ ସ୍ୱାସ୍ଥ୍ୟବାନ୍ ଓ ବୁଦ୍ଧିମାନ୍ ହୋଇପାରନ୍ତି ନାହିଁ । କିନ୍ତୁ ପୂର୍ବ କାଳରେ ଜନସଂଖ୍ୟା ଏକ ସମସ୍ୟା ନଥିଲା ଏବଂ ଶିକ୍ଷାପ୍ରଣାଳୀ ସେତେ ବ୍ୟାପକ ଓ ଜଟିଳ ହୋଇ ନଥିବାରୁ ମାନସିକ ଶକ୍ତିର ବିକାଶ ଉପରେ ସେତେ ଜୋର କେହି ଦେଉନଥିଲେ । ଏକେ ତ ଭୌତିକ ଅଭିବୃଦ୍ଧି ସେମାନେ ସେତେ ବଡ଼ କରି ଦେଖୁ ନଥିଲେ । ପୁଣି ଇହଜନ୍ମରେ ସେହି ଅଭିବୃଦ୍ଧି କଷ୍ଟସାଧ୍ୟ ହେଉଥିବାରୁ ପରଜନ୍ମର ସୁଖଶାନ୍ତି କଥା ସେମାନେ ଚିନ୍ତା କରୁଥିଲେ । ପ୍ରଗାଢ଼ ଧର୍ମବିଶ୍ୱାସ ଓ ଗଭୀର ଭଗବତ୍ ଭକ୍ତି ହେତୁ ସବୁ ଦୁଃଖଯନ୍ତ୍ରଣା ବିନା ଓଜର ଆପତ୍ତିରେ ସହି ନେଉଥିଲେ । ତେଣୁ ସମାଜରେ ସେତେ ଗୋଳମାଳ ନଥିଲା, ପରିବାରରେ ସେତେ ଅଶାନ୍ତି ନଥିଲା ।

କିନ୍ତୁ କ୍ରମେ ଯେପରି ଯାନ୍ତ୍ରିକ ଓ ଭୌତିକ ସଭ୍ୟତାର ବିକାଶ ଘଟିଲା ମାନବ ସାମାଜରେ ନାନା ସମସ୍ୟା ସୃଷ୍ଟି ହେଲା । ଲୋକେ ଯେମିତି ବୁଝିଁଲେ ସେମିତି ଚଳିଲେ । ପୂର୍ବର ଭଲମନ୍ଦ, ସଭ୍ୟ ଅସଭ୍ୟ ଆଚରଣର ମୂଲ୍ୟବୋଧ କମିଗଲା । ଭଗବତ୍ ବିଶ୍ୱାସ କମିଯିବାରୁ ବା ତୁଟି ଯିବାରୁ ଓ ବ୍ୟକ୍ତିଗତ ସ୍ୱାଧୀନତା ବଢ଼ିଯିବାରୁ ଲୋକେ ଯଥେଚ୍ଛାଚାରୀ ହେଲେ । ବ୍ୟକ୍ତିଗତ ସୁଖସ୍ୱାଚ୍ଛନ୍ଦ୍ୟ ଚିନ୍ତାରେ ଯେତେବେଳ ପାରନ୍ତି ବିବାହକୁ ଏଡ଼ି ଚାଲିଲେ । କିନ୍ତୁ ଗରଜେ କଲୁ ଅଧିକାରୀ, ପ୍ରକୃତି ଛାଡ଼ିବ କିପରି ? ତେଣୁ ନାନା ଉଦ୍ଭଟ ଉପାୟରେ ପାର୍କମଇଦାନରେ, କ୍ଲବରେ, ରାସ୍ତା କଣରେ ସେହି ପ୍ରକୃତି ମେଣ୍ଟାଇବାରେ ଲାଗିପଡ଼ିଚନ୍ତି ।

ଏହି ତଥ୍ୟରୁ ଥୋଡ଼ାଏ ଭୌମିକକୁ ଶୁଣାଇଲି । ସେ କହିଲା ସବୁ ଦୋଷ ସରକାରଙ୍କର । ଏମାନଙ୍କ ଭିତରୁ ଅନେକଙ୍କର ତ ନଜର ଘରଦ୍ୱାର ନାହିଁ ଆଉ ଏମାନେ ବିବାହ କରି ଚଳିବେ କେମିତି ! ସରକାର ଯଦି ଗୁଡ଼ାଏ ବେଶ୍ୟା ପଡ଼ା କରିଦିଅନ୍ତେ, କି ପାରିଶ୍ରରେ ତୁମେ ଯେଉଁ ନିଷ୍କାସନ ପ୍ରବୃତ୍ତି କଥା କହୁଚ ତା' ପାଇଁ ନାନା ଯାନ୍ତ୍ରିକ ପଦ୍ଧତି ବ୍ୟବସ୍ଥା କରିଚନ୍ତି ବୋଲି ସେମିତି କିଛୁ କରନ୍ତେ ତେବେ ସିନା ହୁଅନ୍ତା । କେଉଁଠି । ଜନସଂଖ୍ୟା ବଢ଼ି ଯାଉଛୁ ବୋଲି ପ୍ରଯୋଜନ ପ୍ରକ୍ରିୟାକୁ ସଙ୍କୁଚିତ କରାଯାଉଛି, କେଉଁଠି ଜନ ସଂଖ୍ୟା କମିଯାଇ ଥିବାରୁ ତାକୁ ଉତ୍ସାହିତ କରାଯାଉଛି । ଏଣେ କିନ୍ତୁ ସୁରୁଖୁରୁରେ ବୈବାହିକ ଜୀବନ କଟାଇବାକୁ ଘରଦ୍ୱାର ନାହିଁ । ତେଣୁ ଭୁଲିଚି ରାସ୍ତାଘାଟରେ କେଳି, ମୋତେ ଟିକିଏ ହସମାଡ଼ିଲା । ଭାବିଲି ଭୌମିକଟା ମୋଟାବୁଦ୍ଧିଆ ହେଲେ କଣ ହେବ ତାର ବଗୁର ତ ବେଶ୍ ସୂକ୍ଷ୍ମ ।

ଭୌମିକ ସହିତ କଥାବାର୍ତ୍ତା କରି ଠିକ୍ କଲି, ପ୍ରଥମେ ଟିକିଏ ହାଇଡ୍ ପାର୍କକୁ ଯିବୁ । ତା'ପରେ ଯେଉଁଠି ଯୁଆଡେ ସମ୍ଭବ ବୁଲିବୁ । ଏହି ହାଇଡ୍ ପାର୍କକୁ ବାରମ୍ବାର ଗଲେ ବି ତା'ପ୍ରତି ମୋର ମମତା ତୁଟି ନଥାଏ । ସତେ ଯେପରି କୌଣସି ଆକର୍ଷଣୀ ଶକ୍ତି ସେଠାରେ ଭରି ରହିଚି ଯେ ଅଦୃଶ୍ୟ ଭାବରେ ମୋତେ ସବୁବେଳେ ଟାଣୁଥାଏ । କିନ୍ତୁ କଣ ବା ସେଠାରେ ଟାଣିବାର ଅଛି । କଣ ଅଛି ନିଷ୍ପୃହ । ମୁଁ ସିନା ଦେଖି ପାରୁନି । ନୋହିଲେ ଲୋକେ ହାଇଡ୍ ପାର୍କ, ହାଇଡ୍ ପାର୍କ ବୋଲି ହାଉ ହାଉ ହେଉଥାନ୍ତେ କାହିଁକି ? ନା କିଛି ଅଛି । କେଉଁଠି ହେଲେ ଅଛି । ତାକୁ ଖୋଜି ବାହାର କରିବାକୁ ହେବ । ତେଣୁ ଭୁଲି ହାଇଡ୍ ପାର୍କ ।

ସବୁ ଆଡେ ସେଇ ବଚିତ୍ର ଦୃଶ୍ୟ । ଯୋଡ଼ ଯୋଡ଼ା ହୋଇ ଉଭା କେଳରେ ମାତି ଉଠିଥାନ୍ତି ଯୁବକ ଯୁବତୀ । କୃଷ୍ଣ ଗୋଟିକେ ଗୋପୀକା ଗୋଟିଏ । ଯେଉଁମାନେ ସେ ରାସ୍ତା ଦେଇ ଯା' ଆସ କରୁଥାନ୍ତି ସେମାନଙ୍କର ଏସବୁ ଦେହସୁହା, ଆଖିସୁହା ହେଇଗଲାଣି । ସବୁ ଦେଖିଲେ ବି ନଦେଖିଲା ପରି ଭୁଲିଯାଇଥାନ୍ତି ।

ଆମେ ବସନ୍ତ ଓହ୍ଲାଇଲୁ ହାଇଡ୍ ପାର୍କ କର୍ଣ୍ଣରରେ । ସେଠାରୁ ଚାଲି ଚାଲି ଆଗେଇଲୁ । ବାଟରେ ଯେଉଁଠି କୌଣସି ଏକାକିନୀ ଯୁବତୀଙ୍କୁ ଭୌମିକ ଦେଖୁଥାଏ ସହାସ୍ୟ ବଦନରେ ଖାଣ୍ଟି ପ୍ରେମିକଠାଣିରେ ତାଙ୍କୁ "ହାଲୋ" ବୋଲି ସମ୍ବୋଧନ କରୁଥାଏ । ଯେଉଁମାନେ ଏହି "ହଲୋ"ର "ହଲୋ" କହି ପ୍ରତ୍ୟୁତ୍ତର ଦେଲେ ଭୌମିକ ସେମାନଙ୍କ ସଙ୍ଗେ ମିଶିଯାଇ କଣ କଥାବାର୍ତ୍ତା କଲା । ଏତିକିରେ ସେ ମୁଗ୍ଧ ହୋଇଯାଇଥାଏ । ମୁଁ ସବୁଟା ବସ୍ମାରତ ନେତ୍ରରେ ଲକ୍ଷ୍ୟ କରୁଥାଏ । ପରିସ୍ଥିତିଟା ବେଶ୍ ଆନନ୍ଦଦାୟକ, ବେଶ୍ ରୋମାଞ୍ଚକର ମନେ ହେଲା । ହେଲେ ଭୌମିକ ଯେତେବେଳେ ମୁହଁ ଶୁଖେଇ ହତାଶ ପ୍ରେମିକ ଢଙ୍ଗରେ ଫେରିଆସିଲା ତାକୁ କୌତୁକ କରି ପଚାରିଲି "କଣ ହେଲା ? କଣ ଅନୁଗ୍ରହ କରିବେନି ବୋଲି ମନା କଲେ ?"

ଭୌମିକ ମୋ କଥା ପୂରା ଶୁଣିଲା କି ନାହିଁ କେଜାଣି ! ରାଗ ଓ ହରକ୍ତିରେ ଫାଟି ପଡ଼ି କହିଲା "ଠିକିଏ ପଚାରୁଥିଲି ଯେ ଶଳା ଭାଉ ଦେଖୋଉଚନ୍ତ ?"

ଭାବିଲି ବ୍ୟାକରଣ ଭୁଲ ହେଇଗଲା । ଝିଅଗୁଡ଼ାକ ଶଳା କମିତି ହେବେ ? ଶାଳୀ ହେବେ ନା ! କିନ୍ତୁ ତାକୁ ଏ କଥା କହିଲି ନି । ଥାଉ, ହାଇଡ୍ ପାର୍କରେ ବ୍ୟାକରଣ ଚର୍ଚ୍ଚା ! ବୁଝିବାକୁ ହେବ ଭୌମିକର ଅଭିଧାନରେ ଶଳା ଶବ୍ଦଟା ଉଭୟ ଲିଙ୍ଗ ।

– ପୁଣି କଣ ହେଲା ? ଛଳେଇ ପଚାରିଲି !

—ସବୁ ଖବର ଦେଲେ । ଶ—

– କେଉଁ ଖବର ? ରାଜନୈତିକ ନା ଅର୍ଥନୈତିକ ?

– ଆଜି କେଉଁ କ୍ଲବରେ ଭଲ ପ୍ରୋଗ୍ରାମ୍ ଅଛି, କେଉଁ ନାଇଟ୍ କ୍ଲବକୁ ଗଲେ ଭଲ ମଜ୍ଜା ହେବ ଇତ୍ୟାଦି କିନ୍ତୁ ଶ—

—କିନ୍ତୁ ନିଜେ ଯିବାକୁ ମନା କଲେ ?

– ମନା କାହିଁ କରନ୍ତେ ! ଭାଉ ! ଶ –

କହିଲେ ଆମର ସାଥୀ ଅଛନ୍ତି । ଖାଲି ଭାଉ, ଶ –

ସାଥୀ ଅଛନ୍ତି ତ ଆଉ ଏମିତି ଟୋ ଟୋ ହୋଇ ଏକା ଏକା ବୁଲୁଚନ୍ତି କାହିଁକି ! ଖାଲି · ·ଣ—

—ଖାଲି ?

—ଆମଠାରୁ ଦାମିକା ସାଥୀ ଖୋଜୁଚନ୍ତି ।

—ଦାମିକା ସାଥୀ ?

ହଁ ଯେ ତାଙ୍କ ପିଗ୍ଠୁ ବେଶୀ ପାଉଣ୍ଡ ଖର୍ଚ୍ଚ କରିପାରିବ । ଏମାନଙ୍କୁ ଭଲ ଖାଇବାକୁ ପିଇବାକୁ ଦେଇପାରିବ । ସିନେମା ଥିଏଟର ନେଇ ପାରିବ· · ·ଣ—

—ଓ !

ଓ ! ଏତେବେଳକୁ ଆମେ ବକ୍ତା କୋଣ (Speakers' Corner) ପାଖରେ ପହଞ୍ଚିଯାଇଥାଉ । ବକ୍ତୃତାକାରୀମାନେ ଉଚ୍ଚୈଃ ସ୍ୱରରେ ସେମାନଙ୍କର ଭାଷଣ ଦେଇଚାଲିଥାନ୍ତି । ଓଃ ! କି କଣ୍ଠଫଟା ଚିତ୍କାର ! ଆଖି ତରାଟି, ହାତ ଛୁଆଁଉ ଏକେବାରେ ବାତୁଳ ଭାବରେ କହିଚାଲିଥାନ୍ତି । ମୁଁ ମନ ପୂରେଇ ସବୁ ଶୁଣିବାକୁ ଚେଷ୍ଟା କଲି । ଭୌମିକ କହିଲେ "କଣ ମିଳିବ ସେଗୁଡ଼ାକରୁ ? ଚାଲ କିଛି ରୋମାଞ୍ଚକର ଘଟଣା ଦେଖିବା ।"

—ଏତ ସବୁ ରୋମାଞ୍ଚକର । ଆଉ କଣ ଅଧିକା ରୋମାଞ୍ଚକର ଦେଖିବ ?

—ନାହିଁ, ଦେଖନ୍ତୁ କିମିତି ଘାସ ଉପରେ ଯୋଡ଼ି ଯୋଡ଼ି ହୋଇ ଗଡ଼ି ଯାଉଚନ୍ତି ।

—ସେସବୁତ ଢେର ଆଗରୁ ଦେଖିଥାଇ । ଏମାନେ କଣ ରାତିପାକ ଇମିତି କଟେଇବେ ?

—ନା, ଏଇଟା ପୂର୍ବରାଗ ପର୍ବ । ପରେ କେଉଁ କ୍ଲବକୁ ଯିବେ କଲୁ ଦୁଃଖଟା କେଉଁଠି ଜାଣ ?

— ସେଥିରେ ତୋର ଭାଗ ପଡ଼ୁନି । ମୁଁ ଛଳେଇ ଉତ୍ତର ଦେଲି ।

—ଭାଗ ପଡ଼ିବା ସେମିତି କଷ୍ଟକର ନୁହେଁ । ପାଖରେ ପାଉଣ୍ଡ ଥିଲେ

ସବୁ ସମ୍ଭବ । କିନ୍ତୁ ମାତ୍ର କେତେ ସମୟ ପାଇଁ ଏତେ ଅର୍ଥବ୍ୟୟ !

—କାହିଁ ରହୁନୁ ରାତିଯାକ । ବାହାରରେ ତ ରାତି ବଡ଼ ।

—ବଡ଼ ରାତିକ ବଡ଼ ପଇସା । ଏତେ ଖର୍ଚ୍ଚ କରିବା ସମ୍ଭବ ନୁହେଁ । କେତେ ପାଖରେ ଅଛି ?

— ଦଶ ପାଉଣ୍ଡ ଖଣ୍ଡେ ।

—ଧେତ୍ ! ସେତ ପାଣିରେ ଭାସି ଯିବ ।

—ଆମେ ପାଣି କାହିଁ ପିଇବା କି ?

—କିନ୍ତୁ ପିଆଇବାକୁ ଯେ ପଡ଼ିବ । ପୁଣି ନିଜେ ନ ପିଇଲେ କଣ ଜମିବ ?

—ନିଶ୍ଚୟ ! ପାଣି ପବନ ଲାଗି ଦେହ··· ·

—ଶଳା ଏ ଧନିକ ପିଲାଙ୍କୁ ଦେଖିଲେ ଈର୍ଷା ହୁଏ । ସେମାନେ ଏଠାରୁ ଯିବେ ବଡ଼ ବଡ଼ ହୋଟେଲକୁ । ସେଠି ପିଇ, ଖାଇ ମୁହାଁଇବେ ନାଇଟ୍ କ୍ଳବକୁ । ସେଠାରେ ସାରା ରାତିଟା କଟେଇବେ । ଶନିବାର ରାତିରେ ଲଣ୍ଡନ ସହରରେ ବେଶ୍ ମଜା ହୁଏ । ରବିବାରକୁ ତାର ତୋଡ଼ ରହେ ନି । ପର ଦିନ ଅଫିସ, ଦପ୍ତର, ସ୍କୁଲ୍, କଲେଜରେ ଯୋଗ ଦେବାକୁ ହେବ କିନା !

—ହଁ, ସେଇ ଯୋଗେ ବୋଧହୁଏ ଏଠି ସୋମବାରକୁ Black Monday ବୋଲି କହନ୍ତି ।

ବାସ୍ତବିକ୍ ବାହାରବାସୀ ଖୁବ୍ ସମୟାନୁବର୍ତ୍ତୀ । ଡେରି ହେବାର ଭୟ ଥିଲେ ଏମାନେ ଦଉଡ଼ି ଦଉଡ଼ି ଦପ୍ତରକୁ ଆସନ୍ତି । ବେଶ୍ କର୍ମତତ୍ପର ବି । ରାସ୍ତା ମରାମତି ହେଉ, ଇଲେକ୍ଟ୍ରିକ୍ ଲାଇନ୍ ସଜଡ଼ା ହେଉ ସବୁ ଯନ୍ତ୍ରପାତି ଓ ଆସବାବ୍ ସଜିଲ ସାଜିଲ କରି ଆଣିଥିବେ ଏବଂ ଯଥାଶୀଘ୍ର କାମଟିକୁ ସାରି ଦେବେ । ପାଟିତୁଣ୍ଡ ନାହିଁ ଓଜର ଆପତ୍ତି ନାହିଁ ।

ଥରେ ଲଣ୍ଡନରେ ବସ୍‌ରେ ଗଲାବେଳେ ଦେଖିଲି ଗୋଟାଏ ଜାଗାରେ ରାସ୍ତା ଖରାପ ହୋଇଯାଇଛି । ଖରାପ ବୋଲି ଆମ ଦେଶର ରାସ୍ତା ଖରାପ ପରି ନୁହେଁ । ଗାତ କି ଖାଲ ହୋଇ ନଥିଲା ବା ଗୋଡ଼ ମାଟି ଢେମା ପଥର ଆଦି ବାହାରି ନଥିଲା । ଖାଲି ପିଚୁ ଉଠି ଯାଇଥିଲା । ତେବେ ସେଇଟା ଟିକିଏ ବ୍ୟାପକ ଭାବରେ ହୋଇଥିଲା । ଲଣ୍ଡନର ସବୁ ରାସ୍ତା ତ ବେଶ୍ ଚକ୍ ଚକ୍ । ତେଣୁ ଏ ପିଚୁବିହୀନ ଅଂଶଟା ବଡ଼ ବେଆଡ଼ା ଲାଗୁଥିଲା । ଭାବିଲି କମିତି ଯୁାଙ୍କୁ ମରାମତି କରିବେ ! ଏ ରାସ୍ତାରେ ତ ସବୁବେଳେ ଭାରି ଭିଡ଼, ଯୁାଙ୍କୁ ତ ବନ୍ଦ କରିବା ସମ୍ଭବ ନୁହେଁ । ତେବେ ପୁଣି କଣ କରିବେ ? ତହିଁ ଆରଦିନ ଦେଖିଲି ବେଳକୁ ରାସ୍ତା ମରାମତି ହୋଇଯାଇଛି । ରାତାରାତି କାମ କରି ସବୁ ସାରି ଦେଇଛନ୍ତି । ଏ କିମିତି ସମ୍ଭବ ହେଲା ? ଆମ ଦେଶ ହୋଇଥିଲେ ମାସ ମାସ ଧରି କି ବର୍ଷ ବର୍ଷ ଧରି ଜାଗାଟା ଖୋଳା ହୋଇ ପଡ଼ିଥାନ୍ତା । ଗୋଡ଼ ବାଲି ଆସି ଜମା ହୋଇଥାନ୍ତା । ତାକୁ ଲୋକେ ଚୋରି କରି ନେଇଥାନ୍ତେ କି ପାଣି ପବନରେ ଯିବା ଆସିବାରେ ସେ ନଷ୍ଟ ହୋଇଯାଇଥାନ୍ତା । ପୁଣି ସେସବୁ ଆସି ଜମା ହୁଅନ୍ତା । ପୁଣି ସେ ଚୋରି କି ନଷ୍ଟ ହୋଇଗଲେ ପୁଣି ସେସବୁ ଆସନ୍ତା । ବହୁଦିନ ଧରି ରାସ୍ତାରେ ଦଉଡ଼ ବନ୍ଧା ହୋଇଥାନ୍ତା । ଏ ସମ୍ବନ୍ଧରେ ନାନା ଆପତ୍ତି ଅଭିଯୋଗ ଖବର କାଗଜରେ ଛପା ହୁଅନ୍ତା । ହୁଏତ ବିଭାଗୀୟ ମନ୍ତ୍ରୀଙ୍କ ଦୃଷ୍ଟି ଏଥି ପ୍ରତି ଆକୃଷ୍ଟ କରାଯାଇଥାନ୍ତା । ଶେଷରେ କାମଟା କୌଣସିମତେ କରାଯାଇଥାନ୍ତା । ସେ ପୁଣି ଏପରି ଅନାଡ଼ି ଭାବରେ କରାଯାଇଥାନ୍ତା ଯେ ଖୁବ୍ ଅଳ୍ପଦିନ ଭିତରେ ତାରି ପୁନର୍ବାର ମରାମତି ଆବଶ୍ୟକ ହୋଇପଡ଼ନ୍ତା !

ଇମିତି ଏଣୁ ତେଣୁ ଭାବି ପାର୍କ ଭିତରେ ଅନ୍ୟମନସ୍କ ଭାବରେ ବୁଲୁଥାଏ । ଭୌମିକ ଥାଏ ବାନ୍ଧବୀ ଅନ୍ୱେଷଣରେ । ହଠାତ୍ ଦୃଷ୍ଟି ପଡ଼ିଲା ଏକ ଯୁଗଳ ମୂର୍ତ୍ତି ଉପରେ । ଯୁବକ ଜଣକ ଟିକିଏ ଖର୍ବକାୟ, ବାଙ୍ଗର କନ୍ତୁ ସ୍ତ୍ରୀ ଜଣକ ବେଶ୍ ଲମ୍ବ ଓ ମୋଟାମୋଟି । ରାତି ହେଲେ ବି ପାର୍କର ନିର୍ମଳ ଆଲୁଅରେ ସେମାନେ ବେଶ୍ ଚିହ୍ନା ମନେହେଲେ । କି କଥାଏ ! ଲଣ୍ଡନ ସହରର ହାଇଡ୍ ପାର୍କ । ସେଠାରେ କିଏ ଦୁଇଜଣ ପ୍ରେମାଶକ୍ତ ପୁରୁଷ-ସ୍ତ୍ରୀ କେଳି କଉତୁକରେ ମାତି ଉଠିଚନ୍ତି । ସେ ପୁଣି

ମୋର ପରିଚିତ ହେବେ କିପରି ? ମୋଟ କଥା ପେଟ-ଇଞ୍ଜିନ୍‌ରୁ କୋଇଲା ସରିବାରୁ ମତିଭ୍ରମ ଘଟିଲାଣି ।

ତଥାପି ସେ ଦୁହିଁଙ୍କୁ ଚହ୍ନିବାର ମୋହ ମୁଁ ଏଡ଼ି ପାରୁନଥାଏ । ଶିଷ୍ଟାଗ୍ଭର ନଷ୍ଟ ହୋଇଯିବା ଭୟରେ ତାଙ୍କୁ ସିଧା ଗ୍ଭହିଁବାକୁ ସାହାସ ନାହିଁ । କିଣ ଏ ମଣିଷର ମନ ! ସବୁ ଜାଣିପାରେ, ସବୁ ମନେ ରଖିପାରେ କିନ୍ତୁ ବେଳେବେଳେ ସବୁ କିମିତି ଭୁଲିଯାଏ ! କିଛୁ ମନେ ପଡ଼େନି । କିଛି ବୁଝି ହୁଏନି । ହଠାତ୍ କିଣ ଭାବି ସେ ଦୁହିଁଙ୍କ ଆଡ଼କୁ ମାଡ଼ିଗଲି । ସବୁ ଲଜ୍ଜା ସଂକୋଚ ଗ୍ଭଡ଼ି ଶିଷ୍ଟାଗ୍ଭରର ଯାବତୀୟ ବିଧିବିଧାନ ଲଙ୍ଘନ କରି ସେମାନଙ୍କୁ ଗ୍ଭହିଁଲି । ସେମାନଙ୍କର ଖୁସୀ ଗପ ବନ୍ଦ ହୋଇଗଲା ।

ଦୁହେଁ ନିର୍ବାକ୍ ନିସ୍ତବ୍ଧ ହୋଇ ପଡ଼ିରହିଲେ । ବୋଧହୁଏ ତାଙ୍କର ଏକାନ୍ତ କେଳିରେ ଏତାଦୃଶ ନିର୍ଲଜ ହସ୍ତକ୍ଷେପ ସେମାନଙ୍କୁ ମୂକ କରିଦେଇଥିଲା । କିନ୍ତୁ ଉଠୁ ନଥାନ୍ତି । ଆରେ ଏତ ଆମ ମିଷ୍ଟର ଭୁଞା ଓ ମିସେସ୍ ଦେଶାଇ । ଏମାନେ ଆଜି ଯେ ବି ଅଲଗା ହୋଇ ନାହାନ୍ତି !

ହାଲୋ ମିଷ୍ଟର ଭୁଞା, ହାଲୋ ମିସେସ୍......କହି କହୁ ଅଟକି ଗଲି । ମିସେସ୍ ଦେଶାଇ କହିବାକୁ ସାହାସ କଲିନି । କାଳେ ସେ ଏଥି ଭିତରେ ମିସେସ୍ ଭୁଞା ହୋଇଯାଇଥିବେ । ଇଂରେଜି ଭାଷାରେ ମହିଳାଙ୍କୁ ସମ୍ବୋଧନ କରିବା ବଡ଼ ଅସୁବିଧା । ମିସ୍ କହିବି କି ମିସେସ୍ କହିବି । ଏଠି ପୁଣି କି ମିସେସ୍ କହିବି ? ଭୁଞା ମୋତେ ବୋଧହୁଏ ଚହ୍ନିପାରିଲେନି । ଟିକିଏ ଥତମତ ହୋଇ କୁନ୍ଥେଇ Well ବୋଲି କହି ଚୁପ୍ ରହିଲେ । ବୋଧହୁଏ ଅନ୍ୟମନସ୍କ ଥିଲେ ।

—ମୁଁ ମିଶ୍ର ! ଆପଣଙ୍କ ଜାହାଜ ବନ୍ଧୁ !

Oh ! you that interesting person ! How far your book has proceeded ?

ଓ ! ଆପଣ ସେଇ ଚମତ୍କାର ଲୋକ ! ଆପଣଙ୍କ ବହି କେତେ ଦୂର ଗଲା ?

ଶ୍ରୀମତୀ ଦେଶାଇ ସହର୍ଷ ବଦନରେ ଉଠି ମୋ ସମ୍ମୁଖରେ ଉଭା ହେଲେ । ମୁଁ ଯେ ବିଲାତ ଭ୍ରମଣ ସମ୍ବନ୍ଧରେ ଖଣ୍ଡେ ବହି ଲେଖିବାକୁ ଚେଷ୍ଟା କରୁଛି ଏଇଟା ମୁଁ ଜାହାଜରେ ଜୋର୍‌ରେ ପ୍ରଚାର କରି ଦେଇଥିଲି ! ଶ୍ରୀମତୀ ଦେଶାଇଙ୍କର ସେଥିରେ ବେଶ୍ କୌତୂହଳ ଜାତ ହୋଇଥାଏ । ଯେତେବେଳେ ତାଙ୍କ ସାଙ୍ଗରେ କଥାବାର୍ତ୍ତା ହୁଏ ସେ ସେହି ବହିଲେଖା କଥା ପଚାରନ୍ତି ଏବଂ ତାଙ୍କ ସମ୍ବନ୍ଧରେ କଣ ଲେଖୁଛି ଜାଣିବାକୁ ଚାହାନ୍ତି ।

—କହିଲି ବହିଟା ବିଶେଷ ଆଗେଇନି । ବର୍ତ୍ତମାନ ତଥ୍ୟ ସଂଗ୍ରହ କରୁଚି ।

—ନାଇଟ୍ କ୍ଲବକୁ ଗଲେଣି ?

—ନା, ସେଯାଏ ଯାଇପାରିନି ।

—ନାଇଟ୍ କ୍ଲବ ନ ଦେଖିଲେ ବିଲାତ ସମ୍ବନ୍ଧରେ କି ବହି ଲେଖିବେ ?

—ନା ସୁବିଧା ଦେଖି ସେ ଆଡ଼େ ଯିବି ।

—ଯା'ନ୍ତୁ, ଯା'ନ୍ତୁ, ସେସବୁ ଭଲକରି ଦେଖନ୍ତୁ ।

ମୁଁ ଯେ ଜଣେ ଶ୍ୱେତାଙ୍ଗିନୀ ମହିଳାଙ୍କ ସଙ୍ଗେ ମଧୁର ଆଳାପ ଜମେଇପାରେ ଏଇଟା ଭୌମିକ ଚିନ୍ତାର ବାହାରେ । ସେ ଏତେବେଳକୁ ଆସି ମୋ ପାଖରେ ଆଁ କରି ଠିଆ ହୋଇଯାଇଥାଏ । ତାକୁ ଶ୍ରୀମତୀ ଦେଶାଇ ଓ ଶ୍ରୀମାନ୍ ଭୂଷଣଙ୍କ ସଙ୍ଗେ ପରିଚୟ କରେଇଦେଲି । ଶ୍ରୀମତୀ ଦେଶାଇ ଆଉ ମୋ ସାଙ୍ଗେ କଥାବାର୍ତ୍ତା କରି ସମୟ ନଷ୍ଟ ନ କରିବାକୁ ଚାହୁଁଥିବାର ଜାଣିପାରି ସେମାନଙ୍କଠାରୁ ବିଦାୟ ନେଇ ଚାଲିଆସିଲୁ ।

ଭୌମିକକୁ ସେମାନଙ୍କ ସମ୍ବନ୍ଧରେ ସବୁ କଥା କହି ଶେଷରେ ସେ ଯେ ନାଇଟ୍ କ୍ଲବ୍ ଯିବାକୁ ନିର୍ଦ୍ଦେଶ ଦେଇଥିଲେ ସେ ବିଷୟ ତାକୁ ଶୁଣେଇଦେଲି । ସେ ପ୍ରସ୍ତାବକୁ ସାଙ୍ଗେ ସାଙ୍ଗେ ସମର୍ଥନ କରି କହିଲା । ନିଶ୍ଚୟ ! ନିଶ୍ଚୟ ! ବିଲାତ ଆସି ନାଇଟ୍ କ୍ଲବ୍ ନ ଦେଖିଲେ ସବୁ ନିରର୍ଥକ ।

ଆଜଠାରୁ ସେ ପଶ୍ଚିରାଜ୍ୟ ପରିକ୍ରମା ଆରମ୍ଭ କରାଯାଉ । ତା'କଥାରେ ମୀରବ ସମ୍ମତି ପ୍ରଦାନ କରି ତା' ପଛେ ପଛେ ଚାଲିଲି ।

କଥା ହେଲା ଥୋଡ଼ାଏ ବାଟ ବସ୍‌ରେ ଯାଇ କିଛି ଖିଆଯିବ । ତା'ପରେ ପଶ୍ଚି ରାଜ୍ୟରେ ପ୍ରବେଶ କରିବୁ । ପଶ୍ଚି ରାଜ୍ୟ ! ବିଲାତର ପଶ୍ଚି ରାଜ୍ୟ ! ଭୌମିକ ସେ ସମ୍ବନ୍ଧରେ ବହୁ ତଥ୍ୟ ପୂର୍ଣ୍ଣ ବିବରଣୀ ଦେଉଥାଏ, ମୋର ଉତ୍ସାହର ସୀମା ନାହିଁ । ମାର୍ବଲ ଆର୍କଠାରେ ହାଇଡ୍ ପାର୍କରୁ ବାହାରି ବସ୍ ଧଇଲୁ । କୌଣସି ଖାର୍ଥ ଜାଗାକୁ ବାହାରିଲି ପରି ଖୁବ୍ ଉତ୍ସାହ ଉଦ୍ଦୀପନା ସହକାରେ ମୁଁ ବସ୍‌ରେ ଯାଇ ନିଷ୍କାପର ଭାବରେ ବସିପଡ଼ିଲି । ଭୌମିକ ଆମ ଦୁହିଁଙ୍କ ବସ୍ ଭଡ଼ା ଦେଇ ଦେଲା । ତା' ମନରେ ମହାନନ୍ଦ ଯେ ସେ ଜଣେ ବନ୍ଧୁଙ୍କୁ ସାଙ୍ଗରେ ଧରି ରାତି ବିହାରରେ ବାହାରିଛି ।

ମୁଁ ଭାବୁଥାଏ ମିଷ୍ଟର ଭୁଞ୍ଚା ଓ ଶ୍ରୀମତୀ ଦେଶାଇଙ୍କ କଥା । ଲଣ୍ଡନକୁ ଆସିବାର ଏତେଦିନ ହୋଇଗଲା ; ତଥାପି ଏମାନଙ୍କ ଯୋଡ଼ି ଛାଡ଼ିଲା ନ । ଏମାନେ ତେବେ କଣ ଅଲଗା ହେବେ ନ ! ଶ୍ରୀମାନ ଭୁଞ୍ଚା କଣ ଶ୍ରୀମତୀ ଦେଶାଇଙ୍କୁ ପୁନର୍ବିବାହ କଲେଣି ! ତେବେ ତାଙ୍କ ଦେଶରେ ଥିବା ସ୍ତ୍ରୀ ପିଲାଙ୍କର ଅବସ୍ଥା କଣ ହେବ ?

ଓହୋ ! ମୋର ସେଥିରେ କଣ ଅଛି । ମୋ କଥା ମୁଁ ଚିନ୍ତା କରେ । ପରେ ପରେ ନିଜକୁ ପ୍ରକୃତିସ୍ଥ କରିନେଲି ।

କିଛି ବାଟ ଯିବା ପରେ ବସ୍‌ରୁ ଓହ୍ଲାଇ ଗୋଟିଏ ହୋଟେଲ୍‌କୁ ଗଲୁ । ଭୌମିକ କହିଲା ଭଲ କରି ଖାଇନଅ । ବହୁ ଆଡ଼େ ବୁଲିବାକୁ ପଡ଼ିବ । ଖାଇ ସାରି ପଦଯାତ୍ରା ଆରମ୍ଭ କଲୁ । କିଛି ବାଟ ଯିବା ପରେ ଭୌମିକ ଗୋଟିଏ ଗଳି ଭିତରେ ପଶିଲା । ଗଳିଟା ଟିକିଏ ଅନ୍ଧାରିଆ ଲାଗୁଥାଏ । ମୋତେ ଟିକିଏ ଡର ଲାଗିଲା । ମୁଁ ଚାରିଆଡ଼କୁ ଚାହିଁ ଧୀର ପଦରେ ଆଗେଇଲି । ଭୌମିକ କିନ୍ତୁ ଖାର ଦପରେ ମାଡ଼ି ଚାଲିଥାଏ । ଲଣ୍ଡନର ମାନଚିତ୍ର ମନେ ମନେ କଳ୍ପନା କରି ବୁଝିନେଲି ଆମେ ସୋହୋ ବା ତାର ଆଖପାଖ ଅଞ୍ଚଳକୁ ଆଗେଇଚୁ । ଓ ! ଏଇ ତେବେ ପଶ୍ଚି ରାଜ୍ୟର ପ୍ରବେଶ ଦ୍ୱାର !

ଭୌମିକ କଣ ଭାବି ଭାବି ଚାଲିଥାଏ । କିଛିବାଟ ଯିବା ପରେ ଗୋଟିଏ ଷ୍ଟୋର ଦୋକାନରେ ଦେଖିଲୁ ସ୍ତ୍ରୀ ଓ ଯୁବତୀମାନଙ୍କର ନଗ୍ନ ଚିତ୍ର ସବୁ ରଖାଯାଇଛି । ସେଗୁଡ଼ାକ ବହୁ ଠାଣିରେ ବହୁ ଭଙ୍ଗୀରେ ପ୍ରସ୍ତୁତ ହୋଇଥାଏ । ପ୍ରତ୍ୟେକରେ ଦାମ୍ ବି ପଡ଼ିଥାଏ । ଏଁ ! ଏଗୁଡ଼ାକ ଇମିତି ଖୋଲାଖୋଲି ଭାବରେ ସବୁଠାରେ ବିକ୍ରୀ ହେଉଛି ! କଣ ଆମ ଦେଶର ଦେଉଳ ମଣ୍ଡପ ଆଦିରେ ଯେଉଁ ନଗ୍ନ ମୂର୍ତ୍ତି, ରୂପ ସବୁ ଅଛି ତାକୁ ଦେଖି ଏମାନେ ଆମକୁ ଅସଭ୍ୟ ବୋଲି କହନ୍ତି କିନ୍ତୁ ଏ କି ସଭ୍ୟତା ! ଖୋଲା ବାଟ୍ ବଜାରରେ ଏହାର ବିକାକିଣା ଚାଲିଛି । ଲୋକେ ଏ ନଗ୍ନ ଚିତ୍ରପଟ କିଣି କଣ ଲାଭ ପାଉଛନ୍ତି !

ଭୌମିକ ପଚାରିଲା ଗୋଟେ ଦି'ଟା ନବା କି ?

—କ'ଣ କରିବ ଯ୍ୟା'କୁ ନେଇ ? ସୁଟ୍‌କେଶରେ ସାଇତି ରଖିବୁ ନା ମୁଣ୍ଡ ତଳେ ରଖି ଶୋଇବୁ ?

—ନାଇଁ ଫ୍ରେମରେ ବାନ୍ଧି ବସା ଘରେ ଟାଙ୍ଗି ଦେବା । ବାନ୍ଧବୀ ମାନେ ଦେଖିଲେ ବେଶ୍ ପସନ୍ଦ କରିବେ ।

—ତୁ ନେ, ତୋର ଦରକାର ଆସିପାରେ । କିନ୍ତୁ ଆମ ବସା ତ ଥାର୍ଡ କ୍ଲାସ୍ ମୁସାଫିର୍‌ଖାନା । ଆମେ ଗୁଡ଼ାଏ ଲୋକ ସେଠାରେ ଅଛୁ । ବହୁ ଲୋକ ଯାଆସ କରୁଛନ୍ତି । ମୁଁ ଏ ଅପୂର୍ବ ଜିନଷକୁ ନେଇ କେଉଁଠି ସାଇତି ରଖିବି !

ମୋର ଅନୁସନ୍ଧିତ୍ସୁ ମନକୁ ଗୋଟାଏ ଯିମିତି ଉତ୍ତର ମିଳିଗଲା । ହଁ, ଏଇ ତେବେ କାରଣ ! ମନୁଷ୍ୟର ଯୌନ-ପିପାସା ଅପାର । ସେହି ଅସୀମ ଶୋଷରୁ କାଣିଚାଏ ମାରିବାକୁ ନଗ୍ନ ଯୌନ ସାହିତ୍ୟ, ନଗ୍ନ ଯୌନ ଚିତ୍ରର ସୃଷ୍ଟି । ସେଇଥିପାଇଁ ଆମ ଦେବାଳୟ, ଧର୍ମ ମନ୍ଦିର ଆଦିରେ ପଥର ଦେହରେ ଖୋଳାଯାଇଛି ବହୁ ଯୌନ କେଳିର ଛବି । ବହୁ ବଢ଼େଇ, ବହୁ କାରିଗର ବର୍ଷବର୍ଷ ଧରି ଘରଦ୍ୱାର ଛାଡ଼ି କେଉଁ ନିର୍ଜନ ପ୍ରାନ୍ତର ବା ନିକାଞ୍ଚନ ବେଳାଭୂମିରେ ତୋଳେ ଅପୂର୍ବ ଭାସ୍କର୍ଯ୍ୟପୂର୍ଣ୍ଣ ମନ୍ଦିର । ସେମାନଙ୍କ ମନକୁ ପ୍ରଫୁଲ୍ଲ ରଖିବାକୁ, ସେମାନଙ୍କ ଯୌନ

ଲାଳସାର ସାମାନ୍ୟ ସନ୍ତୋଷ ପାଇଁ ସେମାନେ ଖୋଲିଚନ୍ତି ପଥର ଦେହରେ ନାନା ଉଦ୍ଭଟ ଛବି । ଏହି କାରଣରୁ କେଉଁଠି ପ୍ରକାଶ୍ୟରେ କେଉଁଠି ଗୋପନରେ ଚାଲିଛି ଗୃହିତ ନଗ୍ନଚିତ୍ର ସବୁ । କିନ୍ତୁ ଏସବୁର ଚରମ ଲକ୍ଷ୍ୟ ହେଉଛି ଯୌନ ଲାଳସାର ପରିତୃପ୍ତି, ତେଣୁ ରାସ୍ତା କଡ଼ରେ ଗଛ ମୂଳରେ ପାର୍କ ମଇଦାନରେ ଚାଲିଚି କେଳି ।

—କଣ ଏତେ ଭାବୁଚ ? ଚିତ୍ର ଦେଖିଚ ଏତେ ବଡ଼ଲୋକର ଆଉ ସେହି ପରୀମାନେ ଯଦି ସ୍ୱଦେହରେ ତୁମ ସାମନାରେ ଠିଆ ହେବେ ତେବେ ତ...ଭୌମିକ ହସେଇ କହିଲେ । ମୁଁ କଥାଟାକୁ ଏଡ଼େଇ ଦେବାକୁ ଯାଇ କହିଲି, କିଣିବ ବୋଲି କହୁଚ ଯେ କିଏ ତୁମକୁ ଦେବ । ଏଠି ତ ବିକାଳୀ କେହି ନାହାନ୍ତି ।

—ନା, ଏଇଠି କେଉଁଠି ବିକାଳୀ ଥିବେ । ସୁବିଧା ପାଇଲେ ଚାଲି ଆସିବେ ।

Halo ! Can I have a picture or two ?

ସେ ଦୋକାନକୁ ଲକ୍ଷ୍ୟ କରି ଭୌମିକ ଏତିକି କହିଲେ । ସାଙ୍ଗେ ସାଙ୍ଗେ ଦୋକାନର ଅନ୍ତରାଳରୁ ଜଣେ ଯୁବତୀ ବାହାରି ଆସି କହିଲେ –

Yes, how can I help you ?

ବାଃ ! ବେଶ୍ ଯୋଗସୂତ୍ର ତ ! ଏତ ଆଲିବାବା ଓ ଚାଳିଶି ଚୋରଙ୍କ କାହାଣୀ ପରି ଲାଗୁଚି ! ଖାଲି ସୂଚନା ଦେଲାକ୍ଷଣି ରତ୍ନ ଭଣ୍ଡାରର ଦ୍ୱାର ଖୋଲିଗଲା ।

ଭୌମିକ ସେ ଫଟରୁ ଗୋଟିଏ କିଣି ତାକୁ ପକେଟରେ ପୂରେଇ ଆଗେଇଲେ । ଆଉ କିଛିବାଟ ଯାଇ ଗୋଟିଏ ବାରରେ ପଶିଲେ । ମୁଁ ପଚାରିଲି ଏଠିକି କାଇଁକି ? ଭୌମିକ କହିଲେ ଟିକିଏ ପିଇବା । ବଡ଼ କ୍ଲାନ୍ତ ଲାଗୁଚି ।

—ହଉ ପିଅ । ମତେ କିନ୍ତୁ କମଳାରସ ସାଙ୍ଗରେ ସାମାନ୍ୟ ଟିକିଏ ବ୍ରାଣ୍ଡି ଦେବ ।

—କ'ଣ ସବୁବେଳେ ସେଇଆ ?

—ଅନ୍ୟ ପାନୀୟ ମୁଁ ବରଦାସ୍ତ କରିପାରିବନି ।

ମୋଟ କଥା ମଦଟା ମୋ ଧାତୁରେ ଚଳେନି । ତେବେ କେବେ କେବେ ମୁଁ ଏଇ ବ୍ରାଣ୍ଡି ଟିକିଏ ଟିକିଏ ପିଏ । ବ୍ରାଣ୍ଡିଟା କେଉଁଠି ବିଲାତରେ ଔଷଧ । ୨୩୫ ନମ୍ବର କାମଡ଼େନ୍ ରୋଡ଼ରେ ଆମର ଜଣେ ବନ୍ଧୁ, ନାଁ ରାଧାନାଥ । କିନ୍ତୁ ପ୍ରକୃତରେ ସେ 'ହାରି'ନାଥ । ରାଧାନାଥ-ବାବୁ ସପରିବାର ସେଠାରେ ବାସ କରୁଥାନ୍ତି । ତାଙ୍କୁ ଆମେ ଅତି ସ୍ନେହରେ ତା'ଙ୍କୁ 'ରାଜା' ବୋଲି ଡାକୁ ଏବଂ ତାଙ୍କ ସ୍ତ୍ରୀ 'ହାରି'ଙ୍କୁ 'ରାଣୀ' । ବୋଲି କହୁ । ଆମେ "ରାଣୀ"ଙ୍କ ପ୍ରତି ଖୁବ୍ ସ୍ନେହ-ସୋହାଗ ପ୍ରକାଶ କରୁଥାଉ । କିନ୍ତୁ ଆମେ ସମସ୍ତେ ତ ପତ୍ନୀ ବିଚ୍ଛେଦରେ ନିର୍ବାସିତ ଯକ୍ଷପରି ବିଦେଶବାସ କରୁଥାଉ । ତେଣୁ ସେ ମହାପୁରୁଷୀ ମହିଳା ଆମ ସମସ୍ତଙ୍କର ଅତି ଆଦରର ଅତି ଆପଣାର ହୋଇ ଉଠିଥାନ୍ତି । ସେ ମଧ୍ୟ ରେଷେଇ-ବାସ କରି ଆମ୍ଭମାନଙ୍କୁ ବହୁତ ଚର୍ଚ୍ଚା କରନ୍ତି । ବେଶ୍ ଖାଇବା ପିଇବାକୁ ଦିଅନ୍ତି । ସେମାନଙ୍କ ଦୁଇପୁଅ ଜୁନୁ, କୁନୁ ଓ ଝିଅ ଲିଲି ବି ଆମର ଅତି ଗେହ୍ଲାର, ଅତି ଆପଣାର ହୋଇ ଉଠିଥାନ୍ତି ।

ଏଇ 'ରାଜା' ବନ୍ଧୁଙ୍କ ନିମନ୍ତ୍ରଣ କ୍ରମେ ଆମ କାମଡ଼େନ୍ ରୋଡ଼ ଛକ ବ୍ରେକ୍‌ନକ୍ ପବ୍‌କୁ ବେଳେ ବେଳେ ଯାଇ ଟିକିଏ ଟିକିଏ ବ୍ରାଣ୍ଡି ପିଏ । ଯେତେବେଳେ ଶୀତର ଆତିବାଯ୍ୟରୁ ବା ଜୀବନ-ଜଞ୍ଜାଳର ଅବସାଦରୁ ପ୍ରାଣଟା ଅତିଷ୍ଠ ହୋଇଉଠେ ଟିକିଏ ପିଇ ଦିଏ ସେଇ ବ୍ରାଣ୍ଡିରୁ କିଛି । ଯାହାହେଉ ଭୌମିକର ଅନୁରୋଧ କ୍ରମେ ମୁଁ ଟିକିଏ ବ୍ରାଣ୍ଡି ପିଇଲି । ସେ ଗୋଟିଏ ବୋତଲ ବିଅର ପିଇଲା । ତା'ପରେ ପୁଣି ଆମର ଯାତ୍ରା ଆରମ୍ଭ ହୋଇଗଲା । ଭୌମିକ ନିହାତି ଜଣେ ବିଜ୍ଞ ଅନୁସନ୍ଧିତ୍ସୁ ପରି ମାଡ଼ି ଚାଲିଥାଏ । ମୁଁ ଯନ୍ତ୍ରବତ ଆଜ୍ଞାଧୀନ ଶିଷ୍ୟ ପରି ତା' ପଛେ ପଛେ ଚାଲିଥାଏ ତଥାପି ମୋର ବିଶେଷ ଉତ୍ସାହ ନାହିଁ । ଏହାର ଗୋଟିଏ କାରଣ ଥିଲା । ମୁଁ ନ୍ୟୁଆର୍କ ଯେତେ ବୁଲେ ବସାକୁ ଫେରିଲେ ବନ୍ଧୁମାନଙ୍କୁ ମୋ ଅଭିଜ୍ଞତାର ସଂକ୍ଷିପ୍ତ ବିବରଣୀ ଟିପଣୀ ସହ କହିଦିଏ । ସେମାନେ ମୋର ଲଣ୍ଡନ ପରିକ୍ରମାକୁ କେନ୍ଦ୍ର କରି ଅନେକ ଗୁପ୍‌ଚୁପ୍ କଥାବାର୍ତ୍ତା, ହସଗପ

କରନ୍ତି । ଏଥିରେ ନେତୃତ୍ୱ ନିଅନ୍ତି ରାଣୀ । ମୁଁ ମଧ୍ୟ ପରିସ୍ଥିତିକୁ ବେଶ୍ ଉପଭୋଗ କରୁଥାଏ । କାରଣ ମୁଁ ଯେ କୌଣସି ରହସ୍ୟମୟ, ରୋମାଞ୍ଚକର ଘଟଣାର ନାୟକ ହୋଇପାରେ ଏ କଳ୍ପନା ମୋର ନଥିଲା । ସେମାନେ ଯାହା ଟିକିଏ ମୋ'ଠାରୁ ଶୁଣିଥାନ୍ତି ସେଇ ସୂତା ଖିଅକୁ ଆଶ୍ରା କରି ନାନା ମନଗଢ଼ା କାହାଣୀ ସୃଷ୍ଟି କରି ନିଜେ ଉପଭୋଗ କରୁଥାନ୍ତି । ମୋର ଏଥିରେ ଦୁଃଖ ନଥାଏ । କାରଣ ଘରଦ୍ୱାର ଛାଡ଼ି, ବିଦେଶରେ ପଡ଼ି ଆମେ ସମସ୍ତେ ସବୁବେଳେ ଗୁଁ ଗୁଁ ସୁଁ ସୁଁ ହେଉଥାଉ । ତେଣୁ ମୋତେ କେନ୍ଦ୍ର କରି ଏ ଯେ ରଙ୍ଗରସ ସୃଷ୍ଟି ହେଉଥାଏ ତାକୁ ମୁଁ ବି ଉପଭୋଗ କରୁଥାଏ ।

କିନ୍ତୁ ବେଳେ ବେଳେ ପିଲାଙ୍କ କଥା ମନେ ପଡ଼ିଲେ ନିହାତି ଆତ୍ମଗ୍ଲାନିରେ ମନ ଭରିଯାଏ । ଲଣ୍ଡନ ସହରର ବିଭିନ୍ନ ତଥ୍ୟ ଆହରଣ କରିବାକୁ କାହିଁକି ଏତେ ମୋହ ଏତେ ବ୍ୟାକୁଳତା ! "କି ଘୃଣ୍ୟ କଥାକୁ କି ଘୋର ଜିଗୀଷା !" ମୋର ମାନସିକ ଅବସ୍ଥାକୁ ଆଉରି ଖରାପ କରି ଦେଉଥାନ୍ତି ଶ୍ରୀମତୀ ମିଶ୍ର (ରାଣୀ) । ମୋର ଲଣ୍ଡନ ସହରରେ ଦଉଡ଼ା ଧପଡ଼ା, ସନ୍ତୁଳି ଆଦିକୁ ଲକ୍ଷ୍ୟକରି ସେ ମୋତେ ବାରମ୍ବାର ଖୁଣ୍ଟା ଦେଉଥାନ୍ତି । ବହୁ ଅଣ୍ଟା ପରିହାସ କରୁଥାନ୍ତି । ମୁଁ ମୁହଁରେ ହସ ହସ ରହିଲେ ବି ମନ ଭିତରେ ଟିକିଏ ଦବି ଯାଇଥାଏ । ଏମାନେ ମୋତେ କ'ଣ ସନ୍ଦେହ କରୁଚନ୍ତି କି !

ଆମ ବସାରେ ବହୁ ସମୟରେ ବିଭିନ୍ନ ଓଡ଼ିଆ ଖାନାର ବ୍ୟବସ୍ଥା ହୁଏ । କେଉଁଦିନ ଶାଗ-ବଡ଼ି, ଭଜାଭଜି ମହ ମଶାଲ, କେଉଁଦିନ ପଲଉ ମାଂସ ତରକାରି କିନ୍ତୁ ପ୍ରତ୍ୟେକ ଭୋଜନ ବ୍ୟବସ୍ଥାରେ ବିବାହ ବ୍ରତ ଆଦି ହିନ୍ଦୁ ଉତ୍ସବରେ ମହାପ୍ରସାଦରେ ଅନୁକୂଳ କଲାପରି ଟିକିଏ ଟିକିଏ ସୋମରସ ପରିବେଷଣ କରାଯାଏ । ସେଥିରେ ପଣ୍ଡାଗିରି କରନ୍ତି ସୁରବାବୁ ଓ ରାଜା । ଶ୍ରୀମତୀ ମିଶ୍ର (ରାଣୀ) ଏ ସବୁକୁ ପସନ୍ଦ ନକଲେ ବି ମୋତେ ବ୍ୟଙ୍ଗ କରି କହନ୍ତି, "କ'ଣ ଆପଣଙ୍କର ଏଠି ଏ ଚଳିବ ନା ସୋହୋ ସ୍କୋୟାର କି ଓ୍ୱେଷ୍ଟଏଣ୍ଡ ଯିବେ ?" ଅନ୍ୟମାନେ ଖେଁ ଖେଁ କରି ହସି ଉଠନ୍ତି । ମୁଁ ବୋକାପ୍ଲାମି କରି ଉତ୍ତର ଦିଏ କ'ଣ କରିବା ! ଏଠି ଯଦି

ଆମ ମନସାଧ କେହି ମେଣ୍ଟାଇ ନ ପାରିଲେ ବାହାରକୁ ଯିବା ଛଡ଼ା କ'ଣ ଉପାୟ ଅଛି ?"

"ଆଚ୍ଛା ! ମୁଁ ତେବେ କଟକ ଚାଲି ଦେଉଚି ।" ରାଣୀ ସହର୍ଷ, ସସ୍ନେହ ଧମକ ଦିଅନ୍ତି । ଏ କଟକ କଥା ଶୁଣିଲାକ୍ଷଣି ମନଟା ମୋର ଯେମିତି ଶଙ୍କିଯାଏ, ନାନା ଦୁଃଖ ଦୁଶ୍ଚିନ୍ତାରେ ମୁଁ ବଡ଼ ବିବ୍ରତ ହୋଇପଡ଼େ । ସେଦିନ ରାତିରେ ଖାଇବା ବନ୍ଦକରି ବସାରୁ ବାହାରି ଆସିଲି । ସୁରବାବୁ ହାତରେ ଚା କପ୍ ଧରି, ଖଟରେ ବଙ୍କେଇ ହୋଇ ଶୋଇ କହିଲେ—"ଆପଣଙ୍କର ସାନ୍ଧ୍ୟ ଭ୍ରମଣ ସଫଳ ହେଉ ।" ରାଣୀ ଖାଲି ମୋତେ ବଙ୍କେଇ ବଙ୍କେଇ ଚାହିଁ ହସୁଥାନ୍ତି । ଶେଷରେ ଚୁମ୍ୱକରେ କହିଲେ—"ବେଶୀ ଦୂର ଆଗେଇବନି । ଏ ଲଣ୍ଡନ ସହର ।"

ଏ କଥାଟା ମୋ ମନରେ ଛନକା ପୂରେଇ ଦେଇଥିଲା । ଭୌମିକ ସାଙ୍ଗରେ ବୁଲିଲାବେଳେ ମୋ ମନରୁ ସେ ଛନକା ପୂରା ଗୁଡ଼ି ନ ଥାଏ । ହଁ, ଏ ଲଣ୍ଡନ ସହର ! ସବୁ କଥାରେ ସାବଧାନତା ନିହାତି ଦରକାର । କିନ୍ତୁ ଭୌମିକର ଚିନ୍ତାଦିକ କିଛି ନ ଥାଏ । ବେଶ୍ ମନ ଖୁସିରେ ସେ ଆଗକୁ ମାଡ଼ି ଚାଲିଥାଏ । ତାକୁ ଛନେଇ କହିଲି—"ତୁ କ'ଣ ଏସବୁ ଅଞ୍ଚଳରେ ବେଶ୍ ପରିଚିତ ? ଏପଟେ ଖୁବ୍ ବିହାର କରୁ ନା କ'ଣ ?"

ଭୌମିକ ବଡ଼ ସ୍ପଷ୍ଟବାଦୀ । ଭାବପ୍ରବଣତାର ଧାରି ଧାରେନି । ସେ ମୁହଁ ଶୁଖେଇ, ଦୋ ଅକ୍ଷର ଲଗେଇ କହିଲା—"ନାଇଁ ଏ ଶଳା ଦେଶରେ ମୋର କୌଣସିଥିରେ ଆଦୌ ସ୍ପୃହା ନାହିଁ । ନାନା ଚେଷ୍ଟା କରି ଏଠାକୁ ଚାଲି ଆସିଲି ପାଠପଢ଼ି ଚାକିରି କରି ମୋର ଭବିଷ୍ୟତ ଉଜ୍ଜ୍ୱଳ କରିବି ଭାବି କିନ୍ତୁ ଛକ୍କ ! ମୋର ଏଠି ଦୁଃଖ ଦୁର୍ଦ୍ଦଶାର ସୀମା ନାହିଁ । ଭାରତରେ ଖାଲି ମିଛ ପ୍ରଚାର ଯେ ଏଠି କ୍ଷୀର ମହୁ ଭାସୁଚି ବୋଲି କିନ୍ତୁ ଶଳାଙ୍କ ପାଖରେ ପଇସା ନାହିଁ ।"

—ତଥାପି ଏଠି ବହୁ ଭାରତୀୟ ତ ଚାକିରି କରି ଖୁବ୍ ଉପାର୍ଜନ କରୁଛନ୍ତି ।

—ଚାକିରି କରୁଛନ୍ତି ! ଖାଲି କୁଲିଗିରି !

—କିନ୍ତୁ ବହୁତ ଡାକ୍ତର ତ ଏଠି ବେଶ୍ ରୋଜଗାର କରି ଖୁବ୍ ଆଡ଼୍‌ମ୍ବରରେ ଅଛନ୍ତି ।

—ହଁ, ସ୍ଵାଙ୍କ ସୁବିଧା ଅନୁସାରେ ଏ ଦେଶରେ ଯଥେଷ୍ଟ ଡାକ୍ତର ନାହାନ୍ତି । ତେଣୁ ଭାରତ, ପାକିସ୍ତାନ ପ୍ରଭୃତି ଦେଶରୁ ଯେତେ ଡାକ୍ତର ଆସୁଛନ୍ତି ତାଙ୍କୁ ଚାକିରି ମିଳିଯାଉଚି । ସେମାନେ ବି ନାନା ହାଇରାଣ ହରକତ ହେଉଚନ୍ତି ।

ମୋର ମନେ ପଡ଼ିଗଲା ଲଣ୍ଡନରେ ଥିବା ଆମ ଓଡ଼ିଆ ଡାକ୍ତରୀ ଛାତ୍ରଙ୍କ କଥା । ଏମାନେ ସପ୍ତାହ ଶେଷରେ ଆମ ବସାକୁ ଆସନ୍ତି । କଥା-ପ୍ରସଙ୍ଗରେ ତାଙ୍କ ଦୁଃଖ କାହାଣୀ କହନ୍ତି । ପ୍ରଫେସରମାନେ ତାଙ୍କ ସାଙ୍ଗେ କିମିତି ଖରାପ ବ୍ୟବହାର କରନ୍ତି, ଯେତେ ଭଲ ଛାତ୍ର ହେଲେ ବି ସହଜରେ ପାଶ୍ କରେଇ ଦିଅନ୍ତିନି, ଇତ୍ୟାଦି । ମୁଁ ସେମାନଙ୍କ କଥା ଭୌମିକଙ୍କୁ କହିଲି ।

—ସେ କହିଲେ—"ଏମାନେ ବି କେଉଁ ଯୋଗ୍ୟ ଲୋକଗୁଡ଼ାକ ଯେ । ଏମାନଙ୍କ ଭିତରୁ ଅନେକ ଭଲ ଇଂରେଜୀ କହି ପାରନ୍ତିନି । ଭଲକରି ଇଂରେଜୀ ବୁଝିପାରନ୍ତିନି ।"

—ଇଂରେଜୀ ଅସୁବିଧା ଆମ ସମସ୍ତଙ୍କର । ଖାଲି ଡାକ୍ତରଙ୍କୁ ଦୋଷଦେଇ ଲାଭ କ'ଣ ।

—ହଁ, ମୁଁ ତ ଭାରତରେ ବି. ଏ. ପାଶ୍ କରି ନିଜକୁ ମହାପଣ୍ଡିତ ଭାବି ଏଠାକୁ ଚାଲି ଆସିଲି । କିନ୍ତୁ ଏଠି ନାନା ଦୁଃଖ ନିର୍ଯ୍ୟାତନା ଭୋଗିଲିଣି । ସ୍ଵାଙ୍କ ଭାଷା ଠିକ୍ ଭାବରେ କହି ହେଉନି । ସ୍ଵାଙ୍କ ଆଦବ-କାଏଦା ପୂରା ଶିଖି ପାରୁନି, ସ୍ଵାଙ୍କ ନାଚ ଆସୁନି, ସ୍ଵାଙ୍କ ଗୀତ ପାଟିରେ ପଶୁନି···।"

—କାହିଁ ବେଶ୍ ତ ବିଲାତି ହୋଇଗଲୁଣି । ପଇସାର ବି ଅଭାବ ନାହିଁ ।

—ହେଲେ ସିନା ଇମିତି ଦେଖୁଚ ବନ୍ଧୁ । ଏଠି ଚାରିବର୍ଷ ରହି ଟିକିଏ ପୋଖତ ହୋଇଗଲିଣି ବୋଲି, ନୋହିଲେ ମୂଳରୁ ଯେଉଁ କଷ୍ଟ !

ସ୍ଥାଁଙ୍କ ଜଳବାୟୁ, ଆଦବକାଏଦାରେ ଅଭ୍ୟସ୍ତ ହେବାକୁ ବହୁ ଦୁଃଖ ସହୁଚ । ପଇସା ଲୋଭରେ ଇମିତ ଘୃଣ୍ୟ କାମ ନାହିଁ ମୁଁ ଯାହା ନ କରୁଚ । ଇମିତ ଲଜ୍ଜା ଅପମାନ ନାହିଁ ମୁଁ ଯାହା ନ ସହୁଚ ।

—ତୁ ଏଠି ୪ ବର୍ଷ ରହିଲୁଣି ! ଭାରତ ଫେରିବାକୁ ଇଚ୍ଛା ହୁଏନ । ସ୍ତ୍ରୀ ପିଲାଙ୍କ କଥା ମନେ ପଡ଼େନ ? ଆମକୁ ସେ ଚିନ୍ତାରେ ରାତିରେ ନିଦ ହେଉନ ।

ମୂଳରୁ ସେମିତ ଲାଗେ । ଥୋଡ଼ାଏ ଦିନ ଗଲେ ଲଣ୍ଡନ ତୁମକୁ ଏକେବାରେ ମୁଗ୍ଧ, ବଶୀଭୂତ କରିଦେବ । ତା' ବାହୁପାଶରେ ତୁମକୁ ବାନ୍ଧି ରଖିବ । କିଏ ଜଣେ କହି ନାହାନ୍ତି—

When man is tired of Lnndon, he is tired of life. For there is in London all that life can afford !

—ବାଃ ! ବେଶ୍ ତ ଲଣ୍ଡନ ସପକ୍ଷରେ ପ୍ରଚାର କରିପାରୁଚୁ !

—ଥୋଡ଼ାଏ ଦିନ ସେ କାମ କରିଥିଲି ଯେ ! ଗୋଟାଏ ବସ୍‌ରେ ଗାଇଡ୍ ହୋଇ ନିମନ୍ତ୍ରିତ ପରିଭ୍ରମଣ (Conducted tour) ରେ ଯାଉଥିଲି ।

—ଏଇଟା ତ ବି ତୋର Conducted tour । ବହୁତ ତ ବୁଲେଇଲୁଣି କିନ୍ତୁ କିଛି ତ ଦେଖଉନୁ !

—ଦେଖିବ, ଦେଖିବ ! ଟିକିଏ ଧୈର୍ଯ୍ୟ ଧର । କିନ୍ତୁ ତୁମେ ଟିକିଏ ଆଦବକାଏଦାଟା ଭଲ କରି ଶିଖ । ବେଳେ ବେଳେ ତୁମେ ଏମିତ ପରିସ୍ଥିତି ସୃଷ୍ଟି କରୁଚ ଯେ !

—କାହିଁ ମୋର କେଉଁଠି ଦୋଷ ତ୍ରୁଟି ଦେଖିଲୁ କି ? ମୁଁ ତ ଆସିଲାବେଳେ ଜାହାଜରେ ଗୁଡ଼ାଏ ଏହି ଆଦବକାଏଦାରୁ ଶିଖିଥିଲି । ଏଠିକି ଆସି ବି ବହୁତ ସେଥିରୁ ଆହରଣ କଲିଣି ।

—ସେ ଯଥେଷ୍ଟ ହେଉନ । ଆଉରି ବି କିଛି ଶିଖ । ପ୍ରଥମ କଥା ହେଲା ତୁମ ମନ ଭିତରେ ଯାହା ଥାଉ ପଛକେ, ବାହାରେ ନିହାତି ସୌଜନ୍ୟପୂର୍ଣ୍ଣ ବ୍ୟବହାରକୁ ଦେଖାଇବା ପଡ଼ିବ ।

—ଏ ବେଶ୍ୟାପଡ଼ାରେ କ'ଣ ସୌଜନ୍ୟ ଦେଖେଇବ ?

—ଯେତେହେଲେ ସେମାନେ ମହିଳା । ମହିଳାମାନଙ୍କ ସହିତ ଏଠି ଭଦ୍ର, ସୌଜନ୍ୟପୂର୍ଣ୍ଣ ବ୍ୟବହାର ଦେଖାଇବାକୁ ହୁଏ । କିନ୍ତୁ ତୁମେ ସେଦିନ ସେମାନଙ୍କ ସଙ୍ଗେ ଏପରି ଖରାପ ବ୍ୟବହାର କଲ...

—ଯେଉଁଥିରେ କି ରାଣୀ ଏଲିଜାବେଥ୍ ରାଗିଉଠିଲେ । ଆମେ କି ବକିଂହାମ୍ ପ୍ରାସାଦକୁ ଆସିଥିଲେ ଯେ...

—ତଥାପି ବନ୍ଧୁ ! ଏଠି ସବୁ ଜାଗାରେ ମହିଳାମାନଙ୍କ ସହିତ ସୌଜନ୍ୟପୂର୍ଣ୍ଣ ବ୍ୟବହାର କରିବାକୁ ହେବ ।

—ଯଥା ?

—କୌଣସି ଇଂରେଜ ମହିଳାଙ୍କ ହାତରେ ଚୁମା ଦେବନି କି ଶୋଇବାର ପୋଷାକ ପିନ୍ଧି ତାଙ୍କ ଆଗରେ ଉଭା ହେବନି । ଅବଶ୍ୟ ସେ ତୁମ ସ୍ତ୍ରୀ ହୋଇଥିଲେ ଅଲଗା କଥା । ଲୁଚିକରି କାହା କଥା ଶୁଣିବା ବା କାହା କଥାବାର୍ତ୍ତାରେ କାନ ଦେବା ଏଠି ଘୋର ଅନ୍ୟାୟ ।

—ତା'ପରେ ?

—ଏଠି କୌଣସି କଥାକୁ ତୁମେ ବଡ଼ ପାଟିରେ ସ୍ପଷ୍ଟ ଭାବରେ କହିବନି ।

—ଆଉ କିମିତି କହିବ ?

—ଧର ତୁମକୁ କିଏ କୌଣସି ଘଟଣା ବିଷୟରେ କହିଲା । ତୁମେ ଜାଣ ସେଇଟା ଏକେବାରେ ଅସତ୍ୟ ଏବଂ ଅସମ୍ଭବ କିନ୍ତୁ ତୁମେ ସେ ଲୋକକୁ ମୁହେଁ ମୁହେଁ ରୋକ୍ ଠୋକ୍ କହି ଦେବନି ଯେ, ସେଇଟା ଅସତ୍ୟ ଓ ଅସମ୍ଭବ ବୋଲି ।

—ଆଉ ?

—ତୁମେ କେତେଟା ଅନିଶ୍ଚିତତା ସୂଚକ ଅବ୍ୟୟ, କ୍ରିୟା ବିଶେଷଣ ଆଦି ଲଗେଇ କହିବ । ତୁମ କଥାରେ ସମ୍ଭବତଃ, ବୋଧହୁଏ, ହୁଏ ତ, ଏହିପରି ଗୁଡ଼ାଏ ଶବ୍ଦ ରହିବା ଉଚିତ ।

—ଓଃ ! ଆଉ ?

—ତୁମେ ଜାଣ ଏମାନେ ଭାରି ରକ୍ଷଣଶୀଳ ।

—ନହାତି ରକ୍ଷଣଶୀଳ ନା ।

—ହେଲେ ସେଇଟା ସ୍ପଷ୍ଟ କହି ଦେବନ । କଥାଟାକୁ ଟିକିଏ ବୁଲେଇ ମୁଲାଏମ୍ କରି କହିବ ।

—କାହିଁ ! ସିଧା ତ କହିଦେବ ତୁମେ ସବୁ ଇଂରେଜ ଲୋକ···।

—ତୁମେସବୁ ବୋଲି କହିବନ । ବିଲାତି ଲୋକଙ୍କ ସହିତ କଥାବାର୍ତ୍ତାରେ 'ଦ୍ୱିତୀୟ ପୁରୁଷ' ବ୍ୟବହାର ଏକେବାରେ ଅଭଦ୍ରତା । ତା'ପରେ ଇଂରେଜ ବୋଲି ତାଙ୍କୁ କହିବନ । କାରଣ ସେ ଯେ ଇଟାଲୀୟ କି ଫ୍ରେଞ୍ଚ କି ଜର୍ମାନ୍ ହୋଇ ନ ଥିବେ ତୁମେ କମିତି ଜାଣିଲ ? ହୁଏ ତ ତାଙ୍କର ବାପ ଗୋଟିଏ ଦେଶର ଆଉ ମା' ଗୋଟିଏ ଦେଶର ହୋଇଥିବେ ।

—ତା'ପରେ ?

—ତା'ପରେ କୌଣସି କଥାରେ ତୁମେ ଯେତେ ବିରକ୍ତ ଓ ଉତ୍ତ୍ୟକ୍ତ ହେଲେ ବି ରାଗି କିଛି କହିବନ । କଥାଟା ନରମ ଓ ଭଦ୍ର ହେବା ଉଚିତ । ଧର କୌଣସି ଜାଗାରେ, କ୍ୟୁରେ କି ଅନ୍ୟ କେଉଁଠି ଜନଗହଳରେ ତୁମ ଗୋଡ଼ କିଏ ମାଡ଼ିଦେଲା । ଆମ ଦେଶରେ ଏ ପରିସ୍ଥିତିରେ ଯେମିତି ଗାଳିଗୁଲଜ କରନ୍ତି ସେଇଟା କରିବନି । କଣ୍ଠକୁ ନରମ ରଖି କହିବ, ଏଇଟା ଗ୍ରହଣୀୟ ନୁହେଁ; ମୁଁ ଏ ପରିସ୍ଥିତିରେ ଏପରି ବେହୁସିଆରି ଭାବରେ କାମ କରି ନ ଥାନ୍ତି·· ଏପରି କିଛି କହିବ ।

—ଆଚ୍ଛା ଶିଖଉଚୁ ମତେ । ମାଡ଼ ଖାଇ ଭଦ୍ର ବ୍ୟବହାର ଦେଖେଇବ । ହଉ ଚାଲ କୁଆଡ଼େ ଯିବୁ ।

ଏତେବେଳକୁ କେତେଜଣ ଯୁବତୀ ଆମ କଡ଼ ଦେଇ ଗଲେ । ମୁଁ ପୁରା ବଡ଼ଦାଣ୍ଡ ଷଣ୍ଢ ପରି ବେପରବାଏ ଭାବରେ ମାଡ଼ି ଚାଲିଥାଏ । ଭୌମିକ ମୋତେ ଟିକିଏ ଆଡ଼େଇ ଦେଇ କହିଲା, ହାଁ, ସାବଧାନ । ମହିଳା ଯେ !

—ମହିଳା ହେଲେ କ'ଣ ହେଲା ?

—ତାଙ୍କୁ ରାସ୍ତା ଛାଡ଼ି ଦେଇ ତୁମେ କଡ଼କୁ ଚାଲି ଆସିବ ନା, ନୋହିଲେ ତାଙ୍କ ପ୍ରତି ଅବମାନନା, ଅସମ୍ମାନ ହବ ଯେ ! ଏଠି ସବୁ ଜାଗାରେ ସବୁ କଥାରେ ମହିଳାମାନଙ୍କୁ ସମ୍ମାନ ଦେଖାଯାଏ, ଅଗ୍ରାଧିକାର ଦିଆଯାଏ । ମହିଳା ପ୍ରଥମେ, Ladies first ଏହି ଉକ୍ତିରୁ ସବୁ ବୁଝିଥିବ ।

—ମହିଳା ତ ଏଠି ଶାଗମାଛ ପରି କାରବାର ହେଉଛନ୍ତି ।

—ତା' ହୁଅନ୍ତୁ କିନ୍ତୁ ବାହାରେ ଅନ୍ତତଃ ତାଙ୍କ ପ୍ରତି ସୌଜନ୍ୟ ଦେଖାଇବାକୁ ପଡ଼ିବ !

ହଠାତ୍ କେତେକ ମହିଳା କଣ୍ଠର ଶବ୍ଦ ମୋ କାନରେ ପଡ଼ିଲା ! କ'ଣ ହେଲା ? ମୁଁ କାନ ଡେରି ଶୁଣିଲି । ଭୌମିକ କହିଲା, କିଛି ଡର ନାହିଁ । ଆମେ ପଶ୍ଚି ରାଜ୍ୟର ଦ୍ୱାର ଦେଶରେ ।

ଓ !

ଦେଖିଲି ଦଳେ ଯୁବତୀ, ଖୁବ ସୁନ୍ଦରୀ, ରୂପସୀ, ଗୋଟିଏ ବଡ଼ କୋଠା ସାମନାରେ ଧାଡ଼ି କରି, ହାତ ଠାରି ଡାକୁଛନ୍ତି ।"Yon want a girl, Come cn !" ତୁମେ ଝିଅ ଚାହୁଁଚ ? ଚାଲିଆସ । ଏମାନେ ସମସ୍ତେ ପ୍ରାୟ ଅଳ୍ପ ବୟସ୍କା, ପିନ୍ଧିଛନ୍ତି ଭଲ ବେଶ ପୋଷାକ । ଏମାନେ ସବୁ କ'ଣ ବେଶ୍ୟା ? ଭୌମିକକୁ ପଚାରିଲି ।

—ଏମାନେସବୁ ସ୍କୁଲ କଲେଜ ଛାତ୍ରୀ ଓ ବିଭିନ୍ନ ଦପ୍ତରରେ କାମ କରୁଥିବା ଯୁବତୀ, ଦଳବାନ୍ଧି ବ୍ୟବସାୟ କରୁଚନ୍ତି । ଠିକ୍ ବ୍ୟବସାୟ ନୁହେ, ମୋଟାମୋଟି ମଦ୍ୟପାନ, ଫୁର୍ତ୍ତି ମଜଜ କରିବାକୁ ଏ ବାଟ ଧରିଚନ୍ତି ।

—କିନ୍ତୁ ବେଶ୍ୟା ନୁହନ୍ତି !

—ସେଇଟା ବେଶ୍ୟାର ସଂଜ୍ଞା ଉପରେ ନିର୍ଭର କରେ । ଖାଲି ଅଙ୍ଗଦାନ କଲେ ଯେବେ ବେଶ୍ୟା ହୁଅନ୍ତି ··· ତେବେ ସେଇଟା ବି ଏଠି

ଯୂବ ଅସମ୍ଭବ ନୁହେ । କିନ୍ତୁ ଅନ୍ୟ ଜାଗା ଅଛି ଯେଉଁଠି କି ବେଶ୍ୟାବୃତ୍ତି ଟା ନିରାଟ ନିଛକ ମାତ୍ରରେ ଚାଲେ ।

ବଡ଼ ଆଶ୍ଚର୍ଯ୍ୟ ଲାଗିଲା । କ'ଣ ଏକଥା ! ଏତେଗୁଡ଼ିଏ ସୁଶ୍ରୀ ଯୁବତୀ, ପିନ୍ଧିଛନ୍ତି ସୁନ୍ଦର ପୋଷାକ ପରିଚ୍ଛଦ କିନ୍ତୁ କ'ଣ ପାଇଁ ଏ ପନ୍ଥା ଧରିଚନ୍ତି ! ତା'ପରେ ଏପରି ଭାବରେ ଚିତ୍କାର କରୁଚନ୍ତି କାହିଁକି ? "You want a girl ? Come on ! A girl for a guinea !" ଗୋଟାଏ ଏ ଗିନିକୁ ଗୋଟିଏ ଝିଅ ! ଗୋଟାଏ ଗିନିମାନେ ୨୧ ଶିଲିଂ ! ବହୁତ ଦାମ୍ ! ତଥାପି ଆମ କଟକ ଛତରା ବଜାରରେ ପରିବା ଦୋକାନୀ-ମାନେ ଚଲେଇ ପାଟି କଲାପରି, ବାଇଗଣ କଲେ ଟଙ୍କାଏ, ପୋଟଳ କଲେ ଦିଟଙ୍କା, ଏମାନେ ନିଜକୁ ବିକେଇବାକୁ ଚେଷ୍ଟା କରୁଚନ୍ତି । ପୁଣି, ଜାତିଧର୍ମ, ବର୍ଣ୍ଣବୈଷମ୍ୟ, ବୟସର ବ୍ୟବଧାନ, କୌଣସି ଭେଦାଭେଦ ନାହିଁ । ଯାହାକୁ ଦେଖୁଚନ୍ତି ତାକୁ ଅକୁଣ୍ଠ ଆମନ୍ତ୍ରଣ କରୁଚନ୍ତି, ବ୍ୟାକୁଳ ଅନୁରୋଧ କରୁଚନ୍ତି । ଏ ତ ଏକ ସାମ୍ୟବାଦର ପୀଠ !

—ଆଚ୍ଛା ବନ୍ଧୁ ! ଏମାନେ କଣ ଏତେ ଦୁଃସ୍ଥ, ଏତେ ନିରାଶ୍ରୟ ଯେ···

—ଆଦୌ ନୁହେ । ଏ ଗୋଟାଏ ଫେସନ, ଗୋଟାଏ ଫୁର୍ତ୍ତି । ମଜଜ ମଜଲସ୍ କରିବାକୁ ଗୋଟାଏ ଫନ୍ଦ କରିଛନ୍ତି ।

—କିନ୍ତୁ ପ୍ରକୃତରେ ବେଶ୍ୟାବୃତ୍ତି କରୁ ନାହାନ୍ତି ?

ମୋର ବିଶେଷ ଅଭିଜ୍ଞତା ନାହିଁ । ଭିତରକୁ ଚାଲ ସବୁ ଜାଣି ପାରିବ ।

—କିନ୍ତୁ ଭେଟି ଗୋଟାଏ ଗିନି ଯେ !

—ଓ, ସେ ଏମିତ ବେଶୀ କଣ ! ଅଭିଜ୍ଞତା ଅର୍ଜନ କରିବାକୁ··· କିନ୍ତୁ ଗୋଟିଏ ଗିନି ତ ଖାଲି ଦର୍ଶନୀ । ବାକି ପିଆ ପିଇ ଖର୍ଚ୍ଚ ତ ଅଛି । ଚାଲ, ଭିତରକୁ ଯାଇ ସବୁ ତଥ୍ୟ ସଂଗ୍ରହ କରିବା ।

ଏତିକି କହି ମୋ ହାତକୁ ଟାଣିନେଇ ଭୌମିକ ଭିତରକୁ ଚାଲିଲା । କେତେ ଝିଅ ଆମକୁ ବେଢ଼ିଗଲେ ଏବଂ ସେମାନେ ଉପର ମହଲାକୁ

ପାଶ୍ଚୋଟି ନେଲେ । ବାହରେ ସିଡ଼ିରେ ଦେଖିଲୁ ଝିଅସବୁ ବିପୁଳ ଉତ୍ସାହ ଉଦ୍ଦୀପନା ସହ ତଳୁ ଉପରକୁ, ଉପରୁ ତଳକୁ ଯାଆସ କରୁଚନ୍ତି, ଯେମିତି ଆମ ଦେଶର ଝିଅ ବୋହୂମାନେ ବିବାହ ବ୍ରତ ଆଦି ଉତ୍ସବରେ ମାତି ଉଠନ୍ତି । ତାଙ୍କ ସାଙ୍ଗରେ ସେମାନଙ୍କ ସମ୍ମାନିତ ଅତିଥି ସବୁ ଯାଉଥାନ୍ତି । ଉପର ମହଲରେ ଦେଖିଲି ମହା ଚହଳ, ଖୁବ୍ କୋଳାହଳ ଗୁଲିଚି । ବାଃ ! ରୂପ କିଣାବିକାର ବିପୁଳ ଆନନ୍ଦ-ବଜାର ଜମି ଉଠିଚି । କେବଳ ସେଇ କୋଠାରେ ନୁହେଁ, ଆଖପାଖ କେତେଟା ଘରେ ଏହିପରି ଗହଳ ଚହଳ ଲାଗିଥାଏ । ପାଟିଗୁଣ୍ଡ ଶୁଣାଯାଉଥାଏ ।

ଆମ ଅଭ୍ୟର୍ଥନାକାରିଣୀମାନେ ଆମକୁ ନେଇ ଗୋଟିଏ ସୋଫା ସେଟ୍‌ରେ ବସେଇଦେଲେ । ଓଃ, କି ଆଦର କି ଯତ୍ନ !

ମୁଁ କୃତକୃତ୍ୟ ହୋଇ ଉଠିଲି । ଯାହାହେଉ, ପଇସା ପଛେ ନିଅନ୍ତୁ ଆମ ପରି ଅନାଡ଼ି, ଅପଦାର୍ଥଙ୍କୁ ବେଶ୍ ସ୍ନେହ ସୋହାଗ ଦେଖଉଚନ୍ତି । ଭୌମିକଙ୍କୁ ଏଠା କାରବାର ବୋଧହୁଏ ଜଣାଥିଲା । ସେ ବସିପଡ଼ିବା ମାତ୍ରେ ସେ ଝିଅମାନଙ୍କର ଯେ ନେତ୍ରୀ ବୋଲି ଜଣାପଡ଼ୁଥିଲେ ତାଙ୍କୁ କିଛି ପାଉଣ୍ଡ ସମର୍ପି ଦେଲା । ଏଁ, ଏତେଗୁଡ଼ାଏ ପଇସା ସାଙ୍ଗେ ସାଙ୍ଗେ ଦେଇଦେଲା । ଓଃ ! ଏଇଟା ବୋଧହୁଏ ପ୍ରବେଶିକା ଫିସ୍ । ଏଇ ପ୍ରବେଶିକା ଫିସ୍ ପାଇବାପରେ ସେ ଝିଅମାନଙ୍କ ଭିତରୁ କେତେଜଣ ଆମ ପାଖରେ ଆସି ବସିଲେ । ଏପର୍ଯ୍ୟନ୍ତ ସେ ପରିସ୍ଥିତି ଓ ପରିବେଶକୁ ବେଶ୍ ଉପଭୋଗ କରୁଥିଲି । କିନ୍ତୁ ଏଣିକି ବଡ଼ ବେଆଡ଼ା, ବଡ଼ ଅସୁବିଧା ଲାଗିଲା । ଭୌମିକଙ୍କୁ କହିଲି । ହଉ ଦର୍ଶନୀ ତ ଦେଲେ । ସବୁ ତ ଦେଖିଲେ ଏଥର ଗୁଲ ।

— କୁଆଡେ ?

— ବସାକୁ ବାହୁଡ଼ିବା ।

— ଧେତ୍ । ବସ ନା ।

ହେଲେ ମୁଁ ଯେମିତି ପାରୁଉଠୁ ନଥାଏ । ଅନେକ ସମୟରେ ଆମେ ଖବ୍ ଉତ୍ସାହ ଆନନ୍ଦରେ ବଡ଼ ଦେଉଳରେ ପଶିଯାଉ । କିନ୍ତୁ

ଯେତେବେଳେ ଗମ୍ଭୀର ଝପି ଠାକୁରଙ୍କ ପାଖକୁ ଆଗଉ, ସ୍ବରଆଡ କ୍ରମେ ଅନ୍ଧାରଆ ଦେଖାଯାଏ, ତଳ ଓଦା ଚକ୍‌ଣିଆ ଚଟାଣରେ ଗୋଡ ଖସିବାକୁ ଆରମ୍ଭ କରେ, ଆମ ମନରେ ଟିକଏ ସନ୍ଦେହ ଜାଗି ଉଠେ, କଣ ରତ୍ନସିଂହାସନ ଯାଏ ଯାଇ ହେବନି କି, ଠାକୁରଙ୍କୁ ଦେଖି ହେବନି କି ! ହୁଏତ କେଉଁଠି ଚିତ୍‌ପଟାଙ୍ଗ୍ ପଡ଼ିଯିବାର ଭୟ । କି ଲଜ୍ଜାର କଥା ! ବଡ ଦେଉଳକୁ ଆସି ରତ୍ନସିଂହାସନ ପର୍ଯ୍ୟନ୍ତ ଯାଇପାରିବା ନି । ନିତାନ୍ତ ଧର୍ମବଳର ଅଭାବ ନଥିଲେ ଏପରି ଦୁର୍ଦ୍ଦଶା ଘଟେନି । ହେଲା ବି ସେ ଧର୍ମାଳୟ, ଏ ବେଶ୍ୟାଳୟ କିନ୍ତୁ ମୋର ଅବସ୍ଥା ସେଇ ଭୂମିରେ ଭୂମିରେ । ପୁଣି ଆମର ଏ ଅନୁଭୂତ ଅଭିଯାନ ଯେତେବେଳେ ପ୍ରଥମ ପର୍ଯ୍ୟାୟ ଝପି ଦ୍ୱିତୀୟ ଆଡ଼କୁ ଗତି କଲା ମୋର ଅବସ୍ଥା ବଡ ସାଂଘାତିକ, ଦୟନୀୟ ହେଇଉଠିଲା ।

ବନ୍ଧୁ ଭୌମିକ ବଡ ସ୍ୱଳ୍ପଭାଷୀ । ସେ ଏ ଯୁବତୀମାନଙ୍କ କଥା ଭଲକରି ବୁଝୁଥାଏ କି ନାହିଁ କେଜାଣି ଖାଲି ସହର୍ଷ ବଦନରେ ହଁ, ନା, ଠାର, ଅଭିନୟରେ ସବୁ ନଷ୍ଟଭିକରୁଥାଏ । ମୁଁ କିନ୍ତୁ ଭାରି କୁହାଳିଆ ! କଲେଜ କ୍ଲାସ୍‌ରେ ଅଧ୍ୟାପକଙ୍କ ବକ୍ତୃତା ମନଦେଇ ଶୁଣିଲା ପରି ମୁଁ ଏ ଝିଅମାନଙ୍କର ପ୍ରତ୍ୟେକ କଥା ବୁଝିବାକୁ ଚେଷ୍ଟା କରୁଥାଏ ଏବଂ ମଝିରେ ମୋର ଟିକା ଟିପ୍‌ପଣୀ ବ୍ୟଙ୍ଗକୌତୁକଭରି କଣ୍ଠରେ ଦେଉଥାଏ ଏବଂ ଗୁଡାଏ ସେମାନଙ୍କ ରୂପ ଯୌବନକୁ ପ୍ରଶଂସା କରୁଥାଏ, ଗୁଡାଏ କଥା ପଗ୍ଭରୁଥାଏ । ମୋ'ର ଏ ଢଙ୍ଗ ଦେଖି ସେ ଝିଅମାନେ ଅବାକ୍ ହୋଇ ରହୁଁଥାନ୍ତି । କାରଣ ବାହାରବାସୀ ସାଧାରଣତଃ ଅଳ୍ପ କଥା କହନ୍ତି । ସେମାନେ କାହାକୁ ଏତେ ଗପିବା ବୋଧହୁଏ ଦେଖି ନଥିଲେ । ମୋର ଏହି ପ୍ରଗଳ୍‌ଭତାକୁ ସେମାନେ ପ୍ରେମାତିଶଯ୍ୟର କାରଣ ବୋଲି ଧରିନେଇ ମୋତେ ଖୁବ୍ ଆଦର କରିବାକୁ ଆରମ୍ଭ କରି ଦେଇଥାନ୍ତି ଏବଂ ମୋର ଭଲମନ୍ଦ ନେଇ ବହୁତ କଥା ପଗ୍ଭରୁଥାନ୍ତି । କିନ୍ତୁ ମୋଟ କଥା ମୁଁ ଏ ବିଚିତ୍ର ପରିସ୍ଥିତିରେ ଏକପ୍ରକାର ପାଏଲା ହେଇଯାଇଥାଏ ଏବଂ ଏ ଆସରକୁ କୌଣସିମତେ ଗପରେ କଟେଇ ଦେଇ କିଛି ତଥ୍ୟସଂଗ୍ରହ କରି ସେଠାରୁ ବାହୁଡ ଆସିବାର ବ୍ୟବସ୍ଥାରେ ଥାଏ । ଅବଶ୍ୟ ପରିସ୍ଥିତିଟା ମୋତେ ଖୁବ୍ ମୁଗ୍ଧ କରିଦେଇଥାଏ । କାରଣ ଏତେଗୁଡ଼ିଏ

ସୁନ୍ଦରୀ ଯୁବତୀ ମୁଁ ଏକ ସାଙ୍ଗରେ କେଉଁଠି ଦେଖିନ । ପୁଣି ସେମାନେ ଖୁବ୍ ସାବଲୀଳ ଭଙ୍ଗୀରେ ଏଣେ ତେଣେ ଯାଆସ କରି ସ୍ଥାନଟିକୁ ଏପରି ଛନ୍ଦମୟ ଉତ୍ସବମୟ କରିଥାନ୍ତି ଯେ ମୁଁ ବଡ଼ ଭାବବିଭୋର ହୋଇ ଉଠିଥାଏ । ସେମାନେ ଯେତେବେଳେ ସୋମରସ ପିଆଲା ଧରି ଦୋହଲି ଦୋହଲି ଗୋଟିଏ ପ୍ରେମିକ ପାଖରୁ ଅନ୍ୟ ପ୍ରେମିକ ପାଖକୁ ଯାଉଥାନ୍ତି ମୋ ଆଖିକୁ ସେ ଦୃଶ୍ୟ ଖୁବ୍ ସୁନ୍ଦର ଦେଖାଯାଉଥାଏ । ମୋର ମହାକବି କାଳିଦାସଙ୍କ "ରଘୁବଂଶ" କାବ୍ୟରେ ବର୍ଣ୍ଣିତ ଭୋଜରାଜଭଗିନୀ ଇନ୍ଦୁମତୀଙ୍କ ସ୍ୱୟଂମ୍ବର କଥା ମନେ ପଡ଼ିଗଲା ।

ତାଂ ସୈବ ବେତ୍ରଗ୍ରହଣେ ନିଯୁକ୍ତା ରାଜାନ୍ତରଂ ରାଜସୁତାଂ ନିନାୟ
ସମୀରଣୋତ୍ଥେବ ତରଙ୍ଗ ଲେଖା ପଦ୍ମାନ୍ତରଂ ମାନସ ରାଜହଂସୀ ।

ଯେପରି ମାନସସରୋବରରେ ତରଙ୍ଗମାଳା ପବନରେ ଦୋଳାୟିତ ହୋଇ ରାଜହଂସୀମାନଙ୍କୁ ଏକ ପଦ୍ମ ଫୁଲରୁ ଅନ୍ୟ ପଦ୍ମ ଫୁଲକୁ ଭସାଇ ନିଅନ୍ତି ସେହିପରି ସଖୀ ସୁନନ୍ଦା ରାଜକୁମାରୀ ଇନ୍ଦୁମତୀଙ୍କୁ ଗୋଟିଏ ଗୋଟିଏ ରାଜକୁମାରଙ୍କ ପାଖକୁ ପାଖେଇ ନେଇଗଲେ । ହଁ, ଏହି ସୁନ୍ଦରୀ ଯୁବତୀମାନେ ଲୀଳାୟିତ ଭଙ୍ଗୀରେ ତାଙ୍କ ପ୍ରେମିକ ବନ୍ଧୁମାନଙ୍କ ପାଖକୁ ଯାଉଛନ୍ତି । କିନ୍ତୁ ତାଙ୍କ ହାତରେ ତ ବରଣମାଳା ନାହିଁ । ଅଛି ମଦପାତ୍ର । କେହି ସଖୀ ଏମାନଙ୍କୁ ପାଖେଇ ନେଉ ନି, ଏମାନେ ସ୍ୱୟଂଚାଳିତା ହୋଇ ସ୍ୱୟଂମ୍ବରା ହେଉଛନ୍ତି । କିନ୍ତୁ ଏମାନେ ତ ଏମାନଙ୍କ ପ୍ରେମିକମାନଙ୍କୁ ବାଛୁ ନାହାନ୍ତି । ପ୍ରେମିକମାନେ ଏମାନଙ୍କୁ ବାଛୁଛନ୍ତି । ତେଣୁ ଏଠି ଏକ ବିପରୀତ ସ୍ୱୟଂମ୍ବର ବା ଓଲଟ ସ୍ୱୟଂମ୍ବର ଲୀଳା ଚାଲିଛି । ହଁ ଚାଲିଛି ସ୍ୱୟଂମ୍ବର ଲୀଳା, ପ୍ରେମଲୀଳା !

ମୋ ଦୁଇ କଡ଼ରେ ବସିଥିବା ଦୁଇଜଣ ଯୁବତୀ ମୋତେ ବଡ଼ ସସ୍ନେହରେ ପଚାରିଲେ, ମୁଁ କଣ ପିଇବି ! ମୁଁ ଆଉ କଣ ପିଇବି, ପିଇବି ପାଣି । କଣ୍ଠଟା ଯେମିତି ଶୁଖି ଆସୁଛି । କିନ୍ତୁ ଏ କଥା ସ୍ପଷ୍ଟ କହିଲିନି । ବ୍ୟାକୁଳ ନେତ୍ରରେ ଭୌମିକଙ୍କୁ ଚାହିଁଲି । ଗୁରୁ କି ଆଜ୍ଞା ଦେବେ ! ହୁଏତ ଆଦବକାଏଦା କେଉଁଠି ଖିଲାପ୍ ହୋଇଯିବ ! ଗୁରୁ ସହର୍ଷ ବଦନରେ କଣ ଇଙ୍ଗିତ ଦେଲେ । ମୋତେ ନୁହେଁ, ସେ ଯୁବତୀମାନଙ୍କୁ ।

ସେମାନେ ସାନନ୍ଦରେ ପାମାସ୍ତୁ ତିନି ଗିଲାସ ବରାଦ କରିଦେଲେ । ମୁଁ କିନ୍ତୁ ବିକଳ ହୋଇ ମନାକଲି ମୋ ପାଇଁ ନମଗାଇବାକୁ ।

—କାହିଁ ଆପଣ କଣ ପିଅନ୍ତିନି ?

— ନା

—ନା, ନା, ତା କେମିତି ହବ ? ଆପଣ ପିଇବେ ନା ।

ଆହା-ହା ! କେତେ ସ୍ନେହ ଶ୍ରଦ୍ଧା ! ହେଲେ ଦାମ୍‌ଟା ତ ମୋତେ ଦେବାକୁ ହେବ । ଯାହାହେଉ ସେମାନଙ୍କର ଏକାକଥିଦ୍, ମୋତେ ପିଇବାକୁ ପଡ଼ିବ । ହେଉ, ଯଥା ଆଜ୍ଞା । ଅନୁଭୂତି ଆହରଣ କରିବାକୁ ଯେତେବେଳେ ଆସିଛି ଯାଉ କେଉଁଯାଏ କଥା ଯାଉଛି ।

ମଦପାତ୍ର ଚାଲିଆସିଲା । ସେ ପ୍ରେମଶୀଳା ମହିଳାମାନେ ସସ୍ନେହରେ ଗୋଟିଏ ପାତ୍ର ମୋତେ ବଢ଼ାଇ ଦେଲେ ! ମୁଁ ସେଥିରୁ ଅବଶ୍ୟ କିଛି ମୋର ସାଥୀ ଯୁବତୀ ଦୁହିଁଙ୍କ ପିଆଲାରେ ଢ଼ାଳିଦେଲି । କିନ୍ତୁ ପଇସା ଦେବାକୁ ପଡ଼ିବ ଜାଣି ଲୋଭରେ ଆଛା କରି ମୁନ୍ଦାଏ ପିଇଦେଲି । ସାଙ୍ଗେ ସାଙ୍ଗେ ନିହାତି ନିଶା ଧରିନେଲା । କ୍ରମେ ସବୁଟା ଯେମିତି ଝାପ୍‌ସା, ଝାପ୍‌ସା ଜଣାଗଲା । ଦେହ ପୂରା ଅବଶ । କଥା କହିବାର ଶକ୍ତି ନାହିଁ । କଣ୍ଠଟା ଶୁଖିଯାଉଥାଏ । ତାପରେ ଆସିଲା ହାକୁଟି, ଗୋଟାକ ପରେ ଗୋଟାଏ, ଧାଡ଼ି ଧରି । ମୁଣ୍ଡ-ଦେହ ବୁଲେଇ ଦେଉଥାଏ କଣ ବାନ୍ତି ହେବ କି । ପ୍ରାଣବାୟୁ ଉଡ଼ିଯିବ କି ! କି ଭୟାନକ କାଣ୍ଡ ! ବଲ୍‌ଟକୁ ପାଠ ପଢ଼ିବାକୁ ଆସି ଶେଷରେ ଏ କଦର୍ଯ୍ୟ ଜାଗାରେ ଜୀବନ ଯିବ !

ଟିକିଏ ସୋଫାକୁ ଆଉଜି ପଡ଼ି ଆଖି ବୁଜି ନିଜକୁ ପ୍ରକୃତିସ୍ଥ କରିବାକୁ ଚେଷ୍ଟାକଲି କିନ୍ତୁ ଭୁହାକୁ ଭୁହା ହାକୁଟି ଆସି ଦେହ ମନକୁ ଅଥୟ କରିଦେଉଥାଏ । ବାନ୍ଧବୀମାନେ ମୋ ଅବସ୍ଥା ଦେଖି ବିକଳ ହୋଇ ଉଠିଲେ ଏବଂ ଆଉ କିଛି ପାମାସ୍ତୁ ବରାଦ କଲେ ଏହାର ପ୍ରତିକାର ଓ ପ୍ରତିରୋଧ କରିବାକୁ । ମୁଁ କି ଆଉ ସେ ଧନ୍ଦାରେ ପଶେ ! ବିକଳରେ ଭୌମିକକୁ ଡାକିଲି । ସେ ଆସି ପାଖରେ ବସିପଡ଼ିବାରୁ ତା ଆଡ଼କୁ ଢଳିପଡ଼ିଲି କଣ ଏଣୁ ତେଣୁ କହି । ତେଣିକି ଚାରିଆଡ଼େ ଘନ ଅନ୍ଧକାର ଜଣାପଡ଼ିଲା ।

ମୁଁ ଯେମିତ ଚେତା ଚଇତନ ହରେଇ ବସିଚ । ଇମିତ କେତେକାଳ ଗଲା କେଜାଣି ! କିଛି ସମୟପରେ ଟିକିଏ ଭଲ ଲାଗିବାରୁ ଭୌମିକକୁ କହିଲି, ଚାଲ, ଏଠୁ ଯିବା । ସେ ବିଚରା ଆଉ କଣ କରିବ ! ଆହତ ସୈନ୍ୟଙ୍କୁ ଯୁଦ୍ଧଭୂମିରୁ ଉଠେଇଲା ପରି ମୋ ହାତ ଟାକୁ ତା' କାନ୍ଧରେ ପକେଇ ଧୀରେ ଧୀରେ ସେଠାରୁ ବାହାରିଲା । କ୍ଷଣକ ପାଇଁ ସବୁଟା ନୀରବ ନିସ୍ତବ୍ଧ । ଏତେବଡ କୋଳାହଳ ପୃଥ୍ବୀ ଜାଗାଟା ଯେମିତ ଭୟାଚ୍ଛନ୍ନ, ବ୍ୟଥାତୁର ହୋଇଉଠିଚ ! ସମସ୍ତେ ଏକଲୟରେ ଆମ ଆଡ଼କୁ ଚାହିଁଥାନ୍ତି ! ମୋତେ ସଚେତନ କରିବାକୁ ଭୌମିକ ଗୋଟାଏ ଦିଟା ଖୁଦା ଦେଲା । କ୍ରମେ ମୋର ଶକ୍ତି ଫେରି ଆସିଲା କିନ୍ତୁ ବହୁ ସମୟ ଧରି ମୁଁ ଚୁପ୍‌ଚାପ୍ ରହିଲି । ପାଟିରୁ କଥା ବାହାରୁ ନଥାଏ । ଭୌମିକ ଚଲେଇଥାଏ ଗାଳି ମୋ ଉପରେ । ହେଲେ ମୋର ସେ ସବୁକୁ ଖାତିର ନାହିଁ । ଜୀବନଟା ରକ୍ଷା ହୋଇଗଲା, ସେଇ ବଡ କଥା !



# ଉଲଗ୍ନ ବଣିତ !

ସେଦିନ ସନ୍ଧ୍ୟାର ସେ ରଙ୍ଗରସଭରା ଆସର ଭିତରୁ ବାହାରି ଆସି ଯେପରି ସ୍ୱସ୍ତିର ନିଃଶ୍ୱାସ ମାରିଲି । ପରିବେଶଟା ଯେ କିଛି ଖରାପ ଲାଗୁଥିଲା ତାହା ନୁହେଁ । ସୁନ୍ଦର ସୁଡ଼ୋଳ ନବଯୌବନଭରା ଯୁବତୀ-ମାନଙ୍କର ରୋମାଞ୍ଚକର ଅପୂର୍ବ ସାନିଧ । ସେମାନଙ୍କ ଲୀଳାୟିତ ତନୁର ଅପରୂପ ଭଙ୍ଗିମା, ତରଙ୍ଗାୟିତ ରୂପଛଟାର ନୈସର୍ଗିକ ଲାସ୍ୟ ମୋତେ ଖୁବ୍ ମୁଗ୍ଧ କରିଥିଲା । କିନ୍ତୁ ସେ ପାମାସୃ ବିଭ୍ରାଟଟା ସବୁ ସୁଖ, ସବୁ ଆନନ୍ଦକୁ ନଷ୍ଟ କରିଦେଲା । ସେ କ୍ଲବ ମଉଜକୁ ପିଆପିଇ ପାଣି ସାରିଦେଲା । ଅବଶ୍ୟ ସେ ଯୁବତୀମାନଙ୍କ ଗତିବିଧି, ଢ଼ଙ୍ଗରଙ୍ଗ, ଆଗ୍ରହ, ବ୍ୟବହାର ଗୋଟାଏ ବ୍ୟାବସାୟିକ ଗୁଣ୍ଡରେ ବନ୍ଧା ହେଲାପରି ମନେ ହେଉଥିଲା ତଥାପି ସେମାନେ ଯେପରି ଭାବରେ ପ୍ରେମ-ପ୍ରଣୟ, ସ୍ନେହ-ସୋହାଗର ବନ୍ୟା ଖେଳାଇ ବିଭିନ୍ନ ଭଙ୍ଗୀରେ ଆଗନ୍ତୁକ, ଅପରିଚିତ ପ୍ରେମିକମାନଙ୍କ ପାଖରେ ପହଞ୍ଚିଯାଉଥାନ୍ତି, ବସି ଯାଉଥାନ୍ତି ତାହା ଏକା ଦେଖିବାର କଥା । ସ୍ୱାକୁ ଯେ କିହିବ ନିଃସ୍ୱାର୍ଥ ଏକନିଷ୍ଠ ପ୍ରେମ କିନ୍ତୁ ପଇସା ତ ନେଉଚନ୍ତି । ମଦ ବି ପିଉଚନ୍ତି । ପିଇଚନ୍ତି ବୋଲି ପିଉଚନ୍ତି ଏକେବାରେ ସ୍ପଞ୍ଜପରି ଭୁହାକୁ ଭୁହା ସେ ରଙ୍ଗୀନ୍ ରସ ଶୋଷି ନେଉଥାନ୍ତି । ଧନ୍ୟ ଏମାନଙ୍କର ସାହସ, ଧନ୍ୟ ଏମାନଙ୍କର ସହଣି ଶକ୍ତି !

ପରିସ୍ଥିତିଟା ଯେତେ ଉପଭୋଗ୍ୟ ହେଲେ ବି ମୋର ଯେମିତି ବୈରାଗ୍ୟ ଆସିଥାଏ ଏସବୁ ଅନୁଭୂତି ପ୍ରତି । ତଥାପି ମନ କୋଣରେ ଆଉକିଛି ଅଭିଜ୍ଞତା ହାସଲ କରିବାକୁ ବ୍ୟାକୁଳତା ଥାଏ । ହଁ, ଏ ବ୍ୟାକୁଳତାଟା ଅନେକାଂଶରେ ପ୍ରସୂତି ବୈରାଗ୍ୟ ପରି । ସ୍ତ୍ରୀମାନେ ପ୍ରସବ-ବେଦନାରେ ବ୍ୟଥିତ ହୋଇ ଅନେକ ସମୟରେ ପ୍ରତିଜ୍ଞା କରି ବସନ୍ତି ଆଉ ସନ୍ତାନର ମା ହେବେନି ବୋଲି । କିନ୍ତୁ କିଛିକାଳ ପରେ ପୁଣି

ଗର୍ଭଧାରଣ କରିବାକୁ ଅକ୍ଷମ ହୋଇଉଠନ୍ତି । ସ୍ତ୍ରୀ ଜନ୍ମ, ସନ୍ତାନ-ପ୍ରସବ ଯେମିତି ଏକ କଠିନ ସୂତ୍ରରେ ବନ୍ଧା । ବନ୍ଧ୍ୟା ଜୀବନ, ସେ ଯେତେ ଅଳ୍ପ କାଳପାଇଁ ହେଲେ ବି ସେ ତାଙ୍କର ଅସହ୍ୟ ! ଭୌମିକ କିନ୍ତୁ ମୋତେ ବହୁତ ମନବୋଧ ଚଉତିଶା ଶୁଣାଉଥାଏ । କିଛିବାଟ ଯିବାପରେ ମୁଁ ପ୍ରକୃତିସ୍ଥ ହୋଇଉଠିଲି । ବରଂ ସେ ଉଷ୍ମ ପାନୀୟର ପ୍ରଭାବ ଯୋଗୁ ଦେହ, ମନ ଖୁବ୍ ସତେଜ ସରସ ହୋଇ ଉଠିଥିଲା । ହସହସ ବଦନରେ ବନ୍ଧୁଙ୍କୁ ପଚାରିଲି, ପରବର୍ତ୍ତୀ କାର୍ଯ୍ୟକ୍ରମ କଣ ? ଭୌମିକ ମୋର ଦୁର୍ଦ୍ଦଶା ଦେଖି ଟିକିଏ ବିବ୍ରତ ହୋଇଉଠିଥିଲା । ଯେମିତି ସେ ଜାଣିପାରିଲା ମୁଁ ପ୍ରକୃତିସ୍ଥ ହେଇଯାଇଚି, ସେ ଆରମ୍ଭ କରିଦେଲା କପଟ ଭର୍ତ୍ସନା । କହିଲା "ତୁମକୁ ନେଇ କିଛି ମଉଜ ମଜ୍‌ଲିସ୍ କରି ହେବନି । କୌଣସି କଥା ପାଇଁ ତୁମର ଧୈର୍ଯ୍ୟ, ସାହସ ନାହିଁ । କାଲି ସେଠି ଗୋଟିଏ କାଣ୍ଡ ଯେ ! ଗୁମ୍‌ମାରି ତ ବସିଯାଇଥାନ୍ତି ! ଏତେ ଶୀଘ୍ର ସେଠାରୁ ଆସିବା ଠିକ୍ ହୋଇନି । ଗୁଡ଼ାଏ ପଇସା ଖର୍ଚ୍ଚ କରି......

—ମୋତେ ଯେମିତି ଖରାପ ଲାଗିଲା !

—କଣ ଖରାପ ଲାଗିଲା ! ବେଶ୍ ତ ଆସରଟା ଜମି ଆସିଥିଲା ।

—ଏ ଛେଆପିଇ ମୋ ହାତରେ ହବନି ।

—କୁଁଠା ହବ ଯେ ! ସବୁ ଆଡ଼କୁ ଯିବାକୁ ଅକ୍ଷମ । କିନ୍ତୁ ଯେଉଁଠିକି ଗଲେ ତୁମର ସେଇ ଅସ୍ଥିର ଚଞ୍ଚଳ ଭାବ । ତୁମର ତ ଖାଲି ଘର ମନେ ପଡ଼ୁଚି ଆଉ ତୁମେ ବାହାର-ଜୀବନ ଉପଭୋଗ କରିବ କଣ ?

ଏଇ ଦରକଥା ଶୁଣି ଛାତିଟା ମୋର ଯେମିତି ଦୁଲୁକି ଗଲା । ସତେ ତ ! ଲଣ୍ଡନବାସର ସୁଖଟା ମୁଁ ଉପଭୋଗ କରିପାରୁଚି କେଉଁଠି । ଯେଉଣେ ମୁଁଅଡ଼େ ଗଲେ ଗୋଟାଏ ଶାପଗ୍ରସ୍ତ ପ୍ରେତପରି ଖାଲି ହା-ହୁତାଶ ଭିତରେ । ଗୁଁ ଗୁଁ, ସୁଁ ସୁଁ ହେଇ ଦିନ କାଟୁଚି । ଏଇ ଭୌମିକ ପରି ଅନ୍ୟମାନେ ଯେପରି ନିଜକୁ ଆନନ୍ଦ-ଉଲ୍ଲାସରେ ଭସେଇ ଦେଉଚନ୍ତି ମୁଁ ତା' ପାରୁଚି କେଉଁଠି !

ଭୌମିକ ମୋର ମନର ଭାବ ବୁଝିପାରିଲା ନା କଣ ମୋତେ ସାନ୍ତ୍ୱନା ଦେବାକୁ ଯାଇ କହିଲା, "ହଉ, ଯାହା ହେବାର ହେଲା । ଚାଲ ନାଇଟ୍ କ୍ଲବ୍‌କୁ ଯିବା"

ନାଇଟ୍ କ୍ଲବ୍ କଥାଟା ଶୁଣି ମନଟା ମୋର ଆନନ୍ଦରେ ପଲ୍ଲବ ଉଠିଲା । ଭାବିଲି, ହଁ ଶ୍ରୀମନ୍ତ ଦେଶ ଇଟି କହୁଥିଲେ ନାଇଟ୍ କ୍ଲବ୍‌କୁ ନଗଲେ ଲଣ୍ଡନ ଅନୁଭୂତି ସମ୍ପୂର୍ଣ୍ଣ ହେବନି । ତେବେ ଯେମିତି ସେଥିକି ଉତ୍ସାହ ନାହିଁ । ଟିକଏ କୁଣ୍ଠେଇ କହିଲି, ନାଇଟ୍ କ୍ଲବ୍ !

—ହଁ, ନାଇଟ୍ କ୍ଲବ, ଉଲଗ୍ନ ବଲାଡ ! ନେଇଯିବି ତୁମକୁ ସେହି ଆଦିମ ସଭ୍ୟତାକୁ ଯେଉଁଠି ଆଦି ପୁରୁଷ ଓ ଆଦି ସ୍ତ୍ରୀ ବା ଆଡାମ୍-ଇଭ୍ ସେ ଯେ ହୁଅନ୍ତୁ ତାଙ୍କର ପର ନବାଭରଣା, ନିରଳଙ୍କାର, ତନ୍ୱୀ ସୁନ୍ଦରୀ···

ଭୌମିକ ଯେପରି କବିତା ଆବୃତ୍ତି କଲାପରି ଗପି ଯାଉଥାଏ । କହିଲି "ତୁ ଜଣେ କବି!"

—କବି ଗୁଡ଼ାକ ଗୋଟାଏ କଣ ନୂଆ ଜୀବ ! ସେତ ସେହି ମଣିଷ । କୌଣସି କଥାରେ ତନ୍ମୟ ହୋଇ ଭାବ ବେଗରେ ଏଣୁ ତେଣୁ କଣ ଭାଷାର ପ୍ରକାଶ କରନ୍ତି । ମୋଟ୍ କଥା, ପରିଭ୍ରମଣ ବସ୍‌ରେ ଗାଇଡ୍ କାମ କରୁଥିଲି କନା । ବେଳେ ବେଳେ ସେ ଖୋଇଟା ବାହାରି ପଡୁଚ । ଚାଲ, ସେ କେଉ ପୁରୀକୁ ଯିବା । କେତେ କାବ୍ୟ କବିତା, କେତେ ଗୀତ ସଂଗୀତ ମନକୁ ଆସିବ । କହିଲି, ନା, ବନ୍ଧୁ ! ଆଜ ନୁହେଁ । ଆଉ ଦିନେ । ମନ ଭିତରେ କିଏ ଯେମିତି ନା ନା କହି ଉଠୁଥାଏ । ଏ ଗୁଡାକରେ ଏତେ ମଜ୍ଜିଯିବା ଆଦୌ ଠିକ୍ ନୁହେଁ । ଏଇ ଯେ ସାମାନ୍ୟ ବା ଅସାମାନ୍ୟ ଅଭିଜ୍ଞତା ହେଲା ତାକୁଇ ଭିତ୍ତି କରି ଏଣୁତେଣୁ କଣ ଏ ଦେଶ ସମ୍ବନ୍ଧରେ ଲେଖାଯାଇ ପାରେନା ! ତଥାପି ମନ ତେଣିକି ଟାଣି ହୋଇଯାଉଛି । ଭୌମିକ ବି ମୋତେ ପ୍ରବର୍ତ୍ତାଇବାରେ ଲାଗିଥାଏ । ଶେଷରେ ସମାଧାନ ହେଲା ତହିଁ ଆର ଦିନ ନାଇଟ୍ କ୍ଲବ୍‌କୁ ଯିବୁ ।

ବସାକୁ ଫେରିଲି ବହୁତ ଡେରିରେ । କାହାକୁ କିଛି ନ କହି ଶୋଇଗଲି । ତା'ପରଦିନ ଉଠି ନାନା କାର୍ଯ୍ୟରେ ବ୍ୟସ୍ତ ରହିଲି । ନାଇଟ୍ କ୍ଲବ୍‌କୁ ଯିବା ପାଇଁ ମନରେ ମହା ଆଗ୍ରହ । ଏଣେ କିଛି ଖର୍ଚ୍ଚ

ଟଙ୍କା ଯୋଗେ ଛଟପଟ ଲାଗୁଥାଏ । ଭୌମିକ ଯାହା ଯେଉଁଠି ଖର୍ଚ୍ଚ କଲେ ମୋ ଭାଗଟା ଶେଷରେ ଅଳ୍ପ ବହୁତରେ ଆଦାୟ କରୁଥାଏ । ସଞ୍ଜବେଳକୁ ଭୌମିକ ଆସି ପହଞ୍ଚିଗଲା । ମୋ ମନରେ ଯିବା ନଯିବାର ମହାଦ୍ୱନ୍ଦ ଚାଲିଥିଲେ ବି ମୁଁ ବେଶବାସ ହୋଇ ପ୍ରସ୍ତୁତ ହୋଇଥାଏ । ଭୌମିକ । "ଶୀଘ୍ର ଆସ" ବୋଲି ଡାକଦେଇ ଆଗରେ ବସ୍‌ଷ୍ଟାଣ୍ଡ୍‌କୁ ଚାଲିଗଲା । ମୁଁ ମେଷ୍ଟର ବନ୍ଧୁମାନଙ୍କୁ କହି କରି ପଇସାପତ୍ର ଧରି ତା' ପଛେ ପଛେ ଗଲି । ମୋ ମନରେ ଯେମିତି ବିଶେଷ ଉତ୍ସାହ ନାହିଁ । ଭୌମିକକୁ ଦୁଃଖଭରା କଣ୍ଠରେ ପଚାରିଲି, "ଆଜି କେତେ ଖର୍ଚ୍ଚ ହେବ ?" "ଆଜି ଟିକିଏ ବେଶୀ ଲାଗିବ । ତେବେ ଚିନ୍ତା ନାହିଁ । ଆଜି ଖର୍ଚ୍ଚଟା ମୋର" । ଭୌମିକ ମୋର ମାନସିକ ଅବସ୍ଥା ବୁଝି ମୋତେ ସାନ୍ତ୍ୱନା ଦେବାକୁ ଇମିତି କହିଲା । ଭାବିଲି ମନକଣ ! ପଣ୍ଡାଙ୍କଠାରୁ ଆଜି ପଣୀ ଆଦାୟ ହେବ ! ସତରେ ବି ସେ ମୋପିଛା କରି ଖର୍ଚ୍ଚ କରୁଥାଏ । ତାର ଯେମିତି ଏ ଖର୍ଚ୍ଚବାର୍ଚ୍ଚକୁ ପରବାଏ ନାହିଁ । ମୋତେ କିନ୍ତୁ ପାଉଣ୍ଡ୍ ଶିଲିଂ ହାତଛଡ଼ା ହେଲା ବେଳେ ବହୁତ ଦୁଃଖ ହେଉଥାଏ ।

ପ୍ରଥମେ ଖିଆ ପିଆଟା ସାରି ଏଣେ ତେଣେ ବୁଲାବୁଲି କଲୁ । ତା'ପରେ ବେଳ ହେବାରୁ ନାଇଟ୍ କ୍ଲବ୍‌କୁ ବାହାରିଲୁ । ସେ ନାଇଟ୍ କ୍ଲବ୍‌ଟା ବଣ୍ଡ୍ ଷ୍ଟ୍ରିଟ୍‌ରେ । ପୁରୁଷ-ସ୍ତ୍ରୀ, ଯୁବକ ଯୁବତୀଙ୍କ ଦ୍ୱାରା ସ୍ଥାନଟି ଭରପୂର ହୋଇଯାଇଥାଏ । ପିଆପିଇ ନାଚ ଗୀତରେ ସମସ୍ତେ ମସ୍ତ ଥାନ୍ତି । ପରିସରକୁ ଉତ୍ତରଳ, ଉତ୍ସାହ-ଉଦ୍ଦୀପନାମୟ କରୁଥାଏ ଯନ୍ତ୍ରସଙ୍ଗୀତର ତାନ । ସେଥିରେ ଆତ୍ମବିହ୍ୱଳ ହୋଇ ଉଠୁଥାନ୍ତି ସମବେତ ପୁରୁଷ-ସ୍ତ୍ରୀ, ଯୁବକ-ଯୁବତୀ । ଆଶ୍ଚର୍ଯ୍ୟକର ଶବ୍ଦ ଏଜାଜ୍ ଓ ପପ୍ ସଙ୍ଗୀତର ! ଏଥିରେ ପ୍ରକୃତ ପାଶ୍ଚାତ୍ୟ ସଙ୍ଗୀତର ରୂପ-ଗନ୍ଧ ନାହିଁ । କିମ୍ବା ଭାରତୀୟ ସଙ୍ଗୀତର ତାନ-ମାନ, ତାଳ-ଲୟ ନାହିଁ । ନାହିଁ ରାଗ ରାଗିଣୀ, ନାହିଁ ସୂକ୍ଷ୍ମ ବୀଣାତନ୍ତ୍ରୀର ମଧୁର ନିସ୍ୱନ । ବିଭିନ୍ନ ସଙ୍ଗୀତ-ସ୍ୱର ଓ ଯନ୍ତ୍ରର ଧ୍ୱନିର ସମନ୍ୱୟରେ ସୃଷ୍ଟି ହେଉଥାଏ ଏକ ଉଚାଟମୟ ମୂର୍ଚ୍ଛନା । ଏହାର ପ୍ରଭାବ କିନ୍ତୁ ଖୁବ୍ ଅପରିମେୟ, ଅପରିସୀମ । କିନ୍ତୁ କାହିଁକି ? ସମସ୍ତେ ଏଥିରେ ଯେମିତି ଆତ୍ମହରା ହୋଇଉଠନ୍ତି । ହୁଏତ ଆମ ଯାନ୍ତ୍ରିକ ସଭ୍ୟତାର କୋଳାହଳମୟ ପରିସର ମଧ୍ୟରେ କାନକୁ ଭଲ ହୋଇ

ଶୁଣିବାପାଇଁ, ମନ ଉପରେ ଜୋରରେ ପ୍ରଭାବ ପକାଇବା ପାଇଁ ଏ ଉଚ୍ଚାଙ୍ଗ ମୂର୍ଚ୍ଛନାମୟ ଚିତ୍କାରର ଦରକାର ପଡ଼ୁଛି । କିମ୍ବା ଏହାର ବର୍ଣ୍ଣଶଙ୍କର ପ୍ରକୃତି, ବର୍ଣ୍ଣଶଙ୍କର ସଂସ୍କୃତି (Hybrid culture) ଏହାକୁ ଏତେ ଉଚ୍ଚାଟମୟ କରୁଛି । ବିଭିନ୍ନ ସାମାଜିକ ସ୍ତରର ପୁରୁଷ-ସ୍ତ୍ରୀଙ୍କ ମିଳନରେ ଯେଉଁ ସନ୍ତାନମାନେ ଜାତ ହୁଅନ୍ତି ସେମାନେ ହୁଅନ୍ତି ଖୁବ୍ ବଳିଷ୍ଠ । ବିଭିନ୍ନ ବୃକ୍ଷର ସମିଶ୍ରଣରେ ଯେଉଁ ଉଦ୍‌ଭିଦଟି ଜନ୍ମେ ସେ ହୁଏ ଖୁବ୍ ହୃଷ୍ଟପୁଷ୍ଟ । ତେଣୁ ବର୍ଣ୍ଣଶଙ୍କର ଜୀବମାନଙ୍କ ଜୀବନଧାରଣ ଶକ୍ତି ଓ ପ୍ରଭାବ ଅନ୍ୟମାନଙ୍କଠାରୁ ବେଶୀ !

ଏହି ବର୍ଣ୍ଣଶଙ୍କର ସଙ୍ଗୀତ ସମବେତ ପୁରୁଷ-ସ୍ତ୍ରୀ, ଯୁବକ-ଯୁବତୀ-ମାନଙ୍କ ଉପରେ ପ୍ରବଳ ପ୍ରଭାବ ପକାଉଥାଏ । ସେଥିରେ ମତୁଆଲି ହୋଇ ସେମାନଙ୍କ ଭିତରୁ କେତେକ ଦଳ ଦଳ ହୋଇ ନାଚିବାକୁ ଆରମ୍ଭ କରିଥାନ୍ତି । ଆଉ କେତେକ ଯୋଡ଼ି ଯୋଡ଼ି ହୋଇ ଚଉକିରେ ବସି ଚଳେଇଥାନ୍ତି ମଦପିଆ । ତା'ସାଙ୍ଗରେ ଚାଲିଥାଏ ଅଗ୍ଗୁଡ଼ି ସିଗାରେଟ୍ ଶୋଷା, ଖୁସିଗପ । ପୁରୁଷମାନେ ତ ପୂରାପୂରି ତାଙ୍କ ମନପ୍ରାଣକୁ ସଙ୍ଗିନୀ-ମାନଙ୍କୁ ସମର୍ପି ଦେଇଥାନ୍ତି । ତାଙ୍କୁ ମଦ-ପିଆଲି ଧରାଇ ଦେଇ ଖଣ୍ଡିକୁ ଖଣ୍ଡି ସିଗାରେଟ୍ ବଢ଼େଇ ଦେଇ, ଦିଆସିଲି କାଠି ସାହାଯ୍ୟରେ ସେଥିରେ ଅଗ୍ନି-ସଂଯୋଗ କରି ତାଙ୍କର ମନ ନେବାକୁ ଚେଷ୍ଟା କରୁଥାନ୍ତି । ମହିଳାମାନେ ବି ସେମାନଙ୍କ ପୁରୁଷସାଥୀଙ୍କୁ ଆକର୍ଷଣ କରିବାପାଇଁ ନିଜର ବେଶଭୂଷା ସାଜସଜ୍ଜା ଖୁବ୍ ନିଖୁଣ ଭାବରେ ସଜାଡ଼ିଥାନ୍ତି । ସେମାନେ ଏହି ଶୀତପ୍ରଧାନ ଦେଶର ଥଣ୍ଡାକୁ ଖାତିର ନକରି ନିଜର ପୋଷାକପରିଚ୍ଛଦକୁ ଏପରି ଭାବରେ ତିଆରି କରିଥାନ୍ତି, ଏପରି ଭାବରେ ତାକୁ ପିନ୍ଧିଥାନ୍ତି ଯେପରି ତାଙ୍କ ରୂପଯୌବନ ସହଜରେ ପୁରୁଷମାନଙ୍କର ନେତ୍ରାକୃଷ୍ଟ ହୋଇପାରିବ । ତା'ପରେ ନାନା ପ୍ରକାର ଆମୋଦଭରା ବାଣୀ, ଇଙ୍ଗିତ-ଭରା ବକ୍ରଚାହାଣି, ଖାବଲୀଳ ଠାଣିରେ ତାଙ୍କ ସାଥୀମାନଙ୍କୁ ଆତ୍ମହରା କରି ଦେଉଥାନ୍ତି ।

ଏଠାକୁ ବିବାହିତ ଦମ୍ପତି ବୋଧହୁଏ ବେଶୀ ଆସିନଥାନ୍ତି । ନାମଜାଦା ବେଶ୍ୟା, ସୁନ୍ଦରୀ ସମାଜ-ପରିଚାରିକା ( society girls )

ସେଠାରେ ସାକ୍ଷାର ଅଭିନୟ କରୁଥାନ୍ତି । କିନ୍ତୁ ସେମାନଙ୍କର ଆଚାର-ବ୍ୟବହାର ଢଙ୍ଗରଙ୍ଗ ଏପରି ଉଚ୍ଚକୋଟୀର ଯେ ସେମାନଙ୍କୁ ସାମାନ୍ୟ ଇତର ମହିଳା ବୋଲି କେହି ପରିକଳ୍ପନା କରିପାରିବେନି, ସେମାନଙ୍କ ପ୍ରକୃତ ପରିଚୟ ଜାଣିପାରିବେନି । କିପରି ବା ଜାଣିବ ? ପୁରୁଷମାନେ ତ ସେମାନଙ୍କ ସହିତ ଏପରି କ୍ଷୀରନୀର ପରି ମିଶି ଯାଇଥାନ୍ତି ଏବଂ ସେମାନଙ୍କ କୃପାକଣିକା, ପ୍ରେମବିନ୍ଦୁ ପାଇବାକୁ ଏପରି ବିକଳ ହୋଇ ଉଠିଥାନ୍ତି ଯେ ସେମାନେ ମହାମାନ୍ୟ ଅତିଥି ପରି ଗମନାଗମନ କରୁଥାନ୍ତି ।

ବାସ୍ତବିକ ଏହି ମାର୍ଜିତ ବେଶ୍ୟା ମାନଙ୍କର ବିଲାତର ସମ୍ଭ୍ରାନ୍ତ ଓ ଅସମ୍ଭ୍ରାନ୍ତ ଲୋକଙ୍କ ଉପରେ କିଛି କମ୍ ପ୍ରଭାବ ନୁହେଁ । ଓ୍ୱେଷ୍ଟଏଣ୍ଡର କେତେକ ବେଶ୍ୟା ନିଜର ରୂପଗୁଣରେ ସେଠାରେ ଚହଳ ପକେଇ ଦେଇଥାନ୍ତି । ତାଙ୍କ ସାନିଧ୍ୟ ଲାଭ କରିବାକୁ, ତାଂକ ସହିତ ଆହାର ବିହାର କରିବାକୁ ବହୁ ମାନ୍ୟଗଣ୍ୟ ବ୍ୟକ୍ତି, ମନ୍ତ୍ରୀ, ଓକିଲ, ଉଚ୍ଚ ପଦସ୍ଥ ସରକାରୀ କର୍ମଚାରୀ, ଧନିକ ବ୍ୟବସାୟୀ ଆଦି ପାଗଳ ହୋଇ ଉଠନ୍ତି । ଏହି ମହାମାନ୍ୟା ମହିଳାମାନଙ୍କୁ ସିଧାସିଧି କେହି ବେଶ୍ୟା କହିବାର ଦୁଃସାହସ କରେନି । ସେମାନେ ସେମାନଙ୍କର ରୂପଗୁଣରେ ମହୀୟସୀ । ଲଣ୍ଡନର କୌଣସି ଆମୋଦ-ପ୍ରମୋଦ ଆଡ୍ଡାରେ ଯଦି ଜଳକେଳିର ବ୍ୟବସ୍ଥା ହୁଏ ତେବେ ଏହି ରୂପସୀମାନଙ୍କୁ ସେଥିରେ ଯୋଗ ଦେବାକୁ ସାଦର ନିମନ୍ତ୍ରଣ କରାଯାଏ ଏବଂ ସେମାନଙ୍କ ସାନିଧ୍ୟ ପାଇଲେ ଲୋକେ କୃତକୃତ୍ୟ ହୋଇ ଉଠନ୍ତି । ଏହି ଯୁବତୀମାନଙ୍କୁ ତାଙ୍କ ସନ୍ତରଣ-ସୁଗମ ପୋଷାକରେ ଅର୍ଦ୍ଧଲଗ୍ନ ଅବସ୍ଥାରେ ଦେଖିବାକୁ ସମ୍ଭ୍ରାନ୍ତ ବ୍ୟକ୍ତି ଓ ବୁଦ୍ଧିଜୀବୀମାନେ ବ୍ୟାକୁଳ ହୋଇଉଠନ୍ତି । ସେମାନେ କଣ ସ୍ୱର୍ଗର କିନ୍ନରୀ ! ମନୋହାରିଣୀ ଅପ୍ସରା ! ଏହି ଅପ୍ସରାମାନଙ୍କ ଅଧର-ଚୁମ୍ବିତ ମଦର ଆସ୍ୱାଦ ପାଇବାକୁ, ତାଙ୍କ ସହିତ ବାକ୍ୟାଳାପ କରିବାକୁ, ତାଙ୍କର ସଙ୍ଗସୁଖ ଲାଭ କରିବାକୁ ଏହି କାମୁକ ପୁରୁଷମାନେ ପାଗଳ ହୋଇ ଉଠନ୍ତି ।

ଏହି ରୂପସୀ ବାରଙ୍ଗନାମାନେ ବେଳେ ବେଳେ ସେମାନଙ୍କ ଭକ୍ତଜନଙ୍କୁ କୃତାର୍ଥ କରିବାକୁ ମଦଭାଣ୍ଡରେ ଅଙ୍ଗ ପ୍ରକ୍ଷାଳନ କରନ୍ତି

ଏବଂ ତାଙ୍କ ଅଙ୍ଗସଙ୍ଗ ପାଇଥିବା ଏହି ରଙ୍ଗିନ୍ ରସକୁ ସେମାନଙ୍କ ପ୍ରେମ-ଭିକାରୀ ପୁରୁଷ ବନ୍ଧୁମାନେ ଅମୂଲ୍ୟ କୈବଲ୍ୟ ପରି ଜାଣିଶୁଣି ଜାଣିଶୁଣି ସେବନ କରି ନିଜକୁ କୃତାର୍ଥ ମନେ କରନ୍ତି । ଏହି ପ୍ରତ୍ୟାତ ପ୍ରମିଳାଙ୍କ ପାଲରେ ପଡ଼ି ବହୁ ମାନ୍ୟଗଣ୍ୟ ବ୍ୟକ୍ତି ସେମାନଙ୍କର ମାନସମ୍ମାନ, ସମାଜର ଉଚ୍ଚ ଆସନ ହରାଇଥାନ୍ତି । ତଥାପି ସେମାନେ ଚିର ବନ୍ଦନୀୟା, ଚିର ଆଦରଣୀୟା ।

ଆଲୋକର କୁହୁଡ଼ି-ଜାଲର ଭିତରେ ରାତି ବଢ଼ି ଚାଲିଥାଏ । ମୁଁ ଏହି ରଙ୍ଗରସଭରା ପରିବେଶ ଭିତରେ ଏପରି ଭାବବିହ୍ୱଳ ଏପରି ଚିନ୍ତାମଗ୍ନ ହୋଇ ଯାଇଥାଏ ଯେ ଭୌମିକ କଣ କରୁଚି ସେଥିପ୍ରତି ଲକ୍ଷ୍ୟ ନାହିଁ । ଟିକିଏ ଚେତନା ଆସିବାରୁ ଦେଖିଲି ସେ ଚାରିଆଡ଼େ ଘୂରିବୁଲୁଚି, ବୋଧହୁଏ ବାନ୍ଧବୀ ଯୋଗାଡ଼ରେ । ଏତେ ଲାବଣ୍ୟମୟୀ ଲଳନା ସେଠାରେ ଥିଲେ ବି ସେ ଯେପରି କାହାର ସ୍ନେହ-ପ୍ରେମ ପାଇପାରୁନି । କଥା କଣ ? କଣପାଇଁ ସେମାନେ ତା' ପ୍ରତି ଏତେ ନିଷ୍ଠୁର ! ଅବଶ୍ୟ ସେ କଳା ଲୋକ । ରୂପ ବିଭବ, ବେଶ ପୋଷାକର ଚାକଚକ୍ୟ ତାର ସେତେ ନାହିଁ । ତେବେ ତ ବହୁ କଳାଲୋକ ସେଠାରେ ଜୁଟିଥାନ୍ତି । ଏହି ଚତୁରା ମହିଳାମାନେ ପ୍ରକାରାନ୍ତରରେ ଯେପରି ତାଙ୍କର ସାଙ୍ଗସାଥୀ ବାଛିବାରେ ଦରକଷାକଷି କରୁଥାନ୍ତି । କିଏ ତାଙ୍କ ପିଛା ବେଶୀ ପାଉଣ୍ଡ ଖର୍ଚ୍ଚ କରିପାରିବ, କିଏ ତାଙ୍କୁ ବେଶୀ ଆମୋଦପ୍ରମୋଦ ଦେଇ ପାରିବ । ବାଃ ! ଏତ ଏକ ପ୍ରକାର ସ୍ୱୟମ୍ବର ବା ନିଲାମ୍ ଉଚକା ।

ଭୌମିକକୁ ସସ୍ନେହେ ଡାକି କହିଲି, 'ବନ୍ଧୁ' ! ବେଶ୍ ତ କଟୁଛି ଏଠାର ଅଭିଜ୍ଞତା ହେଲା । ଚାଲ ବସାକୁ ବାହୁଡ଼ିବା । କଣ ଏ ପୁରୁଷ-ସ୍ତ୍ରୀ ସଙ୍ଗମରୁ ଆମକୁ ମିଳିବ ! ଆମେ ତ ବହୁତ ଏମିତି ମେଳା ଦେଖିଲେଣି ! ଏଇ ନାଇଟ୍ କ୍ଲବ୍ ତ ?

—ନା, ଏଇଟା ତାର ମୁଖଶାଳା । ମନ୍ଦିର ଯା'ର ପଛରେ ଅଛି । ଭକ୍ତଜନମାନଙ୍କୁ ଆକର୍ଷିତ କରିବାକୁ ଏ ଆସରର ସୃଷ୍ଟି । କମିତି ଲାଗୁଚି ?

—ଲାଗୁଚି ଆଜି କ'ଣ ? ଖାଲି ତ ସବୁ ଦେଖୁଚି । ହଁ, ବେଶ୍ ଲଗାମ୍‌ଛଡ଼ା ବିବେକଛଡ଼ା ଚିତ୍ତବିନୋଦନ ଏଠି ଚାଲିଛି । ଏ ମାନଙ୍କର ଚିନ୍ତାଦିକ, ଦୁଃଖକଷ୍ଟ ଯେମିତି କିଛି ନାହିଁ । ଅନାବିଳ ପ୍ରେମ-ସ୍ରୋତରେ ଏମାନେ ନିଜକୁ ଭସେଇ ଦେଇଚନ୍ତି । ଏଥିରେ ଉତ୍ସାହିତ ହୋଇ ଭୌମିକ ନାଇଟ୍ କ୍ଲବ୍ ସମ୍ବନ୍ଧରେ ବହୁ ସାରଗର୍ଭିକ ତଥ୍ୟ ବଖାଣିଲା । ମୁଁ କେତେଟା ଶୁଣୁଥାଏ କେତେଟା ନାହିଁ । ମୋର ବୋଧହୁଏ ସେ ପୁରୁଣା ରୋଗଟା ଆରମ୍ଭ ହୋଇଯାଇଥାଏ । ମୁଁ ତ ଆସି ଏଠି ଏପରି ଜୀବନକୁ ଉପଭୋଗ କରୁଚି କିନ୍ତୁ ମୋର ସ୍ତ୍ରୀ-ପିଲାଏ ବର୍ତ୍ତମାନ କିମିତି ଥିବେ ! ଦେହପା ସମସ୍ତଂକର ଠିକ୍ ଅଛି କି ନାହିଁ ! ପଇସାପଇର ଅଭାବ ଘଟୁଥିବ କି କଣ ! ପୁଣି ଭାବିଲି । ଏ ବୃଥା ଚିନ୍ତାରୁ କଣ ମିଳିବ ! ସେମାନେ କେଉଁଠି, ମୁଁ କେଉଁଠି ! ବୃଥା ଭାବନା ଆଜି କରିବି ନାହିଁ, ଭାବନାରେ ଆନନ୍ଦ ମିଳଇ କାହିଁ ?

ଭୌମିକ ଷ୍ଟ୍ରଆର୍ଡ଼କୁ ଲକ୍ଷ୍ୟରଖି ପାନୀୟ ବରାଦ କରିବାକୁ ଜଣେ ଅର୍ଦ୍ଦଳିକୁ ଇସାରା ଦେଲା । କହିଲି ଯାହା କରୁଚ ଠିକଏ ମିତବ୍ୟୟିତା ଅବଲମ୍ବନ କର । ମୁଁ କିଛି ପିଇବି ନି ।

—ଦେଖ କିମିତି ମଜା ହେଉଚି ।

ମନେ ମନେ ଭାବିଲି ଆଉ ମଜା କଣ ହେବ । ଏତ ଢ଼େର ମଜା । ଏତେବେଳକୁ ଜଣେ ଅର୍ଦ୍ଦଳି ଆସି ଆମ ପାଖରେ ଠିଆ ହୋଇଯାଇଥାଏ । ଲାଲ ଟକ୍ ଟକ୍ ଅପୂର୍ବ ଚେହେରା । ବୃଦ୍ଧ କିନ୍ତୁ ବିଶାଳ ବପୁ । ବିରାଟ ନିଶ । ଦେହରେ ଚମତ୍କାର ଗରମ ପୋଷାକ । ତହିଁରେ ଥିବା ପିତଳ ବୋତାମ ଗୁଡ଼ାକ ଚକ୍ ଚକ୍ କରୁଥାଏ । ଛାତି ପାଖରେ ମାରିଥିବା କ୍ଲବର ନାଁ ଟା ଝଲସି ଉଠୁଥାଏ ।

ଭୌମିକ ମଦ ତାଲିକା ଦେଖି ଦୁଇ ପ୍ରକାର ମଦ ବରାଦ କଲା, ଖୁଚୁରା ବୁନ୍ଦେ, ପୂରା ବୋତଲ । ତା' ସାଙ୍ଗରେ ଦୁଇଟା ସୋଡ଼ା ବୋତଲ । ଗ୍ଲାସଟା ଗିଲାସ । ମୁଁ ଚମକି ଉଠିଲି । କହିଲି, କରେ ! ଏତେ କଣ ?

ଭୌମିକ କିନ୍ତୁ କିଛି ଶୁଣିବାକୁ ନାରାଜ । ସେ ତା’ ବ୍ୟବସ୍ଥାରେ ଥାଏ । ବେହେରା ମଦ ବୋତଲ ଓ ଗିଲାସ ଆଦି ଆଣି ବଡ଼ ଯତ୍ନ ସହକାରେ ଟେବୁଲ୍‌ରେ ରଖିଦେଲା । ଗୃହଆଡ଼େ ଟେବୁଲମାନଙ୍କରେ ଏହି ବୋତଲ ଗିଲାସ ଭର୍ତ୍ତି ହୋଇଯାଇଥାଏ । ବାଃ, କିମିତି ଜୀବନକୁ ଏମାନେ ଉପଭୋଗ କରୁଚନ୍ତି । କିଛି ଚିନ୍ତାଦିକ ନାହିଁ । କିଛି ଭୟ ଭ୍ରାନ୍ତି ନାହିଁ । ମିଶୁ ମୋର ଦେହ ଏଦେଶ ମାଟିରେ, ବାହାରବାସୀ ଚାଲିଯାଆନ୍ତୁ ପିଠିରେ । ମୁଁ ଇମିତି କଣ ଭାବୁଥାଏ ।

ଭୌମିକ କିନ୍ତୁ ଥରକୁ ଥର ସେ ବୋତଲ ଦୁଇଟିକୁ ସସ୍ନେହ ସ୍ପର୍ଶ ଦେଇ ଗୃହଆଡକୁ ଚାହୁଁଥାଏ । କଥା କଣ ? ଏତେ ଆଗ୍ରହରେ ଆଣିଲା କିନ୍ତୁ ପିଉନ କାହିଁକି ? ବିବେକର ଶତବାଧା ସତ୍ତ୍ୱେ ମନ ମୋର ସେତେବେଳକୁ ବିକଳ ହୋଇଉଠିଲାଣି ସେ ଉତ୍କଟ ପାନୀୟରୁ ସାମାନ୍ୟ ସେବାକରି ଶୀତ ତାପରୁ ନିଜକୁ ରକ୍ଷା କରିବ କିନ୍ତୁ କାଇଁ ଭୌମିକର କିଛି ଉଦ୍ୟମ ନାହିଁ ! ସେ ଗୃହ ଆଡ଼କୁ ମୁହଁ ବୁଲେଇ ସବୁଠି କେବଳ ନୟନରେ ପରିକ୍ରମା କରୁଥାଏ । ବିଶେଷତଃ ଯେଉଁଠି ବିନା ସାଥୀରେ ମହିଳାମାନେ ବସିଥାନ୍ତି ସେ ଆଡ଼କୁ ବେଶୀ ନଜର ଦେଉଥାଏ । ଓଃ ଏ ତେବେ ସଙ୍ଗିନୀ ଯୋଗାଡ଼ରେ ଅଛି । ଆହା-ହା କି ଦୁଃଖ । କେହି ଜଣେ କୃପା କରୁନାହାନ୍ତି । କିନ୍ତୁ ଭୌମିକ ପୋଖତ ଶିକାରୀ ପରି ଅତୁଟ ଉଦ୍ୟମ ଚଳେଇଥାଏ କିମିତି ସେ କିନ୍ତୁ ତା ଜନ୍ମାକୁ ଗଡ଼ିବେ । ମୋତେ ପରିସ୍ଥିତିଟା ବେଶ୍ ଉପଭୋଗ୍ୟ ଲାଗୁଥାଏ । ଏକ ମାନସ୍ତାତ୍ତ୍ୱିକ ସଙ୍ଘର୍ଷ, ଏକ ଅସ୍ପଷ୍ଟ ନାଟକ ଚାଲିଥାଏ । ଦେଖାଯାଉ କିମିତି ଏହାର ସମାଧାନ ହେଉଛି !

ଆଶ୍ଚର୍ଯ୍ୟ କଥା, ଭୌମିକଠାରୁ ଇସାରା ପାଇ କିଛି ସମୟ ପରେ ପ୍ରଥମେ ଜଣେ ପରେ ଆଉଜଣେ ଯୁବତୀ ଆସି ଆମ ପାଖରେ ବସିଗଲେ । ଭୌମିକ ଏକବାରେ ଆନନ୍ଦରେ ଆତ୍ମହରା । ଅପୂର୍ବ ଉଲ୍ଲାସରେ ତାଙ୍କ ସାଙ୍ଗେ ଗପସପ ଆରମ୍ଭ କରିଦେଲା । ସତେ ଯେପରି କେହି ପୂର୍ବ ପରିଚିତା ଆଦରଣୀୟା ବାନ୍ଧବୀ ମିଳିଗଲେ । ମଝିରେ ମଝିରେ ମୋତେ ସେ ବିଜୟସୂଚକ ଇଙ୍ଗିତ ଦେଉଥାଏ । ମୁଁ ତାର

ବାହାଦୁରଙ୍କୁ ପ୍ରଶଂସା କରି ଅଭିନନ୍ଦନ ଛଳରେ ମୃଦୁହାସ୍ୟ ସାଦେଉଥାଏ । ସେ ଏଣୁ ନବାଗତା ବାନ୍ଧବୀମାନଙ୍କ ସହିତ ଖସି ଗପ କରୁ କରୁ ମଦ ବୋତଲ ଖୋଲି ଗିଲାସରେ ଢାଳି ସେମାନଙ୍କ ଚର୍ଚ୍ଚା କରିବାକୁ ଆରମ୍ଭ କରିଦେଲା । ସେ ଦୁହେଁ ଏଣୁ ଆନ୍ତରିକ ଧୀରେ ମଧ୍ୟରେ ଏଡ଼ି ଦେବାକୁ ନା, ନା, କଲେ ଏବଂ ହାଦ ସିନେମାରେ ଅଭିନୟ କଲାଭଳି "ଅନ୍ତିଲେ ଆପ୍, ଅନ୍ତିଲେ ଆପ୍" ବୋଲି ତାକୁ ଅନୁରୋଧ କଲେ । ଭୌମିକ ମଝିରେ ମଝିରେ ଖାଲି ଶ-ଶ ହେଉଥାଏ । ମୋତେ ଜୋରରେ ହସ ମାଡ଼ିଲା । ଖୁବ୍ ହସିଲି ବି ଏ ଅଭିନୟ ଦେଖି । ସେ କିନ୍ତୁ ଆଖି ମିଟିକି ଚାହିଁଦ୍ କଲା । ଇମିତି ହସିବା ଶାଳୀନତା ବିରୁଦ୍ଧ । କିନ୍ତୁ ମୋର ହସ ବନ୍ଦ ହେଉନଥାଏ । ମୋର ହସ ଦେଖି ସେ ଯୁବତୀ ଦୁହେଁ ବଡ଼ ବିମର୍ଷ ହୋଇ ଭୌମିକଙ୍କୁ ପଚାରିଲେ, "ସେ ଇମିତି ହସୁଛନ୍ତି କାହିଁକି ?"

—ସେଇଟା ମାନେ ମୋର ବନ୍ଧୁ ଭାରି ଖସି ମେଜାସର ଲୋକ । ସେ ମୋତେ ପରିହାସ କରୁଛି ମୁଁ ଆପଣମାନଙ୍କୁ ପିଆଇ ପାରୁନି ବୋଲି । କିନ୍ତୁ ବନ୍ଧୁ ! ହସିଲେ କଣ ହେବ ? ଏଥିରେ ସହଯୋଗ କର । ଏତକ ମୋ ଆଡ଼କୁ ଲକ୍ଷ୍ୟ କରି କହି ଏକ କର୍କଶ ଗୃହାଣୀରେ ମୋତେ ହାଣି ଦେଲା । ମୁଁ ଆଉରି ଜୋର୍‌ରେ ହସିଉଠିଲି । ସେ ଯୁବତୀ ଦୁହେଁ ବି ହସି ଉଠି ତାଙ୍କ କୈଫିୟତ୍ ଛଳରେ କେତେ କଣ କହି ଗଲେ । ସେ କଥାର ସାରମର୍ମ ହେଲା, ସେମାନେ ସେତେ ପିଅନ୍ତି ନି । ଏପରି ଜାଗାକୁ ସେମାନଙ୍କର ଯା' ଆସ ବି ସେତେ ବେଶୀ ନାହିଁ । କେବଳ ଟିକିଏ ଫୂର୍ତ୍ତି କରିବାକୁ ସେଦିନ ସେଆଡ଼େ ଚାଲି ଆସିଚନ୍ତି । ଏକଥା ଶୁଣି ଭୌମିକ କ୍ଷୀଣ ଶ—ଶବ୍ଦଟିଏ କରି ତାଙ୍କୁ ବୁଝେଇ କହିଲା । "ବଡ଼ ସୁନ୍ଦର ଯୋଗାଯୋଗ । ଆମେ ବି ଏଥିରେ ଅଭିଜ୍ଞ ନୋହୁ । ସେଥିଯୋଗେ ମୋର ବନ୍ଧୁ ଏସବୁ ଦେଖି ଏମିତି ଆତ୍ମହରା ହୋଇ ହସିଉଠୁଚନ୍ତି । ବଳାତକୁ ନୂଆ ଆମଦାନି । ଏଠା ରଙ୍ଗରସ ଉପଭୋଗ କରିନାହାନ୍ତି । ଆଜି ଆପଣମାନେ ତାଙ୍କୁ ଟିକିଏ ଗାଏଲା କରିଦିଅନ୍ତୁ ।"

ଏ କଥାରେ ଉତ୍ସାହିତ ହୋଇ ସେମାନେ ଗପି ଚାଲିଥାନ୍ତି । "ଆମେ ବଡ଼ ସମ୍ଭ୍ରାନ୍ତ ପରିବାରର ଝିଅ । ଆମ ବାପା ଇମିତି, ଆମ ଗୋସେଇଁ ବାପା ଇମିତି......ଇତ୍ୟାଦି ।"

ଭୌମିକ ପୁଣି ଶ—ଶବ୍ଦ ଉଚ୍ଚାରଣ କରି ସେମାନଙ୍କ ସହିତ କଣ୍ଠ ମିଳାଇ କହିଲା" "ମୁଁ ବି ଜଣେ ଭାରତର ରାଜପରିବାରର ଲୋକ । ରାଜ୍ୟ ତ ଆମର ଚାଲିଗଲା ।

—ରାଜ୍ୟ ଚାଲିଗଲା ? ଜଣେ ରୂପସୀ ଚକିତ ହୋଇ ପଚାରିଲେ ।

—ବର୍ତ୍ତମାନ ପୁଣି ଚଳୁଛନ୍ତି କିମିତି ? ଅନ୍ୟ ଜଣେ ଜାଣିବାକୁ ଚାହିଁଲେ ।

ଭୌମିକ ଗୋଟିଏ ଦୀର୍ଘ ନିଶ୍ୱାସ ପକାଇ କହିଲା, ହଁ ଚଳୁଚି ସେମିତି ବ୍ୟବସାୟପତ୍ର କରି । ତେବେ ସୁଖର କଥା ମୋର ଜଣେ ଅଛି ମୋ ପାଇଁ କିଛି ଟଙ୍କା ଛାଡ଼ି ଯାଇଛନ୍ତି ।

—କେତେ ଟଙ୍କା ?

—ବେଶୀ ନୁହେଁ । ମାତ୍ର ଅଧ ମିଲିଅନ୍ ପାଉଣ୍ଡ ।

ମୁଁ ଚମକି ଉଠିଲି । ଏ ପ୍ରାୟ କୋଟିଏ ଟଙ୍କା ହେବ । ଭୌମିକ କାହିଁ ? କୋଟିଏ ଟଙ୍କା କାହିଁ ? ଏଠି ନାନା ଦୁଃଖ ଧନ୍ଦା, ଛୋଟ କାମ କରି ନିଜ ଗୁଜରାଣ ମେଣ୍ଟାଏ । କିନ୍ତୁ ମୁହଁ ଶୁଖେଇ କହୁଚି ମାତ୍ର ଅଧ ମିଲିଅନ୍ ପାଉଣ୍ଡର ଅଧିକାରୀ ବୋଲି । ପାଉଣ୍ଡଗୁଡ଼ାକ କଣ ପାନ ।

ଭୌମିକ କିନ୍ତୁ ବଡ଼ ନିଷ୍ଠାର ସହିତ ଏହି ଅଭିନୟ କରୁଥାଏ । ହେଲେ ବାଉଳାରେ ସୁଦ୍ଧା ମୋ ଆଡ଼କୁ ଚାହୁଁ ନଥାଏ କାଳେ ମୁଁ ହସି-ଦେବି କି କଣ କହିଦେବି, ଯହିଁରେ କି ତାର କଥାରେ ଏ ଝିଅମାନଙ୍କର ସନ୍ଦେହ ହେବ । କିନ୍ତୁ ମୋତେ ଆଉ ହସ ମାଡ଼ୁନଥାଏ । ମୁଁ ଭାବୁଥାଏ ଏ ଯେ ମିଛର ଇନ୍ଦ୍ରଜାଲ ସୃଷ୍ଟି କଲାଣି । ଯା'ର ଫଳ କଣ ହବ ! ମାତ୍ର ଫଳ ଖୁବ୍ ଭଲ ହେଲା । ତାର ଏକଥା ଶୁଣି ସେ ଯୁବତୀ ଦୁଇଜଣ ବଡ଼ ଆଗ୍ରହାନ୍ୱିତ ହୋଇପଡ଼ିଲେ ଓ ପ୍ରେମାଧିକ୍ୟରେ ତାର ଦୁଇ କଡ଼ରେ ତାକୁ ଲଗିରହିଲେ । ମଦ ମଧ୍ୟ ନିଃଶଂକ ଭାବରେ ପିଇଯାଉଥାନ୍ତି । ପିଆଲାକୁ ପିଆଲା । ଜଣେ ସସ୍ନେହରେ ପଚାରିଲା—

—ଆପଣ କ'ଣ ଯା'ର ସ୍ଥାୟୀ ସଭ୍ୟ ?

—ନିଶ୍ଚୟ ।

—ଆପଣଙ୍କୁ ତ ଆମେ ଏଠି କେବେ ଦେଖିନୁ !

—କେମିତି ଦେଖିବେ ! ମୁଁ ଅବଶ୍ୟ ଏପରି ଅନେକ କ୍ଲବ୍‌ର ମେମ୍ବର । କିନ୍ତୁ ସବୁବେଳେ ବ୍ୟବସାୟପତ୍ର ନେଇ ବ୍ୟସ୍ତ । କେବେ ବେଳ ପାଇଲେ ଏଣେ ଟିକିଏ ଆସେ । ଆଜି ଆସିବାକୁ ବାଧ୍ୟ ହେଲି ମୋର ଏ ବନ୍ଧୁଙ୍କ ଯୋଗେ । ବଡ଼ କ୍ଷମା ଲୋକ । କ'ଣ ଗବେଷଣା କରୁଛନ୍ତି···

—କ'ଣ ଗବେଷଣା କରୁଛନ୍ତି ?

—କ'ଣ ଏ କ୍ଲବମାନଙ୍କ ସମ୍ବନ୍ଧରେ ?

—ହଁ ବାହାରର କ୍ଲବ୍, ଗୀତ ନାଚ ଆସର ଆଦି ବିଭିନ୍ନ ସାମାଜିକ ଓ ସାଂସ୍କୃତିକ ଅନୁଷ୍ଠାନମାନଙ୍କ ସମ୍ବନ୍ଧରେ ।

ମୁଁ ବଡ଼ ବ୍ୟସ୍ତ ହୋଇ ଉଠୁଥାଏ । ଓହୋ ! ଏତେ ତାହା ମିଛ !

—ତୁମ ବନ୍ଧୁ ପିଉ ନାହାନ୍ତି କାହିଁକି ? ଜଣେ ଯୁବତୀ ସସ୍ନେହରେ ପ୍ରଶ୍ନ କଲେ ।

—ସେଇଟା ଗୋଟେ ପୂରା ବାବାଜି । A complete tee to taller. ଆପଣମାନେ ଟିକିଏ ଚେଷ୍ଟା କରନ୍ତୁ ତାର ଯେମିତି ଆଜି ବ୍ରତ ଭାଙ୍ଗିବା ।

—ହଁ, ହଁ, ସେ ନିଶ୍ଚୟ ପିଇବେ ।

ସେ ଦୁହେଁ ଯାକ ଉଚ୍ଛୃଙ୍ଖଳ ଖିଲ ଖିଲ ହସି ମୋ ଆଡ଼କୁ ମାଡ଼ି ଆସିଲେ । ମୁଁ ଲକ୍ଷ୍ୟ କଲି ଯେତେବେଳଠୁଁ ଭୌମିକ କହି ଦେଲାଣି ଯେ ସେ ଘରଖିଆ ରାଜପରିବାରର ଲୋକ ଓ ଅଧ ମିଲିଅନ୍ ପାଉଣ୍ଡର ଉତ୍ତରାଧିକାରୀ ସେତିକବେଳୁ ସେ ଯୁବତୀମାନଙ୍କର ଆମ ପ୍ରତି ସ୍ନେହ-ମମତା ବଢ଼ିଯାଇଛି ଏବଂ ସେମାନେ ଆମର ବଡ଼ ଆପଣାର ହୋଇ ଉଠିଚନ୍ତି । ବାଃ ! ମିଛର ବେଶ୍ କରାମତି । ସେମାନେ ମହା ସମାଗରେ

ମୋତେ ପିଆଇବାକୁ ଚେଷ୍ଟା କରିବାରୁ ଭୌମିକ ମୃଦୁକ ହସା ଦେଇ କହିଲା । "ପିଅ, ପିଅ, ବାନ୍ଧବୀମାନେ ଅନୁରୋଧ କରୁଚନ୍ତି ।" ସେମାନେ ଯେତେବେଳେ ମୋତେ ଏକ ପ୍ରକାର ମାଡ଼ବସି ମୋ ମୁହଁରେ ମଦ ପିଆଇଲ ଦେଲେ ଏବଂ ମୁଁ ସେଥିରୁ ଟିକିଏ ପିଇଦେଲି ସେମାନେ ବିଜୟ ଉଲ୍ଲାସରେ ହସି ନାଚଉଠିଲେ । ପୁଣି ମୋତେ ପିଆଇବାକୁ ଚେଷ୍ଟା କରୁଥାନ୍ତି । ମୋର କିନ୍ତୁ ମହାଭୟ । ଏ ଗୁଡ଼ା କଣ ବଡ଼ କଡ଼ା ମଦ ପରି ଜଣାପଡ଼ୁଚି । ପୁଣି ମୋର ଯଦି ଚେତା ବୁଡ଼ଯାଏ !

ଭୌମିକ ମୋ ମୁଁହର ଆତଙ୍କିତ ଭାବ ଦେଖି ସେମାନଙ୍କୁ ସାବଧାନ କରେଇଦେଇ କହିଲା, ଆହା-ହା, ! ଏତେ ନୁହେଁ । ବିଚରା ଏ ସବୁରେ ଏକେବାରେ ଧାରୁ । ତୁମେମାନେ ଯଦି ସାଙ୍ଗେ ସାଙ୍ଗେ ସ୍ନେହ-ପ୍ରେମର ଏପରି ଅଗୁଡ଼ ଝଡ଼ ସୃଷ୍ଟି କରିବ, ହୁଏତ ସେ ଲଜ୍ଜେଇ ହୋଇ ଏଠୁ ପଳେଇବ ।

—ନା, ନା, ପଳେଇବେ କୁଆଡ଼େ । ଆମେ ତାଙ୍କୁ ଗୁଡ଼ୁରୁ !

—ନା, ଜମା ଗୁଡ଼ନା । ତୁମ ସ୍ୱଭାବସୁଲଭ ସସ୍ନେହ ସ୍ପର୍ଶରେ ତାକୁ ଇମିତି ମସ୍ତ କରିଦିଅ ଯେମିତି ତାର ଉଦାସୀନତା ଶରଦନ ପାଇଁ ଭାଙ୍ଗିଯିବ, ସଂଯମ-କବଚ ତୁଟିଯିବ !

ଭୌମିକ ଏପରି କେତେ କଣ କପୋଳ-କଳ୍ପିତ କଥା ମୋତେ କେନ୍ଦ୍ର କରି କହିଗଲା । ତାର ପ୍ରତିରୋଧ ବା ପ୍ରତିବାଦ କରିବାକୁ ମୋର ଜିଭ ଲେଉଟୁ ନ ଥାଏ । ଏଣେ ଯୁବତୀ ଦୁହେଁ ଆମ ସାଙ୍ଗରେ ସସ୍ନେହ କଥାବାର୍ତ୍ତା ଚଳେଇଥାନ୍ତି । ପ୍ରଥମେ ତାଙ୍କର ଯେ କୁନ୍ଥ କୁନ୍ଥ ଭାବ ଥିଲା ଆଉ ସେ ନାହିଁ । ମୁଁ ମନେ ମନେ ଭାବୁଥାଏ ଭୌମିକର ଏ ଅପୂର୍ବ ପ୍ରତିଭା ଲୁଚି ରହିଥିଲା କେଉଁଠି ? ମୁଁ ତାର ଘନିଷ୍ଠ ବନ୍ଧୁ । ବହୁତ ତା' ସଂସର୍ଗରେ ଆସିଚି କିନ୍ତୁ ତା'ର ଏତେ ଯେ ବୁଦ୍ଧି, ଏତେ ଯେ ଚତୁରତା ଅଛି ତାହା ମୁଁ ଜାଣିପାରି ନଥିଲି । ତେବେ ତାର ଯାହା ନିଜସ୍ୱ ପ୍ରତିଭା ଅଛି ସେଇଟା ଯେ ଏଠାର ସୁରସାକୀ ପ୍ରଭାବରେ ବେଶୀ ପ୍ରତିବିମ୍ବ ହୋଇ ଉଠିଚି ଏଥିରେ ସନ୍ଦେହ ନାହିଁ ।

ସେ ଯୁବତୀ ଦୁହିଁଙ୍କ ମଧ୍ୟରୁ ଜଣେ ଅତି ସ୍ନେହରେ ଭୌମିକଙ୍କୁ ପଚାରିଲେ, ଏ କଣ ଆପଣଙ୍କର ଖୁବ୍ ଅନ୍ତରଙ୍ଗ ବନ୍ଧୁ ?

—ଭୌମିକ ଏତେବେଳକୁ ମଦ ନିଶାରେ ଟିକିଏ ମତୁଆଲା ହୋଇଯାଇଥାଏ । ସାଙ୍ଗେ ସାଙ୍ଗେ ଉତ୍ତର ଦେଲା । "ହଁ, ଖୁବ୍ ଅନ୍ତରଙ୍ଗ । ଦୁଇ ଅବିବାହିତ ବନ୍ଧୁ କୌଣସି ମତେ ସାଙ୍ଗ ସୁଖରେ ଇମିତି ଚଳି-ଯାଉଚୁ ।" ମୁଁ ଚମକି ଉଠିଲି । କଣ ପୁଣି ଏତେବଡ଼ ମିଛଟା ଆରମ୍ଭ କରିଦେଲା ! ତେବେ ସାଙ୍ଗେ ସାଙ୍ଗେ ମନେ ପଡ଼ିଗଲା । ଅନ୍ୟ ଦିନ ଆର କ୍ଲବ୍‌ରେ ମୁଁ ନିଜକୁ ବିବାହିତ କହିବାରୁ ସେ ମୋ ଉପରେ କ୍ଷୁର୍ଣ୍ଣ ହୋଇ ଉଠିଥିଲା ଏବଂ ମୋତେ କଡ଼ା ତାକିଦ୍ କରିଥିଲା ଯେ ଏ ଝିଅମାନଙ୍କ ଆଗରେ ନିଜକୁ ବିବାହିତ ବୋଲି ପରିଚୟ ନ ଦେବାକୁ ।

କାଳେ ମୁଁ କେତେବେଳେ ସତ କଥାଟା କହିଦେବି ସେଥି-ଯୋଗେ ସେ ଆଗରୁ ଏପରି ଚତୁରତା ପ୍ରକାଶ କଲା । ମୁଁ କିନ୍ତୁ ମନେ ମନେ ବଡ଼ ବିରକ୍ତ ହୋଇଉଠିଲି । ଏ ଏତେ ମିଛ କହୁଚି । କେତେ-ବେଳେ ଯଦି ପ୍ରକୃତ କଥାଟା ପାଟିରୁ ବାହାରିଯିବ ତେବେତ ମହା ଅସୁବିଧା ! ତାର କାରସାଦିଟା ବେଶ୍ କାମ କଲାପରି ଜଣାଗଲା । ସେ ଝିଅ ଦୁଇଜଣ ବେଶ୍ ଉତ୍‌ଫୁଲ୍ଲ, ଉତ୍ସାହିତ ହୋଇଉଠିଲା ପରି ଜଣାଯାଉଥାନ୍ତି । ମୋର ସେମାନଙ୍କ ପ୍ରତି ଟିକିଏ ଦୟା ହେଲା । ତାଙ୍କୁ ସତ କଥାଟା କହିଦେବି ବୋଲି ବସିଥିଲି । ଭୌମିକ ମୋର ଉଦ୍ଦେଶ୍ୟ ବୁଝିପାରି ମୋତେ ବାଧା ଦେଇ କହିଲା, "ଥାଉ ଥାଉ, ତୁମ ଅବିବାହିତ ଜୀବନର ଗୌରବମୟ କାହାଣୀ ଶୁଣିବାକୁ ସେମାନଙ୍କର ଆଗ୍ରହ ନାହିଁ । ତୁମ ଭାରତୀୟ ଦର୍ଶନରେ ନିଷ୍ଠା, ସଂଯମର ମୂଲ୍ୟ ଥାଇପାରେ କିନ୍ତୁ ଏଠାକାର ନୀତି ହେଲା—ଖାଅ, ପିଅ, ଆନନ୍ଦ କର । Eat, drink, and be merry !

ଏତକ କହି ଆଉ ଦୁଇ ପିଆଲା ମଦ ସେ ଯୁବତୀ ଦୁହିଁଙ୍କୁ ଧରେଇ ଦେଲା । ସେମାନେ ଉତ୍ସାହ, ଆନନ୍ଦରେ ଗଦଗଦ ହୋଇ ଉଠିଲେ । ବାଃ ! ବେଶ୍ ତ ଢଙ୍ଗାଙ୍ଗ ନାଟକୀୟ ପରିସ୍ଥିତି ସୃଷ୍ଟି କରିପାରୁଚି ଭୌମିକ । କିନ୍ତୁ ସେ ଯେ ଗୁଡ଼ାଏ ମିଛ କହି ସେ ଝିଅ ଦୁହିଁଙ୍କୁ ଅଯଥା ପ୍ରତାରିତ

କରୁଥିଲି ମୁଁ ତାକୁ ବରଦାସ୍ତ କରିପାରିଲି ନ । ଭୌମିକର ଆଖିଠରା, ବାଧା ଆପତ୍ତି ନ ମାନି କହିଲି, "ନା, ମୋର ବନ୍ଧୁ ସେମିତି କୌତୁକରେ କହୁଚନ୍ତି । ମୁଁ ପ୍ରକୃତରେ ବିବାହିତ, ମୋର ଗୁଡ଼ିଏ ପିଲାକିଲା ଅଛନ୍ତି ।" ଭୌମିକ ରାଗରେ ମୁହଁ କୁହୁଳାଇ ଦେଇ, କହିଲା "କାହିଁ ତାଙ୍କୁ ମିଛ କହୁଚ ! ସେମାନେ କଣ ତୁମକୁ ବିବାହ କରିବାକୁ ଅଳି କରୁଚନ୍ତି ! ହଁ, ତାର ସ୍ତ୍ରୀ ଓ ସନ୍ତାନ ସନ୍ତତି ଅଛନ୍ତି । ସ୍ୱପ୍ନ-ସ୍ତ୍ରୀ, ସ୍ୱପ୍ନ-ସନ୍ତାନ ! ଆପଣମାନେ ଚାର୍ଲସ୍ ଲାମ୍ବଙ୍କ "ସ୍ୱପ୍ନ ସନ୍ତାନ" (Dream Children) ସନ୍ଦର୍ଭ ପଢ଼ିଥିବେ । ଏ ସେମିତି ଜଣେ କଳ୍ପନା-ବିଳାସୀ । ଲେଖକ, ନାଟ୍ୟକାର କି ନା ।

ସତେ !

ସ୍ୱପ୍ନ-ସ୍ତ୍ରୀ ସ୍ୱପ୍ନ-ସନ୍ତାନ ! ହାଃ, ହାଃ—

ସେ ଯୁବତୀ ଦୁହେଁ ସତେ ଯେପରି ତା'ର କଥାକୁ ବିଶ୍ୱାସ କରି ଆନନ୍ଦରେ ହୋ-ହୋ ହସି ଉଠିଲେ । ମୁଁ ଏକେବାରେ ବୋକା, ବୋକା ପାଲଟିଗଲି । ଭୌମିକ ମୋର ଅବସ୍ଥା ଦେଖି ସେ ଯୁବତୀମାନଙ୍କ ସାଙ୍ଗେ ସ୍ୱର ମିଳାଇ ହସିଉଠିଲା ।

ମୁଁ ମନେ ମନେ ରାଗିଗଲି । ଗୋଟାଏ ଲଗେଇଚି ଫିସାଦ । ପଇସା ବି ଖର୍ଚ୍ଚ କରୁଚି ବହୁତ । ମୁଁ ପୁଣି ଗୁରୁ ଗମ୍ଭୀର ସ୍ୱରରେ ଆରମ୍ଭ କଲି, "ମୋ ବନ୍ଧୁ ଆପଣମାନଙ୍କୁ ମିଛ କହୁଚି । ମୁଁ ପ୍ରକୃତରେ ବିବାହିତ ।" ଭୌମିକ ଏଥିରେ ରାଗିଯାଇ ମୋତେ ବଙ୍ଗଳାରେ ଗାଳି ଦେବାକୁ ଆରମ୍ଭ କଲା । କହିଲା, "ଶଳା ! ଟିକିଏ ସମ୍ଭାଳି ହେଇପାରୁନୁ ? ମୋତେ ନା ଟିକିଏ ସୁବିଧା ଦେଲେ ମୁଁ ମୋର କାରସାଦି ଦେଖାନ୍ତି ।"

—କାରସାଦି ଆଉ କଣ ! ଖାଲି ତ ମିଛ ! ଏମାନେ ହେଲେ ସମ୍ଭ୍ରାନ୍ତ ପରିବାରର ଝିଅ ।...

—ଆବେ, କିଏ ସମ୍ଭ୍ରାନ୍ତ ପରିବାରର ଝିଅ । ଶଳା, ନିହାତି ଶସ୍ତା ବେଶ୍ୟା ! ତୁମେ ଏମାନଙ୍କ କାରସାଦି ବୁଝିପାରିବନି । ସେଥି ଯୋଗେ କହୁଥିଲି ତୁମର ବଳାତ ଆସିବା ଠିକ୍ ହେଇନି । ତୁମେ ତୁମର

ସେହି ମଣା ମାଛି ଭରା ମଫସଲ ଅଞ୍ଚଳରେ ରହି କାବ୍ୟ-କବିତା ଲେଖିଥାନ୍ତି । କହିଲି ସମ୍ଭ୍ରାନ୍ତ ପରିବାରର ଝିଅ ।

—ସେମାନେ କହିଲେ ।

—ସେମାନେ କହିଲେ ବୋଲି ତୁମେ ବିଶ୍ୱାସ କରିଗଲ । ମୁଁ କମିତି କହିଲି ମୁଁ ରାଜ ପରିବାରର ଲୋକ, ଲକ୍ଷପତି ବୋଲି । ଶଳା ! ଦେଶକୁ ଗଲେ ବୋଧହୁଏ ହାଓଡ଼ା ଷ୍ଟେସନରେ କୁଲିଗିରି କରିବାକୁ ପଡ଼ିବ ।

ଆମେ ଏମିତି କଡ଼ା ମିଠା କଥାବାର୍ତ୍ତା କରୁଥାଉ । ତେଣେ ବାନ୍ଧବୀମାନଙ୍କର ମୁଖମଣ୍ଡଳ ଗୁରୁଗମ୍ଭୀର ହୋଇ ଉଠିଥାଏ । ସେମାନେ କହିଲେ, "ଆମେ ଯାଉଚୁ ।" କାହିଁକି ? କଣ ହେଲା ! ହଠାତ୍ ବିନା ମେଘରେ କୁଳୀଶ ସୃଷ୍ଟି ହେଲା କାହିଁକି । ଓ ! ଆମେ ଯେ ତାଙ୍କୁ ବାଦ୍ ଦେଇ ଆପଣା ଆପଣା ଭିତରେ କଥାବାର୍ତ୍ତା କଲୁ ସେଥିରେ ସେମାନଙ୍କୁ ଅବଜ୍ଞା, ଅମର୍ଯ୍ୟାଦା କରାଗଲା । ଭୌମିକ ପରିସ୍ଥିତିକୁ ସମ୍ଭାଳିବାକୁ ଯାଇ କହିଲା, "କଣ କରିବା, କ୍ଷମା ଦେବେ । ମୁଁ ପରା ସତ କଥାଟା କହିଦେଲି ବୋଲି ଏ ବନ୍ଧୁ ମୋତେ ଗାଳି ଦେଉଚି, ନହାତି ବେରସିକ, ଖାପଛଡ଼ା ଲୋକଟା କନା !"

—କାହିଁକି ଗାଳି ଦେଉଚନ୍ତି ? ଭୌମିକ ପାଖରେ ବସିଥିବା ଯୁବତୀଟି ସନ୍ଦେହରେ ପଚାରିଲା ।

—ମୁଁ କାହିଁ ତାକୁ ଅବିବାହିତ ବୋଲି କହିଦେଲି । ଏତେ ଯେମିତି ସ୍ତ୍ରୀ'କୁ କଏ ବାହା ହୋଇପଡୁଚି ।

—ଏଥିରେ ସେ ଯୁବତୀ ଦୁହେଁ ପୁଣି ପ୍ରଫୁଲ୍ଲ ହୋଇ ଉଠିଲେ ଏବଂ ସାଗ୍ରହ ବଦନରେ ପଚାରିଲେ, ସତରେ କ'ଣ ସେ ଅବିବାହିତ ?

—ନିଶ୍ଚୟ ।

—ଆଉ ଆପଣ ?

— ହଁ, ମୁଁ ବ ।

— ଆପଣମାନେ କ'ଣ ନାଇଟ୍ କ୍ଲବକୁ ଯିବେ ?

– ସେପରି ଉଦ୍ଦେଶ୍ୟ ନାହିଁ । ତେବେ ଆପଣମାନେ ଯଦି ଦୟା କରିବେ······

—ଆମେ କ'ଣ ଦୟା କରିବୁ ! ଆମେ ତ ତେଣିକି ଯିବୁ କି ନାହିଁ ଠିକ୍ କରିନୁ ।

—ନା, ନା, ଚାଲନ୍ତୁ । ଆପଣମାନେ ସାହାଯ୍ୟ ନ କଲେ ମୁଁ ମୋର ଏ ବେରସିକ ବନ୍ଧୁର ଦାୟିତ୍ୱ ନେଇ ପାରିବିନି ।

—ଆପଣ ତାଙ୍କୁ ଯେପରି ଭୀରୁ ବୋଲି ଭାବୁଚନ୍ତି ଆମେ ତ ସେମିତି ଦେଖୁନୁ । ସେ ଠିକ୍ ଅଛନ୍ତି ।

—ସତେ ! ଆପଣମାନେ ତେବେ ତା'ର କିଛି ସୁରାକ୍ ପାଇଲେଣି । ହେଇଥିବ । ଏହି କଥା, ଲେଖକଗୁଡ଼ାକ ବଡ଼ ଚୁପ୍ ସଇତାନ୍ ! ଭିତରେ ଭିତରେ ବୁଡ଼ ପାଣି ପିଇବେ । କେହି ଜାଣିପାରିବେ ନି । ଯାହାହେଉ ମୁଁ ବର୍ତ୍ତମାନ ନିଶ୍ଚିନ୍ତ ।

—କମିତି ?

—ଆପଣମାନେ ମୋ ବନ୍ଧୁଟିର ଦାୟିତ୍ୱ ନେବେ ।

— ଓ !

ସେ ଯୁବତୀ ଦୁଇଜଣ ଖିଲଖିଲ ହସି ଉଠିଲେ । ମୁଁ ଭୌମିକର ବଦମାସୀ ବୁଝିପାରି ଟିକିଏ ଗମ୍ଭୀର ହୋଇଉଠିଲି । ଭାବିଲି ବହୁତ ହସକୌତୁକ ହେଲା । ଏଥର ଫେରିବାର ବନ୍ଦୋବସ୍ତ କରାଯାଉ । ଭୌମିକକୁ ଦୃଢ଼ କଣ୍ଠରେ କହିଲି, ଚାଲ ଯିବା ।

ଭୌମିକ ଗମ୍ଭୀର ହୋଇ କହିଲା, ତୁମ ଯିବା ନ ଯିବା ପ୍ରଶ୍ନ ମୁଁ ସମାଧାନ କରିପାରିବିନି । ତୁମ ବାନ୍ଧବୀମାନଙ୍କୁ ପଚାର । ମୁଁ ମନେ ମନେ

ବିରକ୍ତ ହୋଇଉଠିଲି । କଣ ଏ ମଦ ପିଇ ଇମିତି ପ୍ରହସନ ଆରମ୍ଭ କରିଛ ! ଏଇଟା କ'ଣ ଏଠୁ ଉଠିବେନି ! ମୁଁ ଭଦ୍ରତାଭରା କଣ୍ଠରେ କହିଲି, "ହଉ, ମୁଁ ସେମାନଙ୍କଠାରୁ ବିଦାୟ ନେଉଛି । ତୁ ଉଠିଲୁ ।"

ତା'ପରେ ଠିଆ ହୋଇପଡ଼ି ସେ ଯୁବତୀ ଦୁହିଁଙ୍କୁ ଲକ୍ଷ୍ୟ କରି କହିଲି, "ହଉ, ବିଦାୟ ! ଆପଣମାନଙ୍କୁ ଅଶେଷ ଧନ୍ୟବାଦ ।" ମୋର ଏ ଢଙ୍ଗ ଦେଖି ଭୌମିକ ମୋ ଉପରେ ବିରକ୍ତି ପ୍ରକାଶ କରି ସେ ଯୁବତୀ ଦୁହିଁଙ୍କୁ ଗୁହାରି କଲା, "ଦେଖୁଛ ଲୋକଟାର ବୁଦ୍ଧି ! ଏଠାରି ଆନନ୍ଦ ଆସର ଆରମ୍ଭ ହୋଇନି, ବାହାରିଲାଣି ଯିବ ବୋଲି । ତା'ର ଆଉ ଗୋଟିଏ ଭଲ ବାନ୍ଧବୀ ଅଛି । ତା' କଥା ମନେ ପଡ଼ିବଣି ।"

ମୋର ଅନ୍ୟ ଜଣେ ବାନ୍ଧବୀ ଥିବା କଥା ଶୁଣି ସେ ଯୁବତୀ ଦୁଇଟି ଯେପରି ହାହାକାର କରି ଉଠିଲେ । ଖୁବ୍ ମଧୁର ମୁଲାଏମ୍ କଣ୍ଠରେ କହିଲେ, "ବସନ୍ତୁ ଯିବେ ତ ! ଏତେ ତରତର କାହିଁକି ! ଆପଣଙ୍କର ବାନ୍ଧବୀଙ୍କୁ ଏଠିକି ଆଣିଲେ ନି ?"

—କି ବାନ୍ଧବୀ ହୋ ! ସେଇଟା ଭୁଛା ମିଛୁଆ ।

ଭୌମିକ ପରିସ୍ଥିତିକୁ ବେଶ୍ ଉପଭୋଗ କରୁଥାଏ ଏବଂ ସେ ଯୁବତୀ ଦୁହିଁଙ୍କୁ ହାତ କରିବାକୁ ବେଶ୍ ତାଙ୍କୁ ପିଆଉଥାଏ । ଭାବିଲି ଏଟା ତ କଣ ପୂରା ରସିକ ପାଲଟି ଯାଇଛି । ଏଠୁ କଣ ଆଉ ଯିବନି କି ! ତାକୁ ବଡ଼ ବିନୀତ ଭାବରେ ଅନୁରୋଧ କରି କହିଲି, ଚାଲ ଯିବା ।

ସେ ବିରକ୍ତ ହୋଇ କହିଲା, ଯେଉଁଥିପାଇଁ ଆସିଛ ତାକୁ ତ ଦେଖିନ, ଆଉ ଯିବ ଯିବ କ'ଣ ହେଉଛ ? ନିଅ, ଏ ଭୋଡ୍‌କାରୁ ଟିକିଏ ପିଅ ।

ନାଇଁମ ଭୋଡ୍‌କା ! ମୋତେ ଭାରି ଶୀତ ଲାଗୁଥାଏ । ମୁହଁ ଶୁଖିଗଇ ମୁଁ ଚଉକିରେ ଯାକସ୍ଥାକ ହୋଇ ବସିଲି । ମୋତେ ପ୍ରକୃତିସ୍ଥ କରିବାକୁ ଯାଇ କହିଲା । ନିଅ ଏଥିରୁ ଟିକିଏ ପିଅ । ଏଇଟା ହାଲୁକା ପଡ଼ିବ । ମୁଁ ଅନିଚ୍ଛା ସତ୍ତ୍ୱେ ଯେମିତି ସେ ପାନୀୟ ପିଆଲା ଧରିଛି ଭୌମିକ ଉତ୍ସାହିତ ହୋଇ ସେ ଯୁବତୀ ଦୁହିଁଙ୍କୁ କହିଲା, ଆପଣମାନେ କିଛି

ମନେନ କରିବେ ନାହିଁ । ଏପରି ଖାପଛଡ଼ା ଢଙ୍ଗ ତାର ପ୍ରକୃତିଗତ । ସରଗରୁ ନରକ ପର୍ଯ୍ୟନ୍ତ ସବୁଠାରେ ତାର ଅନୁଭୂତି ଦରକାର କିନ୍ତୁ କେଉଁଠାକୁ ସେ ମନ ଦେଇ ଉପଭୋଗ କରିପାରେ ନା । ଆଜ ଆପଣମାନେ ଯଦି ଟିକିଏ ସାହାଯ୍ୟ କରିବେ······ସେମାନଙ୍କ ମଦ ପିଆଲି ଭରି ଦେଉ ଦେଉ ଏତକ କହି ସେମାନ ; ଆଡ଼କୁ ବ୍ୟାକୁଳ ଭାବରେ ଚାହିଁଲି । ଏଥିରେ ସେ ଯୁବତୀ ଦୁହେଁ ଖିଲ ଖିଲ ହସି ଉଠିଲେ । ପୁଣି ପରିସ୍ଥିତିଟା ସରଗରମ ହୋଇ ଉଠିଲା ।

ଏତେବେଳକୁ ସେ ହୋଟେଲ ହଲଟାରେ ଗହଳ ଚହଳ କମି ଆସିଥାଏ । କେବଳ ଅର୍ଦ୍ଦଲିମାନଙ୍କର ଏଣେ ତେଣେ ଧାଁଧପଡ଼, ଟେବୁଲ, ଚଉକି ସଜଡ଼ାସଜଡ଼ି ଛଡ଼ା ଆଉ ବେଶୀ କିଛି ଗୋଳମାଳ ନଥାଏ । ଭାବିଲି ସମସ୍ତେ ଯେଝା ବସା ବା ଘରକୁ ବାହୁଡ଼ି ଗଲେଣି । ଆମେ ଏଠି ବସି କଣ ତାମ୍‌ସା ଲଗେଇଚୁ । କାମଡ଼େନ ରୋଡ଼ ବହୁତ ଦୂର । କେମିତି ଏଇଲେ ସେଠାକୁ ଯିବାକୁ ହେବ । ବସାର ବନ୍ଧୁମାନେ ବର୍ତ୍ତମାନ ବୋଧହୁଏ ଶୋଇ ପଡ଼ିଥିବେ । ଆଜ ସଞ୍ଜବେଳେ କିଏ କିଏ ଆସିଥିବେ ! ହୁଏତ ମୋର ଅନୁପସ୍ଥିତି ନେଇ କେତେ ଆଳାପ-ଆଲୋଚନା ହୋଇଥିବ । କାଲି କିଏ କେତେ ମୋତେ ଥଟ୍ଟା · ପରିହାସ କରିବେ, ରାତିରେ କୁଆଡ଼େ ରହିଲ ବୋଲି ପଚାରିବେ । ନା, ଯେତେ ଡେରି ହେଉ ପଛେ ବସାକୁ ଫେରିଯିବାକୁ ପଡ଼ିବ । ରାତିଟା ଯାକ ଏଠି କଟାଇବା ଠିକ ହେବ ନା । ମଦ ନିଶାରେ ସାମାନ୍ୟ ବେସୁରା ହୋଇ ମୁଁ ଇମିତି ଭାବୁଥାଏ ।

ଭୌମିକ ଅର୍ଦ୍ଦଲିକୁ ଡାକି ପାନିୟର ଦାମ୍, ସ୍ନେକ୍‌ସ୍ନେକ୍ ପାଇଁ ଆଣିଥିବା ବିଭିନ୍ନ ଭଜାଭଜି ଆଦିର ମୂଲ୍ୟ ଦେଲା । କେତେ ପାଉଣ୍ଡ, ଶିଲିଂ ଦେଲା ସେଇଟା ମୋତେ ଦେଖେଇବାକୁ ଚାହୁଁ ନଥାଏ । ତାର ଉଦ୍ଦେଶ୍ୟ ହେଲା ପରେ ମୋ ସାଙ୍ଗେ ଭାଗ ବାଣ୍ଟିବା । ମନେ ମନେ ବିରକ୍ତ ହୋଇ ଉଠିଲି । କେଉଁ ଅଜଣା ଅଶୁଣା ଯୁବତୀମାନଙ୍କୁ ଖୁସି କରେଇବାକୁ ଗୁଡ଼ାଏ ପିଇବାକୁ, ଗୁଡ଼ାଏ ଖାଇବାକୁ ଦେଲା । ସେଥିପାଇଁ

ମୋଠାରୁ ଭାଗ ନବ । କିଛି ଦେବନି । ସେବ ତ ସବୁ ଖର୍ଚ୍ଚ କରବ ବୋଲି କହୁଛ ।

ଭୌମିକ ସାନନ୍ଦରେ ଉଠିପଡ଼ି ସେ ଯୁବକ ଦୁହିଁଙ୍କୁ ଖଣ୍ଡିଏ ଖଣ୍ଡିଏ ସିଗାରେଟ ବଢ଼ାଇ ଦେଲା । ସେମାନେ ତାକୁ ଅଧରଗତ କଲାରୁ ସାଗ୍ରହରେ ସେଥିରେ ଅଗ୍ନି ସଂଯୋଗ କଲା । ତାପରେ ମୋତେ ଖଣ୍ଡିଏ ସିଗାରେଟ ଦେଲା । ହେଲେ ସେଥିରେ ଅଗ୍ନି ସଂଯୋଗ କଲାନି । ମୋ ପ୍ରତି ତାର ଯେମିତି ଖାତିରଇ ନାହିଁ । କାହିଁ ଖାତିର କରବ ! ତାକୁତ ଏଇଲେ ବହୁମୂଲ୍ୟ ଅତିଥି ମିଳିଚନ୍ତି । ହଉ ଏଠୁ ଗ୍ଲୁ । ତାର ମୋର କଥାବାର୍ତ୍ତା । ଫୁର୍ତ୍ତି କରବ ବୋଲି ଏତେ ଅର୍ଥ ଅପବ୍ୟୟ କରବ !

ଭୌମିକ କିନ୍ତୁ ସେ ଯୁବକମାନଙ୍କ ସହିତ କ୍ଷୀରନୀର ପରି ମିଶି ଯାଇଥାଏ । ସେମାନେ ବ ତାର ପୂର୍ବ ଆପଣାର ହୋଇଯାଇଥାନ୍ତି । ତା’ ସହିତ ହସଗପ କରୁଥାନ୍ତି । ମଝିରେ ମଝିରେ ମୋତେ ବ ସହର୍ଷ ବଦନରେ କଣ କହିଦେଉଥାନ୍ତି, କଣ ପଚାରିଦେଉଥାନ୍ତି । ଖଣ୍ଡକୁ ଖଣ୍ଡ ସିଗାରେଟ୍ ଶୋଷୁଥାନ୍ତି । କଣ କରିବେ ? ଥଣ୍ଡା ଗ୍ରଭ ! ଏତେ ଯେ ପାନୀୟ ଗୁଡାକ ପିଇଲେ ତାର ଉତ୍ତାପ କଣ କମିଗଲାଣି ? କମି ଯିବଣି ! ଯେତେ ପିଇଲେ ସେତେ ଶୋଷ, ସେତେ ଥଣ୍ଡା ।

ହଉ, ଉଠ, ଯିବା, ଭୌମିକକୁ ତାଗିଦ୍ କରି କହିଲି ।

— କାହିଁ ମନ ଉଚ୍ଛନ୍ନ ହେଲାଣି କି ? ତୁମର ତ ଖାଲି ଘର ମନେ ପଡ଼ୁଥିବ ! ଏତେ ଦୂର ଆସି, ଏତେ ଖର୍ଚ୍ଚ କରି ଇମିତ ଶିଶୁପାଳ ହେଇ ଫେରିଯିବ ?

ଭୌମିକ ମୋତେ ଏ ବ୍ୟଙ୍ଗ-ବାଣୀ ଶୁଣେଇ ଦେଇ ସେ ଯୁବକ ଦୁହିଙ୍କୁ କହିଲା, “ଆପଣମାନେ ମୋ ବନ୍ଧୁଙ୍କଠାରୁ ଟିକିଏ ଅଲଗା ଅଲଗା ରହୁଥିବାରୁ ସେ ଏକବାରେ ମର୍ମାହତ । ତାକୁ ଟିକିଏ ଆପଣାର କରି ବାହାରର ଯୌନତୀର୍ଥ ଏ ନାଇଟ୍ କ୍ଲବ୍ ସମ୍ବନ୍ଧରେ ଉଦ୍‌ବୁଦ୍ଧ କରନ୍ତୁ ।”

ସେ ଯୁବତୀ ଦୁହେଁ ସାଗ୍ରହରେ ମୋ ପାଖକୁ ଲାଗିଆସି ଅନେକ ସସ୍ନେହ ବାଣୀ ଭାଷିଲେ । ଭୌମିକ ତାର ଚଳେଇଥାଏ ମୋ ଉପରେ କପଟ-ଗାଳି ବର୍ଷଣ ବଙ୍ଗଳାରେ । ଶେଷରେ ମୋ ମତକୁ ଅପେକ୍ଷା ନ କରି କହିଲା, ଚାଲ । ତେଣୁ ଦଳବଦ୍ଧ ହୋଇ ବାହାରିଲୁ ନାଇଟ୍ କ୍ଲବ୍‌କୁ । ମୋ ମନରେ ଆଗ୍ରହ, ଉତ୍ସାହ ପୁଣି ଜାଗି ଉଠିଲା ।

ସେହି ମହାମନ୍ଦିରର ଦ୍ୱାର ଦେଶରେ ବସିଥାନ୍ତି ଦୁଇଜଣ ବିରାଟ ଅର୍ଦ୍ଦଳି । ପୁରୁଷ ସ୍ତ୍ରୀ, ଯୁବକ-ଯୁବତୀ ଭିତରକୁ ପଶୁଥାନ୍ତି ତାଙ୍କ ପ୍ରବେଶ-ପତ୍ର ଦେଖାଇ । ଏଠାକାର ନିୟମ-କାନୁନ୍ ଟିକିଏ କଡ଼ା । ଯେଉଁମାନେ କ୍ଲବ୍‌ର ସଦସ୍ୟ ତାଙ୍କ ପାଇଁ କିଛି ବାଧବାଛନ୍ଦ ନାହିଁ । ସେମାନେ ପ୍ରତ୍ୟେକେ ତାଙ୍କ ସାଙ୍ଗରେ ଜଣେ ଜଣେ ଅତିଥି ( guest ) ଆଣି ପାରିବେ । ଅବଶ୍ୟ ଭୌମିକ ଏଥିର ସଦସ୍ୟ । ତେଣୁ ତା ସାଙ୍ଗରେ ଜଣେ ଯାଇପାରିବେ । କିନ୍ତୁ ଯୁବତୀ ଦୁଇଜଣ ଯିବେ କେମିତି ? ଭୌମିକ ଯେପରି ଭାବରେ ତାଙ୍କୁ ଆପଣାର କରି ନେଇଛି ସେ ତ ସେମାନଙ୍କୁ ଛାଡ଼ି ଭିତରକୁ ଯିବନି । ହୁଏତ ମତେ ବି ଛାଡ଼ି ଚାଲିଯାନ୍ତା । କିନ୍ତୁ ସେଥିରେ ବି ସମସ୍ୟାର ସମାଧାନ ହେଉନି । ସେ ଯୁବତୀ ଦୁହିଁଙ୍କ ଭିତରୁ କାହାକୁ ଛାଡ଼ିବ ବୋଲି ମନେ ହେଉନି । କେବଳ ମୋତେ ଅଦରକାରି ଭାବି ଉପେକ୍ଷା କରିପାରେ । କରୁ । ସେତିକି ହେଲେ ରକ୍ଷା । ମୁଁ ଚାଲିଯିବି ଆମ କାମଡ଼େନ୍ ରୋଡ ବସାକୁ । ବସାର ସମସ୍ତେ ଶୋଇ ପଡିବେଣି । ଡାକିଲେ ଉଠିବେ କି ନାହିଁ । ନ ହେଲେ ବାରଣ୍ଡାରେ ପଡ଼ିଯିବି । କିନ୍ତୁ ଏଠି ବାରେଣ୍ଡା କାହିଁ ? ଖାଲି ତ ଘର ।

ଆମ ଦେଶରେ କିନ୍ତୁ ଭାରି ସୁବିଧା । ଗାଁମାନଙ୍କରେ କହନ୍ତି ପିଣ୍ଡା, ସହରମାନଙ୍କରେ ବାରଣ୍ଡା । ପ୍ରଶସ୍ତ ଖୋଲା ଜାଗା ଘରକୁ ଲାଗି । ନିଜେ ତ ତାକୁ ଯାହା ବ୍ୟବହାର କରନ୍ତି, ରାତିବେଳା କୌଣସି ଅସୁବିଧାଗ୍ରସ୍ତ ପଥିକ, ଋଷି, ବାବାଜି, ଯୋଗୀଭିକାରି ଏପରିକି ଗୋରୁଗାଈ, ମେଣ୍ଢାଛେଳି, ବିରାଡ଼ିକୁକୁର ନିରାପଦରେ ବିଶ୍ରାମ କରନ୍ତି । କାହାର ଅନୁମତି ନେବା ଦରକାର ପଡେନି । କମ୍ବଳ, ଚଦର, ଗାମୁଛା ଯାହା ପାଖରେ ଯାହା ଥିବ ତାକୁ ପାରି ନୋହିଲେ ଖାଲି ଚଟାଣ ଉପରେ

ଆରାମରେ ସୁଖନିଦ୍ରା ଯାଆନ୍ତି । ପୁଣି ସକାଳ ହେଲେ ଯେଝା ବାଟ ଧରନ୍ତି । କିନ୍ତୁ ଏଠି ସେ ବାରେଣ୍ଡା କାହିଁ !

ଇମିତି ନାନା ସୁଚିନ୍ତା, ଦୁଶ୍ଚିନ୍ତା କରୁଥାଏ । କିନ୍ତୁ ଭୌମିକ ଲାଗିଥାଏ ତା ଧନ୍ଦାରେ, କିମିତି ଦୁଇଟା ପାଶ୍ ବନ୍ଦୋବସ୍ତ କରିବ । ସେ ଅର୍ଦ୍ଦଳିମାନଙ୍କ ସାଙ୍ଗରେ ଲାଗିଥାଏ ଆମ ସମସ୍ତଙ୍କୁ ଭିତରକୁ ଛାଡ଼ି ଦେବାକୁ । କିନ୍ତୁ ଅର୍ଦ୍ଦଳିମାନେ ନଚ୍ଛୋଡ଼ବନ୍ଧା । ସେମାନେ ଜମା ମଙ୍ଗୁ ନଥାନ୍ତି । ଭୌମିକ ସେମାନଙ୍କୁ କିଛି ବକ୍‌ସିସ୍ ('tip') ଦେଇ ଆମ ଯାବାପଥ ସୁଗମ କରିବାକୁ ଚେଷ୍ଟା କଲା । ତଥାପି ସେମାନେ ଆମକୁ ଉପକୃତ କରିବାକୁ ନାମଙ୍ଗ । ତେବେ ଉପାୟ ?

ଏ ଟିପସ୍ ଦେବା ବିଲାତରେ ଗୋଟିଏ ଧରିବନ୍ଧା ନୀତି । ଯାହାକଲେ ଯେଉଁଠିକି ଗଲେ ଟିପସ୍ ଦେବାକୁ ପଡ଼େ । ଏହି ଟିପସ୍ ସାହାଯ୍ୟରେ ବି ଅସାଧ୍ୟ ସାଧନ କରିହୁଏ । କିନ୍ତୁ ଟିପସ୍ ନଦେଲେ ନାନା ଅସୁବିଧାରେ ପଡ଼ିବାକୁ ହୁଏ, ଅନେକ ଅପ୍ରୀତିକର ସମସ୍ୟାର ସମ୍ମୁଖୀନ ହେବାକୁ ପଡ଼େ । ମୁଁ ଇମିତି ଥରେ ଅସୁବିଧାରେ ପଡ଼ିଥିଲି । ବିଲାତରେ ପହଞ୍ଚିବାର ଅଳ୍ପଦିନ ହୋଇଥାଏ । ଯାଇଥିଲି ଆମ ବସା ପାଖ ବେକ୍‌ନିକ୍ ଛକକୁ ବାଳ କାଟିବାକୁ । ମହାସୁଳଭଟା ବିଜ୍ଞାପନ ପଟାରେ ଲେଖାଥାଏ ଅଢ଼େଇ ଶିଲିଂ । ଏଠାରେ ବି କ୍ୟୁ ମାନେ ଲାଇନ୍ ଲଗାଇବାକୁ ହୁଏ । ଅବଶ୍ୟ ଠିଆ ହୋଇ ନୁହେଁ । ବେଞ୍ଚ, ଚୌକି ପଡ଼ିଥାଏ ସେଥିରେ ବସିବା । ତୁମ ପାଳି ପଡ଼ିଲେ କେଶ-ବିନ୍ୟାସ କରିବ । ସାଲୁନ୍‌ରେ ବାଧ୍ୟତାମୂଳକ ଭାବରେ ଅପେକ୍ଷା କରିବାର ସୁବିଧା ପାଇ ମୁଁ ଚାରିଆଡ଼କୁ ଚାହିଁଲି । କଣ ଏଠାକାର ବ୍ୟବସ୍ଥା ! ଆମର ତ ଶାସ୍ତ୍ର କହୁଚି ନାପିତ ଧୂର୍ତ୍ତ । ଏଠାର ଧୂର୍ତ୍ତ ସାହେବ ବାରିକମାନେ କଣ କରୁଚନ୍ତି ଟିକିଏ ଲକ୍ଷ୍ୟ କଲି । କରୁଚନ୍ତି ଆଉ କଣ ! ବାଳ ତ କାଟୁଛନ୍ତି । ଚାରିଆଡ଼ର ପରିବେଶ ଅନେକଟା ଆମ ବଡ଼ ବଡ଼ ସହରରେ ଥିବା ଉନ୍ନତ ଧରଣର ସାଲୁନ୍ ପରି । ତେବେ ବାରିକମାନଙ୍କର ପୂରା ସାହେବୀ ବେଶ । ପିନ୍ଧିଛନ୍ତି ପ୍ୟାଣ୍ଟ୍-କୋଟ୍ ସାର୍ଟ-ଟାଇ । ଉପରେ ଗଳେଇଚନ୍ତି ଖଣ୍ଡେ ଖଣ୍ଡେ ଲମ୍ବା ଓଭର କୋଟ୍ କାରଖାନା ଶ୍ରମିକମାନଙ୍କ ପରି । ତାର ପକେଟ୍‌ରେ ବେଳେ ବେଳେ

କଇଞ୍ଚି, ଖୁର ଆଦି ଉପକରଣ ରଖି ଦେଉଥାନ୍ତି ବାଳକଟା, ଖିଅର କରିବାର କର୍ମ-ତତ୍ପରତା ଭିତରେ । ଦର୍ପଣ ପାଖରେ ଟେବୁଲ ଉପରେ ସମସ୍ତ ଉପକରଣ ସଜାଇ ହୋଇ ରଖା ଯାଇଥାଏ । କିନ୍ତୁ ଆମ ଦେଶରେ ଅନେକ ସାଲୁନରେ ଯେମିତି ସିନେମା ତାରକାଙ୍କର ଚିତ୍ର ମରାଯାଇଥାଏ ସେ ସବୁ ଦେଖିଲିନି । ତେବେ ଅନେକ ପତ୍ର ପତ୍ରିକା ଥୁଆହୋଇଥାଏ । ଅବଶ୍ୟ ସେମାନଙ୍କ ଭିତରୁ କେତେକ ବହୁତ ପୁରୁଣା । ଯେ ଗ୍ରହୁଁଥାଏ ସେସବୁ ପଢ଼ୁଥାଏ ।

ମୋ ପାଳି ପଡ଼ିବାରୁ ମୁଁ ଯାଇ ଚଉକିରେ ବସିଲି । ବାଳକଟାର ବିଭିନ୍ନ ଢ଼ଙ୍ଗ ଅଛି । ବାରିକ ମହାଶୟ ମୋତେ ଖଣ୍ଡିଏ ସଚିତ୍ର ବିଜ୍ଞାପନ ପଟା ଧରେଇଦେଲେ । ସେଥିରେ ବିଭିନ୍ନ ପ୍ରକାର ବାଳକଟାର ବିସ୍ତୃତ ବିବରଣୀ ଥାଏ । ପମ୍ପାଡର ( Pompad u ), କର୍ଲସ୍ (Curls), ଷ୍ଟ୍ରେଟ୍ କଟ୍ (Straight Cut), ପେଜ୍ ବୟ (Page b y) ଇମିତି କେତେ କଣ । ମୋର ସେଥିରୁ ଗୋଟିକୁ ବାଛିବାର କଥା । କିନ୍ତୁ କଣ ବାଛିବି ? ଏଥିରେ ତ ମୋର ବିଶେଷ ଅଭିଜ୍ଞତା ନାହିଁ । ଆମ ଦେଶ ହୋଇଥିଲେ ବାରିକ ଖୁବ୍ ହେଲେ ପଚାରନ୍ତା ଲମ୍ବା କଲି କି ଫ୍ରେଞ୍ଚ କଲି । ନହେଲେ ପଛ ପଟ ବେଶୀ ପତଳା କରିବି କି ମୋଟା ରଖିବି, ଇମିତି କିଛି । ଏହାର ଉତ୍ତର ଦେବା ସହଜ । କିନ୍ତୁ ଏଯେ ସଚିତ୍ର ବିଜ୍ଞାପନ ପଟା ଧରେଇଦେଲେ ! ଏଥିରୁ ତ କିଛି ବୁଝି ହେଉନି । ଏଣେ ବାରିକ ସାହେବ ଉଦ୍‌ଗ୍ରୀବ ହୋଇ ଅପେକ୍ଷା କରିଥାନ୍ତି ମହାମାନ୍ୟ ଗ୍ରାହକ ମହାଶୟ କି ବରାଦ କରିବେ । ହଠାତ୍ ମୁଣ୍ଡକୁ ବୁଦ୍ଧି ଗୋଟିଏ ଆସିଲା । ଷ୍ଟ୍ରେଟ୍ କଟ୍ ମାନେ ସିଧା କଟା କଥାଟା ତ ବୁଝି ହେଉଚି, ସେଇଟାକୁ ବରାଦ କରିଦେବି । ସେଇଆ କଲି । ବାରିକ ସାହେବ ତାଙ୍କ କାମରେ ଲାଗିଲେ । ମୁଁ ଲକ୍ଷ୍ୟ କରୁଥାଏ, ଏ ସିଧା ବାଳକଟାର କଳା ନୈପୁଣ୍ୟ କଣ ! କିଛି ବୁଝିପାରିଲିନି । ତେବେ ଗୁଡ଼ାଏ ବାଳ ହୋଇଯାଇଥିଲା । ସେଥିରୁ ଖଣ୍ଡେ ଖଣ୍ଡେ କାଟି ଦିବାରୁ ମୁଣ୍ଡବୋଝ ହାଲୁକା ଲାଗିଲା । ତାପରେ କ୍ଷୌର କର୍ମରେ ବାଳକଟା ପର୍ବର ପରିସମାପ୍ତି । ଆମଦେଶ ହୋଇଥିଲେ, ନଖକାଟ, କାଖତଳ ଖିଅର କର, ଟିକିଏ ମୋଡ଼ାମୋଡ଼ି କରିଦେ ଇମିତି କେତେ ବରାଦ ହୋଇଥାନ୍ତା । ବାରିକ ବି ତା ବାହାଦୁରୀ ଦେଖାଇ

ଥାଏ । ବାଳକଟା ସରିବାରୁ ବାରିକ ମହାଶୟଙ୍କ ସାଗ୍ରହରେ ଅଢ଼େଇ ଶିଲିଂ ଯାଚିଲି । ସେ ମହାଶୟ ମୁହଁ ଶୁଖାଇ କ୍ୟାସ କାଉଣ୍ଟରରେ ଦାମ୍ ଟା ଦେବାକୁ ଇଙ୍ଗିତ ଦେଲେ । କ୍ୟାସ୍ କାଉଣ୍ଟରରେ "Pay here" ବୋଲି ଲେଖାଥିଲା । ମୁଁ ତାକୁ ଦେଖିପାରି ନଥିଲି । ସେଇ ଯୋଗେ ବାରିକ ମହାଶୟ ବିଗିଡ଼ି ଗଲେ ! ତେଣୁ ସେହି ସ୍ଥାନରେ ଅଢ଼େଇ ଶିଲିଂ ଦେଇ ପୁଣି ଥରେ ବାରିକ ମହାଶୟଙ୍କୁ ଚାହିଁଲି । ବୋଧହୁଏ ଏଥର ସେ ପ୍ରସନ୍ନ ହେବେ ! କିନ୍ତୁ ତାଙ୍କ ମୁହଁର ଆକାର ହାଣ୍ଡି ପରି ଆଉରି ଫୁଲି ଉଠିଲାଣି । ହଉ, ଯାହା ହେବା ହେଲା । ଏଥର ପଳାଇଗଲେ ରକ୍ଷା ।

ବସାକୁ ଫେରିବା ବାଟରେ ଭାବୁଥାଏ, କଣ ଏ ଘଟଣା ! ଯେଉଁ ଜାଗାରେ ପଇସା ଦେବାର କଥା ସେଠାରେ ନ ଦେଇ ତାଙ୍କୁ ଯାଚିଦେଲି ବୋଲି ସେଥିରେ କଣ ତାଙ୍କର ଏତେ ଅମର୍ଯ୍ୟଦା ହୋଇଗଲା ଯେ ସେ ଏତେଦୂର କ୍ରୁଦ୍ଧ ହୋଇଉଠିଲେ ! ଆଶ୍ଚର୍ଯ୍ୟଜନକ ଦେଶ ଏ । ଏଠି କୌଣସି ଦୋଷତ୍ରୁଟି ଘଟିଲେ ଅବସ୍ଥା ଖରାପ ହୋଇଯିବ ।

ବସାରେ ବନ୍ଧୁମାନଙ୍କୁ ଏ ଦୁଃଖମୟ କାହାଣୀ କହିଲି । ସେମାନେ ମୋତେ ବୁଝେଇଦେଲେ ଯେ ବାରିକ ମହାଶୟ ରାଗିବାର କାରଣ ହେଉଛି ମୁଁ ତାଙ୍କୁ ବକ୍ସିସ୍ (Tips) ଦେଇନି । ଆରେ ସତେ ତ ! ବଡ଼ ଭୁଲ ହୋଇଗଲା । ହେଲେ ଏଥିପାଇଁ ଏତେ ବିରକ୍ତି ! ମାଗିଥିଲେ ତ ମୁଁ ଦେଇପକାଇଥାନ୍ତି ।

କିନ୍ତୁ ଏ ଟିପ୍‌ସ୍‌ଟା ବିଲାତରେ କେହି ମାଗନ୍ତିନି । ତୁମକୁ ସ୍ୱତଃପ୍ରବୃତ୍ତ ହୋଇ ଦେବାକୁ ହେବ । ଏଇଟା ଏଠାରେ ସାଧାରଣ ଚଳଣି । ବଡ଼ ହାକିମଙ୍କୁ ଉପହାର ଓ ତଳିଆ ଅର୍ଦ୍ଦଳୀ ପ୍ରଭୃତିଙ୍କୁ ଟିପସ୍ ବା ବକସିସ୍ ଦିଆଯାଏ ।

ଥରେ କେହି ଜଣେ ବିଲାତି ଭଦ୍ରଲୋକ ମୋର ସରକାରୀ ପଦବୀ କଥା ଜାଣି ତାଚ୍ଛଲ୍ୟ କରି କହିଲେ, "ଆପଣମାନଙ୍କ ଦେଶରେ ଲାଞ୍ଚ, ଉତ୍କୋଚ ନେବା ଏକ ଖରାପ ଚଳଣି" ମୁଁ ତାର ପ୍ରତ୍ୟୁତ୍ତରରେ କହିଲି, "ହଁ, ଆପଣମାନେ ଯାହା ଶିଖେଇ ଦେଇ ଆସିଛନ୍ତି । ଆମ ଦେଶରେ ସର୍କାରୀ ଦପ୍ତରରେ ଲାଞ୍ଚ ନିଅନ୍ତି ସତ; କିନ୍ତୁ ଯେଉଁମାନେ ଯେଉଁଥିପାଇଁ ତାକୁ ନିଅନ୍ତି ସେମାନେ ତାକୁ କରେଇ ଦିଅନ୍ତି । ଆପଣମାନେ ଏଠି ବି

ବେଳେ ବେଳେ ଲାଞ୍ଚ ନଅନ୍ତି; କିନ୍ତୁ ତାର ପ୍ରତି ବଦଳରେ କିଛି କରନ୍ତିନି।”
କଥାଟା ସାହେବଙ୍କ ମନକୁ ବେଶ୍ ପାଇଲା। ସେ ହସହସ ହୋଇ କହିଲେ,
“ସେ କଥା ସତ ! ଆମର ଏଠି ଶାସନ ପ୍ରଣାଳୀ ଯାହା ଲାଞ୍ଚର
ପ୍ରତିଦାନରେ କିଛି କଲେ ଧରା ପଡ଼ିଯିବାର ଭୟ ଅଛି। ଆମ ଲୋକେ ଏ
ବିଷୟରେ ଖୁବ ସଚେତନ।”

ବିଲାତର ଏ ବକ୍‌ସିସ୍ ଓ ଉପହାର ଦେବା ପ୍ରଥା ମୋ ମନକୁ
ବେଶ୍ ପାଇଲା। ଏଇଟା ତାଙ୍କ ସାମାଜିକ ଓ ପ୍ରଶାସନିକ ପ୍ରଥାର ପ୍ରାୟ
ଗୋଟାଏ ଅଙ୍ଗ ହୋଇଯାଇଛି। ସମସ୍ତଙ୍କ ଜ୍ଞାତସାରରେ ଖୋଲାଖୋଲି
ଭାବରେ ଏଇଟା ଚାଲେ। ଏଇଟା କେତେ ପାଉଣ୍ଡ ପର୍ଯ୍ୟନ୍ତ ଯାଏ।
ତାଠାରୁ ବେଶୀ ହୋଇ ହଜାର ପାଉଣ୍ଡ ଆଡ଼କୁ ଗଲେ ସେଇଟା ଲାଞ୍ଚ
ହୋଇଯାଏ; ତେଣୁ ଅତି ଗର୍ହିତ ଓ ଅଗ୍ରହଣୀୟ।

ମଣିଷ ମାତ୍ରେ ଲୋଭୀ, ଆହରଣ-ପ୍ରବଣ (Acquisitive)। ତାକୁ
ସାମାନ୍ୟ କିଛି ପାରିତୋଷିକ ଦେଲେ ବା ତାକୁ କୌଣସି ପ୍ରକାର
ଉପକୃତ କଲେ ତାର ସନ୍ତୋଷଭାଜନ ହେବା ସମ୍ଭବ ହୁଏ ଏବଂ ତାଦ୍ୱାରା
କିଛି କାମ କରେଇହୁଏ। ବିଲାତରେ ବୋଧହୁଏ ମନୁଷ୍ୟର ଏହି
ଚିରନ୍ତନ ପ୍ରବୃତ୍ତିର ଗୁରୁତ୍ୱ ଉପଲବ୍ଧି କରି ଏହି tips ଓ presents
ପ୍ରଥାର ପ୍ରଚଳନ କରାଯାଇଛି। ବିଲାତବାସୀଙ୍କର tips ଓ presents
ନେବାରେ ଯେତିକି ଆନନ୍ଦ, ଲାଞ୍ଚ ନେବାରେ ସେତିକି କୁଣ୍ଠା ଓ ଭୟ।
ଆମ ଦେଶରେ ଅବଶ୍ୟ tips ଓ presents ଦେବା ପ୍ରଥା ଚଳେ; କିନ୍ତୁ
ସେଇଟା ଯେମିତି ଗୋଟାଏ ଛେଳ-ଲୁଚ କାରବାର। ଭାରତରେ
କାହାଠାରୁ ଅଳ୍ପବହୁତ କିଛି ପଣି ବା ବକ୍‌ସିସ୍ ଆଦାୟ କଲେ ସେସବୁଟା
ଗର୍ହିତ, ସବୁଟା ଦୁର୍ନୀତି। ଆମ ପୁଲିସ୍ ବିଭାଗ, ଆମ ଭିଜିଲାନ୍‌ସ
ଡ଼ିପାର୍ଟମେଣ୍ଟ ଆଦିଙ୍କ ପାଖରେ ସାମାନ୍ୟ ଅସାମାନ୍ୟ ଲାଞ୍ଚ, ଉତ୍କୋଚ।
ଏକେଇ ସବୁ ଦୁର୍ନୀତି। ତେଣୁ ସେ ସବୁଟା ବନ୍ଦ କରିବାକୁ, ଧରିବାକୁ
ଏମାନେ ମହାବିକଳ। ସାମାନ୍ୟ ସାମାନ୍ୟ କଥାରେ ଏମାନେ ଏତେ
ବ୍ୟସ୍ତ ରହନ୍ତି ଯେ ବଡ଼ ଘଟଣା ଧରିବାକୁ ଏମାନଙ୍କର ବଳ ବା ବେଳ
ନଥାଏ। ଉଚ୍ଚ ସ୍ତରରେ ଲକ୍ଷ ଲକ୍ଷ ଟଙ୍କା ଲାଞ୍ଚ ଉତ୍କୋଚ ଦିଆ ନିଆ
ଚାଲିଥିଲେ ବି ବହୁ ଜାଗାରେ ବହୁ ଟଙ୍କାର ବେଆଇନ କାରବାର

ହେଉଥିଲା ବେଳେ ଏମାନେ କେବଳ ସେଥିପ୍ରତି ଦୃଷ୍ଟି ନ ରଖି ଶ୍ରେଷ୍ଠ ବଡ଼ ସବୁ ବେଆଇନ୍ କାରବାରକୁ ଧରିବା ପାଇଁ ଚେଷ୍ଟା କରନ୍ତୁ । ଫଳରେ ତାଙ୍କ ଜାଲରୁ ବୋଲ୍ୱ, ଘଡ଼ିଆଳ ପଳାନ୍ତି । ଧରା ପଡ଼ନ୍ତି ମୀନ, କେରାଣି ପ୍ରଭୃତି ।।

ଗୋଟିଏ କଥା ମନେ ପଡ଼ୁଛି । ଦେଶରେ ଥିଲାବେଳେ ସରକାରୀ ଗସ୍ତରେ ଯାଇଥାଏ ଖଣ୍ଡପଡ଼ା । ସେଠାରେ ଡାକବଙ୍ଗଳାରେ ଦେଖାହେଲା ଜଣେ ଭିଜିଲାନ୍ସ ଇନ୍ସପେକ୍ଟରଙ୍କ ସାଙ୍ଗେ । ସେ ଏଣେ ତେଣେ ଧାଁ ଧପଡ଼ କରି କଣ ବହୁତ ଅନୁସନ୍ଧାନ କରୁଥାନ୍ତି । ଭାବିଲି ଖଣ୍ଡପଡ଼ା ପରି ଏ ଶ୍ରେଷ୍ଠ ଯାଗାଟାରେ ଏପରି କି ବଡ଼ ଦୁର୍ନୀତି ଘଟିଛି ! ପଚାରି ବୁଝିଲି, ସେଠାକାର ଜଣେ କେହି ନିମ୍ନସ୍ତରର ଅଫିସର ଭୁବନେଶ୍ୱର ଯିବା ଆସିବା ଗସ୍ତଖର୍ଚ୍ଚ ବାବଦରେ ସରକାରଙ୍କୁ ଠକିଛନ୍ତି ଭୁଲ ବିବରଣୀ ଦେଇ ।

—ସରକାରଙ୍କୁ ଠକିଛନ୍ତି ? କେତେ ଅନ୍ଦାଜ ?

—ଅବଶ୍ୟ ବେଶୀ ନୁହେଁ । ତେବେ ପାଞ୍ଚଟଙ୍କା ଖଣ୍ଡେ ହେବ ।

—ମାତ୍ର ପା-ଞ୍ଚ-ଟଙ୍କା ! ଆପଣଙ୍କର ଏଠା ରହଣି । ଯିବା ଆସିବା ଖର୍ଚ୍ଚ। ଏ ବାବଦରେ କେତେ ଖର୍ଚ୍ଚ ହେବ ?

ଏପରି ଏକ ପ୍ରଶ୍ନର ଉତ୍ତର ଦେବାକୁ ପଡ଼ିବ ବୋଲି ସେ ଇନ୍ସପେକ୍ଟର ମହୋଦୟ କେବେ ଚିନ୍ତା କରିନଥିଲେ । ମୋର ଏ ଅସ୍ୱସ୍ତିକର ପ୍ରଶ୍ନରେ ହଡ଼ବଡ଼େଇ ଯାଇ କହିଲେ, ଅବଶ୍ୟ ସେ ବହୁତ ବେଶୀ । କିନ୍ତୁ ଶ୍ରେଷ୍ଠ ହେଉ, ବଡ଼ ହେଉ ଠକେଇ ତ ! ଶ୍ରେଷ୍ଠ ଲାଞ୍ଚମିଛକୁ ନ ଜଗିଲେ ବଡ଼ ବଡ଼ କଥା ଜଗି ହେବ କିମିତି ! ସରକାର ତ ପୁଣି ତାଙ୍କର କେତେଟା ଟଙ୍କା ପ୍ରାପ୍ୟ ଆଦାୟ କରିବାକୁ ଶହ ଶହ ଟଙ୍କା କେବଳ ଚିଠିପତ୍ରରେ ଖର୍ଚ୍ଚ କରୁଛନ୍ତି !

ଅକାଟ୍ୟ ଯୁକ୍ତି । ତେବେ କଥାଟା ମୋ ମନକୁ ପାଇଲାନି । ଶ୍ରେଷ୍ଠ ବଡ଼ ସବୁ ଦୋଷ, ଦୋଷ ସତ ! କିନ୍ତୁ ଅପରାଧ ଅନୁପାତରେ ଯଦି

କାର୍ଯ୍ୟାନୁଷ୍ଠାନ ନ କରାଯାଏ, ତେବେ ଆମ ଦେଶରେ ଯେପରି ସ୍ବରଆଡ଼େ ଦୁର୍ନୀତି ବ୍ୟାପିଛି ତାକୁ ସଜାଡ଼ି ହେବ କିମିତି ?

ତେବେ ଟିପସ୍ କେଉଁଠି ଦବ, କେତେ ଦବ ? ଯାହାକୁ ଏ କଥା ପଚାରିବ ସେ କହନ୍ତି ଟିପ୍ସ ତ ଦେବ ଆଉ କେତେ କ'ଣ ? କେଉଁଠି କଣ ? କିନ୍ତୁ ପ୍ରକୃତରେ ଏ ସମ୍ବନ୍ଧରେ ଗୋଟାଏ ମୋଟାମୋଟି ଅଲେଖା ନିୟମ ଅଛି ।

ଅନେକ ହୋଟେଲ ଏବଂ ରେଷ୍ଟୁରାଁରେ ଖାଦ୍ୟପଦାର୍ଥ ଦାମ୍‌ର ବିଲ ସଙ୍ଗରେ ଏହି ଟିପସ୍ ମିଶାଥାଏ । ସେଇଟା ପ୍ରାୟ ଶତକଡ଼ା ୧୦ରୁ୧୨½ ପର୍ଯ୍ୟନ୍ତ । ତାକୁ ଅର୍ଦ୍ଦଳୀ ପ୍ରଭୃତିଙ୍କୁ ପରେ ସୁବିଧାରେ ବାଣ୍ଟି ଦିଆଯାଏ । ଯଦି ତୁମେ ଭାବିଯେ ତୁମକୁ କେଉଁଠାରେ ବେଶୀ ସେବା ମିଳିଛି ବା ଅର୍ଦ୍ଦଳୀ ବେହେରାମାନେ ତୁମର ଖୁବ ଯତ୍ନ ନେଇଚନ୍ତି ତେବେ ତୁମେ ତା'ବାଦେ ଆଉ କିଛି ଅଧିକା ଟିପସ୍ ଦେଇପାର । କି ବୁଦ୍ଧି ! ଶତକଡ଼ା ଦଶ ରୁ ସାଢ଼େ ବାର ପର୍ଯ୍ୟନ୍ତ ଏହି ଟିକସ ବା ମହାସୁଲ ଦେଇ ପୁଣି ଅଧିକା ଦବ । ବାସ୍ତବିକ୍ ଆମେ ଯେତେ ଯାହା ବାହାରେ ଖାଉ ବା କିଣୁ ସେ ବାବତରେ ଆମକୁ କେତେ ପ୍ରକାର ମହାସୁଲ ବା ଟିକସ ଦେବାକୁ ପଡ଼େ !

ଯେଉଁଠି ଏହି ମହାସୁଲଟା ହୋଟେଲ ପ୍ରଭୃତିର ବିଲ୍‌ରେ ମିଶି ନ ଥାଏ ସେ ଯାଗାମାନଙ୍କରେ ଶତକଡ଼ା ପାଞ୍ଚରୁ ଦଶ ଭିତରେ ଟିପସ୍ ଦେବାକୁ ପଡ଼ିବ । ରେଲୱେ ଷ୍ଟେସନ, ଉଡ଼ାଜାହାଜ ଘାଟି ଆଦିରେ ତୁମ ଜିନିଷ ପତ୍ରର ଗୋଟାକୁ ପ୍ରାୟ ପାଞ୍ଚ ପେନସ୍ ହିସାବରେ ଟିପସ୍ ଦେବା ଉଚିତ । ଆଉ ଟ୍ୟାକ୍‌ସି ଡ଼ାକିବା ଆଦି ଅଧିକା କାମ ଯଦି ବେହେରାମାନେ କରିଥିବେ ତେବେ ତା'ଠାରୁ ଅଧିକା ଟିପସ୍ ଦେବାକୁ ପଡ଼ିବ । କେଶ-ବିନ୍ୟାସ ପାଇଁ ସାଲୁନ୍‌ରେ ସାଧାରଣତଃ ଛଅ ପେନ୍‌ସ ଟିପସ୍ ଦିଆଯାଏ । ସିନେମା ଥିଏଟରର ଦ୍ୱାରପାଳମାନେ ସାଧାରଣତଃ ବକ୍‌ସିସ୍ ଆଶା କରନ୍ତି ନ । ତେବେ କେଉଁଠାରେ ବକ୍‌ସିସ୍ ଦବ କି ନାହିଁ ବୋଲି ଯଦି ସନ୍ଦେହ ହୁଏ ତେବେ ସେ ଯାଗାରେ ଟିପସ୍ ଦେବା ଭଲ ।

କିନ୍ତୁ ନାଇଟ୍ କ୍ଲବ୍‌ର ଦେବଦେବୀମାନଙ୍କୁ ଭୌମିକ ତ ଟିପସ୍ ଦେଉଛି । ଆମ ଅନ୍ଧାର ବିଳେ ସୁଗମ ହେଉନାହିଁ କାହିଁକି ? ମୁଁ ସେ ଯୁବକ ଦୁହିଁଙ୍କ ସହିତ କଥାବାର୍ତ୍ତା କରୁ କରୁ ଇମିତି ଭାବୁଥାଏ କିନ୍ତୁ ଭୌମିକ ଲାଗିଥାଏ ତା' କାମରେ । ତଥାପି ସେ ଦ୍ୱାରପାଳଙ୍କୁ ଫୁସୁଲଉ ଥାଏ । ଯଦି କେହି ଆଗନ୍ତୁକ ଆସୁଥାନ୍ତି ସେମାନଙ୍କୁ ବି ଅନୁରୋଧ କରୁଥାଏ ଆମ ଭିତରୁ କାହାକୁ ହେଲେ ସାଥୀ ହିସାବରେ ଭିତରକୁ ନେବାକୁ । ଏହି ସମୟରେ ଦୁଇଜଣ ବୟସ୍କ ଲୋକ ଆସି ପହଞ୍ଚିଲେ । ସେ ଦୁଇଜଣ ଯାକ କ୍ଲବ୍‌ର ସଦସ୍ୟ । ସେମାନେ ଭୌମିକର ଅନୁରୋଧରେ ସାଙ୍ଗେ ସାଙ୍ଗେ ରାଜି ହୋଇଗଲେ । ତେଣୁ ଆମର ଭାଗ୍ୟଡ଼ୋର ଫିଟିଲା । ଆମେ ସମସ୍ତେ ଭିତରକୁ ଗଲୁ ।

ମୋର ଏତେବେଳକୁ ବଡ଼ ବିରକ୍ତ ଆସିଥାଏ । ନାଇଟ୍ କ୍ଲବ୍ ସମ୍ବନ୍ଧରେ ତ ମୋଟା ମୋଟି ଧାରଣା ହୋଇଗଲାଣି । ଆଉ ଭିତରକୁ ଗଲେ କଣ ଅଧିକା ହେବ । ନିଦ ମାଡ଼ିଲାଣି । ବସାକୁ ଫେରିଗଲେ ରକ୍ଷା । କିନ୍ତୁ ଭୌମିକ ତାର ପାରିବାର ପଣ ଦେଖାଇବାକୁ ବିକଳ । ହଉ, କ'ଣ କରୁଛି କରୁ । ମୁଁ ଇମିତି ଭାବୁଥାଏ ।

ନାଇଟ୍ କ୍ଲବ୍ ! ଭିତରଟା ବଡ଼ ଅନ୍ଧାରିଆ । ଯେ କେତେଟା କ୍ଷୀଣ ଆଲୋକ ଜଳୁଥାଏ ସେଥିରେ ସବୁଟା ସ୍ପଷ୍ଟ ଦେଖାଯାଉ ନଥାଏ । ତେଣୁ ଟିକିଏ ନିରେଖି ଲକ୍ଷ୍ୟ କଲି । ଏ କଣ ! ଏ ସମସ୍ତେ ପ୍ରାୟ ଉଲଗ୍ନ ବା ଅର୍ଦ୍ଧ ଉଲଗ୍ନ । ଅବଶ୍ୟ ଅନେକେ ତାଙ୍କ ସାଧାରଣ ବେଶଭୂଷା ପିନ୍ଧିଥାନ୍ତି । କିନ୍ତୁ ଅନ୍ୟମାନେ ତ ପୂରା ନଗ୍ନାବରଣ ବା ଦେହରେ ସଂକ୍ଷିପ୍ତ ଆବରଣ ରଖି ····ଏତେ ବଡ଼ ଶୀତ ରାତିରେ ! ଶୀତ ତ ଏଠି ଜଣା ପଡ଼ୁନି । ଘରକୁ ଉତ୍ତପ୍ତ ରଖାଯାଇଛି ।

ଏ ଲଙ୍ଗଳା ହେବାରେ ଏମାନଙ୍କର ଏତେ ଆନନ୍ଦ କାହିଁକି ? ପୁରୁଷ ସ୍ତ୍ରୀ ସଭ୍ୟତାର ଆଲୋକ ପାଇବାର ପୂର୍ବେ ତ ଲଙ୍ଗଳା ଥିଲେ । ଏବେ ସଭ୍ୟତାର ଶୀର୍ଷ ସ୍ଥାନରେ ପହଞ୍ଚିବି ଏ ଲଙ୍ଗଳା ହେବା ପ୍ରବୃତ୍ତି କାହିଁକି ? ବୋଧହୁଏ ମନୁଷ୍ୟ ଯେତେ ସଭ୍ୟ ହେଲେ ମଧ୍ୟ ତାର ପଶୁତ୍ୱ ପୂରା ଛାଡ଼ିପାରିନି । ପୁରୁଷ-ସ୍ତ୍ରୀ ପରସ୍ପରକୁ ଉଲଗ୍ନ ଅବସ୍ଥାରେ ଦେଖିବାକୁ

ଭଲ ପାଆନ୍ତି । ପୁରୁଷ ଚାହେଁ ସ୍ତ୍ରୀର ଉଲଗ୍ନ ରୂପ ଉପଭୋଗ କରିବାକୁ । କାଳିଦାସଙ୍କ ମେଘଦୂତ କାବ୍ୟର ଗୋଟିଏ ଶ୍ଳୋକ ମନେ ପଡ଼ିଲା ।

ନୀବୀବନ୍ଧୋଚ୍ଛ୍ୱସିତଶିଥିଳଂ ଯତ୍ର ବିମ୍ବାଧରାଣାଂ
କ୍ଷୌମଂ ରାଗାଦନିଭୃତକରେଷ୍ୱାକ୍ଷିପତ୍ସୁ ପ୍ରିୟେଷୁ
ଅର୍ଚ୍ଚିସ୍ତୁଙ୍ଗାଃ ନଭିମୁଖମପି ପ୍ରାପ୍ୟ ରତ୍ନପ୍ରଦୀପାନ୍
ହ୍ରୀମୂଢ଼ାନାଂ ଭବତି ବିଫଳ ପ୍ରେରଣା ଚୂର୍ଣ୍ଣମୁଷ୍ଟିଃ ।

କବିବର ରାଧାନାଥ ରାୟ ତାର ଅନୁବାଦ କରିଛନ୍ତି :—

କୌତୁକେ ପତି କାନ୍ତା, ବସନ ହରେ
ସୁନ୍ଦରୀ ବିଗମ୍ବରୀ ଥରେ ଅଧରେ
ସମ୍ମୁଖେ ରତ୍ନଦୀପ ଉଜ୍ଜ୍ୱଳେ ଜଳେ
ନିର୍ବାଣ ଆସେ ଭ୍ରମ ରଜ ବିଫଳେ
ଫିଙ୍ଗଇ ବରାନନା ପ୍ରଦୀପ ପ୍ରତି
ବ୍ୟର୍ଥ ଯତନ ଦେଖି କୌତୁକୀ ପତି ।

କିନ୍ତୁ ଉଲଗ୍ନ ରୂପରେ ତ ଏମାନେ ସେମିତି ସୁନ୍ଦର ଦିଶୁନାହାଁନ୍ତି । ବେଶଭୂଷା ପିନ୍ଧିଲେ ଯେପରି ଚକ୍ ଚକ୍ ଝକ୍ ଝକ୍ ଦେଖାଯାନ୍ତି ସେ ଶୋଭା କାହିଁ ? ପୁରୁଷଗୁଡ଼ାକ ଯାହା ସେମିତି ଦେଖା ଯାଉଚନ୍ତି କିନ୍ତୁ ସ୍ତ୍ରୀ ଗୁଡ଼ାକ କିମିତି ବିଚିତ୍ର ଉଦ୍‌ଭଟ ଦିଶୁଚନ୍ତି !

ଗୋଟିଏ ଚଉକିରେ ବସିପଡ଼ି ଇମିତି ମୁଁ କେତେ କ'ଣ ଭାବୁଥାଏ । କିନ୍ତୁ ଭୌମିକ ଲାଗିଥାଏ ସେ ଦୁଇଜଣ ଯୁବତୀଙ୍କ ସାଙ୍ଗରେ ସେମାନଙ୍କୁ ଏ ନାଇଟ୍ କ୍ଲବ୍ କାରବାରରେ ମସ୍ତ କରିବାକୁ । ସେମାନଙ୍କ ସହିତ ସେ ଗୋଟାଏ କିଛି ରାଜିନାମାରେ ପହଞ୍ଚି ଆସି ମୋ ପାଖରେ ହାଜର ।

—ଚାଲ ।

—କୁଆଡ଼େ ?

—ଚାଲ ନା ।

ମୋର ଯେମିତି ଚେତା ପଶିଲା । ଆଗ୍ରହ ଅଡ଼ୁଆରେ ପଡ଼ିଲି । ନାଇଟ୍ କ୍ଲବ ଦେଖିବ ବୋଲି ସିନା ମହା ଉତ୍ସାହରେ ମାତି ଆସିଲି । କିନ୍ତୁ ମୁଁ ନିଜେ ତ ଏ ଉଲଗ୍ନ କାରବାରରେ ଯୋଗଦେଇ ପାରିବିନି । କେମିତି ଏଠୁ ଖସିଲେ ରକ୍ଷା ! ଭୌମିକକୁ ନାନା ପ୍ରକାରରେ ବୁଝେଇ ମୋତେ ଟିକିଏ ଘରଆଡ଼ର ପରିସ୍ଥିତି ଦେଖିବା ପାଇଁ ସୁବିଧା ଦେବାକୁ ଅନୁରୋଧ କଲି । ସେ ମୋ କଥାରେ ବିଶ୍ୱାସ କରି ପୁଣି ସେ ଯୁବତୀ ଯୁଗଳଙ୍କ ପାଖକୁ ଗଲା । ମୁଁ ମନେ ମନେ ଚିନ୍ତା କଲି କେମିତି ବାହାରକୁ ଖସିଯିବି । ଏପଟ ସେପଟ ହେଉଥାଏ । ଉପସ୍ଥିତ ପୁରୁଷ-ସ୍ତ୍ରୀ, ଯୁବକ-ଯୁବତୀ ସେମାନଙ୍କ ଆନନ୍ଦ ବିହାରରେ ମସ୍ତ ଥାନ୍ତି । ଯୋଡ଼ି ଯୋଡ଼ି ହୋଇ ପିଆଲକୁ ପିଆଲା ମଦ ପିଉଥାନ୍ତି । ଖଣ୍ଡକୁ ଖଣ୍ଡ ସିଗାରେଟ୍ ଶୋଷୁଥାନ୍ତି । ମୁଁ ଏବେ କରେ କଣ ? ଭୌମିକ ତ ଛାଡ଼ିବାର ଜନ୍ତୁ ନୁହେଁ ।

ଦୈବାତ୍ ଏତିକିବେଳେ ଗୋଟିଏ ବିଚିତ୍ର ଘଟଣା ଘଟିଲା । ଜଣେ ମଧ୍ୟବୟସ୍କ ଅର୍ଦ୍ଦଲୀ ମୋ ନାଁ ବିଚିତ୍ର ଭାବରେ ଉଚ୍ଚାରଣ କରି ମୋତେ ସାଦର ସମ୍ଭାଷଣ କଲେ ଏବଂ କହିଲେ "ଆପଣଙ୍କୁ ଜଣେ ଭାରତୀୟ ମହିଳା ଭିତରେ ଡ଼ାକୁଚନ୍ତି । ଆସନ୍ତୁ ।" ମୁଁ ଯେମିତି ଆକାଶରୁ ପଡ଼ିଲି ଏଠି କିଏ ସଦାଶୟା ମହିଳା ମୋତେ ଡାକିଲା ? ଯାହାହେଉ ସେ ଯାଗାରୁ ଖସି ଯିବାକୁ ଗୋଟାଏ ସୁବିଧା ମିଳିଲା । "ମୋତେ କିଏ ଡ଼ାକୁଚି" ଏତିକି ସଂକ୍ଷେପରେ ଭୌମିକକୁ କହିଦେଇ ସେ ଅର୍ଦ୍ଦଲୀ ମହାଶୟଙ୍କ ପଛେ ପଛେ ଗଲି । ମୋତେ ଡର ମାଡୁଥାଏ, ଏଠି କେହି ଚୋର ଡ଼କାୟତ ନାହାଁନ୍ତି ତ ! ଥିଲେ ବି ସେ ମୋପରି ଲୋକଙ୍କଠାରେ କାହିଁ ସୁବିଧା କରିବେ ? ହଉ ଯଦି କିଛି ବିପଦରେ ପଡ଼େ ଭୌମିକ ତ ଅଛି, ସାଙ୍ଗେ ସାଙ୍ଗେ ପୋଲିସଙ୍କୁ ଖବର ଦେଇଦେବ । ଆଉ କଣ ରାଣୀ ଆମ ବସାର ବନ୍ଧୁମାନଙ୍କ ଭିତରୁ କାହାକୁ ସାଙ୍ଗରେ ଧରି ମୋ ପିଛା କରିଛନ୍ତି ! ତାଙ୍କର ବୃତ୍ତ ସରୁ ନଥିଲା । ସେ ତ ମହାନନ୍ଦରେ ଖାଇପିଇ ସୁଖ ନିଦ୍ରା ଯିବେଣି । ଇମିତି ଭାବୁ ଭାବୁ ଗୋଟିଏ କୋଠରୀ ଦ୍ୱାର ଦେଶରେ ସେ ଅର୍ଦ୍ଦଲୀ ଅଟକି ଗଲା । ମୁଁ ବି ଠିଆହୋଇ ଭିତରକୁ ଚାହିଁଲି । କେତେ ଜଣ ମହିଳା ଓ କେତେ ଜଣ ପୁରୁଷ ଅର୍ଦ୍ଧ ଉଲଗ୍ନ ଅବସ୍ଥାରେ ବସି

ପିଆପିଇ ଚଳେଇଥାନ୍ତି । ଏ ତ ଠକ ବଦ୍‌ମାସ୍‌ଙ୍କ ଘର ଜଣାପଡ଼ୁ ନାହାନ୍ତି । ଏମାନେ ତ ଏହି ଆଡ୍‌ଡାର ରସିକ ରସିକା ନଷ୍ଟସ୍ପୃ ।

ଭିତରକୁ ଟିକିଏ ଭଲକରି ଲକ୍ଷ୍ୟକଲି । କିଏ ଜଣେ ମହିଳା ତା'ଭିତରୁ ମୋତେ ସାଦର ସମ୍ଭାଷଣ କରି ଡାକଲେ । କିଏ ? ଓ ! ମିସେସ୍ ଦେଶାଇ ଯେ । ମୋ ପିଣ୍ଡରେ ପ୍ରାଣ ପଶିଲା । ମୁଁ ଉଚ୍ଛ୍ୱସିତ ଆନନ୍ଦରେ ତାଙ୍କୁ ପ୍ରତି ସମ୍ବର୍ଦ୍ଧନା ଜଣାଇଲି । ମିସେସ୍ ଦେଶାଇ ତାଙ୍କ ଅନାବୃତ ଉପର ଅଙ୍ଗରେ ଓଭର୍ କୋଟଟା ଢାଙ୍କି ମୋ ହାତକୁ ଆସି ଟାଣିନେଲେ ଏବଂ ହସି ହସି କହିଲେ । "ଆପଣ ତେବେ ଶେଷରେ-ନାଇଟ୍ କ୍ଲବକୁ ଅଇଲେ ! କଣ ଏକା ?"

—ନା, ଜଣେ ବନ୍ଧୁ ସାଙ୍ଗରେ ଅଛନ୍ତି ।

—ଆଜ ବାନ୍ଧବୀ ?

—ସେ ବି ଅଛନ୍ତି ।

—ସତେ !

ମିସେସ୍ ଦେଶାଇ ହସି ହସି ବେଦମ୍ ।

—ମିଷ୍ଟର ଦେଶାଇ କାହାନ୍ତି ? ତାଙ୍କୁ ତ କାହିଁ ଦେଖୁନି । ମୁଁ ସାଗ୍ରହରେ ପଚାରିଲି ।

—ମିଷ୍ଟର ଦେଶାଇ ବୋଧହୁଏ ଲଣ୍ଡନରେ ନାହାନ୍ତି । ସେ ଇଟାଲି ଯାଇଥିବେ ।

—ଆଜ ମିଷ୍ଟର ଭୁଟ୍ଟା ?

— ସେ ମୋ ସାଙ୍ଗରେ ଆସିଚନ୍ତି । ତେବେ ଭିତରେ କେଳି-କଉତୁକରେ ମସ୍ତ ଅଛନ୍ତି ।

—କଣ ଆପଣା ସଙ୍ଗିନୀଙ୍କୁ ଏକା ଛାଡ଼ି ଦେଇ......

—ଏଠି ତ ପର ଆପଣା ଭେଦ ନାହିଁ । ଏ ଏକ ମହା ସାମ୍ୟବାଦର ପୀଠ !

—ତା' ଅବଶ୍ୟ ।

—ସେ ସବୁ ବାଜେ କଥା ଛାଡ଼ନ୍ତୁ । ଏଠା କମିତ ଲାଗୁଚ ?

—ଘରି ଭଲ ।

—ଏତ କିଛି ନୁହେଁ । ଆପଣଙ୍କର ପାରସ୍ ଯିବାର କାର୍ଯ୍ୟସୂଚୀ ଅଛିତ ?

—ଅଛି ।

—ସେଠିକି ଗଲେ ଦେଖିବେ ଏ ନାଇଟ୍ କ୍ଲବର ମାହାତ୍ମ୍ୟ । ସେଠି ମନୁଷ୍ୟ, ପଶୁ, ସ୍ଥାବର-ଜଙ୍ଗମ ନିର୍ବିଶେଷରେ କାମ-କ୍ରୀଡ଼ା ଚାଲେ । ଏତକ ସାହସ୍ୟ ବଦନରେ କହି ପାମୀପ୍ନପାନଟିଏ ମୋ ହାତକୁ ବଢ଼େଇ ଦେଲେ ।

—ବେଶୀ କଡ଼ା ନୁହେଁ ତ ?

—ନା, ଆପଣଙ୍କ ପ୍ରିୟ ପାମୀପ୍ନ ବ୍ରାଣ୍ଡି ।

ସେଠାରେ କେତେ ସମୟ କଟାଇ ମିସେସ୍ ଦେଶାଇଙ୍କଠାରୁ ବିଦାୟ ନେଇ ଚାଲିଆସିଲି । ମନରେ ଭୟଥାଏ କାଳେ ଭୌମିକ ମୋତେ ଛାଡ଼ି ପଳେଇ ଯିବ । ଭିତରେ ଚାରିଆଡ଼କୁ ଲକ୍ଷ୍ୟ କରି ଶେଷରେ ତାକୁ ଠାବ କଲି । ସେ ସେତେବେଳକୁ କେଲି କଉତୁକରେ ମାତି ଉଠିଥାଏ । ମୁଁ ବି ଟିକିଏ ମଉଆଲି ହୋଇ ଉଠିଥାଏ, ସେ ବ୍ରାଣ୍ଡି ପାମୀପ୍ନଟା ମୋ ମୁଣ୍ଡକୁ ଧରିନେବା ଯୋଗୁଁ । ମୁଁ ବାହାରକୁ ଚାଲିଆସି ଖଣ୍ଡିଏ ଚଉକିରେ ବସିଗଲି । କାଳେ ବାନ୍ତ ଫାନ୍ତ ହେବ ସେଇ ଭୟରେ ଆଖି ବନ୍ଦକରି ଘୁମେଇବାକୁ ଚେଷ୍ଟା କଲି ।

ମନେ ମନେ ଭାବୁଥାଏ, ଏ ଯେ ଉଦ୍‌ଭଟ କାରବାର ଏସବୁ କ୍ଲବ୍‌ମାନଙ୍କରେ ଚାଲିଚି କଣ ଏହାର ଉଦ୍ଦେଶ୍ୟ ? କଣ ଏଥିରୁ ଆନନ୍ଦ ମିଳୁଚି ? ମିଳୁଥିବ ନିଶ୍ଚୟ, ତା'ନହେଲେ ପୁରୁଷ-ସ୍ତ୍ରୀ, ଯୁବକ-ଯୁବତୀ ଏପରି ଆତ୍ମହରା ହୋଇ ଏଠା କେଳିରେ ମାତି ଉଠିଥାନ୍ତେ କାଇଁକି !

ଖାଲି ନାଇଟ୍ କ୍ଲବ ନୁହେଁ, ଶୁଣିଥାଏ ବିଲାତରେ ଆଉରି ଅନେକ ପ୍ରକାର ଆଡ଼୍ଡ଼ା ଅଛି ଯେଉଁଥିରେ ଏହାଠାରୁ ଆଉରି ବିଭତ୍ସ ଯୌନ

ପ୍ରହସନ ଘଟିଲେ । ସେଥିରୁ ଗୋଟିଏ ହେଲା Witch craft ବା ଡାହାଣୀ ବିଦ୍ୟା ନେଇ । ସେଥିରେ ଯୁବତୀ ଝିଅମାନଙ୍କୁ ପୂରା ଉଲଗ୍ନ କରି ନାନା ଅଶ୍ଳୀଳ, କୁତ୍ସିତ ଉପାୟରେ ସେମାନଙ୍କୁ ତଥାକଥିତ ଡାକିନୀ ବିଦ୍ୟା ଶିକ୍ଷା ଦିଆଯାଏ ଏବଂ ଯେ ସେସବୁ ଅବିଦ୍ୟାରେ ବିଶେଷ ନିପୁଣତା ଲାଭକରେ ତାଙ୍କୁ ଡ଼ାହାଣୀ ରାଣୀ witch queen ଆଖ୍ୟା ଦିଆଯାଏ । ଏହି କ୍ଲବ୍ ବା ସଂଘର ସଦସ୍ୟ ସଦସ୍ୟା ଯୁବକ ଯୁବତୀମାନେ ଦଳବାନ୍ଧି ବଣ ଜଙ୍ଗଲକୁ ଚାଲିଯାନ୍ତି ଏବଂ ସେଠାରେ ଅତି ଉତ୍କଟ କଡ଼ା ନିଶାଦ୍ରବ୍ୟ ସେବାକରି ଗୋଷ୍ଠୀ ପ୍ରୀତିରେ ମାତିଯାନ୍ତି । କେଉଁଠି ଗୋଟିଏ ନବ ଯୁବତୀ ଉପରେ ଏକାଧିକ ପୁରୁଷ ସେମାନଙ୍କ ଧର୍ମ ନାଁରେ ପାଶବିକ ଅତ୍ୟାଚାର କରନ୍ତି । କେଉଁଠି ଗୋଟାଏ ବେଦୀ ( altar ) ତିଆରି କରି ତା'ଉପରେ ଏହି ଡାହାଣୀ ବିଦ୍ୟା ଶିକ୍ଷା କରିବାକୁ ଆସିଥିବା କୌଣସି ସୁନ୍ଦରୀ ଯୁବତୀକୁ ଶୁଆଇ ଦିଅନ୍ତି ଏବଂ ତାହା ଉପରେ ଦଳର ପାଦ୍ରୀ, ପୁରୋହିତ, ନେତା ବୋଲାଉଥିବା ଯୁବକମାନେ ଜଣକ ପରେ ଜଣେ ପାଶବିକ ଅତ୍ୟାଚାର କରନ୍ତି । ଏଥିରେ ସେ ହତଭାଗିନୀ ଯୁବତୀ ଆର୍ତ୍ତନାଦ କରିଉଠେ । ଯନ୍ତ୍ରଣାରେ ଛଟପଟ ହୁଏ । ତଥାପି ତା'ପ୍ରତି କେହି ଦୟା, ଅନୁକମ୍ପା ପ୍ରକାଶ କରନ୍ତିନି; କାରଣ ତାହା ହିଁ ଏହି ଡାଆଣୀ ବିଦ୍ୟା ବା ଅବିଦ୍ୟା ହାସଲ କରିବାର ଆବଶ୍ୟକ ପନ୍ଥା ଓ ଦରକାରୀ କୃଚ୍ଛ୍ର-ସାଧନା ।

ଓ ! କି ଉଦ୍ଭଟ, ଭୟାନକ ଏମାନଙ୍କ ଯୌନ କାରବାର, ଇନ୍ଦ୍ରିୟ ଲାଳସା ! ଏକଥା ସବୁ ଚିନ୍ତା କଲାବେଳେ ହଲାଣ୍ଡର ସେ ଶୀତ ରାତିରେ ମୋ ଦେହ କମ୍ପି ଉଠିଲା । ମୁଁ ସେ ଚୌକିରେ ଆଖି ବନ୍ଦକରି ନିର୍ବାକ୍ ନିସ୍ତେଜ ହୋଇ ପଡ଼ିଥାଏ । କେତେ ସମୟ ପରେ ଭୌମିକ ଆସି ଡାକିଲା ଏବଂ ମୋ ବ୍ୟବହାରରେ ମର୍ମାହତ ହୋଇ ମୋତେ କେତେ କ'ଣ ବକିଗଲା । ହେଲେ ସେସବୁ ମୋ କାନରେ ପଶୁ ନଥାଏ । ମୁଁ ଖାଲି ଭାବୁଥାଏ ଏ ନାଇଟ୍ କ୍ଲବ, ଏ ଡାହାଣୀ-ବିଦ୍ୟା ଆଡ଼୍ଡା କଥା ।

## ମିଡ୍‌ଲଣ୍ଡର ମୋହନ-ମାଧୁରୀ

ଲୋକେ କହନ୍ତି ଯା'ମନ ଯେଉଁଠି ରସେ ତାକୁ ସେ କଅଁଆଫୁଲ ପରି ବାସେ । ସେ କଅଁଆଫୁଲ ପରି ବାସୁ ବା କେତକୀ ଫୁଲପରି ବାସୁ, କିନ୍ତୁ ବାସେ ନିଶ୍ଚୟ । ମୁଁ ପାଠ ପଢ଼ିବାକୁ ବିଲାତ ଯାଇଥିଲି । କିନ୍ତୁ ତାର ଶାଠ ଅର୍ଥାତ୍ ବିଲାତର ସୁସ୍ଥାନ-କୁସ୍ଥାନ, ସୁଦୃଶ୍ୟ-କୁଦୃଶ୍ୟ ଦେଖିବାକୁ ଏତେ ବିକଳ ହୋଇ ଉଠିଥିଲି ଯେ ମୋର ଭୋକ ଶୋଷ ନଥାଏ । ବନ୍ଧୁମାନେ ମୋର ଏତାଦୃଶ କାର୍ଯ୍ୟକଳାପ ଦେଖି ଏକପ୍ରକାର ବିସ୍ମିତ ହୋଇ ପଡ଼ିଥାନ୍ତି । ବିରକ୍ତ ବି । ସେମାନଙ୍କର ପାଠ ପଢ଼ାକୁ ଛାଡ଼ିଦେଲେ ଗୋଟିଏ ଚିନ୍ତା, ସେମାନେ କିପରି ଶୀଘ୍ର ଦେଶକୁ ଫେରିବେ । ସେଥିପାଇଁ ସେମାନେ ବର୍ଷ, ମାସ, ଦିନ ଗଣୁଥାନ୍ତି । ସେମାନଙ୍କର, ଆସିଥାଏ ଘୋର ବିଷାଦ ଓ ଜଡ଼ତା । କିନ୍ତୁ ମୋର ବିଲାତ ଆବିଷ୍କାର କରିବାର ଦୁର୍ବାର ବାସନା । ହେଲେ କଣ ଏ ଖଣ୍ଡିଆ ଖାବଡ଼ା ଦ୍ୱୀପଟାରେ ଏତେ ଆକର୍ଷଣୀୟ, ଏତେ ଆଦରଣୀୟ ଅଛି ଯେ ତାକୁ ଦେଖିବାକୁ ଏତେ ବିକଳ !

ଏ ବିଲାତ ! ବିଖ୍ୟାତ ବିଲାତ ଦେଶ । ସେଥିରେ କଣ ଅଛି ନ ଅଛି ଆଦୌ ବିଚାର୍ଯ୍ୟ ନୁହେଁ ! ଯାହା ଅଛି ତାକୁ ମନ ପୂରେଇ ଆଖି ପୂରେଇ ଦେଖିବାକୁ ହେବ । କିନ୍ତୁ କ'ଣ ଦେଖିବାକୁ ହେବ ? ସବୁ । ସବୁ କିପରି ଦେଖିବି ମୋ ସ୍ୱଳ୍ପ ରହଣି ଭିତରେ ! ବିଲାତର ବିଭିନ୍ନ ସ୍ଥାନର ରଙ୍ଗୀନ୍ ପ୍ରଚାରପତ୍ର ସବୁ ଆଣି ସଜାଡ଼ି ରଖିଥାଏ । ବେଳ ପାଇଲେ ତାକୁ ତନ୍ନ ତନ୍ନ କରି ପଢ଼େ । ମିଡ୍‌ଲଣ୍ଡ, ଇଷ୍ଟ ଆଙ୍ଗ୍‌ଲିଆ, କେଣ୍ଟ୍, ଅକ୍‌ସଫୋର୍ଡ଼, କେମ୍ବ୍ରିଜ୍, ସ୍କଟ୍‌ଲଣ୍ଡ୍, ଆୟାରଲଣ୍ଡ୍, ଓ୍ୱେଲ୍‌ସ୍ ଇତ୍ୟାଦି ତ ଦେଖା ହୋଇନି । କେଉଁଦିନ ଏସବୁ ସମ୍ଭବ ? କୌଣସି ମତେ ସାରିବାକୁ ପଡ଼ିବ ।

ଲାଲ ଜାନ୍ନୀ ନାମକ ଜଣେ ପଞ୍ଜାବୀ ରସେଲ ସ୍କୋୟାରରେ କରିଥାନ୍ତି ଗୋଟିଏ ଚୁଡ଼ିଜଳ-ଡାଲି, ଗହମ-ଅଟା ଆଦି ତେଜରାତିର ଦୋକାନ । ସେଠାରେ କାମ କରୁଥାନ୍ତି ଶ୍ରୀଯୁକ୍ତ ଶ୍ରୀକାନ୍ତ ପଣ୍ଡା । ତାଙ୍କ ମାରଫତ୍‌ରେ ଥାଏ ଖଣ୍ଡିଏ ମଟରଯାନ, ଷ୍ଟେସନ୍ ୱାଗନ୍ । ସେ ସେଥିରେ ବିଭିନ୍ନ ଗ୍ରାହକଙ୍କର କଣା ଜିନିଷ ସେମାନଙ୍କ ଘରେ ପହଞ୍ଚାଇ ଦିଅନ୍ତି । ଦିନର କାମ ଶେଷରେ ଯେତେବେଳେ ସେ ସେହି ଯାନ ଖଣ୍ଡିକ ଧରି ବସାକୁ ଫେରନ୍ତି ଆମ ୨୩୫ ନମ୍ବର କାମ୍‌ଡ଼େନ୍ ରୋଡ଼ରେ ଆଶା ଆକାଂକ୍ଷାର ଗୋଟାଏ ହାୱା-ହିଲ୍ଲୋଳ ଖେଳିଯାଏ । ସିନେମା-ଥିଏଟର-ଦେଖା, ପାର୍କ ମଇଦାନ ବୁଲାଇବାର ଏକ ବିରାଟ ଯୋଜନା ପ୍ରସ୍ତୁତ ହୋଇଯାଏ । ସପ୍ତାହର ଅନ୍ୟ ଦିନମାନଙ୍କରେ ଯେ ଯୁଆଡ଼େ ଯେମିତି ସମ୍ଭବ ଯାଉ । ଦିନଯାକ ଶ୍ରୀକାନ୍ତ ବାବୁ କାର୍ଯ୍ୟବ୍ୟସ୍ତ ଥାନ୍ତି । ତେଣୁ ରାତିରେ ତାଙ୍କ ପକ୍ଷରେ ବହୁ ଆଡ଼େ ଯିବା ସମ୍ଭବ ହୁଏନି । କିନ୍ତୁ ତାଙ୍କୁ ଆମେ ଅନୁରୋଧ କରିଥାଉ ଶନିବାର, ରବିବାର ଓ ଅନ୍ୟାନ୍ୟ ଛୁଟି ଦିନମାନଙ୍କରେ ତାଙ୍କ ଯାନଟିକୁ ଆଣିବାକୁ । ଏହି ଅନୁରୋଧଟା ରକ୍ଷା କରିବା ତାଙ୍କ ପକ୍ଷରେ ଅସମ୍ଭବ ହୁଏନି । ଲଣ୍ଡନରେ ତ ବହୁତ ଗାଡ଼ି । ମାତ୍ର ତାକୁସବୁ ରଖିବାକୁ ସ୍ଥାନର ଘୋର ଅଭାବ । ଦିନ ଭିତରେ ଯିବା ସେସବୁକୁ କେଉଁଠି ଗୁଞ୍ଜି ରଖିହେବ କିନ୍ତୁ ରାତିରେ ବଡ଼ ଅସୁବିଧା । ଅଧିକାଂଶ ଗାଡ଼ିବାଲାଙ୍କର ନିଜର ଗ୍ୟାରେଜ ନଥାଏ । ତେଣୁ ଗାଡ଼ି ଗୁଡ଼ିକର ରାତି ବିଶ୍ରାମ ପାଇଁ, ଛୁଟି ଦିନମାନଙ୍କରେ ଆସ୍ଥାନ ପାଇଁ ଯାଗା ଠିକ କରିବା ଏକ ଦୁରୂହ ବ୍ୟାପାର ହୋଇଥାଏ । ତେଣୁ ରାତିରେ ଓ ଛୁଟି ଦିନରେ ଶ୍ରୀକାନ୍ତ ବାବୁ ତାଙ୍କ ଭ୍ୟାନ୍‌ଟି ଆମ ବସାକୁ ଆଣିବାରେ ଲାଲ ଜାନ୍ନୀ କୌଣସି ଆପତ୍ତି କରନ୍ତି ନାହିଁ । କାହିଁକି ବା କରିବେ ? କାମ୍‌ଡେନ୍ ରୋଡ଼ ଅଞ୍ଚଳରେ ସେତେ ଜନଗହଳି ନାହିଁ । ତେଣୁ ଗାଡ଼ିଟି ସୁବିଧାରେ ପୁଣି ଚାଳକଙ୍କର ଖୋଦ୍ ତତ୍ତ୍ୱାବଧାନରେ ରହିପାରିବ । ଆମ ଦେଶରେ ମଟର ଗାଡ଼ିକୁ ଯେମିତି ଅମୂଲ୍ୟନିଧି ବୋଲି ଭାବନ୍ତି ତାଙ୍କର ସେ ଦେଶରେ ତା' ନାହିଁ । ପ୍ରାୟ ପ୍ରତ୍ୟେକ ମଧ୍ୟବିତ୍ତ ପରିବାରର ଖଣ୍ଡେ ବା ଦୁଇଖଣ୍ଡ ଗାଡ଼ିଥାଏ । ବଡ଼ ଲୋକଙ୍କ ଘରେ ଗାଡ଼ି ମାତ୍ରା ଆହୁରି ଅଧିକ ।

ଦିନେ ରବିବାରଆ ଶ୍ରୀକାନ୍ତ ବାବୁଙ୍କ ସେହି ଭ୍ୟାନରେ ଗଲୁ ବ୍ୟାଟରଶିବ ପାର୍କକୁ । ପାର୍କ କହିଲେ ଆମ ଦେଶରେ ଯାହା ବୁଝୁଁ ସେ ପାର୍କ ସେମିତି ନୁହେଁ । ବାକ୍‌ସ ଗଛ, ଫୁଲ ଗଛ ସେପରି ବିଶେଷ ନାହିଁ । ଏଠାକାର ସବୁ ପାର୍କର ସେଇ ଗୋଟାଏ ପ୍ରକାର ରୂପ । ବିସ୍ତୃତ ଖୋଲା ପଡ଼ିଆ । ଠାଏ ଠାଏ କେନା, କନଆ ବା ଅନ୍ୟ ଋତୁ ଫୁଲ (season flower) ଆଦିର ମଦାଥାଏ । ଏହି ପାର୍କର ବିଶେଷ ଆକର୍ଷଣ ହେଲା । ପ୍ରମୋଦ ଉଦ୍ୟାନ (pleaure garden) ଓ କୌତୁକ ମେଳା (fun fair) । ତା'ପରେ ଲୋକ ! ଏତେ ଭଳ, ଏତେ ପ୍ରକାର ବେଶପୋଷାକ ପିନ୍ଧି କଳା, ଗୋରା, ହଳଦିଆ ପୁରୁଷ-ସ୍ତ୍ରୀ, ଯୁବକ-ଯୁବତୀ, ବାଳକ-ବାଳକା ସେଠାରେ ଜମିଥାନ୍ତି ଯେ ସେଇଟା ବି ଗୋଟାଏ ଆକର୍ଷଣୀୟ ଦୃଶ୍ୟ ହୋଇଥାଏ ।

ଅନେକେ ତାଙ୍କର ଚା, କଫି, ମଦ, ଜଳଖିଆ ସାଙ୍ଗରେ ଧରି ଏଠାକୁ ଆସିଥାନ୍ତି, ତାକୁ ସେବାକରି ନିଜ ନିଜର ଚିତ୍ତବିନୋଦନ କରିବା ପାଇଁ । ଅନ୍ୟମାନେ ସେଠାରେ ଥିବା ରେଷ୍ଟୁରାଁରେ ଖାନାହାର କରୁଥାନ୍ତି । ମୋଟାମୋଟି ସ୍ଥାନଟି ଆମ ଦେଶର ଏକ ମେଳା ପରି ମନେ ହେଉଥାଏ । ଗ୍ରୀଷ୍ମଆଡ଼େ ଗାଡ଼ି ମଟର ଭର୍ତ୍ତି । ଅନେକେ ତାଙ୍କ ସାଙ୍ଗରେ ସ୍ନେହ-ପାଳିତ କୁକୁର, କୁକୁରଙ୍କୁ ଆଣିଥାନ୍ତି । ସେମାନଙ୍କ ସହିତ ନାନା ଖେଳ-କୌତୁକ କରି ବେଶ୍ ଆନନ୍ଦ ଉପଭୋଗ । କରୁଥାନ୍ତି । ଆମେ ସେଠାରେ ପହଞ୍ଚିବା ମାତ୍ରେ ବୁଲାବୁଲି ଆରମ୍ଭ କରିଦେଲୁ । ସେ ପାର୍କରେ ଆମୋଦ-ପ୍ରମୋଦ ପାଇଁ ଏକ ବିଚିତ୍ର ବ୍ୟବସ୍ଥା କରାଯାଇଥାଏ । ବିଦ୍ୟୁତ୍-ଚାଳିତ ଯୋଡ଼ା ଆସନ କେତେଟା ଥାଏ । ସେଥିରେ ବସି ଉଚା ନୀଚା ଜାଗାଦେଇ ଗତି କରିବ । କେଉଁଠି ପାଣି ଉପର ଦେଇ, କେଉଁଠି ଗୁମ୍ଫା ଭିତର ଦେଇ, କେଉଁଠି ମାଟିତଳେ, କେଉଁଠି ପାହାଡ଼ିଆ ଜାଗା ଉପର ଦେଇ ଖୁବ ଜୋରରେ ସେଇଟା ଚାଲେ । ତାର ସାଥିରେ କେହି ଚାଳକ ନଥାନ୍ତି । ଆମୋଦ-ପ୍ରମୋଦକାମୀ ଦଳ ମହାସୁଲ ଦେଇ ସେଥିରେ ବସିଗଲା ପରେ ତାର ମାର୍ଫତ୍‌ଦାର ଇଲେକ୍‌ଟ୍ରି ବୋତାମ ଟିପି ଦିଏ ଏବଂ ସେ ଆସନ ଗୁଡ଼ିକ ଗତି କରିବାକୁ ଆରମ୍ଭ କରିଦିଅନ୍ତି । ତେଣିକି ଆଉ ତାକୁ ଅଟକାଇ ହେବନି । ସେ ଚାଲେ ଖୁବ ଦ୍ରୁତ ବେଗରେ ।

ଏହି ସ୍ୱୟଂଚାଳିତ ବିଦ୍ୟୁତ୍ ଯାନ ସମ୍ବନ୍ଧରେ କିଏ କେତେ ଗପୁଥାନ୍ତି । କିଏ କହୁଥାଏ ସେ ଯେତେବେଳେ ଅନ୍ଧାରିଆ ଗୁହା ଭିତରେ ଯିବନି ତା' ଭିତରେ ଥିବା ଡାହାଣୀ ଚିରଗୁଣୀ ଗୁଡ଼ାକ ଚେଁ ଚେଁ କରି ଉଠିବେ । ଭୂତପ୍ରେତଗୁଡ଼ାକ ହା-ହା କରି ଉଠିବେ । ଡାହାଣୀ ଚିରଗୁଣୀ, ଭୂତପ୍ରେତ ଏ ଲଣ୍ଡନ ସହରକୁ ଆସିବେ କେଉଁଠୁ । ମୁଁ ତ ସେମାନଙ୍କ ଅସ୍ତିତ୍ୱ ସ୍ୱୀକାର କରେନା । ଯଦି ସେପରି ବିଚିତ୍ର ଜୀବ ଥିବେ ସେ କିଣ ଏ ବାଟରସ୍‌ବି ପାର୍କକୁ ଆସିବେ, ଏ ଲଣ୍ଡନ ସହରରେ ଆସର ଖୋଲିବେ ! ଏଠି ଯାହା କହନ୍ତି ମାଛି ପଡ଼ିଲେ ନବଖଣ୍ଡ । ଏଠା ଜନ କୋଳାହଳ, ଗାଡ଼ି ମଟରର ଧାଁ ଧପଡ଼ ଦେଖି ଲୁଆଡ଼େ ପ୍ରାଣ ବିକଳରେ ପଳେଇବେ ।

ସେ ଯାହା ହେଉ ଦଳବାନ୍ଧି ସେ ବିଚିତ୍ର ଯାନରେ ଯାଇ ବସିଲୁ । ମୋତେ ଡର ଡର ଲାଗୁଥାଏ । ଅନ୍ୟ କେତେକେ ବି ମୋ ପରି ଡରୁଥାନ୍ତି । ଆଉ କେତେକ ହସଖୁସିରେ ପାଟିତୁଣ୍ଡ କରୁଥାନ୍ତି । ସେ ଯାନ ଯେତେବେଳେ ପାଣି-ପାହାଡ଼, ଗୁହା-ଗହ୍ୱର ଦେଇ ଗତି କରୁଥାଏ ମୋର ଛାତି ଦାଉଁ ଦାଉଁ ହେଉଉଠୁଥାଏ । କାଳେ କିଛି ଆପଦ-ବିପଦ ଘଟିବ । କିନ୍ତୁ କ'ଣ ବା ଘଟିବ ! ସାଧାରଣ କଥା । କେତେକ ଯାନ୍ତ୍ରିକ ବ୍ୟବସ୍ଥା ଦ୍ୱାରା ବିଭିନ୍ନ କରାମତି ଦେଖଉଚନ୍ତି ପଇସା ଆଦାୟ କରିବାକୁ ।

କିନ୍ତୁ ଲୋକେ ପଇସା ଦେଇ ଏମିତି ଭୟଭୀତ ହୋଇ ଏ ବିଦ୍ୟୁତ୍-ଚାଳିତ ଯାନ୍ତ୍ରିକ ଯାନରେ ବସୁଚନ୍ତି କାହିଁକି ? ଏମାନେ ଲୋକଙ୍କୁ କିଛି ନିର୍ମଳ ଆମୋଦ ପ୍ରମୋଦ ଯୋଗାଇବାର ବ୍ୟବସ୍ଥା ନ କରି ଏ ଡାହାଣୀ ଚିରଗୁଣୀ, ଭୂତ-ପ୍ରେତ କାରବାର କରୁଚନ୍ତି କାହିଁକି ? ଲୋକେ ନିଶ୍ଚୟ ଯାହାକୁ ଉପଭୋଗ କରୁଚନ୍ତି । ଏ ଦ୍ରୁତ-ଚାଳିତ ବିଦ୍ୟୁତ୍ ଯାନ ଯେତେବେଳେ ବିଭିନ୍ନ ବିପଦ-ସଙ୍କୁଳ ପରିସ୍ଥିତି ଦେଇ ଗତି କରୁଚି ତାହା ଲୋକମାନଙ୍କ ମନରେ ଗଭୀର ଭୟାକୁଳ, ସଂଘର୍ଷମୟ ପରିସ୍ଥିତି ସୃଷ୍ଟି କରୁଛି ଯହିଁରେ କି ସେମାନଙ୍କର ସମସ୍ତ ମାଂସପେଶୀ, ସ୍ନାୟୁ-ଶିରା, ମନ-ଦେହ ଯଥେଷ୍ଟ ଆଲୋଡ଼ିତ ହେଉଛି । ଏହାଦ୍ୱାରା ସେମାନେ ଅନେକ ସ୍ନାୟବିକ ଓ ମାନସିକ ସୁସ୍ଥତା ଓ ଶାନ୍ତି ପାଉଛନ୍ତି । ଏହି ଯୋଗେ ଆମେ

ବିଷାଦଭରା କାହାଣୀ ଓ ବିପଦସଙ୍କୁଳ ଅଭିଯାନକୁ ଭଲ ପାନ୍ତି । ତେଣୁ ଜୀବନତତ୍ତ୍ୱବିଶାରଦମାନେ କହନ୍ତି ମନୁଷ୍ୟର ସୁଖମୟ ଜୀବନ ଧାରଣ ପାଇଁ ହସ-କାନ୍ଦ ଉଭୟ ଲୋଡ଼ା ।

ସେ ଦିନ ବାଟରସି ପାର୍କରେ ବେଶ୍ ବୁଲାବୁଲି, ଆମୋଦ-ପ୍ରମୋଦ କରାଗଲା । ଠିକ୍ ହେଲା ସେଠାରୁ ଫେରି କୌଣସି ଦୋକାନରେ ସାମାନ୍ୟ ଜଳପାନ କରି ଥିଏଟରେ ଦେଖିବାକୁ ଯିବୁ । ଅନେକେ କହୁଥିଲେ ସିନେମା ଯିବାକୁ । ମୋର କିନ୍ତୁ ସିନେମା ଦେଖିବାକୁ ସେତେ ବ୍ୟାକୁଳତା ନ ଥାଏ । କାରଣ ଆମ ଦେଶରେ ଇଂଲିଶ୍ ସିନେମା ଦେଖିବାର ଅସୁବିଧା ନାହିଁ । ଏଥି ମଧ୍ୟରେ ବହୁବାର ବି ଇଂଲିଶ୍ ସିନେମା ଦେଖିଥାଏ । ଯେତେବେଳେ ଟିକିଏ ମନୋରଞ୍ଜନ, ଚିତ୍ତ-ବିନୋଦନ କରିବାର ଇଚ୍ଛା ହୁଏ ଚାଲିଯାଉ ସିନେମା ଦେଖିବାକୁ । ସେ ଦେଶରେ ସିନେମାଟା ସେତେ ଲୋକପ୍ରିୟ ନୁହେଁ । ବହୁ ପ୍ରକାର ସିନେମା ବିଭିନ୍ନ ସିନେମା ଘରେ ଚାଲିଥାଏ । ଶିଶୁମାନଙ୍କ ପାଇଁ ବ୍ୟଙ୍ଗ କରେଇ ଛବି (Cartoon films), ସୂଚନା ଛବି (Documentary films), ଆମେରିକା ଓ ଅନ୍ୟାନ୍ୟ ୟୁରୋପୀୟ ଦେଶର ସିନେମା ଦେଖାହୁଏ । କିନ୍ତୁ ତାକୁ ଦେଖିବାକୁ ଯଥେଷ୍ଟ ଲୋକ ଜୁଟନ୍ତିନ ।

ସେ ଦେଶରେ ସିନେମାଟା ବଡ଼ ବିଚିତ୍ର ପ୍ରକାରେ ଚାଲେ । ଗୋଟିଏ ଟିକେଟ୍ କାଲେ ଦୁଇଟି ଛବି ଦେଖିହୁଏ । ତାଙ୍କର ପ୍ରତ୍ୟେକ ଚିତ୍ର ପ୍ରାୟ ଦେଢ଼ ଘଣ୍ଟିଆ । ତେଣୁ ତିନି ଘଣ୍ଟା ଭିତରେ ଦୁଇଟି ଛବି ଦେଖିହୁଏ । ସେ ଛବି ଗୁଡ଼ିକ ଗୋଟାକ ପରେ ଗୋଟାଏ କ୍ରମାଗତ ଭାବରେ ବୁଲେଇ ବୁଲେଇ ଦେଖାଇ ଦିଆଯାଏ । ସିନେମା ଘରେ ଠିକ୍ ସମୟରେ ପହଞ୍ଚି ନ ପାରିଲେ ବିଶେଷ କିଛି ଅସୁବିଧା ହୁଏନି । ଯଦି ଡେରିରେ ଯାଇଥିବ ଏବଂ ଛବିଟା ମୂଳରୁ ଦେଖି ନ ଥିବ ତେବେ ସେ ପୁଣି ଯେତେବେଳେ ଆଉ ଥରେ ଆରମ୍ଭ ହେବ ସେତେବେଳେ ନ ଦେଖିଥିବା ଅଂଶଟା ଦେଖି ପାରିବ । ଚାହିଁଲେ ପୂରା ଚିତ୍ରଟା ଆଉ ଥରେ ଦେଖି ପାରିବ । ସେଥିପାଇଁ କିଛି ବାଧବାଛନ୍ଦ ନାହିଁ । ଏପରି କରାଯାଏ, ସିନେମାକୁ ଲୋକପ୍ରିୟ କରିବାକୁ କିନ୍ତୁ ଏତେ ଚେଷ୍ଟା ସତ୍ତ୍ୱେ ସିନେମାରେ ଦର୍ଶକଙ୍କର ଅଭାବ ପଡ଼େ ।

ମାନ ଥିଏଟରଟା ଖୁବ୍ ଲୋକପ୍ରିୟ । ଭଦ୍ର ପରିବାରର ଲୋକେ, ଶିକ୍ଷିତ ସମ୍ପ୍ରଦାୟ, ବୁଦ୍ଧିଜୀବୀ ପ୍ରଭୃତି ଥିଏଟରକୁ ଖୁବ୍ ଭଲ ପାଆନ୍ତି । ଥିଏଟର ଘରଛଡ଼ା ଚା-କଫି ଦୋକାନ, ହୋଟେଲ, ରେଷ୍ଟୁରାଁ ଆଦିରେ ଥିଏଟର ଟିକେଟ୍ ମିଳେ । କିନ୍ତୁ ବହୁ ଦିନ ଆଗରୁ ଟିକେଟ୍ ନ କଲେ ହତାଶ ହେବାକୁ ପଡ଼େ । ଥିଏଟରପ୍ରିୟତା ବିଲାତବାସୀଙ୍କ ସାଂସ୍କୃତିକ ଜୀବନର ବିଶେଷ ଅଙ୍ଗ, ଏପରିକି ରକ୍ତଗତ କହିଲେ ଚଳେ । ଯେଉଁମାନେ ରଙ୍ଗମଞ୍ଚରେ ନାଟକ ଅଭିନୟ ଦେଖିବାକୁ ଯା'ନ୍ତି ସେମାନେ କୌଣସି ଆନନ୍ଦ ଉତ୍ସବରେ ଯୋଗ ଦେଲାପରି ପ୍ରେକ୍ଷାଳୟରେ ଖୁବ୍ ମନପୂର୍ତ୍ତିରେ ବସି ନିସ୍ତାର ସହିତ ସବୁଟା ଦେଖନ୍ତି, ଉପଭୋଗ କରନ୍ତି । ଅଭିନେତା, ଅଭିନେତ୍ରୀ, ନିର୍ଦ୍ଦେଶକ ଓ ପ୍ରଯୋଜକମାନଙ୍କର ବି ଏକନିଷ୍ଠ ସାଧନା ଅଭିନୟକୁ ସର୍ବାଙ୍ଗ ସୁନ୍ଦର କରିବା ପାଇଁ । ପ୍ରେକ୍ଷାଳୟରେ ବହୁତ କଟକଣା, ଅବଶ୍ୟ ସ୍ୱେଚ୍ଛାକୃତ । ଅଭିନୟ ଚାଲିଥିଲାବେଳେ କେହି ଏଣୁ ତେଣୁ ଗପସପ କରନ୍ତିନି କି ବିଶ୍ରାମ ସମୟ ନ ହେଲେ ହଠାତ୍ ଉଠିପଡ଼ି କେହି କୁଆଡ଼େ ଯା'ନ୍ତିନି । ଆମର ଏଠି ଯେମିତି ଅଭିନୟ ଚାଲିଥିଲାବେଳେ ପ୍ରେକ୍ଷାଳୟରେ ଯା'ଆସ ଚାଲିଥାଏ ଓ ତେଣେ ଅଭିନେତା, ଅଭିନେତ୍ରୀ ବଚନିକା କହୁଥିଲାବେଳେ ଏଣେ ଦର୍ଶକଦର୍ଶିକାଦଳ ନାଟକ ସମ୍ବନ୍ଧରେ ବା ଅନ୍ୟକିଛି ନେଇ ଆଳାପ ଆଲୋଚନା ଚଳାଇଥାନ୍ତି ସେଠାରେ ସେସବୁ ବିରଳ । ରଙ୍ଗମଞ୍ଚର ଅଭିନେତାମାନେ ପୋଖତ ଅଭିନୟ ପାଇଁ କିପରି ଗଭୀର ସାଧନା, ପ୍ରାଣପାତ ଚେଷ୍ଟା କରନ୍ତି ମୁଁ ତା' ଗୋଟିଏ ଘଟଣାରୁ ବେଶ୍ ଉପଲବ୍ଧି କରିଥିଲି ।

ମୁଁ ଥରେ ଅଲ୍ଡୱିଚ୍‌ରେ ଥିବା ଡ୍ରୁରି ଲେନ୍ (Drury lane) ଥିଏଟରକୁ ଯାଇଥିଲି । ସେଠାରେ "ମୋର ରୂପସୀ ମାନସୀ" (My fair lady) ନାଟକର ଅଭିନୟ ଚାଲିଥାଏ । ଘୂର୍ଣ୍ଣାୟମାନ ରଙ୍ଗମଞ୍ଚ ( Revolving Stage )ରେ ନାଟକଟି ପରିବେଷଣ କରାଯାଉଥିଲା । ସେଠାକାର ନାଟକର ଅଭିନୟ, ମଞ୍ଚକୌଶଳ ଓ ଆଲୋକସମ୍ପାତ ପ୍ରଣାଳୀ ପ୍ରଭୃତି ମତେ ବେଶ୍ ଭଲ ଲାଗିଲା । ସେମାନଙ୍କ ମଞ୍ଚ ପରିଚାଳନା କୌଶଳ ଦେଖିବାକୁ ଘାରି ଇଚ୍ଛା ହେଲା । ତେଣୁ

ଥିଏଟରର କର୍ମକର୍ତ୍ତାଙ୍କ ସଙ୍ଗେ ଆଲୋଚନା କରି ଠିକ୍ କଲି ଅନ୍ୟ ଏକଦିନ ଆସି ସେ ଥିଏଟର ଭିତରଆଡ଼େ ବୁଲି ଦେଖିବି । ନିର୍ଦ୍ଦିଷ୍ଟ ଦିନ ଓ ବେଳାରେ ମୁଁ ପହଞ୍ଚି ଯିବାରୁ ତାଙ୍କର ଜଣେ ସହକାରୀ ନିର୍ଦ୍ଦେଶକ ମୋତେ ସାଙ୍ଗରେ ନେଇ ଥିଏଟରର ବିଭିନ୍ନ ବିଭାଗ ବୁଲେଇ ଦେଖାଇଲେ । ଆମ ସାଙ୍ଗରେ କେତେକ ଅଭିନେତା, ଅଭିନେତ୍ରୀ ଓ ସହକାରୀ କର୍ମଚାରୀ ଥା'ନ୍ତି । ମୁଁ ବିଭିନ୍ନ ପ୍ରଶ୍ନ ପଚାରି ସବୁକଥା ବୁଝୁଥାଏ । ସେମାନେ ବି ମୋ ଉତ୍ସାହ ଓ ଆଗ୍ରହ ଦେଖି ସାନନ୍ଦରେ ମୋତେ ବୁଝାଇବାରେ ଲାଗିଥାନ୍ତି । ବେଶ୍ ହସ କୌତୁକ ଲାଗିଥାଏ ।

ମୁଁ ମଝିରେ ଲକ୍ଷ୍ୟକଲି ତାଙ୍କ ଭିତରେ ଜଣେ ବିଚିତ୍ର ଲୋକ ଅଛନ୍ତି । ବୟସ ୩୦ ଖଣ୍ଡେ ହେବ, ଗୋରାଚମ, ନାଲିମୁହଁ; କିନ୍ତୁ କଥା କହୁଥାନ୍ତି ଠିକ୍ ନିଗ୍ରୋଙ୍କ ପରି । ମୁଣ୍ଡ ବାଳ ବି ଆଫ୍ରିକୀୟ ଲୋକଙ୍କ ପରି ଗ୍ଲେଟ ଗ୍ଲେଟ ଓ କୁଞ୍ଚୁକୁଞ୍ଚୁ । ମୁଁ ବଡ଼ ମାନସିକ ଦ୍ୱନ୍ଦରେ ପଡ଼ିଥାଏ ଏବଂ ସେ କେଉଁ ଦେଶର ଲୋକ ଠିକ୍ କରିପାରୁ ନଥାଏ । ତେବେ ଏ କ'ଣ ଜଣେ ଲୋହିତ ଭାରତୀୟ ? ତା'ହେଲେ ସେ ଏମିତି କଥାବାର୍ତ୍ତା କରିବେ କାହିଁକି ? ବିଭିନ୍ନ ଆଲୋଚନା ମଧ୍ୟରେ ମୁଁ ତାଙ୍କ ଆଡ଼କୁ ବାରମ୍ବାର ଚାହୁଁଥାଏ । ମୋର ଏହି ଥତମତ ଭାବ, ମୁହଁର ପ୍ରଶ୍ନବାଚୀ ଢଙ୍ଗ ଦେଖି ସେ ସହକାରୀ ନିର୍ଦ୍ଦେଶକ ବୋଧହୁଏ ମୋର ମନର ଅବସ୍ଥା ବୁଝିପାରିଲେ । ତେଣୁ ମୋର ସଂଶୟ ମୋଚନ କରିବାକୁ ଯାଇ ହସି ହସି କହିଲେ, "ସେ ଜଣେ ଅଭିନେତା !"

—ବୁଝିଲି । କିନ୍ତୁ

—କିନ୍ତୁ ଏପରି କେଶବିନ୍ୟାସ, କଥାବାର୍ତ୍ତାର ଢଙ୍ଗ କାହିଁକି ?

—ହଁ, ମୁଁ କିଛି ବୁଝିପାରୁନି ।

—ସେ ଗୋଟିଏ ନିଗ୍ରୋ ଭୂମିକାରେ ଅଭିନୟ କରିବା ଉଦ୍ୟମରେ ଅଛନ୍ତି ।

—ଓ ସତେ ! କିନ୍ତୁ ତାଙ୍କ ଅଭିନୟ ତ ଆରମ୍ଭ ହୋଇଗଲା ପରି ମନେ ହେଉଛି । ଖାଲି କଳାବୋଳା ହେଇପଡ଼ିଲେ ...

ସମସ୍ତେ ମୋ କଥାରେ ହସିଉଠିଲେ । ସେ ସହକାରୀ ନିର୍ଦ୍ଦେଶକ ମୋତେ ଆହୁରି ବୁଝାଇବାକୁ ଯାଇ କହିଲେ ସେ ଜଣେ ନିଗ୍ରୋଙ୍କ ଅଭିନେତା । ନିଗ୍ରୋ ଭୂମିକାରେ ଭଲ ଭାବରେ ଅଭିନୟ କରିବାକୁ ସେ କେତେମାସ ଆଫ୍ରିକାରେ ରହି ସେଠାକାର ଲୋକଙ୍କ ଚାଲିଚଳନ, ଆଚାର ବ୍ୟବହାର ଶିଖି ଆସିଚନ୍ତି । ଏଠି ମଧ୍ୟ ସେ ସମ୍ବନ୍ଧରେ ତାଙ୍କର ଚେଷ୍ଟା ଚାଲିଚି ।

ମୁଁ ଏସବୁ ଶୁଣି ଏକପ୍ରକାର ଆଶ୍ଚର୍ଯ୍ୟାନ୍ୱିତ ହୋଇଗଲି । ଗୋଟିଏ ଚରିତ୍ରରେ ଅଭିନୟ କରିବାକୁ ଏତେ ଆୟୋଜନ ! ଆମ ଦେଶରେ ତ ଖାଲି ଟିକିଏ ବଚକନା ଶିଖିଦେଇ, ରଙ୍ଗ ବୋଳି ହୋଇ ରଙ୍ଗମଞ୍ଚରେ ଠିଆ ହେଇଯାନ୍ତି । ଯାହା ବଙ୍ଗଳାରେ କହନ୍ତି "ଷ୍ଟେଜକେ ମେରେ ଦେବ" ସେହି ମାତରେ ସ୍ୱଳ୍ପ ଚେଷ୍ଟା ବା ବିନା ଚେଷ୍ଟାରେ ଆମ ଅଭିନେତା, ଅଭିନେତ୍ରୀମାନେ ନାଟକ ପରିବେଷଣ କରିବାକୁ ଚେଷ୍ଟା କରନ୍ତି । ଏଥିରେ କଣ ଅଭିନୟ ହୃଦୟସ୍ପର୍ଶୀ ହୋଇପାରେ !

ତଥାପି ଯେମିତି ମୁଁ କଥାଟା ପୂରା ବିଶ୍ୱାସ କରି ପାରୁନଥାଏ । ପୁଣି ପଚାରିଲି, "ସେ ମହାଶୟ କେତେକାଳ ବ୍ୟବଧାନରେ ଏପରି ଗୋଟିଏ ଗୋଟିଏ ଭୂମିକାରେ ଅଭିନୟ କରନ୍ତି ?"

— ସେଇଟା ନାଟକ ଉପରେ ନିର୍ଭର କରେ । ଗୋଟିଏ ଗୋଟିଏ ନାଟକ ବହୁକାଳ ଧରି ଚାଲେ । ସେ ନାଟକର ଅଭିନୟ ବନ୍ଦ ହେବାର ବର୍ଷେ ଦୁଇବର୍ଷ ଭିତରେ ଆଉ ଗୋଟିଏ ନାଟକ ଧରନ୍ତି ।

— ତେବେ ଏ ଫାଙ୍କା ସମୟତକ ଚଳନ୍ତି କିପରି ?

— ପୂର୍ବ ଅଭିନୟରୁ ଯାହା ପାଇଥାନ୍ତି ସେଥିରେ ଚଳିଯାନ୍ତି । ପୁଣି ନୂଆ ନାଟକରେ ଅଭିନୟ କରିବାର ଚୁକ୍ତି ହୋଇଗଲା ପରେ ଦରକାର ହେଲେ ଅଗ୍ରୀମ ଆଣନ୍ତି ।

ଅଗ୍ରୀମ ! ମୁଁ ଚମକି ଉଠିଲି । ଏଥିରେ ୟାଙ୍କ ନାଟକର ଅଭିନୟ ସୁନ୍ଦର ନ ହେବ କାହିଁକି ! ଆମ ଦେଶର କଳାକାରମାନେ

ତ ବାହାରେ କାମ କରି ବି ତାଙ୍କ ଦରମା ନିୟମିତ ରୂପେ ପାଇପାରୁ ନାହାନ୍ତି । ସେଥିରେ ସେମାନେ କ'ଣ ଅଭିନୟ କରିବେ !

ବାହାରେ ରହଣି ସମୟରେ ବହୁବାର ଥିଏଟର ଦେଖିବାକୁ ଯାଇଛି । ଦେଖିଲି ସେଠାକାର ରଙ୍ଗମଞ୍ଚର ଅବସ୍ଥା ଆମ ଦେଶ ତୁଳନାରେ ବେଶ୍ ଭଲ । ତେବେ ଆମ ଦେଶରେ ଯେମିତି ପେଶାଦାରୀ ରଙ୍ଗମଞ୍ଚରେ ଶସ୍ତା-ସୁନ୍ଦର ନାଟକ ପରିବେଷଣ କରାଯାଏ ସର୍ବ-ସାଧାରଣଙ୍କ ମନୋରଞ୍ଜନ କରିବାକୁ ସେମାନଙ୍କ ଦେଶରେ ମୋଟାମୋଟି ସେହିଆ । ତେବେ ସେମାନଙ୍କର ଅଭିନୟ ଭଙ୍ଗୀ, ମଞ୍ଚ-କୌଶଳ ଇତ୍ୟାଦି ଖୁବ୍ ଉନ୍ନତ । ବିଭିନ୍ନ ଲୋକଙ୍କ ରୁଚିକୁ ଗ୍ରହି ବିଭିନ୍ନ ପ୍ରକାର ନାଟକ, ଯଥା ଗୀତିନାଟ୍ୟ, ଯାତ୍ରା, ଐତିହାସିକ ନାଟକ, ସାମାଜିକ ନାଟକ ଆଦି ପରିବେଷଣ କରାଯାଏ । ଓଲଡ୍ ଭିକ୍ ( Old Vic ) ରେ ସେକ୍ସପିଅରଙ୍କ ନାଟକ ବହୁତ ଅଭିନୀତ ହୁଏ । ଏହିପରି ବିଭିନ୍ନ ପ୍ରକାର ନାଟକ ଅଭିନୟରେ ବିଭିନ୍ନ ରଙ୍ଗମଞ୍ଚ ପାରଦର୍ଶିତା ଅର୍ଜନ କରନ୍ତି ।

ଲଣ୍ଡନରେ ବହୁତ ରଙ୍ଗମଞ୍ଚ ଅଛି । ଅଲ୍ଡଓ୍ୱିଚ୍, ଫୋନିକସ୍ ସାଭିଲ, ସାଭୟ, ଷ୍ଟ୍ରାଣ୍ଡ୍, ହ୍ୱାଇଟହଲ୍, ଆଡ଼ଲଫି, ଥିଏଟର ରୟାଲ, ରୟାଲଟି, ରୟାଲ କୋର୍ଟ, କ୍ୱିନସ୍, ପ୍ରିନସେସ୍, ପ୍ରିନ୍ସ ଅଫ୍ ଓ୍ୱେଲସ୍, ପିକାଡ଼ିଲି, ଓଲଡ୍ ଭିକ୍, ଆମ୍ବାସଡ଼ର, ମରମେଡ଼୍, ହେ ମାର୍କେଟ୍, ଗ୍ଲୋବ୍, ଡିଉକ୍ ଅଫ୍ ୟର୍କ, ଡରେସ୍ ଇତ୍ୟାଦି । ଏ ସବୁ ରଙ୍ଗମଞ୍ଚକୁ ଯାଇ ବିଭିନ୍ନ ନାଟକ ଦେଖିବାର ମୋର ପ୍ରବଳ ଇଚ୍ଛା । ହେଲେ ଏଥିପାଇଁ ଧନ କାହିଁ, ବେଳ କାହିଁ, ଟିକେଟ୍ ମିଳୁଛି କେଉଁଠି ?

ମୁଁ ବୁଝିପାରିଲିନି ଲଣ୍ଡନବାସୀ ଏତେ ଥିଏଟର ପ୍ରିୟ ହେଲେ କିମିତି ? ଏମାନେ ତ ବ୍ୟବସାୟୀ ଜାତି । ବିଭିନ୍ନ ବ୍ୟବସାୟ ବାଣିଜ୍ୟ କରି ପେଟ ପୋଷନ୍ତି । ଏମାନଙ୍କର ଏତେ କଳାପ୍ରେମ ଆସିଲା କୁଆଡ଼ୁ ? ହଁ, ହୋଇପାରେ ଚାରିଆଡ଼େ ସାମ୍ରାଜ୍ୟ ବିସ୍ତାର କରି, ବହୁ ଦେଶକୁ ଶୋଷଣ କରି ଯେଉଁ ଅର୍ଥ ଉପାର୍ଜନ କରୁଥିଲେ ସେଥିରୁ କିଞ୍ଚିତ୍ ଚିତ୍ତବିନୋଦନ କରିବା ପାଇଁ ଖର୍ଚ୍ଚ କରୁଥିଲେ । ସିନେମା ତ ଏବେ ହେଲା । ପ୍ରଥମ ଏଲିଜାବେଥ୍‌ଙ୍କ ରାଜତ୍ୱ କାଳରୁ ଲଣ୍ଡନରୁ ରଙ୍ଗମଞ୍ଚ-ନାଟକର ବହୁଳ

ପ୍ରସାର ଘଟିଲା । କିଡ୍, ଗ୍ରୀନ୍, ସେକ୍ସପିଅର, ଜନସନ ଆଦି ବିଖ୍ୟାତ ନାଟ୍ୟକାରମାନେ ଏଥିରେ ସହାୟକ ହେଲେ । କିନ୍ତୁ ଅସଲ କଥା ହେଲା ଧନ । ଧନ ଥିଲେ ଯେଉଁଥିକି ମନ କରିବ ତା କରିପାରିବ । ଆମ ଓଡ଼ିଆରେ ଯାହା କହନ୍ତି, ଆଲୋ ମଉସା, କଉଡ଼ି ପଇସା । ହଁ, ସବୁ ପଇସାର କରାମତି ।

ବିଲାତ ଲୋକେ ଯଦି ଆମପରି ଦରିଦ୍ର ହୋଇଥାନ୍ତେ ତାହା-ହେଲେ ସେମାନେ ଏତେ ସୁଖ-ବିଳାସରେ ଦିନ କାଟିପାରନ୍ତେ କିପରି ! ଏତେ କଳାପ୍ରେମ, ଥିଏଟର-ରସିକତା ଦେଖାନ୍ତେ କୁଆଡ଼ୁ ! ମୋ ଜିଦ୍ ଯୋଗେ ସେ ଦିନ ଥିଏଟର ଦେଖିବାର ନିଷ୍ପତ୍ତି ହୋଇଥିଲା । ଆଗରୁ ଟିକେଟ୍ କିଣା ଯାଇଥିଲା । ବାଟରଶ୍‌ବ ପାର୍କରେ ବୁଲାବୁଲି କରି ବାହାରେ କେଉଁଠି ଜଳପାନ କରି ଥିଏଟର ଦେଖିବାକୁ ଗଲୁ । ଲଣ୍ଡନ ରହଣି କାଳରେ ମୁଁ ବହୁ ଥିଏଟର ଦେଖିଛି କିନ୍ତୁ ମନରେ ଗୋଟାଏ ଅବଶୋଷ ରହିଗଲା ଯେ ସବୁ ଥିଏଟର ଦେଖି ପାରିଲିନି ।

ଲଣ୍ଡନ ବାହାରକୁ ଗଲେ ବି ମୁଁ ଖୋଜି ବସେ କେଉଁଠି ଥିଏଟର ଅଛି କି ନାହିଁ । ଖାଲି ଥିଏଟର ନୁହେଁ, ଯେଉଁଠି ଯାହା ଦର୍ଶନୀୟ ଆକର୍ଷଣୀୟ ଥାଏ ତାକୁ ଉପଭୋଗ କରିବାକୁ ମୁଁ ବିକଳ ହୋଇ ଉଠେ । ବିଲାତର ସହରତଳି ଓ ଗ୍ରାମ୍ୟ ଅଞ୍ଚଳରେ ବୁଲିଯିବାକୁ ମୋତେ ବେଶ୍ ଭଲ ଲାଗେ । ରାତିରେ ସେସବୁଆଡ଼େ ଗଲେ ମୋର ଆନନ୍ଦର ସୀମା ନାହିଁ । ବାଟଯାକ ଧାଡ଼ି ଧାଡ଼ି ମଟର ଚାଲୁଥିବ । ଯିବା ଓ ଆସିବା ବାଟକୁ ଅଲଗା କରୁଥିବା କାଚ ଧାଡ଼ି, ଯାହାକୁ ବିରାଡ଼ି ଆଖି ( Cat's eye ) ବୋଲି କହନ୍ତି ସେ ଆଲୁଅରେ ଝଲସି ଉଠୁଥିବ ।

ବିଲାତର ଗ୍ରାମାଞ୍ଚଳ ରାସ୍ତା ଗୁଡ଼ିକ ବେଶ୍ ସୁନ୍ଦର । ଆମ ଦେଶପରି ଆବେଡ଼ା-ଖାବେଡ଼ା, ଧୂଳି-ଧୂସରିତ, ପଙ୍କକାଦୁଅଭରା ନୁହେଁ । ଆମ ସହରମାନଙ୍କର ରାସ୍ତା ତ ଅନେକ କ୍ଷେତ୍ରରେ ଏପରି କଦର୍ଯ୍ୟ ଯେ କହିଲେ ନ ସରେ । ସାଇକେଲ ବା ରିକ୍ସାରେ ଗଲେ ଏକ ସଙ୍ଗରେ ଗାଡ଼ିବସା ଓ ଘୋଡ଼ାଚଢ଼ାର ସୁଖ ମିଳେ । ପଦଲରେ ଗଲେ ପଡ଼ିଉଠି, ଝୁଣ୍ଟି କୁଦି ଗତି କରିବାକୁ ହୁଏ ।

ସେଠାର ମଫସଲ ରାସ୍ତାକଡ଼ପାକ ରଙ୍ଗୁଫୁଲ ଫୁଟିଥାଏ । ତାକୁ କିଏ ଲଗାଇଥାଏ କି ସେ ମନକୁ ଉଠିଥାଏ କେଜାଣି ! ସେ ବେଶ୍ ସୁନ୍ଦର ଦେଖାଯାଏ । ଗାଁମାନଙ୍କ ଭିତରକୁ ଗଲେ ସେଗୁଡ଼ିକ ଗ୍ରୋଟ ଗ୍ରୋଟ ସହରପରି ମନେହୁଏ । ସହରର ସମସ୍ତ ସୁଖ-ସୁବିଧା ଗାଁମାନଙ୍କରେ ମିଳେ । ପାଣି-ପାଇପ୍, ବିଦ୍ୟୁତ୍ ଶକ୍ତି, ବିଜୁଳିବତୀ, ଫୋନ୍, ଟେଲିଭିଜନ ଆଦି ଆଧୁନିକ ସଭ୍ୟତାର ଯାବତୀୟ ଉପାଦାନ ଥାଏ । ଗାଁର ଆଖପାଖରେ କୌଣସି ନା କୌଣସି କାରଖାନା ଅଧିକାଂଶ କ୍ଷେତ୍ରରେ ଦେଖାଯାଏ । କିନ୍ତୁ ପ୍ରାୟ ସବୁ ଯାଗାରେ ଗାଁକୁ ଲାଗି କୃଷି କ୍ଷେତ୍ର ଓ ଗୋ ଖାଦ୍ୟ ପାଇଁ କରାଯାଇଥିବା ଘାସଜମି ଥାଏ । ଫସଲ ଓ ଘାସ ଚାଷ ବେଶ୍ ବୈଜ୍ଞାନିକ ରୀତିରେ କରାଯାଏ । କ୍ଷେତ୍ରଗୁଡ଼ିକ ଖୁବ୍ ବଡ଼ ବଡ଼ ଓ ସେଥିରେ ଚାଷ କରାଯାଇଥିବା ଫସଲ ବା ଘାସ ଚମତ୍କାର ଭାବରେ ବଳିଷ୍ଠ ଓ ସଘନ ଦେଖାଯାଉଥାନ୍ତି । ସେ ସବୁ ତୁଳନାରେ ଆମର ଅଙ୍କାବଙ୍କା ଗ୍ରୋଟ ଗ୍ରୋଟ କିଆରି ଓ ତହିଁରେ ହେଉଥିବା ଫସଲର କ୍ଷୀଣ-ଖର୍ବ ରୂପ ଯେପରି ଆମ ଚିରାଚରିତ ଦୈନ୍ୟର ପ୍ରତୀକ ।

ସେ ଦେଶର କୃଷକମାନେ ଫାର୍ମ ପ୍ରଣାଳୀରେ ଚାଷ କରନ୍ତି । ଚାଷ ଜମି ଭିତରେ ଘରଥାଏ ଯେଉଁଥିରେ କି ସେମାନେ ସାଧାରଣତଃ ବସବାସ କରନ୍ତି । ସେହି ଫାର୍ମରେ ଗାଈଗୋରୁ, ଘୁଷୁରି ଆଦି ଗୃହପାଳିତ ପଶୁଥାନ୍ତି ଏବଂ ସେମାନଙ୍କୁ ଖୁଆଇ ପିଆଇ ବେଶ୍ ହୃଷ୍ଟପୁଷ୍ଟ କରନ୍ତି । ପୁରୁଷ ଓ ସ୍ତ୍ରୀ ମାନେ ଲମ୍ବା ବୁଟ୍ ଯୋତା ପିନ୍ଧି ସେଥିରେ କାମ କରନ୍ତି । ମେସିନ୍ ଲଗାଇ ଗାଈ ଦୁହନ୍ତି । ମୋଟାମୋଟି ସେ ଦେଶର କୃଷି ଫାର୍ମ ଦେଖିବାକୁ ବେଶ୍ ମଜା ଲାଗେ । ଅନେକ ଧନିକ କୃଷୀ ବାହାରେ ରହି ସେମାନଙ୍କ କର୍ମଚାରୀଙ୍କ ସାହାଯ୍ୟରେ କୃଷିକର୍ମ କରାନ୍ତି । କିନ୍ତୁ ସେମାନେ ମଝିରେ ମଝିରେ ତାଙ୍କ ଫାର୍ମ ଘରେ ଆସି ରହନ୍ତି ।

ଆମେ ଥରେ ଆମର ଜଣେ ବନ୍ଧୁଙ୍କର ଫାର୍ମ ଘରେ ବଣଭୋଜି କରିବାକୁ ଯାଇଥିଲୁ । ସେଇଟା ଲଣ୍ଡନ ସହରର ଅଳ୍ପ ଦୂରରେ ଅବସ୍ଥିତ । ଭିକ୍ଟୋରିଆ ଷ୍ଟେସନରୁ ଟ୍ରେନରେ ଯାଇ ଫାର୍ମ ହାଉସ୍ ପାଖ ଷ୍ଟେସନ୍‌ରେ ଗାଡ଼ିରୁ ଓହ୍ଲାଇ ଚାଲି ଚାଲି ସେଠାକୁ ଗଲୁ । ସାଙ୍ଗରେ

ଆମର ଯୋଷେଇ ସରଞ୍ଜାମ ନେଇଥାଉ । ଠିକ୍ ହୋଇଥାଏ ଆମ ଭାରତୀୟ ଖାନା ତିଆରି ହେବ । ପଲାଉ, କୁକୁଡ଼ା ମାଂସ ତରକାରୀ, ବିଲାତି ବାଇଗଣ ଖଟା । ଏ ବିଲାତି ବାଇଗଣ ଖଟା କଥା ଭାବି ମୋତେ ହସ ମାଡ଼ୁଥାଏ । ବିଲାତରେ ବିଲାତି ବାଇଗଣ ଖଟା ! ବିଲାତି ଶବ୍ଦଟା ବାରମ୍ବାର କହିବା ଫଳରେ ଆମ ବିଲାତି ବନ୍ଧୁ ବିସ୍ମୟରେ ଅସ୍ଥିର ହୋଇ ଉଠୁଥାନ୍ତି । ତାଙ୍କୁ ବୁଝେଇ ଦେଲୁ ଯେ ଆମ ଦେଶରେ ଆମେ ସବୁ ବିଦେଶୀ ଜିନିଷକୁ ବିଲାତି କହୁ । ବିଲାତି ଆଳୁ, ବିଲାତି ବାଇଗଣ (potatoto,matc) ଆଦି ଶୁଣିବାରୁ ବୋଧହୁଏ ବିଲାତ ବାଟ ଦେଇ ଭାରତକୁ ଆସିଥିଲା । ତେଣୁ ତାର ବିଲାତି ଆଖ୍ୟା ସାର୍ଥକ ହୋଇଛି । ଏ ବିଶ୍ଳେଷଣ ଶୁଣି ଆମ ବିଲାତି ବନ୍ଧୁ ଦମକାଏ ପ୍ରାଣଭରି ହସ ହସି ସୂକ୍ଷ୍ମ ମନ୍ତବ୍ୟଟି ଦେଲେ ଯେ ଭାରତର ଏପରିକି ପ୍ରତ୍ୟେକ ପ୍ରାଚ୍ୟ ଦେଶର ସମସ୍ତ କଥା ରହସ୍ୟାବୃତ । ଏଥିରେ ଆମକୁ ପ୍ରଶଂସା କରାଗଲା କି ନିନ୍ଦା କରାଗଲା କେଜାଣି କିନ୍ତୁ ଏ ପ୍ରକାର ହସ ପରିହାସ ଆମର ସେ ବିଶେଷ ଭୋଜ ଅଭିଯାନକୁ ବେଶ୍ ଉପଭୋଗ୍ୟ କରିଥିଲା ।

ମୁଁ ତ ବାଟଯାକ ଗଛ-ଲଟା, ବଣବୁଦା, ରାସ୍ତାଘାଟ ଘର-ଦ୍ୱାର ସବୁକୁ ତନ୍ନ ତନ୍ନ କରି ଲକ୍ଷ୍ୟ କରୁଥାଏ ସେଥିରୁ କିଛି ସୌନ୍ଦର୍ଯ୍ୟ, ବୈଚିତ୍ର୍ୟର ସୂଚକ ପାଇବାକୁ । ତା'ପରେ ପୁଣି ଫାର୍ମ ହାଉସରେ ଭାରତୀୟ ଖାନା ରନ୍ଧାଯିବ । ଯେମିତି ପଲାଉ ଓ କୁକୁଡ଼ା ମାଂସ ତରକାରୀ ଭାରତୀୟ ଖାନାର ନମୁନା ! ଯାହାହେଉ ଫାର୍ମ ହାଉସ୍‌ରେ ପହଞ୍ଚି ଯୋଷେଇବାସ ଆରମ୍ଭ କରିଦେଲୁ । ଆମ ବିଲାତୀ ବନ୍ଧୁଙ୍କର ସେ ଫାର୍ମ ଘରଟି ଖାଲିଥାଏ । ସେ ତାଙ୍କ ପରିବାର ସହିତ ଲଣ୍ଡନରେ ରହନ୍ତି । କିନ୍ତୁ ମଝିରେ ମଝିରେ ପୁରା ପରିବାର ବା ସେମାନଙ୍କ ଭିତରୁ କେହି କେହି ସେଠାକୁ ଆସନ୍ତି ଚିତ୍ତ-ବିନୋଦନ ପାଇଁ ଓ କୃଷିକାର୍ଯ୍ୟ ତଦାରଖ କରିବାକୁ । ସେ ଦିନ ଥାଏ ରବିବାର । ଆମ ବନ୍ଧୁ ଆମକୁ ସେଠାକୁ ନେଇଥାନ୍ତି ତାଙ୍କ ଫାର୍ମ ଦେଖାଇବାକୁ ଏବଂ ତାଙ୍କୁ କୃତଜ୍ଞତା ଜଣାଇବାକୁ ଆମେ ଆମ ଭାରତୀୟ ଖାନାରେ ତାଙ୍କୁ ଆପ୍ୟାୟିତ କରିବାର ନିଷ୍ପତ୍ତି ନେଇଥାଉ । ଆମ ସାହେବୀ ବନ୍ଧୁଙ୍କର ତ ଗରମ ମସଲା ଦିଆ

ତରକାରି ଖାଇବାରେ ଘରି ଲାଗେ । ତେଣୁ ଏହି ଯାବାନା ଆମ ସମସ୍ତଙ୍କ ପକ୍ଷରେ ବେଶ୍ ଉପଭୋଗ୍ୟ ହୋଇଥାଏ ।

ଫାର୍ମରେ ଶ୍ରମିକମାନେ କାମ କରୁଥାନ୍ତି । ଗାଈ ଦୁହାଁ ଚାଲିଥାଏ । ଘୁଷୁରି ପଲ ଏଣେ ତେଣେ ବୁଲୁଥାନ୍ତି । ଦେଖିଲି ସେ ଶ୍ରମିକଙ୍କ ଭିତରେ କେତେ ଜଣ ଯୁବତୀ ବୁଟ୍ ଯୋତା ପିନ୍ଧି କାମ କରୁଚନ୍ତି । ସେ ଶ୍ରମିକ ମାନଙ୍କର ବେଶଭୂଷା ଆମ ଦେଶର କୃଷି ଶ୍ରମିକମାନଙ୍କଠାରୁ ବେଶ୍ ଉନ୍ନତ ଧରଣର । କେବଳ ସେତିକି ନୁହେଁ, ଘରଆଡ଼ର ରାସ୍ତାଘାଟ ବଣ ବଗିଚା ଓ ଅନ୍ୟାନ୍ୟ ପରିବେଶ ବେଶ୍ ରମଣୀୟ । ବାଃ, କି ଚମତ୍କାର ! ଏଇଟା ଏମାନଙ୍କର ଗ୍ରାମ୍ୟ ଅଞ୍ଚଳ । ଆମ ଦେଶର ପୁରପଲ୍ଲୀ କେବେ ଏପରି ରୂପ ନେବ କେଜାଣି ! ମୁଁ ମନେ ମନେ ଭାବୁଥାଏ ।

ବାହାରର ଲୋକେ ବିଭିନ୍ନ ଦପ୍ତରରେ, ଶିଳ୍ପ ସଂସ୍ଥା ଓ କୃଷି କ୍ଷେତ୍ରରେ କାମ କରନ୍ତି । ବେକାରି ସେପରି ବେଶୀ ନାହିଁ । ବେକାର ହେଲେ ବେକାର ଭତ୍ତା ମିଳେ । ସେଠା ଲୋକଙ୍କର ସୁଖସ୍ୱଚ୍ଛଳ ଭାବ, ନାଗରିକ କର୍ମ-ତତ୍ପରତା ବେଶ୍ ଚମତ୍କାର ଲାଗେ । ଆମେ ପରାଧୀନ ଥିଲାବେଳେ ଆମେ ଆମର ସବୁ ଅଭାବ ଅସୁବିଧା ପାଇଁ ବିଦେଶୀ ଶାସକଙ୍କୁ ଦୋଷ ଦେଉଥିଲୁ । କିନ୍ତୁ ସ୍ୱାଧୀନତା ପାଇବା ପରେ ବହୁ ବର୍ଷ ଅତିବାହିତ ହୋଇଥିଲେ ବି ଏବଂ ବହୁ ପଞ୍ଚବାର୍ଷିକ ଯୋଜନା ଚାଲୁ ରଖି ବି ଆମେ ଯେଉଁ ତିମିରେ ସେଇ ତିମିରେ । ଆମେ ବାହାର ଲୋକଙ୍କୁ ଶୋଷକ କହିପାରୁ, ସାମ୍ରାଜ୍ୟବାଦୀ କହିପାରୁ; କିନ୍ତୁ ଏ କଥା ସତ ଯେ ବେପାର ବଣିଜ କରି ହେଉ ବା ଅଧୀନସ୍ଥ ଦେଶମାନଙ୍କର ଧନରତ୍ନ ଲୁଣ୍ଠନ କରି ହେଉ ସାହେବମାନେ ସେମାନଙ୍କ ଦେଶର ଆର୍ଥିକ ଅବସ୍ଥା ବେଶ୍ ସ୍ୱଚ୍ଛଳ କରିପାରିଚନ୍ତି ।

ଥରେ ବ୍ରିଟିଶ୍ ମ୍ୟୁଜିୟମରେ ବୁଲୁ ବୁଲୁ ଦେଖିଲି ବହୁ ପ୍ରାଚୀନ ସୁନାରୁପା ଗହଣା ବହୁ ଦେଶରୁ ଅଣାଯାଇ ସେଠାରେ ରଖାଯାଇଛି । ମ୍ୟୁଜିୟମ୍‌ର ଜନୈକ କର୍ମକର୍ତ୍ତାଙ୍କ ସହିତ ଆଲୋଚନା କରି ବୁଝିଲି, ଯେ ଗହଣାଗାଣ୍ଠିର ଦାମ୍ ବର୍ତ୍ତମାନ ଏତେ ହେବ ଯେ ସେଥିରେ ଗୋଟିଏ ଗୋଟିଏ ମହାଯୁଦ୍ଧ ସେମାନେ ସ୍ୱଚ୍ଛନ୍ଦରେ ଚଳାଇ ପାରିବେ । ବଡ଼

ଆଶ୍ଚର୍ଯ୍ୟ କଥା ! କେବଳ କେତେକ ଗହଣା ଗଣ୍ଠିରୁ ଗୋଟାଏ ମହାଯୁଦ୍ଧର ଖର୍ଚ୍ଚ ଉଠିଯିବ ! ଆଉ ତ ଏ ମ୍ୟୁଜିୟମ୍‌ରେ ବହୁ ମୂଲ୍ୟବାନ୍, ବିରଳ ଜିନିଷ ଅଛି । ଲଣ୍ଡନରେ ତ ପୁଣି ଅସଂଖ୍ୟ ମ୍ୟୁଜିୟମ୍ । ଏମାନେ ତେବେ କେତେ ଧନଶାଳୀ ନୁହଁନ୍ତି !

ଥରେ ଇଷ୍ଟର ଛୁଟିରେ ଯାଇଥାଏ ଅଲଟ୍ରିଂହାମ୍‌କୁ । ସେଠାରେ ଲାଇନୋ କମ୍ପାନୀର ମେସିନ୍ କାରଖାନା ଅଛି । ଉଦ୍ଦେଶ୍ୟଥାଏ, ସେଠାର କଳକାରଖାନା ଦେଖିବା ସଙ୍ଗେ ସଙ୍ଗେ ତାର ଆଖପାଖ ଅଞ୍ଚଳରେ ଟିକିଏ ବୁଲିବି । ଆମ ଶିକ୍ଷାନୁଷ୍ଠାନ ତ ବନ୍ଦଥାଏ । ତେଣୁ ଚିନ୍ତା କରିବା'ର କିଛି ନ ଥିଲା । କମ୍ପାନୀର କର୍ମକର୍ତ୍ତାମାନେ ଖୁବ୍ ଆଦର ସହକାରେ ଆମକୁ ଆମନ୍ତ୍ରଣ କରିଥାନ୍ତି । ତାଙ୍କର ବି ଜଣେ ପ୍ରତିନିଧି ଆମ ସାଙ୍ଗରେ ଥାନ୍ତି ଆମ ଭଲମନ୍ଦ, ସୁବିଧା ଅସୁବିଧା କଥା ବୁଝିବାକୁ । ବିଲାତରେ ମାଟି ତଳେ ସୁଡ଼ଙ୍ଗ ଟ୍ରେନ୍‌ରେ ଅନେକ ଥର ଯା'ଆସ କରିଥାଏ । କିନ୍ତୁ ବାହାରକୁ ମାଟି ଉପର ଟ୍ରେନ୍‌ରେ ଦି' ଥର ଖଣ୍ଡେ ଯାଇଛି । ଅଲଟ୍ରିଂହାମ୍‌କୁ ସେହି ମାଟି ଉପର ଟ୍ରେନ୍‌ରେ ଯିବାର କଥା । ତେଣୁ ଭାରି ଖୁସି ଲାଗୁଥାଏ । ଆମ ଦେଶରେ କେତେ ଟ୍ରେନରେ ଯାଇଛି ! ବଡ଼ ବିରକ୍ତିକର ବୋଧହୁଏ ଏହି ଟ୍ରେନ ଯାତ୍ରା । କିନ୍ତୁ ବିଲାତ ଟ୍ରେନ୍ ଅଲଗା ।

ପ୍ରଥମେ କେଉଁ ଷ୍ଟେସନରେ ସୁଡ଼ଙ୍ଗ ଟ୍ରେନ୍‌ରେ ବସିଲୁ । ସେଥିରେ ଲଣ୍ଡନ ସହରରୁ ବାହାରିଗଲୁ । ତା' ପରେ ମାଟି ଉପରେ ଯାଉଥିବା ଲାଇନ୍‌ରେ ଟ୍ରେନ୍ ଯିବ, ସେଥିରେ ଅଲଟ୍ରିଂହାମ୍ ଯାତ୍ରା କରିବୁ । ମାଟି ତଳ ସୁଡ଼ଙ୍ଗ ଟ୍ରେନ୍‌ରେ ଗଲାବେଳେ ମୋ ମନରେ ବେଳେବେଳେ ବଡ଼ ବିଚିତ୍ର ଭାବନା ଜାଗେ । ଲଣ୍ଡନ ପରି ଜନାକୀର୍ଣ୍ଣ ସହରରେ ଯାତାୟତର ସୁବିଧା ପାଇଁ ଏ ସୁଡ଼ଙ୍ଗ ଟ୍ରେନ୍ ଏକ ଚମତ୍କାର ବ୍ୟବସ୍ଥା । କିନ୍ତୁ କେଡ଼େ ବିପଦ ପୂର୍ଣ୍ଣ ! ଯଦି ଭୂମିକମ୍ପ ହେବ କି ମାଟି ଅତଡ଼ା ଖସିବ ତେବେ ତ ସର୍ବନାଶ ! କି ଉଦ୍ଭଟ ପରିକଳ୍ପନା ! ଲଣ୍ଡନରେ ତ କେବେ ଭୂମିକମ୍ପ ହୁଏନି । ଆଉ ମାଟି ଅତଡ଼ା କାହିଁ ଖସିବ ? ଇଞ୍ଜିନିୟର୍ ମାନେ ସେ ସୁଡ଼ଙ୍ଗ ରାସ୍ତା ଖୁବ୍ ସାବଧାନତା ସହକାରେ କରିଚନ୍ତି । ଆମ ଦେଶରେ ବି ପାହାଡ଼ିଆ ଅଞ୍ଚଳରେ ସୁଡ଼ଙ୍ଗ ଭିତର ଦେଇ ଟ୍ରେନ୍ ଯାଏ । ଏବେ

କଲିକତା ସହରରେ ମାଟି ତଳେ ସୁଡ଼ଙ୍ଗ ତିଆରି ହେଉଛି ଟ୍ରେନ୍ ଯିବା ଆସିବା ପାଇଁ । ସେଠାରେ ତ ଅଟାଳିକା ଖସିବାକୁ କେହି ଭୟ କରୁନି । ଏଠି କାହିଁ କିଏ ସେ ଭୟ କରିବ !

ସୁଡଙ୍ଗ ଭିତରେ ଦେଇ ଟ୍ରେନ୍ ଚାଲିଥାଏ । ମୁଁ ମନେ ମନେ ଭାବୁଥାଏ ମାଟି ଉପରକୁ କମିତି ଟ୍ରେନ୍‌ଟା ବାହାରିବ ! କମିତି ବାହାରିବ କଣ ! କେତେ ସମୟ ପରେ ଦେଖିଲି ବେଳକୁ ମାଟି ଉପରେ ଟ୍ରେନ୍ ଚାଲିଚି । ତେବେ କମିତି ବାହାରିଲି ! ମୋର ମନେ ପଡ଼ୁଥାଏ ପିଲାଦିନେ ପଢ଼ିଥିବା ପାତାଳ ପୁରର କାହାଣୀ । ମାଟି ଦେହରେ ବଡ଼ ଗୁହା ପରି ଗାତ । ସେହି ଗାତ ଦେଇ ପାତାଳପୁରକୁ ରାସ୍ତା । ତାର ଦ୍ୱାର ମୁହଁରେ ଜଗି ବସିଥିବ ବୁଢ଼ୀ ଅସୁରୁଣୀ କି କେଉଁ ରାକ୍ଷସ । ତାକୁ ଟପି ବୀରମାନେ ପାତାଳ ପୁରରେ ପ୍ରବେଶ କରିବେ । ପାତାଳ ପୁରର ଦୃଶ୍ୟ କି ଚମତ୍କାର ! କେଉଁଠି ନାଗକନ୍ୟାମାନେ ଆନନ୍ଦରେ ବିହାର କରୁଥାନ୍ତି, କେଉଁଠି ନାଗବୀରମାନେ ଖାଲି ଫଁ ଫଁ ହୋଇ ଯା'ଆସ କରୁଥାନ୍ତି । ସବୁ ମନଗଢ଼ା କଥା । କିନ୍ତୁ କେତେ ମଜା ଲାଗୁଥିଲି ସେସବୁ ପିଲାଦିନେ ! ଏବେ କିନ୍ତୁ ସବୁଟା ସହଜ ସରଳ ମନେ ହେଉଛି । ସେ ବୈଚିତ୍ର୍ୟ ନାହିଁ । ସେ ଉନ୍ମାଦନା ନାହିଁ । କେତେ ସହଜରେ ମାଟିତଳୁ ଟ୍ରେନ୍‌ଟା ଉପରକୁ ଉଠି ଆସିଲି । କିଛି ଜଣାଗଲାନି !

ଅଲଟ୍ରିଂହାମ୍ ଯାତ୍ରାଟା ବେଶ୍ ଆନନ୍ଦଦାୟକ ହେଲା । ଆମେ ଥାଉ ତିନିଜଣ ଭାରତୀୟ ଗ୍ରୁପ୍ । ଆଉ ଜଣେ ପାକିସ୍ତାନୀ । ଲଣ୍ଡନ ଛାଡ଼ିବା ଆଗରୁ କୌଣସି ରେଷ୍ଟୁରାଁରେ ପ୍ରାତଃଭୋଜନ ସାରି ଯାତ୍ରା ଆରମ୍ଭ କରିଥାଉ । ଆମ ଦେଶପରି ଛଣାଛଣି ଯଥା ବରା, ପକୁଡ଼ି, ସିଙ୍ଗଡ଼ା, ନମକି ପୁରୀ, ଲୁଚି, ମିଠେଇ, ରସଗୋଲା ଆଦି ସେଠାରେ ଚଳେନି । ସେଠାରେ ଜଳଖିଆ ବୋଇଲେ ସେହି ରୁଟି ମାଖନ, କେକ୍ ବିସ୍କୁଟ୍, ଅଣ୍ଡା ହାମ୍ ଇତ୍ୟାଦି । ଯାହାହେଉ ପ୍ରାତଃ ଭୋଜନରେ ସେଇ ଜଳଖିଆରୁ କିଛି ଖାଇ ଚାହା ପିଇଥାଉ । ବିଲାତିର ଚାହାଟା ସେତେ ରୁଚିକର ନୁହେଁ । କ୍ଷୀରର ତ ଅଭାବ ନାହିଁ କିନ୍ତୁ ଚାହାରେ ବେଶୀ କ୍ଷୀର ଦିଅନ୍ତିନି । ଚାହା ଗୁଣ୍ଡ ବା ପତ୍ର ବେଶୀ ମାତ୍ରାରେ ନ ଦେବାରୁ ସେ ଗୋଳିଆ ପାଣି ପରି ଦିଶେ । ସେ ଆମ ପାଟିକୁ ସୁଆଦ ଲାଗେନି । ତଥାପି ଅଣ୍ଡା ଦେଶ । ସେ

ଗୋଲଆ ଗରମ ପାଣିରୁ ଯେତେବେଳେ ଇଚ୍ଛା ହୁଏ ମୁନ୍ଦାଏ ମୁନ୍ଦାଏ ପିଉ । ସେଦିନ ଗୋଟାଏ ଭ୍ରମଣ ଅଭିଯାନରେ ବାହାରିଥିଲୁ ତେଣୁ ମନ ଖୁସିରେ ଦି' ପିଆଲା ଲେଖାଏଁ ସେଥିରୁ ଉଦରସ୍ଥ କରିଥାଉ ।

ରେଲ ଗାଡ଼ି ଅଲଟିଂହାମ ଅଭିମୁଖରେ ଧାଇଁଥାଏ । ସେଠାକାର ଟ୍ରେନ୍‌ରେ ଦୁଇଟି ଶ୍ରେଣୀ, ପ୍ରଥମ ଶ୍ରେଣୀ ଓ ଦ୍ୱିତୀୟ ଶ୍ରେଣୀ । କିନ୍ତୁ ଉଭୟେ ପ୍ରାୟ ଏକ ପ୍ରକାରର । ସେମାନଙ୍କ ଭିତରେ ବିଶେଷ ପାର୍ଥକ୍ୟ ନାହିଁ । ଆମେ ଦ୍ୱିତୀୟ ଶ୍ରେଣୀରେ ଯାଉଥାଉ । ସେଥିର ବ୍ୟବସ୍ଥା ବେଶ୍ ଚମତ୍କାର । ଗଦି ଦିଆ ଚଉକି । ତା' ଉପରେ ଗରମ କନା ଦିଆଯାଇ ଥାଏ । ସେ ଗାଡ଼ିରେ ଲାଗିଥାଏ ଭୋଜନ ଶାଳା (Dining car) । ପ୍ରତି କଖରିରେ ଟେବୁଲ ଚଉକି ପଡ଼ିଥାଏ । ସେଠାରେ ଜଳପାନ, ଚା, କଫି ମିଳେ । ପୁଣି ପ୍ରାତଃ ଭୋଜନ, ମଧ୍ୟାହ୍ନ ଭୋଜନ, ରାତ୍ରି ଭୋଜନ ଆଦି ସୁବିଧାରେ କରି ହୁଏ । ଆମେ ଆଗରୁ ସେହି ଡାଇନିଂ କାର୍‌ରୁ ଚା, କଫି, କେକ୍, ବିସ୍‌କୁଟ୍ ଆଦି ଆଣି ଖାଇ ଥାଉ । ବେଳ ହେଲାରୁ ଆମ ମଧ୍ୟାହ୍ନ ଭୋଜନ ସେଠାରେ ସାରିଲୁ ।

ଷ୍ଟେସନକୁ କମାଣ୍ଡର ଗାଡ଼ି ଆସିଥାଏ । ଆମେ ସେଥିରେ ବସି ମହାମାନ୍ୟ ଅତିଥି ପରି ମହା ଖୁସିରେ ଗଲୁ । କମାଣ୍ଡର ଅତିଥି ଭବନଟି ବେଶ୍ ଚମତ୍କାର । ଖାଦ୍ୟପେୟର ଅପର୍ଯ୍ୟାପ୍ତ ବ୍ୟବସ୍ଥା । ଫଳ, ଅଣ୍ଡା, ମାଂସ, କ୍ଷୀର, କେକ୍, ବିସ୍‌କୁଟ୍ ଯାହା ଚାହିଁବ ତାହା ମିଳିବ । ପାଉଁରୁଟି ମଧ୍ୟ ଥାଏ । ହେଲେ ତାକୁ ପଚାରୁଚି କିଏ ? ବିଶେଷରେ ବିଭିନ୍ନ ପ୍ରକାରର ପାନୀୟ ଯଥା ବିଅର, ବ୍ରାଣ୍ଡି, ହ୍ୱିସ୍କି, ରମ୍ ଓ ୱାଇନ୍ ସବୁ ସଜା ହୋଇ ପାନୀୟ ଘରେ ରଖାଯାଇ ଥାଏ । ଯେ ଯାହା ଚାହିଁବ ଯେତେବେଳେ ଇଚ୍ଛା ପିଇବ । ଆମ ତଦାରଖରେ ନିଯୁକ୍ତ ଥାନ୍ତି ଜଣେ ଯୁବତୀ ପରିଚାରିକା, ବେଶ୍ ସ୍ୱାସ୍ଥ୍ୟବତୀ ଓ ସୁନ୍ଦରୀ । ସେ ସହାସ୍ୟ ବଦନରେ ଘୁରାଆଡେ ବୁଲୁଥାନ୍ତି । ଥରକୁ ଥର ଆମକୁ ପଚାରୁଥାନ୍ତି କଣ ଖାଇବେ, କଣ ପିଇବେ ? ପିଇବା ଉପରେ ଆମ ବନ୍ଧୁମାନେ ବେଶୀ ଜୋର ଦେଇଥାନ୍ତି । ତେଣୁ ତାଙ୍କ ମନକଥା ଜାଣି ସେ ଚତୁରୀ ଯୁବତୀ ସେମାନଙ୍କୁ ଥରକୁ ଥର ପାନୀୟ ଘରକୁ ଡାକନେଇ ତାଙ୍କ ଫରମାସି ମୁତାବକ ତାଙ୍କୁ ପରଷି ଦେଉଥାନ୍ତି ବିଭିନ୍ନ କିସମର ମଦ ।

ବାସ୍ତବିକ୍ ମୋର ବନ୍ଧୁମାନେ ସେଠାର ଆତିଥ୍ୟକୁ ବେଶ୍ ଉପଭୋଗ କରୁଥାନ୍ତି, ପିଉଥାନ୍ତି ମଦ ଅପର୍ଯ୍ୟାପ୍ତ । ଖାଉଥାନ୍ତି ବି ଯଥେଷ୍ଟ । ମୋର ପିଇବାକୁ ଡର । କିନ୍ତୁ ଆମ ଡାକ୍ତରାଣୀ କହିଥାନ୍ତି ବିଲାତରେ ବ୍ରାଣ୍ଡିଟା ମଦ ନୁହେଁ ଔଷଧ । ତେଣୁ ମୁଁ ସେହି ଔଷଧରୁ ମୁନ୍ଦାଏ ମୁନ୍ଦାଏ ପିଉଥାଏ । ମାଗଣାରେ ଯେତେବେଳେ ଏତେ ଦରକାରୀ ଜିନିଷଟା ମିଳୁଥିଲା ଛାଡ଼ନ୍ତି କାହିଁକି ! ତେବେ ବେଶୀ ମାତ୍ରାରେ ପିଇବାକୁ ଡରୁଥାଏ, କାଳେ କିଛି ଅଘଟଣ ଘଟିବ, ସେହି ଭୟରେ । କିନ୍ତୁ ଖାଇବାଟା ଖୁବ୍ ଜୋରରେ ଚଳେଇଥାଏ ।

ଅଲଟିଂହାମ୍‌ରେ ଆମର ବିଶେଷ କିଛି କାମ ନଥାଏ । ଖାଲି ଲିଇନୋଟାଇପ୍ କମ୍ପାନିର କାରଖାନା ଦେଖିବାର କଥା । ସେଥିରେ ପ୍ରତିଦିନ ପ୍ରାୟ ଦୁଇଘଣ୍ଟା ଖର୍ଚ୍ଚ ଯାଏ । ବାକି ସମୟ ବୁଲାବୁଲି, ଖିଆପିଆ ଗପସପରେ କଟେ । ଅଲଟିଂହାମ୍‌ରେ ବିଶେଷ କିଛି ଦେଖିବାର ନଥାଏ । ତଥାପି ମୁଁ କମ୍ପାନିର ଜଣେ କର୍ମଚାରୀଙ୍କ ସାଙ୍ଗରେ ଧରି ଏଣେ ତେଣେ ବୁଲେ । କାରଖାନାମାନଙ୍କର କୋଠା, ସେମାନଙ୍କ କର୍ମଚାରୀଙ୍କ ରହିବା ଘର, ଦୋକାନ, ବଜାର ସବୁକୁ ତନ୍ନ ତନ୍ନ କରି ଖୋଜେ, କେଉଁଠି କଣ ବିଶେଷତ୍ୱ ଅଛି ଦେଖିବାକୁ ।

ଆଖପାଖ ଅଞ୍ଚଳର ଦୃଶ୍ୟ ଖୁବ୍ ମନୋହର । ଅନ୍ତତଃ ମୋତେ ସେମିତି ଲାଗିଲା । ଅଲଟିଂହାମ୍ ସହରଟି ବିଲାତର ମଧ୍ୟାଞ୍ଚଳ ( Midland ) ରେ ଅବସ୍ଥିତ । ଏହି ଅଞ୍ଚଳ ଦକ୍ଷିଣ ବିଲାତ ଅପେକ୍ଷା ଉଚ୍ଚ ଓ ପାହାଡ଼ିଆ । ଏହାର ପ୍ରାକୃତିକ ଦୃଶ୍ୟ ଦେଖିବାକୁ ଖୁବ୍ ଭଲ ଲାଗେ । ଏହାର ଦକ୍ଷିଣ ସୀମାରେ ଥିବା ଗ୍ରେଟ ଗ୍ରେଟ ପାହାଡ଼ ଉପରୁ ତଳକୁ ଚାହିଁଲେ ନିମ୍ନ ସମତଳ ଭୂମିର ଦୃଶ୍ୟ ଖୁବ ମନୋରମ ଦିଶେ । କୋଠାବାଡ଼ି, ବିଲ ବଗିଚା, ଯେପରି ଚିତ୍ର ଆଙ୍କିଲା ପରି ଦେଖାଯାଏ ।

ବର୍ଷା ନ ଥିଲେ ବି ଆକାଶ ମେଘାଚ୍ଛନ୍ନ ଥାଏ । ଘୂରିଆସେ ଘୂରିଥାଏ ଘନକୃଷ୍ଣ ବାଦଲର ଧାଁଧମଡ଼ । ସୂର୍ଯ୍ୟ ପଶ୍ଚିମ ଦିଗରେ ଝାପ୍‌ସା ଝାପ୍‌ସା ଦେଖାଯାଉଥାନ୍ତି । ତାଙ୍କର କ୍ଷୀଣ ଟେଳା ରଙ୍ଗୀନ୍ ଆଲୁଅ ଘରିଆଡ଼େ ଝରିପଡ଼ି ବେଶ୍ ମନମତାଣିଆ ଦୃଶ୍ୟ ସୃଷ୍ଟି କରୁଥାଏ ।

ସାରା ପ୍ରକୃତିକୁ ଏକ ଅଦ୍ଭୁତ ଜାଲକ ଆବରଣ ଘେରି ରହିଥାଏ । କେଉଁଠି ପଡ଼ିଥାଏ ନାଲି ଆଲୁଅ, କେଉଁଠି ହଳଦିଆ, କେଉଁଠି ବିଭିନ୍ନ ରଙ୍ଗର ଆସ୍ତରଣ ସୃଷ୍ଟି ହୋଇଥାଏ । ଗୁହଆଡ଼ୁ ଏକ ବ୍ୟାପକ ଚିତ୍ରପଟ ପରି ଦେଖାଯାଉଥାଏ । ବହୁବାର ବହୁ ସମୟ ଧରି ସେ ସୁନ୍ଦର ଦୃଶ୍ୟ ଆମ୍ଭେମାନେ ଦେଖିଛି । ଅନ୍ୟ ସମୟରେ ଯୁଆଡ଼େ ଯେମିତି ବଣ ପାହାଡ଼ ଦେଇ ବୁଲେ କିନ୍ତୁ ଉପର ବେଳା କୌଣସି ଉଚ୍ଚ ଯାଗାରେ ବସି ଗୁହଆଡ଼ର ଦୃଶ୍ୟକୁ ନଦେଖି ରହେନି ।

କିନ୍ତୁ ଆମର ବନ୍ଧୁମାନେ ଏ ବୁଲାବୁଲିରେ ମନ ନ ଦେଇ ଥା'ନ୍ତି ସେ ଅତିଥି ଶାଳାରେ । ତାଙ୍କର ଚାଲିଥାଏ ପିଆପିଇ ଓ ଖୁସୀ ଗପ ଏବଂ ସେ ଯୁବତୀ ପରିଚାରିକାଙ୍କୁ କେନ୍ଦ୍ର କରି ନାନା ପ୍ରକାର ରୋମାଞ୍ଚକର କାର୍ଯ୍ୟକଳାପ । ସେମାନେ ସମସ୍ତେ ସେ ପ୍ରେମଶୀଳା ମହିଳାଙ୍କ ଅପୂର୍ବ ଆକର୍ଷଣରେ ବାନ୍ଧିହୋଇ ଯାଇଥାନ୍ତି ଏବଂ ତାଙ୍କର ପ୍ରିୟପାତ୍ର ହେବାକୁ ନାନା ପ୍ରକାର ଉଦ୍ୟମ କରୁଥାନ୍ତି । ସେ ଚତୁରୀ ଯୁବତୀ ବି ପରିସ୍ଥିତିକୁ ଦେଖି ବେଶ୍ କାରସାଦି ଦେଖାଉଥାନ୍ତି । ଏତେ ଗୁଡ଼ିଏ ପ୍ରେମିକଙ୍କୁ ଏକ ସଙ୍ଗରେ ଏତେ ସହଜରେ ପାଇ ସେମାନଙ୍କ ପ୍ରେମ-ସୁଅରେ ନିଜକୁ ଭସାଇ ଦେଲାପରି ଜଣାପଡ଼ୁଥାନ୍ତି । କିନ୍ତୁ ଏତେ ଗୁଡ଼ିଏ ପୁରୁଷଙ୍କର ପ୍ରେୟସୀ ଅଭିନୟ କରିବା କିଛି କମ୍ କଷ୍ଟ ନୁହେଁ । ମହାଭାରତର ଦ୍ରୌପଦୀ-ପାଣ୍ଡବ କାହାଣୀ ଟିକିଏ ଅସମ୍ଭବ ଲାଗେ । ଜଣେ ମହିଳା ସେ ଯେତେ ମହୀୟସୀ ହୁଅନ୍ତୁ ନା କାହିଁକି କଣ ପାଞ୍ଚ ଜଣ ପୁରୁଷଙ୍କ ମନ ନେଇ ପାରନ୍ତି ! କିମିତି ସେ ଏତେ ପତିଙ୍କ ପ୍ରେମ-ପରିବେଷଣ କରୁଥିବେ । କଣ ଆଜିକାଲିର ପଞ୍ଚ କାର୍ଡ ପରି ହିସାବ ରଖି ଯେଝା ଅଂଶ ତାଙ୍କୁ ଦେଉଥିବେ, ଏତେ କେ. ଜି. ଚିନି, ଏତେ କେ. ଜି. ଗହମ, ଏତେ ଲିଟର କିରାସିନ ଦେଲାପରି ତାଙ୍କ ପ୍ରେମ-ପ୍ରଣୟ, ହସ-ଗପ ଆଳାପ ଆଲୋଚନା ବିତରଣ କରୁଥିବେ ! କିନ୍ତୁ ସେ ଛଳନାମୟୀ ଲଳନାଙ୍କ ହାବଭାବ, ଢଙ୍ଗରଙ୍ଗ ଦେଖିଲା ପରେ ପାଞ୍ଚାଳୀଙ୍କ ପ୍ରଣୟ ପରାକାଷ୍ଠାରେ ମୋର ଆଉ କୌଣସି ସନ୍ଦେହ ରହିଲାନି । ମୋଟା ମୋଟି ସେ ଯୁବତୀଟି ସବୁ ପ୍ରଣୟୀଙ୍କ ମନ ନେଲାଭଳି ବ୍ୟବହାର କରୁଥାନ୍ତି । ଜଣକ ସାଙ୍ଗରେ ଟିକିଏ ଖୁସୀଗପ କଲାପରେ ଅନ୍ୟ ଜଣଙ୍କ ପାଖକୁ

ବୁଲି ଯାଉଥାନ୍ତି । ପୁଣି କେତେ ସମୟ ପରେ ଅନ୍ୟ କାହା ପାଖରେ ଜୁଟି ଯାଉଥାନ୍ତି । କିନ୍ତୁ କାହାକୁ ପୂରା ଧରା ଦେଇ ନ ଥାନ୍ତି ।

ହେଲେ ଆମ ବନ୍ଧୁମାନେ ସେତିକିରେ କୃତାର୍ଥ । ଖିଆ ପିଆ ତ ଖୁବ୍ ଜୋର୍‌ରେ ଚାଲିଥାଏ । ତେଣୁ ଦେହମନ ଆନନ୍ଦରେ ହୋଇ ଉଠୁଥାଏ ପ୍ରେମ-ପ୍ରଣୟରେ ମାତି ଉଠିବାକୁ । ମାତ୍ର ଦୁଃଖ ଏତିକି ଯେ ପ୍ରେମିକା ସେଠି ଏକମାତ୍ର ପରିଚାରିକା । ତେଣୁ ପ୍ରେମିକମାନଙ୍କ ଭିତରେ ଚାଲିଥାଏ ଏକ ପ୍ରଚ୍ଛନ୍ନ ପ୍ରତିଯୋଗିତା ତାଙ୍କୁ ଦଖଲ କରିବାକୁ । ବହୁତ ଜିନିଷ ବଜାରରୁ କିଣି ଆଣି ତାଙ୍କୁ ଉପହାର ଦେଉଥାନ୍ତି । ନାନା ପ୍ରକାରେ ବି ତାଙ୍କ ମନ ନେବାକୁ ଚେଷ୍ଟା କରୁଥାନ୍ତି । ସେ ଯୁବତୀ ଯେ ଏମାନଙ୍କୁ ପ୍ରଶ୍ରୟ ଦେଉ ନ ଥାନ୍ତି ସେପରି ନୁହେଁ । ତାଙ୍କୁ ଏ ଘଟଣା ବେଶ୍ ମଜା ଲାଗୁଥାଏ । ଲାଗିବାର କଥା । ଗରିବ ଘରର ଝିଅ ସେ । ଜୀବିକା ଉପାର୍ଜନ କରିବାକୁ ଅତିଥିଶାଳାରେ ପରିଚାରିକା କାମ କରୁଥାନ୍ତି । କିନ୍ତୁ ତାଙ୍କର ବି ମନ ଅଛି, ଯୌବନ ଅଛି । ତେଣୁ ଏତେ ସହଜରେ ତାଙ୍କୁ ଯେତେବେଳେ ଆମୋଦ-ପ୍ରମୋଦ, ହସ-କୌତୁକର ସୁବିଧା ମିଳୁଛି ସେ କାହିଁ ଛାଡ଼ନ୍ତେ କିନ୍ତୁ ବେଶୀ ଦୂର ନ ଆଗେଇବାକୁ ବେଶ୍ ସାବଧାନ ଥାନ୍ତି । ତେଣୁ ଏହି ରସିକପ୍ରବରମାନେ ଯେତେବେଳେ ମତୁଆଲା ହୋଇ ତାଙ୍କ କୋଳକୁ ଢଳି ପଡ଼ିବାକୁ କି ତାଙ୍କୁ କୋଳାଗ୍ରତ କରିବାକୁ ଚେଷ୍ଟା କରନ୍ତି ସେ ବେଶ୍ ଚତୁରତା ସହିତ ଅଦ୍ଭୁତ ଅଙ୍ଗଭଙ୍ଗୀ କରି ଖସିଯାନ୍ତି । କିନ୍ତୁ ଏ ବିଚରାମାନେ ଏଥିରେ ଆହୁରି ଆତ୍ମହରା, ଆହୁରି ପ୍ରଲୁବ୍ଧ ହୋଇ ପୁଣି ତାଙ୍କ ଚେଷ୍ଟାରେ ଲାଗିପଡ଼ନ୍ତି । ତାଙ୍କୁ ସସ୍ନେହ ସପ୍ରେମ ତାଡ଼ନା କରିବାକୁ ଯାଇ ସେ ଯୁବତୀ ସସ୍ମିତ ବଦନରେ କହନ୍ତି, you are very wicked, u are very naughty ତୁମେ ଭାରି ଦୁଷ୍ଟ, ତୁମେ ଭାରି ବଦମାସ । ଏଥିରେ ଆମ ବନ୍ଧୁମାନଙ୍କର ପ୍ରେମସାଗର ଆହୁରି ଜୋରରେ ଉଚ୍ଛୁଳି ପଡ଼େ । କଣ କରିବେ ବିଚରାମାନେ ! ନିଜ ନିଜ ପ୍ରେୟସୀମାନଙ୍କୁ ତ ସ୍ୱଦେଶରେ ଛାଡ଼ିଦେଇ ଆସି ବିଦେଶରେ ନିର୍ବାସିତ ଯକ୍ଷ ପରି ବାସ କରୁଥାନ୍ତି । ତେଣୁ ନିର୍ଘାଟ ପ୍ରେମକାଙ୍ଗାଳ ପରି ସେ ଯୁବତୀଙ୍କ ସହିତ ବ୍ୟବହାର କରୁଥାନ୍ତି ଏବଂ ତାଙ୍କ ମାୟା ଜାଲରେ ବନ୍ଧା ହୋଇ ଛଟର ପଟର ହେଉଥାନ୍ତି ।

ଯାହାହେଉ ଅଲଟି‌ଂହାମରେ କେତେ ଦିନ ଆନନ୍ଦ ଉଲ୍ଲାସରେ କାଟି ଆମେ ଗଲୁ ମାଞ୍ଚେଷ୍ଟର । ମାଞ୍ଚେଷ୍ଟର ବିଲାତର ଏକ ବିଖ୍ୟାତ ଶିଳ୍ପ ନଗରୀ । ଏଠାରେ ବହୁ ଶିଳ୍ପ କାରଖାନା, ବିଭିନ୍ନ ବୈଷୟିକ (Technical) ସ୍କୁଲ କଲେଜ ଅଛି । ହାତରେ ଯଥେଷ୍ଟ ସମୟ ନ ଥିବାରୁ ଏ ସହରକୁ ଭଲ କରି ପରିକ୍ରମା କରି ତାହା ସମ୍ବନ୍ଧରେ ସବିଶେଷ ଜ୍ଞାନ ଅର୍ଜନ କରି ହେଲାନି । ତେବେ ଯାହା ଦିନେ ଦୁଇଦିନ ସେଠାରେ ରହିଲୁ ମୁଁ ତାର ସଦ୍‌ବ୍ୟବହାର କରିବାକୁ ଖଣ୍ଡିଆ ଭୂତ ପରି ଯୁରିଆଡ଼େ ଘୂରି ବୁଲିଲି । ଦିନେ କୁଆଡ଼େ ବୁଲାବୁଲି କରି ଖୁବ୍ କ୍ଲାନ୍ତ ହୋଇ ପଡ଼ିଥାଏ । ଯାଇବସିଲି ଗୋଟିଏ ପାର୍କରେ । ମନରେ ନାନା ପ୍ରକାର ଚିନ୍ତା । କେବେ ଦେଶକୁ ଫେରିବି ! ଘରୁ ଲଣ୍ଡନକୁ ଏଥି ମଧ୍ୟରେ ଯେ ସବୁ ଚିଠି ଆସିଥିବ ସେଗୁଡ଼ାକ ତ ମୋ ବିରହରେ ନିଶ୍ଚୟ ବିରାଗ୍ରସ୍ତ ହୋଇ ପଡ଼ିଥିବେ । ବିଲାତରେ କେତେ କଣ ଦେଖିଲି, ଆଉ କେଉଁ କେଉଁ ଯାଗା ଦେଖିବାକୁ ବାକୀ ରହିଲା । ଶ୍ରାବଣ ମାସ ଆକାଶରେ ମାଳ ମାଳ ମେଘପରି ମୋ ମୁଣ୍ଡ ଭିତରେ ଭାବନାର ଅଛାଡ଼ ସୁଅ ଛୁଟିଥାଏ । ହଠାତ୍ କାନରେ ବାଜିଲା କୌଣସି ଅବଳାର କ୍ରନ୍ଦନ ଧ୍ୱନି ! କି କଥା ଏ, ଏଠି କିଏ କାହିଁ କାନ୍ଦୁଛି, ନା କେଉଁ ପକ୍ଷୀ ବା ପୋକ ଏପରି ଶବ୍ଦ କରୁଛି, ହେଲେ ସେପରି ଜୀବ ତ କାହିଁ କେଉଁଠି ଦେଖା ଯାଉନି, ତେବେ କିଏ କାନ୍ଦୁଛି ? ହେଲା ଏବେ କିଏ କାନ୍ଦିଲା କି ହସିଲା ମୋର ସେଥିରେ ଯାଏ ଆସେ କେତେ ! ମୁଁ ମୋ ବିଶ୍ରାମ ସାରି ପୁଣି ବୁଲାବୁଲି କରିବାକୁ ବାହାରିବି । ତଥାପି କିଏ କାନ୍ଦୁଛି ! ପର କଥାରେ ମୁଣ୍ଡ ପୂରେଇବା ମୋର ଗୋଟାଏ ଖରାପ ଅଭ୍ୟାସ । କୌଣସି ଘଟଣା ଦୃଷ୍ଟିକୁ ଆସିଲେ ତାର ମୂଳଚୂଳ ସବୁ ବୁଝିବାକୁ ନିବିଡ଼ ବ୍ୟାକୁଳତା ! ନା, କିଏ କାନ୍ଦୁଛି ବୁଝିବା ଦରକାର ।

କିଏ କାନ୍ଦୁଛି ! ସ୍ୱରଟା ଖୁବ୍ କ୍ଷୀଣ ତଥାପି ବଡ ସ୍ପଷ୍ଟ । ବଡ କରୁଣ ତ ! ଶବ୍ଦଟା ସ୍ପଷ୍ଟ ଶୁଣା ଯାଉଛି କିନ୍ତୁ ତାର ଉତ୍ପତ୍ତି ସ୍ଥଳ ଜାଣି ହେଉନି । ବହୁ ଏକାଗ୍ରତା ସହ ଚାରିଆଡ଼କୁ ଲକ୍ଷ୍ୟ କରି ଦେଖିଲି ସେ କାନ୍ଦଟା ଆସୁଛି ମୋ ପଛ ପଟୁ । ଏଁ, ଏଇଠୁ ଆସୁଛି, ମୁଁ ଜାଣିପାରୁନି । କିନ୍ତୁ କିଏ ଏ ଶ୍ୱେତାଙ୍ଗିନୀ ମହିଳା ? ପିନ୍ଧିଛନ୍ତି ଭାରତୀୟ ଢଙ୍ଗରେ ଶାଢ଼ୀ ।

ପାଖରେ ବସିଛନ୍ତି ଜଣେ ଭାରତୀୟ ଯୁବକ ମୁହଁ ତଳକୁ କରି । ତାଙ୍କ କାନ୍ଧ ପାଖକୁ ମୁଣ୍ଡ ଲଗେଇ କାନ୍ଦୁଚନ୍ତି ରମଣୀ ଜଣକ । କାନ୍ଦଣା ତାଙ୍କ ମୋଟା ଗୋରିଦେହକୁ ଥରାଇ ବାହାରୁଚି ଗିରିଗୁମ୍ଫାରୁ ବାଘୁଣୀର ମଧୁଗର୍ଜନ ପରି । ଆରେ ! ଏତ ମିସେସ୍ ଦେଶାଇ, ଆମ ଜାହାଜ ସାଥୀ । ଯୁବକ ଜଣକ ତେବେ ମିଷ୍ଟର ଭୂଞ୍ଚା ! କଣ ହେଲା ଏମାନଙ୍କର ? ବେଶ୍ ତ ଆନନ୍ଦ ଉଲ୍ଲାସରେ ଥିଲେ । ପୁଣି କଣ ଦୁଃଖ ବା ଦୁର୍ଘଟଣା ଘଟିଲା ?

ସେଦିନ ଟିକିଏ ମେଘୁଆ ପାଗ ହୋଇଥାଏ । ଘରଆଡ଼ ଅନ୍ଧାରିଆ ଅନ୍ଧାରିଆ । ମୁଁ ସହାନୁଭୂତିରେ ଗଦ ଗଦ ହୋଇ ସେମାନଙ୍କ ପାଖକୁ ଆଗେଇ ଯିବାରୁ ମିସେସ୍ ଦେଶାଇ ମୋତେ ସଶ୍ରଦ୍ଧ ସମ୍ବର୍ଦ୍ଧନା ଜ୍ଞାପନ କଲେ । ମିଷ୍ଟର ଭୂଞ୍ଚା ମୁଁହ ଟେକି କ୍ଷଣକ ପାଇଁ ମୋ ଉପରେ କରୁଣ ଦୃଷ୍ଟିପାତ କରି ପୁଣି ତଳକୁ ମୁଣ୍ଡ ନୁଆଁଇ ସୁଁ ସୁଁ ହେଲେ । ଓ ! ଏବ କାନ୍ଦୁଚନ୍ତି !

କଣ ହେଲା ?

ମୁଁ ଯାବତୀୟ ଦରଦ କଣ୍ଠନାଳୀରେ ରଖି ଚୁମ୍ବକରେ ପଚାରିଲି ।

—କଣ ବା କହିବୁ ! ଆମର ସବୁ ସରିଗଲା !

ମିସେସ୍ ଦେଶାଇ ବାଷ୍ପ-ଗଦଗଦ ସ୍ୱରରେ କହିଲେ । ମିଷ୍ଟର ଭୂଞ୍ଚା ତାଙ୍କ କୁହ୍ଲାଣ ମୋହାଟା ଟିକିଏ ବଢେଇ ଦେଇ ସେଥିରେ ସମଭାବ, ସମବେଦନା ପ୍ରକାଶ କଲେ ।

—ଏଁ, ସବୁ ସରିଗଲା ।

କ'ଣ ସରିଗଲା ? ଯାହା ତ ଆରମ୍ଭ ହୁଏ ସେ ତ ଦିନେ ନା ଦିନେ ସରେ । ଏ ଦୁହିଁଙ୍କ ଭିତରେ ଯେ ବିକୃତ ପ୍ରେମ ସୃଷ୍ଟି ହୋଇଥିଲା ସେ ତ ବହୁ ଦିନରୁ ଶେଷ ହେବାର କଥା । ସେ ଯେ ଆଜଯାଏ ତିଷ୍ଠି ରହିଛି ତାହା ହିଁ ଆଶ୍ଚର୍ଯ୍ୟକର, ତାହା ହିଁ କୌତୁକପ୍ରଦ ।

ମୋର ବହୁ ଅନୁରୋଧ ପରେ ମିସେସ୍ ଦେଶାଇ ଆରମ୍ଭ କଲେ ତାଙ୍କ ଜୀବନର କାହାଣୀ । ମୋର ସେସବୁ ଶୁଣିବାକୁ ସ୍ପୃହା ନ ଥାଏ ।

ଆଗରୁ ଏଣୁ ତେଣୁ ଯେ କାଣ୍ଡିଏ କାଣ୍ଡିଏ ଶୁଣିଛୁ ସେ ମୋ ପାଇଁ ଯଥେଷ୍ଟ ।

ମୋଟାମୋଟି କଥା ହେଲା ଭୁଟ୍ଟାଙ୍କର ଭାରତରେ ବିବାହିତ ପତ୍ନୀ ଓ ଗୋଟିଏ ସନ୍ତାନ ଅଛନ୍ତି । ତଥାପି ସେ ମିସେସ୍ ଦେଶାଇଙ୍କ ପ୍ରେମରେ ନିର୍ଘାତ ଭାବରେ ପଡ଼ି ଯାଇଛନ୍ତି । ପ୍ରଥମେ ପ୍ରଥମେ ମିସେସ୍ ଦେଶାଇ ଏହାକୁ ଏକ କୌତୁକ ବୋଲି ମନେ କରୁଥିଲେ ଏବଂ ଏଥିରେ ବେଳେବେଳେ ତାଙ୍କ ମନରେ ବିରକ୍ତି ଆସୁଥିଲେ ହି ବାବୁ ଭୁଟ୍ଟାଙ୍କ ମନକୁ ବାଧିଲା ପରି କିଛି କହୁ ନ ଥିଲେ କି କରୁ ନ ଥିଲେ । କିନ୍ତୁ ଭୁଟ୍ଟା ଏକେବାରେ ମିସେସ୍ ଦେଶାଇଙ୍କ ପ୍ରେମରେ ପାଗଳ । ଏକଥା ଦେଖି ଶ୍ରୀମତୀ ଦେଶାଇ ବଡ଼ ବିବ୍ରତ ଓ ବ୍ୟଥିତ ହୋଇ ପଡ଼ିଲେ । କିନ୍ତୁ ତାଙ୍କର ସନ୍ତୋଷ ବିଧାନ କରିବାକୁ ଭୁଟ୍ଟା ଅପର୍ଯ୍ୟାପ୍ତ ପଇସା ଖର୍ଚ୍ଚ କରୁଥା'ନ୍ତି । କ୍ରମେ ସେ ସମସ୍ତ ମନ, ସମସ୍ତ ଧନ, ସମସ୍ତ ମମତା, ସମସ୍ତ ପ୍ରେମ ଦେଇ ଶ୍ରୀମତୀ ଦେଶାଇଙ୍କୁ ଆବୋରି ବସିଲେ । ଶୟନେ, ସ୍ୱପନେ, ଜାଗରଣେ ଭୋଜନେ, ଭ୍ରମଣେ ସବୁଥିରେ ତାଙ୍କ ଛଡ଼ା ଭୁଟ୍ଟାଙ୍କର ଗତିମୁକ୍ତି ନାହିଁ ।

ଏସବୁ ଦେଖି ମିଷ୍ଟର ଦେଶାଇ ବଡ଼ ଉଗ୍ର ହୋଇ ଉଠିଲେ ଏବଂ ପ୍ରଥମେ ପ୍ରକାରାନ୍ତରେ ଓ ପରେ ସ୍ପଷ୍ଟ ଓ ନିରାଟ ଭାବରେ ପତ୍ନୀଙ୍କୁ ଏଥିପାଇଁ ତାଗିଦ୍ କଲେ । ଫଳରେ ଶ୍ରୀମତୀ ଦେଶାଇ ଭୁଟ୍ଟାଙ୍କୁ କରଛଡ଼ା ଦେବାକୁ ଚେଷ୍ଟା କଲେ । ମାତ୍ର ଏଥିରେ ବିଗୁଣ ନ ଯେନ ଦ୍ୱିଗୁଣ ଉତ୍ସାହରେ ଭୁଟ୍ଟା ତାଙ୍କ ପ୍ରେମରେ ମାତିଉଠିଲେ । ଶ୍ରୀମତୀ ଦେଶାଇଙ୍କ ପାଇଁ ଏହା ଏକ ବିରାଟ ସମସ୍ୟା ସୃଷ୍ଟି କଲା । ସେ ଭୁଟ୍ଟାଙ୍କ ପ୍ରତି ଯେତେ ସହାନୁଭୂତିଶୀଳା, ପ୍ରେମଶୀଳା ହେଲେ ବି ଦେଶାଇଙ୍କୁ ଛାଡ଼ପତ୍ର ଦେଇ ଭୁଟ୍ଟାଙ୍କୁ ବିବାହ କରିବାର ଇଚ୍ଛା ତାଙ୍କର ନଥିଲା । କିନ୍ତୁ ଭୁଟ୍ଟାଙ୍କର ଏକା ଜିଦ୍ ସେ ତାଙ୍କୁ ବିବାହ କରିବେ । ତାଙ୍କର ବିଲାତରେ କେତେଦିନ ବୁଲି ଆମେରିକା ଯିବାର କଥା । କିନ୍ତୁ ସେ ଶ୍ରୀମତୀ ଦେଶାଇଙ୍କୁ ଛାଡ଼ି କୁଆଡେ ଯିବାକୁ ପ୍ରସ୍ତୁତ ନ ଥିଲେ । ତେବେ ଶ୍ରୀମତୀ ଦେଶାଇଙ୍କର କ୍ଷୀଣ ଆଶା ଥିଲା ଦିନେ ହୁଏତ ଭୁଟ୍ଟାଙ୍କର ଏ ବିଚିତ୍ର ପ୍ରେମରେ ଭଟ୍ଟା ପଡ଼ିବ । ଯୁବକ ଲୋକ । ଘରେ ସ୍ତ୍ରୀଙ୍କୁ ଛାଡ଼ି ଆସିଛନ୍ତି । ତେଣୁ ଜଣେ ସୁନ୍ଦରୀ ରମଣୀଙ୍କୁ ଦେଖି ତାଙ୍କ ଆଡ଼କୁ ଢଳି ପଡ଼ିଛନ୍ତି । ପୁଣି ହୁଏତ ଅନ୍ୟ

କାହାକୁ ଦେଖି ତାଙ୍କ ପ୍ରେମରେ ଜଡ଼ିପିବେ । ତେଣୁ ଶ୍ରୀମତୀ ଦେଶାଇ ତାଙ୍କ ଚେଷ୍ଟାରେ ଲାଗିପଡ଼ିଲେ କିମିତି ଏକ ବା ଏକାଧିକ ରୂପସୀ ବାନ୍ଧବୀ ଭୂଷାଙ୍କ ପାଇଁ ଠିକ୍ କରିବେ । କିନ୍ତୁ ତାଙ୍କର ସବୁ କଳ୍ପନା, ସବୁ ଉଦ୍ୟମ ବ୍ୟର୍ଥ ହେଲା । ଭୂଷା ନାଗ୍ରୋଡ଼ବନ୍ଧା । ସକଳ ତୀର୍ଥ ତୋ ଚରଣେ ଆମେରିକା ଯିବା କି କାରଣେ ! ସେ ଶ୍ରୀମତୀ ଦେଶାଇଙ୍କ ପିଚ୍ଛା ଲାଙ୍ଗୁଡ଼ ପରି ଲାଗି ରହିଲେ । ଆଉ ଆମେରିକା ଗଲେନି ।

ସାତ ଆଠମାସ କାଳ ଇମିତି କଟିଲା । ଏଣେ ମିଷ୍ଟର ଦେଶାଇ ବିଲାତରେ ଭଲ ଚାକିରି ନ ପାଇବାରୁ ଜର୍ମାନୀ ବାହାରିଲେଣି । ତେଣୁ ତାଙ୍କ ସଙ୍ଗରେ ଶ୍ରୀମତୀ ଦେଶାଇ ଯିବାର କଥା । କିନ୍ତୁ ତାଙ୍କୁ ଭୂଷା ଛାଡ଼ିଲେ ତ ! ସେ ତାଙ୍କୁ ଛାଡ଼ିବାକୁ ନାରାଜ । କଥାଟା ଆସି ଏକ ତ୍ରିଶଙ୍କୁ ଅବସ୍ଥାରେ ପହଞ୍ଚିଥାଏ । ଶ୍ରୀମତୀ ଦେଶାଇ ଏସବୁ ବଖାଣି ଶେଷରେ କାନ୍ଦି ଉଠିଲେ । ଛଳନାରେ ନୁହେଁ, ପ୍ରକୃତ ଭାବାବେଗରେ । ତାଙ୍କ ଆଖିରୁ ଲୁହଧାର ବୋହିଯାଉଥାଏ । ଏହା ଦେଖି ଭୂଷା ଆହୁରି ଜୋର୍‌ରେ କାନ୍ଦିବା ବସିଲେ । ଦୁହେଁ ମିଶି ମୋତେ ମହା ବିନମ୍ରରେ ଅନୁରୋଧ କଲେ ଏହାର ସମାଧାନ କରିବାକୁ ଏବଂ ଉଭୟେ ନିଜ ନିଜର ସିଦ୍ଧାନ୍ତକୁ ସମର୍ଥନ କରି ଯୁକ୍ତି ବାଢ଼ିବସିଲେ । ମୁଁ ବହୁତ ଗଳ୍ପ ଉପନ୍ୟାସ ପଢ଼ିଛି, ବହୁତ ଲେଖିଛି କିନ୍ତୁ କଣ କହି ସେମାନଙ୍କୁ ପ୍ରବୋଧ ଦେବି, କିପରି ଏ ସମସ୍ୟାର ସମାଧାନ କରିବି କିଛି ଠିକ୍ କରିପାରିଲିନି । ଖାଲି ହୁଁ । ହଁ କରି ଖସିଆସିବି ବୋଲି ଭାବିଥିଲି । କିନ୍ତୁ ତାହା ସମ୍ଭବ ହେଲାନି । ସେ ଦୁହେଁ ମୋର ଦୁଇହାତ ଧରି କାନ୍ଦିବା ଲାଗିଥାନ୍ତି ଏବଂ ଥରକୁଥର ପ୍ରତ୍ୟେକେ ତାଙ୍କର ପକ୍ଷ ସମର୍ଥନ କରିବାକୁ କାକୁତି ମିନତି କରୁଥାନ୍ତି । ତେବେ କଣ କରିବି ? କିମିତି ଏ ମାୟାଜାଲରୁ ଖସିବି ? ମୁଁ ଭାବୁଥାଏ ।

ମୋର ପିଲାଦିନର ଗୋଟିଏ କଥା ମନେପଡ଼ିଲା । ମୁଁ ଅପର ପ୍ରାଇମେରୀ ସ୍କୁଲରେ ପଢ଼ୁଥାଏ । ଆମର ଦୁଇଜଣ ପଣ୍ଡିତ ଓ ଜଣେ ଉର୍ଦ୍ଦୁ ଶିକ୍ଷକ ମଉଲବି ଥାନ୍ତି । ହେଡ୍ ପଣ୍ଡିତ ଓ ସେକେଣ୍ଡ ପଣ୍ଡିତଙ୍କର ବହୁ କାରଣରୁ ମନୋମାଳିନ୍ୟ ଥାଏ । ତେଣୁ ସେମାନେ ଟିକିଏ ଟିକିଏ କଥାରେ ବାକ୍ ଯୁଦ୍ଧରେ ମାତି ଉଠୁଥାନ୍ତି । ଦିନେ ସେ ଦୁହିଁଙ୍କର ଯୁକ୍ତି

ଲାଗିଲା ଶ୍ରୀକୃଷ୍ଣ ଭଗବାନଙ୍କର ଅବତାର ନା ସ୍ୱୟଂ ଭଗବାନ । ଜଣେ କହୁଥାନ୍ତି ସେ ସର୍ବଶକ୍ତିମାନ ଭଗବାନ । ଆଉ ଜଣେ କହୁଥାନ୍ତି ନା ସେ କେବଳ ଅବତାର ମାତ୍ର । ଯେ ଅନ୍ୟର ଯୁକ୍ତି କାଟିବାକୁ ଯାହା କହୁଥାନ୍ତି ସେଥିରେ ସାକ୍ଷୀ ମାନୁଥାନ୍ତି ମଉଲବି ମହାଶୟଙ୍କୁ । ଜଣେ କହୁଥାନ୍ତି କଣ ମଉଲବି ସାହେବ ! ଯୁଁ ନୁହେ ? ଆଉ ଜଣେ ପଚାରୁଥାଆନ୍ତି କଣ ମଉଲବି ସାହେବ ! ଏ କଥା ଠିକ୍ ତ ? ମଉଲବି ସାହେବ ମୁସଲମାନ । ସେ ହିନ୍ଦୁଶାସ୍ତ୍ର ସମ୍ବନ୍ଧରେ ଅଜ୍ଞ । ମାତ୍ର ତୃତୀୟ ଶିକ୍ଷକ ହିସାବରେ ସେ ଉଭୟ ପଣ୍ଡିତଙ୍କର ଆଦେଶ ପାଳିବାକୁ ଏକ ପ୍ରକାର ବାଧ୍ୟ । ସେ କାହା କଥା ଅବଜ୍ଞା କରିବାକୁ ଚାହୁଁ ନଥାନ୍ତି । ଯେ ଯାହା କହୁଥାଏ ସେ ସବୁକୁ ଏକାକାର କରି ହୁଁ ହାଁ କରୁଥାନ୍ତି । କିନ୍ତୁ ଶେଷରେ ଯେତେବେଳେ ଦୁଇ ପଣ୍ଡିତ ଯାକ ପାଟି କରି କରି ଥକି ପଡ଼ିଲେ ସେମାନେ ଚୂଡ଼ାନ୍ତ ନିଷ୍ପତ୍ତି ଦେବାକୁ ମୌଲବିଙ୍କୁ ଅନୁରୋଧ କଲେ । ମଉଲବି ପଡ଼ିଗଲେ ମହା ଅଡ଼ୁଆରେ । ଜଣକର ପକ୍ଷ ସମର୍ଥନ କଲେ ଅନ୍ୟ ଜଣକର ମନ କଷ୍ଟ ହେବା ସ୍ୱାଭାବିକ । କିମିତି ଉଭୟଙ୍କ ମନ ରଖିବେ ସେଥିପାଇଁ ଚିନ୍ତା କରିବାକୁ ଲାଗିଲେ । ଶେଷରେ ତାଙ୍କ ମୁହଁକୁ ଗୁରୁଗମ୍ଭୀର କରି, କପାଳର ଚମକୁ ତରଙ୍ଗାୟିତ କରି ବହୁ ନିଷ୍ଠା ସହକାରେ ତାଙ୍କର ଚୂଡ଼ାନ୍ତ ନିଷ୍ପତ୍ତି ଶୁଣେଇଲେ । "ହେଡ୍ ପଣ୍ଡିତ ଯାହା କହୁଛନ୍ତି ତାହା ଠିକ୍ । ସେକେଣ୍ଡ୍ ପଣ୍ଡିତ ଯାହା କହୁଛନ୍ତି ତା ବି ଠିକ୍ । ହେଲେ ଉଭୟଙ୍କ କଥାର ମତଲବ ଦୁସରା ।" ଏଥିରେ ଉଭୟ ପଣ୍ଡିତ ଚୁପ୍ । ମୁଁ ସେମିତି ଗୋଟାଏ କାଠି ମାଡି ଧରି ଶ୍ରୀମାନ୍ ଭୁଣ୍ଡା ଓ ଶ୍ରୀମତୀ ଦେଶାଇଙ୍କ ସମସ୍ୟାର ସମାଧାନ କରିବାକୁ ଚେଷ୍ଟାକଲି । ଉଭୟଙ୍କୁ ପ୍ରବୋଧି ବହୁତ କଥା କହିଲି । ଶେଷରେ ସେ ଦୁହିଁଙ୍କ ବାହୁନା ଟିକିଏ ଥମି ଯିବାରୁ କୌଣସି-ମତେ ଖସି ପଳେଇ ଆସିଲି ।

# ଲଣ୍ଡନରେ ଲଣ୍ଡଭଣ୍ଡ କାଣ୍ଡ

ଲଣ୍ଡନରେ ଲଣ୍ଡଭଣ୍ଡ କାଣ୍ଡ ! ଏଥି ଭିତରେ ବହୁତ ବୁଲାବୁଲି କରି ଅନେକଟା ଯାହାକୁ କହନ୍ତି ପାଦଗଲା ମାରିସାରିଥାଏ । ତା' ସାଙ୍ଗେ ସାଙ୍ଗେ ମନଗଲା ବି । କିନ୍ତୁ ମନସାଧ ପ୍ରକୃତରେ ପୂରା ମେଣ୍ଟି ନ ଥାଏ । ଖାଲି ଆସିଥାଏ ସାମୟିକ ବିତୃଷ୍ଣା । ତଥାପି କେତେକ ନିକାଞ୍ଚନ ମୁହୂର୍ତ୍ତରେ ଜାଗିଉଠେ ଅପାର ବାସନା ଆଉକିଛି ଦେଖିବା ପାଇଁ । ପୁଣି ମନ ହୁଏ ମିଷ୍ଟର ଭୁଞ୍ଚା ଓ ଶ୍ରୀମତୀ ଦେଶାଇଙ୍କ ରୋମାଞ୍ଚକର କାର୍ଯ୍ୟ-କଳାପର ଶେଷ ପର୍ଯ୍ୟାୟଟା ଜାଣିବାକୁ । କିମିତି ତାର ପରିସମାପ୍ତି ଘଟିଲା, କି ଆଜି ସେ ଅପରିସମାପ୍ତ ଅବସ୍ଥାରେ ଅଛି ! ଘଟଣାଟା ବଡ଼ କୌତୂହଳମୟ ଲାଗୁଥାଏ । କ'ଣ ହେଲା ? ମୋର କାହାଣୀ-ବୁଭୁକ୍ଷୁ ମନ ଗୁମୁରି ଉଠୁଥାଏ କେତେ କଣ ଚିନ୍ତା କରି । ଆଉଥରେ ସେମାନଙ୍କ ସାଙ୍ଗେ ଦେଖା ହୁଅନ୍ତା କି ! କିମିତି ଦେଖା ହେବ ? ସେମାନଙ୍କ ଠିକଣା ତ ମୁଁ ରଖିନି । କୁଆଡ଼େ ସିନା ବୁଲାବୁଲି କରିବାକୁ ଗଲେ ସେମାନଙ୍କ ସାଙ୍ଗେ ହୁଏତ ଅକସ୍ମାତ୍ ମୁଲାକାତ୍ ହୋଇ ପାରନ୍ତା । ପୁଣି ସେଇ ବୁଲାବୁଲି ଦେଖାଦେଖି । କେତେ ବୁଲିବ ! କେତେ ଦେଖିବ !

ପଢ଼ାପଢ଼ି ଭିତରୁ ଯେତେବେଳେ ଟିକିଏ ନିସ୍କୃତି ମିଳେ କେତେ କ'ଣ ଭାବନା ମୁଣ୍ଡରେ ଖେଳିଯାଏ । ସାଙ୍ଗେ ସାଙ୍ଗେ ମନରେ କୋହ ଉଠେ କେବେ ଏ ବିଦେଶ ବାସ ଶେଷକରି ମୋର ପ୍ରିୟ ଦେଶକୁ, ମୋର ପ୍ରିୟ ପରିବାରଙ୍କ ପାଖକୁ ଫେରିଯିବି । କିନ୍ତୁ ତା ଆଗରୁ ତ ଆଉରି ଅନେକ ଜାଗା ବୁଲିବାକୁ ପଡ଼ିବ । ଏ ବୁଲିବାଟା ମୋର ଯେମିତି ଗୋଟିଏ ନିଶା, ଗୋଟିଏ ଦଣ୍ଡ, ଗୋଟିଏ ଅଭିଶାପରେ ପରିଣତ ହୋଇ ଯାଇଥାଏ । ପୁଣି ସୁବିଧା ଦେଖି କୁଆଡ଼େ ବୁଲିଯିବାକୁ ବାହାରି ପଡ଼େ । ପୁଣି କେତେବେଳେ ଘର, ପରିବାରର ଚିନ୍ତା କରି ଘାଏଲ ହୋଇ ପଡ଼ିରହେ ଖଟ ଉପରେ । ପୂର୍ବର କେତେ ସ୍ମୃତି କେତେ ଛବି ମନରେ ଆଙ୍କିବସେ । ସବୁଟା ଯେମିତି ଝାପ୍‌ସା ଝାପ୍‌ସା ଲାଗୁଚି । ଏଁ ! ଏଇ ଅଳ୍ପ ସମୟ ଭିତରେ ସବୁଟା ଭୁଲିଯିବାକୁ ବସିଲଣି । ଇମିତି ତେବେ ଲୋକେ

ସବୁ ଭୁଲିଯାନ୍ତି, ସବୁ ସ୍ନେହ-ମମତା, ସବୁ ପ୍ରିୟା-ପ୍ରୀତି । ବିଚିତ୍ର ଏ ମଣିଷର ମନ !

କେତେବେଳେ ମନ ଘାରି ହୋଇ ଉଠିଲା ବେଳକୁ ପେଟ ପାଟି କରି ଉଠେ ଶ୍ରେଷ୍ଠରେ । ଇଚ୍ଛା ହୁଏ ବିଲାତରେ ଯାହା ବିଭିନ୍ନ ପ୍ରକାର ଖାଦ୍ୟ ପଦାର୍ଥ ମିଳୁଛି ସେସବୁ ଖାଇବି । କିନ୍ତୁ କଣ ଖାଇବି ? ବସାରେ ତ ଆମ ଜାତୀୟ ଖାନା ଉଦରସ୍ଥ କରୁଛି । ବାହାରେ ଫିସ୍ ଆଣ୍ଡ ଚିପସ୍ (fish and chips) ନୋହିଲେ ମାସ୍‌କଡ୍ ପଟାଟୋ ଆଣ୍ଡ କରି (masked potato and curry), ନୋହିଲେ ବ୍ରେଡ୍ ବଟର୍ ଆଣ୍ଡ ଏଗସ୍, ନୋହିଲେ ସାଣ୍ଡଓ୍ୱିଚ୍ । ସେଗୁଡ଼ାକ ଶସ୍ତା ପଡ଼େ ବୋଲି ସବୁବେଳେ ସେମାନଙ୍କ ଉପରେ ମାଡ଼ । କିନ୍ତୁ ବାକିଗୁଡ଼ାକ ଯେ ରହିଲେ ସେମାନେ ମନକଷ୍ଟ କରିବେ । ମାତ୍ର କ'ଣ ରହିଲେ ? ବହୁତ କିଛି । ରୋଷ୍ଟବିଫ୍ (roast beef), ଷ୍ଟେକ୍ ଓ କିଡନି ପୁଡ଼ିଂ (steak and kidney pudding), ସ୍କଚ୍ ଷ୍ଟେକ୍‌ସ (Scotch steaks) ଇତ୍ୟାଦି ଗୋମାଂସର ରନ୍ଧାରନ୍ଧି । ଗୋମାଂସ ତ ମୋର ଚଳିବନି । ବିଲାତରେ ପାଦଦେବା ଦିନଠାରୁ ଗୋମାତାଙ୍କୁ ନମସ୍କାର କରି ଅନ୍ୟ ଯାହା ଯେମିତି ଚଳେଇଛି । ତେବେ ସିଝା ସାଲମନ (Smoked Salmon), ଇଂଲିଶ ଅୟୁଷ୍ଟର (English oyster), ୟର୍କହାମ, (Yorkham) ଭିତରୁ କେବଳ ସାଲମନ୍ ମାଛ ଚଳିବ । କିନ୍ତୁ ଏ ମାଛ ମୁଁ ଜାହାଜରେ ଓ ବିଲାତରେ ବହୁବାର ଖାଇଛି । ଏ ଗୁଡ଼ାକ ସେତେ ଭଲ ଲାଗେନି । ଲିସେଷ୍ଟର ସ୍କୋୟାର ଆଡ଼େ ଯେ ସାଲାଡ଼ (salad) ଓ ଅନ୍ୟ ନିରାମିଷ ଖାଦ୍ୟ ମିଳେ ସେ ମନ୍ଦ ନୁହେଁ । ସାଲଡ଼୍ କହିଲେ ଆମ ଦେଶରେ ଆମେ ଯାହା ବୁଝୁ, ଏ ତାହା ନୁହେଁ । ସାଲାଡ଼ କେତେକ ଅସିଝା ପତ୍ର, ମୂଳ ଓ ଫଳର ସମଷ୍ଟି । ତେବେ ସେ ବେଶ୍ ଭଲ ଲାଗେ । ସୋହୋ ଅଞ୍ଚଳରେ ତ ଫ୍ରାନ୍‌ସ, ଇଟାଲି, ସ୍ପେନ୍ ଆଦି ଦେଶରେ ଖାଦ୍ୟ ମିଳେ । ଲଣ୍ଡନରେ ଚିନା ଓ ଭାରତୀୟ ଖାନାର ଅଭାବ ନାହିଁ । ଏତେ ପ୍ରକାର ଖାନାକୁ ଅର୍ଥ ଦରକାର । ତେବେ ବୁଲିବୁଲି ବେଳେ ଯାହା ଯେଉଁଠି ସମ୍ଭବ ଖିଆଯିବ । କିନ୍ତୁ ଏ ଖାଇବା ପାଇଁ ଗୋଟାଏ ଅଭିଯାନ ଆରମ୍ଭ କରିବା ସମ୍ଭବ ନୁହେଁ ।

ବହୁ ଦିନରୁ ମନଥାଏ ଥେମ୍‌ସ ନଦୀରେ ନାବକେଳ କରିବାକୁ । ଠିକ୍ ନାବକେଳ ନୁହେଁ, ନୌକା ବିହାର । ଏହି ଥେମସ୍ ନଦୀରେ ଜାହାଜ ଚଳାଚଳର ଶେଷସୀମା ହେଲା ଲଣ୍ଡନ ପୁଷ୍କରଣୀ Pool of London । ଏହାର ପାଖରେ ଲଣ୍ଡନ ଦୁର୍ଗ (Tower of London) ଏବଂ ବିଲିଂଗେଟ୍ ମାଛହାଟ । ଲଣ୍ଡନ ବ୍ରିଜ ଓ ଓ୍ୱେଷ୍ଟ ମିନଷ୍ଟର ମଧ୍ୟରେ ବହୁ ବଡ଼ ବଡ଼ ଘର । ସେଣ୍ଟପଲ ଗୀର୍ଜାର ଗମ୍ବୁଜ ଓ ବହୁ କୋଠାବାଡ଼ି ଥେମସ୍ ନଦୀରେ ନୌକାରେ ଗଲାବେଳେ ଦେଖାଯାଏ । କ୍ରମେ ନଦୀର ଉପର ଆଡ଼କୁ ଓ୍ୱେଷ୍ଟ ମିନଷ୍ଟର ଦିଗରେ ଗତିକଲେ ପାର୍ଲିଆମେଣ୍ଟ ଭବନ ଓ ବିଗ୍‌ବେନ୍ ଦୃଷ୍ଟି ଆକର୍ଷଣ କରନ୍ତି । ପରେ ପରେ ଆସେ କାଣ୍ଟରବରି ଆର୍କବିଶପଙ୍କ ସରକାରୀ ବାସଭବନ ଲମ୍ବେଥ ପ୍ରାସାଦ । ଆହୁରି ପଶ୍ଚିମକୁ ଗଲେ ଆସେ କବି, ଲେଖକ ଓ କଳାକାରମାନଙ୍କର ପ୍ରଖ୍ୟାତ ବାସସ୍ଥଳୀ ଚେଲସିଆ ଯେଉଁଠି ଦିନେ କାର୍ଲାଇଲ୍, ଜର୍ଜ ଇଲିୟଟ୍ ଓ ଟର୍ନର ଆଦି ରହୁଥିଲେ । ଏହାପରେ ଥେମସ୍ ନଦୀ ମୋର୍ଟଲେକ୍, ପୁଟ୍‌ନି, କିଉଗାର୍ଡ଼େନ ଓ ହମ୍ପଟନ୍ କୋର୍ଟ ବାଟ ଦେଇ ଲଣ୍ଡନ ବାହାରକୁ ବହିଯାଇଛି । ଏହି ପୁଟ୍‌ନିରେ ପ୍ରତିବର୍ଷ ଅକ୍‌ସଫୋର୍ଡ ଓ କେମ୍ବ୍ରିଜ୍ ମଧ୍ୟରେ ନୌକା-ଚାଳନା ପ୍ରତିଯୋଗିତା ଅନୁଷ୍ଠିତ ହୁଏ ଖୁବ୍ ଉତ୍ତେଜନାପୂର୍ଣ୍ଣ ଭାବରେ ।

ଏହାର ଆହୁରି ପଶ୍ଚିମକୁ ବୁଲିଯିବାର ବ୍ୟବସ୍ଥା ଅଛି । ରବିବାର ଉପରବେଳା ମଟର ଲଞ୍ଚରେ ଯାଇ ସନ୍ଧ୍ୟାକୁ ଫେରିବାକୁ ପଡ଼େ । ସାଙ୍ଗରେ ଥାନ୍ତି ପଥପ୍ରଦର୍ଶକ (guide) । ସେ ବାଟସାର ବକ୍ତୃତା ଦେଇ ବିଭିନ୍ନ ସ୍ଥାନର ମାହାତ୍ମ୍ୟ ବୁଝାଉଥାନ୍ତି । ଏହି ଥେମସ୍ ନଦୀ କୂଳରେ ଥିବା ଦୁଇଟି ବିଖ୍ୟାତ ପୁରାତନ ରାଜପ୍ରାସାଦ, ଓ୍ୱିଣ୍ଡସର ଓ ହାମ୍ପଟନ୍ କୋଟ ଦେଖିବାକୁ ଇଚ୍ଛାଥାଏ । ସୁବିଧା ଦେଖି ପ୍ରଥମେ ହାମ୍ପଟନ୍ କୋର୍ଟ ଓ ପରେ ଓ୍ୱିଣ୍ଡର୍ସର ରାଜପ୍ରାସାଦକୁ ଗଲି । ହାମ୍ପଟନ୍ କୋର୍ଟ ପ୍ରାସାଦଟି ଅତି ସୁନ୍ଦର ତୃଣାଚ୍ଛାଦିତ ଭୂମି ( ଓ ବଗିଚା ମଧ୍ୟରେ ଅବସ୍ଥିତ । ଏହି ବଗିଚା ଥେମସ୍ ନଦୀର କୂଳକୁ ଲାଗିଛି । ଏହି ବଗିଚାରେ ବୁଲିଲା ବେଳେ ଚାରିଆଡ଼ର ରମଣୀୟ ଶୋଭା ବେଶ୍ ଆନନ୍ଦଦାୟକ ମନେହୁଏ ଏବଂ ତାହା ଏକ ଅପୂର୍ବ ମାଦକତା ସୃଷ୍ଟି କରେ । ଏହାର ପରିସର ମଧ୍ୟରେ ପୂର୍ବେ ବିଲାତର କେତେ ରାଜା-ରାଣୀ, ମନ୍ତ୍ରୀ-ପାରିଷଦ

ଆହାରବିହାର କରି ଦେଶବିଦେଶର ଭାଗ୍ୟ ନିୟନ୍ତ୍ରଣ କରୁଥିଲେ । ଏବେ ସେପରି ସେମାନଙ୍କର ଅଶରୀରୀ ଆତ୍ମା ଏହି ହତା ଭିତରେ, ପ୍ରାସାଦର ବିଭିନ୍ନ କକ୍ଷରେ ଘୂରି ବୁଲୁଛନ୍ତି । ଏହାର ପୁରାତନ ଇତିହାସ ମନରେ ନାନା ଆଲୋଡ଼ନ ସୃଷ୍ଟି କରେ । ଦେହଟା ଶୀତେଇ ଉଠେ । ଏହି ସେ ହାମ୍ପଟନ୍ କୋର୍ଟ !

ଅଷ୍ଟମ ହେନେରୀଙ୍କ ରାଜତ୍ୱ ସମୟରେ ତତ୍କାଳୀନ ୟର୍କର ଆର୍କ-ବିଶପ୍ ଓ ଲର୍ଡ ଗ୍ରନସେଲର ଥମାସ୍ ଉଲସି ହାମ୍ପଟନ କୋର୍ଟର ପ୍ରଧାନ ପ୍ରାସାଦ ନିର୍ମାଣ କରିଥିଲେ ନିଜର ବସବାସ ପାଇଁ । ୧୫୧୫ ଖ୍ରୀଷ୍ଟାବ୍ଦରେ ଉଲସି କାର୍ଡିନାଲ୍ ହେଲେ । କିନ୍ତୁ ପରେ ପରେ ହେନେରୀଙ୍କ କରୁଣା ତାଙ୍କ ପ୍ରତି ଊଣା ଘଟିଲା ଏବଂ ସେ ତାଙ୍କର ସମସ୍ତ କ୍ଷମତା ଓ ସମ୍ପତ୍ତି ତାଙ୍କଠାରୁ ଛଡ଼ାଇ ନେଲେ । ଉଲସି କ୍ଷମତାରେ ରହିବାକୁ ବିକଳରେ ହାମ୍ପଟନ୍ କୋର୍ଟ ଓ ତହିଁରେ ଥିବା ଆସବାବ ଓ ଧନସମ୍ପତ୍ତି ହେନେରୀଙ୍କୁ ସମର୍ପଣ କଲେ । ମାତ୍ର ଫଳ କିଛି ହେଲାନି । ଉଲସିଙ୍କ ମୃତ୍ୟୁ ପରେ ହେନେରୀ ଏହି ପ୍ରାସାଦକୁ ପରିବର୍ଦ୍ଧିତ କରି ତାଙ୍କର ରାଣୀ-ମାନଙ୍କୁ ଏଥିରେ ବସବାସ କରିବାକୁ ଦେଲେ । ପରେ ରଜା ଓ୍ୱିଲିୟମ୍ ଓ ରାଣୀ ମେରୀ ସ୍ଥପତିବିତ୍ କ୍ରିଷ୍ଟୋଫର ରେନ୍‌ଙ୍କ ସାହାଯ୍ୟରେ ଏଥିରେ ବହୁତ ପରିବର୍ତ୍ତନ କଲେ ଏବଂ ଏଥି ସଂଲଗ୍ନ ଉଦ୍ୟାନର ଢାଞ୍ଚା ବଦଳାଇ ଦେଲେ । କାଳକ୍ରମେ ନାନା ପ୍ରକାରେ ଏହି ପ୍ରସାଦର ସୌଷ୍ଠବ ବୃଦ୍ଧି କରାଗଲା ଏବଂ ବହୁ ପ୍ରକାର କାରୁକାର୍ଯ୍ୟ ଓ ସାଜସଜ୍ଜା ଦ୍ୱାରା ଏହାର ରୂପ ଖୁବ୍ ମନୋରମ ହୋଇଉଠିଲା । ଏଥିରେ ବହୁ ପୁରାତନ ଚିତ୍ର ସୁସଜ୍ଜିତ ଭାବରେ ରଖାଯାଇଛି । ଏହା ଆଜି ରଜାରାଣୀମାନଙ୍କ ବାସଭବନ ହୋଇନାହିଁ । ଏହାକୁ ଦେଖିବାକୁ ଦର୍ଶକମାନଙ୍କୁ ସୁବିଧା ଦିଆଯାଇଛି । ଅବଶ୍ୟ ନିର୍ଦ୍ଧାରିତ ପ୍ରବେଶ ଶୁଳ୍କ ଆଦାୟ କରିବାରେ ତ୍ରୁଟି ଘଟୁନାହିଁ ।

ଉଇଣ୍ଡସର ରାଜପ୍ରାସାଦ କିନ୍ତୁ ଏହାଠାରୁ ଆହୁରି ସୁନ୍ଦର । ଏହାକୁ ଏକ ଦୁର୍ଗପରି ତିଆରି କରାଯାଇଛି । ପ୍ରତିରକ୍ଷାର ସୁବିଧା ଦୃଷ୍ଟିରୁ ଉଇଲିୟମ୍ ଦି କଙ୍କରର ଏହାର ଏପରି ପରିକଳ୍ପନା କରିଥିଲେ । ରାଜା ତୃତୀୟ ହେନେରୀ ଏହାକୁ ଆହୁରି ବ୍ୟାପକ କରି ପୁନର୍ବାର ନିର୍ମାଣ

କଲେ । ଏଥିରେ ବହୁ ଐତିହାସିକ ଘଟଣା ଘଟିଯାଇଛି । ଆଗେ ଇଂଲଣ୍ଡର ରାଜାମାନେ ଏଥିରେ ବାସ କରୁଥିଲେ ଏବଂ ରାଜା ଜନ୍‌ହନ୍ ବିଖ୍ୟାତ ମାଗ୍ନାକାର୍ଟାରେ ଦସ୍ତଖତ୍ କରିବାକୁ ମାଗ୍ନାକାର୍ଟା ଦ୍ୱୀପକୁ ଏହି ରାଜପ୍ରାସାଦରୁ ଯାତ୍ରା କରିଥିଲେ । ଏହିଠାରେ ପୃଥିବୀବିଖ୍ୟାତ ନାଟ୍ୟକାର ଉଇଲିୟମ୍ ସେକ୍‌ସପିଅର ମଞ୍ଚସ୍ଥ କରିଥିଲେ ତାଙ୍କର ପ୍ରସିଦ୍ଧ ନାଟକ "ଉଇଣ୍ଡସ୍‌ର ପ୍ରହୃଷ୍ଟା ରମଣୀଦଳ (Merry wives of Windsor) । ଆଜିକାଲି ମଧ୍ୟ ଏଠାରେ ବହୁ ଉତ୍ସବ ପାଳନ କରାଯାଏ । ଏହାର ରାଷ୍ଟ୍ରକୋଠରୀ ( State Apartment ) ଓ ସେଣ୍ଟଜର୍ଜ ଗୀର୍ଜା ଦେଖିବାକୁ ଅତି ଚମତ୍କାର ।

ହାମ୍ପଟନ୍ କୋର୍ଟ ଉଇଣ୍ଡସ୍‌ର ପ୍ରାସାଦ ଛଡ଼ା ଲଣ୍ଡନରେ ଓ ତାର ଆଖପାଖ ଅଞ୍ଚଳରେ ଅନ୍ୟାନ୍ୟ ବହୁ ବିଖ୍ୟାତ ପ୍ରାସାଦ ଓ ଭବନ ଅଛି ଯାହାକି ବର୍ତ୍ତମାନ ଦର୍ଶକମାନଙ୍କ ପାଇଁ ଉନ୍ମୁକ୍ତ କିନ୍ତୁ ବିନା ଶୁଳ୍କରେ ନୁହେଁ । ସବୁଠାରେ ଟିକେଟ୍ ଓ ସବୁଠାରେ ପରିଦର୍ଶନ ପାଇଁ ନିର୍ଦ୍ଦିଷ୍ଟ ସମୟ ଅଛି । ମୁଁ ଚିଜ୍‌ଉଇକ୍ ଭବନ (Chiswick House) ଓ କ୍ୟୁ ପ୍ରାସାଦ Kew palace ମଧ୍ୟ ଦେଖିବାକୁ ଯାଇଥିଲି । ସେସବୁର କାରୁକାର୍ଯ୍ୟ ବେଶ୍ ଚମତ୍କାର ମନେହେଲା । ଚମତ୍କାର ହେଉ ନ ହେଉ ସବୁଠାରେ ଦର୍ଶକଙ୍କ ଭିଡ଼ ଖୁବ୍ ବେଶୀ । ବୋଧହୁଏ ମୋ ପରି ଅଭିରାଙ୍କର ଅଭାବ ନାହିଁ । ବିଲାତବାସୀ ଏହି ପ୍ରବେଶିକା ଶୁଳ୍କରୁ ବେଶ୍ କିଛି ରୋଜଗାର କରୁଥିବେ ଯାହାଦ୍ୱାରା କି ସେମାନେ ଏହି ବିରାଟ ବିରାଟ ପ୍ରାସାଦ ଓ ଭବନର ରକ୍ଷଣାବେକ୍ଷଣ ଓ ସାଜସଜ୍ଜାର ଖର୍ଚ୍ଚ ତୁଲେଇ ପାରୁଛନ୍ତି ।

ବିଲାତର ବିଭିନ୍ନ ମିଉଜିୟମ ଆଦିରେ ମଧ୍ୟ ଏହି ବିଧି । ଟିକେଟ୍ କିଣ, ଭିତରେ ପଶ । ଗ୍ରେଟ୍ ରସେଲ ଷ୍ଟ୍ରିଟ୍‌ର ବ୍ରିଟିଶ ମିଉଜିୟମ୍‌କୁ ଯାଇଥିଲି । ସେଇଟା ଜାତୀୟ ଗ୍ରନ୍ଥାଗାର, ଇତିହାସ, ପ୍ରତ୍ନତତ୍ତ୍ୱ, ଚିତ୍ରକଳା ପ୍ରଭୃତିର ଯାଦୁଘର ରୂପେ ବେଶ୍ ଖ୍ୟାତି ଅର୍ଜନ କରିଛି । ଏହା ପୃଥିବୀର ସର୍ବବୃହତ୍ ଯାଦୁଘର ଏବଂ ଏଠାରେ ପଢ଼ାପଢ଼ି ଓ ଗବେଷଣା କରିବାର ବିଶେଷ ସୁବିଧା ରହିଛି । ଟେଟ୍ ଗ୍ୟାଲେରିରେ ଥିବା ଷ୍ଟବ୍‌ବସ୍‌ଙ୍କ ଅଙ୍କିତ ଅଶ୍ୱଚିତ୍ର ଓ ରିଚ୍ଚାର୍ଡ ଉଇଲସନ୍‌ଙ୍କ ଅଙ୍କିତ ବିଭିନ୍ନ ରମଣୀୟ ସ୍ଥାନର

ଚିତ୍ର ବେଶ ମନୋମୁଗ୍ଧକର । ଆଜିମଧ୍ୟ ହୋମ୍, କନଷ୍ଟେବଲ୍, ବ୍ଲେକ୍ ଆଦି ବିଖ୍ୟାତ ଚିତ୍ରଶିଳ୍ପୀଙ୍କ ଅଙ୍କିତ ବହୁ ଚିତ୍ର ଏଠାରେ ସୁସଜ୍ଜିତ ଭାବରେ ରଖାଯାଇଛି । ଅଳ୍ପ ସମୟ ଭିତରେ କେତେ ବା କିଏ ଦେଖିବ ! କେବଳ ଚିତ୍ର ନୁହେଁ ଅନ୍ୟାନ୍ୟ ବହୁ ଦର୍ଶନୀୟ, ରମଣୀୟ ଜିନିଷସବୁ ଏଠାରେ ଅଛି । ଦିନେ ବା ଦି ଦିନରେ ସେମାନଙ୍କ ସମ୍ବନ୍ଧରେ ଗବେଷଣା କରିବା ତ ଦୂରର କଥା ସବୁତକ ବି ଭଲକରି ଦେଖି ହେବନି । ଖାଲି ଘୂରିଆଡେ ଆଖି ପକେଇ ଦେଲି । କାରଣ ବିଲାତରେ କିଛି କମ୍ ମିଉଜିୟମ୍ ନାହିଁ । ଗୋଟିଏ ଜାଗାରେ ଏତେ ସମୟ ଦେଲେ ଅନ୍ୟସବୁ ଦେଖିହେବ କିମିତି ?

ଟ୍ରାଫଲଗାର ସ୍କୋୟାରର ଜାତୀୟ ଚିତ୍ରଦୂଶ (National Gallery) ରେ ସବୁ ଶ୍ରେଣୀର ଚିତ୍ରକରମାନଙ୍କର ସୁପ୍ରସିଦ୍ଧ ଛବିସବୁ ଦେଖିବାକୁ ମିଳେ । ଏହି ଟ୍ରାଫଲଗାର ସ୍କୋୟାରର ଜାତୀୟ ପ୍ରତିମୂର୍ତ୍ତି କଳାଭବନ (National Potrait Gallery) ମଧ୍ୟ ଆଉ ଏକ ଦର୍ଶନୀୟ ସ୍ଥାନ । ଏଠାରେ ବିଲାତ ଦେଶର ଇତିହାସରେ ମୁଖ୍ୟ ଭୂମିକା ଗ୍ରହଣ କରିଥିବା ବହୁ ବିଶିଷ୍ଟ ବିଶିଷ୍ଟ ବ୍ୟକ୍ତିଙ୍କର ପ୍ରତିମୂର୍ତ୍ତି ରଖାଯାଇଛି । ଭିକ୍ଟୋରିଆ ଓ ଆଲବର୍ଟ ମ୍ୟୁଜିୟମ (Victoria and Albert Museum) ବିଲାତର ଆଉ ଏକ ବିଖ୍ୟାତ ଯାଦୁଘର । ଏଠାରେ ଅନ୍ୟାନ୍ୟ ଜିନିଷ ମଧ୍ୟରେ ବିଭିନ୍ନ ଯୁଗର ବହୁ ବିଖ୍ୟାତ ଚିତ୍ର ରଖାଯାଇଛି । ଏଠାରେ କନେଷ୍ଟେବଲ୍‌ଙ୍କ ଅଙ୍କିତ ବହୁତ ପ୍ରସିଦ୍ଧ ଚିତ୍ର ଏବଂ ରାଫେଲଙ୍କ ବ୍ୟଙ୍ଗ ଚିତ୍ର ସବୁ (Raphel Cartoons) ଦେଖିବାକୁ ମିଳେ ।

ଲଣ୍ଡନଠା ଯାକ ଖାଲି ଯାଦୁ ମାନେ ଲଣ୍ଡନ ଓ ତା'ର । ଆଖପାଖ ଅଞ୍ଚଳରେ ବହୁତ ଯାଦୁଘର ଓ ଚିତ୍ରପୁଶ ଅଛି । ବ୍ରେଣ୍ଟ୍‌ଫୋର୍ଡ଼ ହାଇଷ୍ଟ୍ରିଟ୍‌ରେ ଅଛି ପିଆନୋ ଓ ସଙ୍ଗୀତ ଯନ୍ତ୍ରର ଯାଦୁଘର ( British Piano and Musical Museum ) । ଦକ୍ଷିଣ କେନ୍‌ସିଙ୍ଗ୍‌ଟନରେ ଭୂତତ୍ତ୍ୱ ଯାଦୁଘର (Geological museum) ଅବସ୍ଥିତ । ଏଠାରେ ବହୁ ଭୌଗୋଳିକ ଓ ଖଣିଜ ପଦାର୍ଥର ନମୁନା ଦେଖିବାକୁ ମିଳେ । ସେହି ଦକ୍ଷିଣ କେନ୍‌ସିଙ୍ଗ୍‌ଟନରେ ଏକ ବିଜ୍ଞାନ ଯାଦୁଘର (Science museum)

ଅଛି । ବିଜ୍ଞାନ ସାହାଯ୍ୟରେ କପରି ବିଭିନ୍ନ ଶିଳ୍ପର ଉନ୍ନତି କରାଯାଇଛି ସେ ସମ୍ବନ୍ଧରେ ଏହି ଯାଦୁଘରରୁ ବେଶ୍ ଧାରଣା କରିହେବ । ଏଠାରେ ବହୁ ବୈଜ୍ଞାନିକ ଉଦ୍ଭାବନର କାର୍ଯ୍ୟକାରୀ ନମୁନା (Working Models) ତିଆରି କରି ରଖାଯାଇଛି । ଗ୍ରୀନ୍‌ଓ୍ୱିଚ୍‌ର ନିରୀକ୍ଷଣ କେନ୍ଦ୍ର (Observatory) ଆଉ ଏକ ଦର୍ଶନୀୟ ସ୍ଥାନ । ଏହାରି ପାଖରେ ଗ୍ରୀନ୍‌ଓ୍ୱିଚ୍ ଦ୍ରାଘିମାର ଅବସ୍ଥିତି, ଯାହା ସାହାଯ୍ୟରେ ଆମେ ବିଭିନ୍ନ ସ୍ଥାନର ସମୟ ନିରୂପଣ କରୁ । ସେଠାକୁ ଯିବାରେ ମୋର ମନ ବେଶ୍ ଖୁସି ହୋଇଗଲା । ପିଲାଦିନର ଭୂଗୋଳ ପାଠ ମନେ ପଡ଼ିଲା । Go to the west Greenwich time is the best, Go to the east Greenwich time is the least । ଗ୍ରୀନଓ୍ୱିଚ୍‌ର ଯେତେ ପଶ୍ଚିମକୁ ଯିବ ସେହି ଅନୁସାରେ ଗ୍ରୀନ୍‌ଓ୍ୱିଚ୍‌ରେ ସମୟ ସେତେ ବେଶୀ ହେବ । ଗ୍ରୀନ୍‌ଓ୍ୱିଚ୍‌ର ଯେତେ ପୂର୍ବକୁ ଯିବ ସେହି ଅନୁସାରେ ଗ୍ରୀନ୍‌ଓ୍ୱିଚ୍‌ର ସମୟ ସେତିକି କମ୍ ହେବ । ବାଃ ! ଏହି ତେବେ ସେ ଗ୍ରୀନ୍‌ଓ୍ୱିଚ୍ !

ଏହି ଯାଦୁଘରସବୁ ପରିକ୍ରମା କଲାବେଳେ ସମୟ ସମୟରେ ସନ୍ଧ୍ୟାରେ ବିଭିନ୍ନ ନୃତ୍ୟ-ସଙ୍ଗୀତ ଆଡ୍‌ଡ଼ା ଆଡ଼େ ଯାଏ । କ୍ରମେ ଲଣ୍ଡନର ରାସ୍ତାଘାଟ ସହିତ ବେଶ୍ ପରିଚିତ ହୋଇ ଯାଇଥାଏ । ଆଉ ଡର ଭୟ ନାହିଁ । ଆଉ ବିଶେଷ ପଚରା ଉଚରା ନାହିଁ । ଅସୁବିଧା ସୁବିଧାକୁ ଖାତିରି ନକରି ଯେତେବେଳେ ଯୁଆଡ଼େ ସମ୍ଭବ ଯାଉଥାଏ । ପଢ଼ାପଢ଼ିକୁ ଛାଡ଼ିଦେଲେ ଖାଲି ଗୋଟିଏ କାମ, ଗୋଟିଏ ଚିନ୍ତା କୁଆଡ଼େ, ବୁଲିବା । ସ୍ୱଦେଶକୁ ବାହୁଡ଼ିବାର ବେଳ ଯେମିତି ପାଖେଇ ଆସୁଥାଏ ମୋର ବୁଲାବୁଲି କରିବାର ମୋହ ସେତିକି ବଢ଼ିଯାଇଥାଏ, ମଣିଷର ପରମାୟୁ ସରିଆସିଲା ବେଳକୁ ତା'ର ସଂସାର ପ୍ରତି ମୋହ, ଜୀବନ ଉପଭୋଗ କରିବାର ବ୍ୟାକୁଳତା ଯେମିତି ଉଦ୍‌ବେଳିତ ହୋଇଉଠେ । କବି ରାଧାନାଥ ରାଏ ତୁଳସୀ ସ୍ତବକରେ ଲେଖିଚନ୍ତି ଏଇ ସୁଖ-ବିଳାସ, ଆହାର-ବିହାରର ବ୍ୟାକୁଳତା ସମ୍ବନ୍ଧରେ । "ଦେଖ, ଦେଖ, ଅଗ୍ରତେ ସରସୀ ଜଳେ; ପଡ଼ି ମଣ୍ଡୂକ କ୍ଷୁରର ଅହି କବଳେ; ବିକଳେ ରାବୁ ରାବୁ ଊର୍ଦ୍ଧ୍ୱେ ଉଡ୍‌ଡୀନ; ଉହୁଙ୍କ ଶିଶୁ କଙ୍କି ଦେଲା ଗିଳଣ ।" କ'ଣ ହେଲା !

ସାପ ତ ବେଙ୍ଗକୁ ଧରିଚି । ଅଧା ଗିଳିଲଣି । ଅତିଶୀଘ୍ର ସେ ପୂରା ଉଦରସ୍ଥ ହୋଇ ସାପର ପେଟ ଭିତରେ ହଜମ ହୋଇଯିବ ! ଏପରି ଦସ୍ତୁମାସ୍ତୁ ଅବସ୍ଥାରେ ତା'ର ଖାଦ୍ୟର କି ଦରକାର ? କିନ୍ତୁ ସେ କଲା କ'ଣ ! ଉଡ଼ୁଙ୍କି ଶିଶୁ କଙ୍କିକୁ ଗିଳିଦେଲା ! ବୋଧହୁଏ ପ୍ରାଣ ଧାରଣ ପାଇଁ··· କିନ୍ତୁ ପ୍ରାଣ କାହିଁ ? ସେ ତ ଯିବା ଉପରେ । ଆହା-ହା ! ବିଚରା ବେଙ୍ଗ ! ମୋ ଢଙ୍ଗ ଅନେକଙ୍କ । ଏହି ବିଚିତ୍ର ବେଙ୍ଗ ଅବସ୍ଥାକୁ ଚାଲି ଆସିଥାଏ ।

ବିଲାତରେ ସଙ୍ଗୀତ ଆସର ଖୁବ୍ ବହୁତ, ବିଶେଷତଃ ମିଳିତ ଯନ୍ତ୍ରସଙ୍ଗୀତ ଯାହାକୁ ଇଂରାଜୀରେ କନସର୍ଟ ବୋଲି କହନ୍ତି । ଥେମସ୍ ନଦୀ କୂଳରେ ଅବସ୍ଥିତ ଫେଷ୍ଟିଭାଲ ହଲ । ଏହା ସଙ୍ଗୀତ ଆଡ୍ଡା ଭିତରେ ପ୍ରଧାନ । ଏଠାରେ ସାନ୍ଧ୍ୟ ବିହାର ବେଶ୍ ଆମୋଦଦାୟକ ଲାଗେ । ବହୁ ପ୍ରସିଦ୍ଧ ଯନ୍ତ୍ରବାଦକ, ସଙ୍ଗୀତ ଶିଳ୍ପୀ ଏଠାକାର ସଙ୍ଗୀତ ଆସରରେ ଯୋଗ ଦିଅନ୍ତି । ମୋତେ ସେ ଯନ୍ତ୍ରସଙ୍ଗୀତ ବିଶେଷ ଭଲ ଲାଗେନା । କିନ୍ତୁ ସେଠାକାର ମୂର୍ଚ୍ଛନା-ମଧୁର ପରିବେଶ ଏବଂ ଏହା ପାଖରେ ଥିବା ଭୋଜନାଳୟରେ ପାନାହାର ବେଶ୍ ଉପଭୋଗ୍ୟ ମନେ ହେଉଥାଏ ।

ଥେମସ୍ ନଦୀର ରାତ୍ରିକାଳୀନ ଦୃଶ୍ୟ ବେଶ୍ ମନୋରମ । ତା'ର କୂଳରେ କେତେ ପ୍ରକାର ଆଲୁଅ ଜଳୁଥାଏ । କେତେ ଯନ୍ତ୍ରଚାଳିତ ନୌକା ତହିଁରେ ଯା'ଆସ କରୁଥାନ୍ତି । ନଦୀ କୂଳରେ ଥିବା ବିରାଟ ଅଟ୍ଟାଳିକାଗୁଡ଼ିକ ଆଲୋକମାଳାରେ ଉଦ୍‌ଭାସିତ ହୋଇ ଉଠନ୍ତି । ତାହାର ପ୍ରତିବିମ୍ବ ଜଳ ଉପରେ ପଡ଼ି ଏକ ଐନ୍ଦ୍ରଜାଲିକ ବାତାବରଣ ସୃଷ୍ଟି କରେ । ଦିନବେଳା ଥେମସ୍ ନଦୀର ରୂପ ସେତେ ସୁନ୍ଦର ଦିଶେନା । ତାର ମଇଳା, ଗୋଳିଆ ପାଣିରେ ଡଙ୍ଗାସବୁ ପଲ୍ଲ ପଲ୍ଲ, ସଲ ସଲ ହେଉଥାନ୍ତି । କିନ୍ତୁ ରାତିରେ ସେ ଧରେ ଏକ ମନମତାଣିଆ ବେଶ । ଏକ ବିଳାସିନୀ ରମଣୀ ପରି ନାନା କେଳି କୌତୁକରେ ମାତିଉଠେ । ନାନା କେଳି କୌତୁକରେ ବି ମାତିଉଠନ୍ତି ଲଣ୍ଡନବାସୀ । ଏହାର କୂଳରେ ଥିବା ବିଭିନ୍ନ କ୍ଲବ୍, ଆଡ୍ଡା ଓ ନୃତ୍ୟ ସଙ୍ଗୀତ ଆସର

ମାନଙ୍କରେ । ଯେ କେତେ ଥର ସନ୍ଧ୍ୟାରେ ଏହି ଥେମସ୍ ନଦୀ କୂଳରେ ବୁଲିଛି । ବେଶ୍ ଉପଭୋଗ କରିଛି ତାର ମନୋରମ ପରିବେଶ ।

ରୟାଲ ଆଲବର୍ଟ ହଲ ଆଜି ଏକ ବିଖ୍ୟାତ ସଙ୍ଗୀତ କେନ୍ଦ୍ର । ଏହା ବି ଖୁବ୍ ପୁରାତନ । ଏଥିରେ ଖରାଦିନେ ପ୍ରତ୍ୟେକ ସନ୍ଧ୍ୟାରେ ଯନ୍ତ୍ର ସଙ୍ଗୀତ ( Concert ) ର ଆସର ବସେ । ଓ୍ୱିଗ୍‌ମୋର ( Wigmore ) ହଲରେ ବହୁ ସଙ୍ଗୀତ ଶିଳ୍ପୀ ତାଙ୍କର କଳାକାର ଜୀବନ ଆରମ୍ଭ କରନ୍ତି । ତେଣୁ ସଙ୍ଗୀତକଳାର ଭବିଷ୍ୟତ ତାରକାମାନଙ୍କୁ ଏଠି ଦେଖିବାକୁ ମିଳେ । କୋଭେଣ୍ଟ ଗାର୍ଡ଼େନ ( Covent garden ) ର ରୟାଲ ଅପେରା ହାଉସ୍ ତାର ବାଲେଟ ନୃତ୍ୟ ( Ballet ) ଓ ଗୀତି ନାଟ୍ୟ ( opera ) ପାଇଁ ବିଶ୍ୱ ବିଖ୍ୟାତ । ଏଥିରେ ପୃଥିବୀର ବିଭିନ୍ନ ଅଞ୍ଚଳରୁ ପ୍ରଖ୍ୟାତ ଶିଳ୍ପୀସବୁ ଆସି ଅଂଶ ଗ୍ରହଣ କରନ୍ତି । ସାଡ଼ଲରସ୍ ଓ୍ୱେଲସ ( Sadlers Wells ) ଥିଏଟରରେ ବି ବହୁ ନୃତ୍ୟ-ନାଟକ ପରିବେଷଣ କରାଯାଏ ।

ଲଣ୍ଡନରେ ଯୁଆଡ଼େ ଯେମିତି ବୁଲେ ବ୍ରିଟିଶ୍ ରାଣୀଙ୍କ ବାସସ୍ଥଳୀ ବକିଂହାମ୍ ରାଜପ୍ରାସାଦ ବାଟ ଦେଇ ଯାଉଥିଲେ ତା' ଉପରେ ଟିକିଏ ଆଖି ପକାଇବାକୁ ଭୁଲେନି । ବହୁବାର ସେହି ବିଖ୍ୟାତ ରାଜପ୍ରାସାଦର ସମ୍ମୁଖରେ ଓ ତାର ଆଖପାଖ ଅଞ୍ଚଳରେ ବୁଲାବୁଲି କରିଛି । ବ୍ରିଟିଶ୍ ଜାତି ବଡ଼ ରାଜଭକ୍ତ । ଗଣତନ୍ତ୍ରକୁ ଜାବୁଡ଼ି ଧରିଥିଲେ ବି ରାଜତନ୍ତ୍ରକୁ ପୂରା ଛାଡ଼ିପାରିନାହାନ୍ତି । ରାଜାରାଣୀଙ୍କ ପ୍ରତି ସେମାନଙ୍କର ଅଚଳା ଭକ୍ତି, ଅସୀମ ମମତା । ସେହି ରାଜପ୍ରାସାଦକୁ ପରିକ୍ରମା କଲାବେଳେ ମୋ ମନଟା ଯେମିତି ରାଜକୀୟ ହୋଇଉଠେ । ଭିତରକୁ ତ ପ୍ରବେଶ ନିଷିଦ୍ଧ । ବାହାରୁ ଯାହା ଟିକିଏ ଦେଖିବାର କଥା । ଟିକିଏ ଦୂରେ ବେଶ୍ ଥୋଡ଼ାଏ ମନ ପୂରାଇ ଦେଖିଛି ସେହି ରାଜପ୍ରାସାଦ ଓ ତାହାର ପରିବେଶକୁ । ମନ ହେଉଥାଏ ତା' ଭିତରକୁ ଯାଇ ଦେଖିବି କେମିତି ରାଣୀ ଏଲିଜାବେଥ୍ ତାଙ୍କ ସ୍ୱାମୀ ଓ ସନ୍ତାନ ସନ୍ତତିଙ୍କୁ ନେଇ ଚଳୁଛନ୍ତି । ଚଳୁଥିବେ ଆଉ କମିତ ! ଯେମିତ ଜଣେ ମାନ୍ୟାଗଣ୍ୟା ସ୍ତ୍ରୀଲୋକ ଚଳନ୍ତି ସେମିତି ଚଳୁଥିବେ, କି ରୁଟିନ ହେଉଥିବେ । ତାଙ୍କର ପ୍ରତ୍ୟେକ ଘଣ୍ଟା ପ୍ରତ୍ୟେକ ମିନଟ୍‌ର କାର୍ଯ୍ୟକ୍ରମ ତାଙ୍କ କର୍ମଚାରୀମାନଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଥିବ ।

ରାଜା ହୁଅନ୍ତୁ, ରାଣୀ ହୁଅନ୍ତୁ ମଣିଷ ତ ! ମଣିଷ ଯେତେ ବଡ଼ ହେଲେ ବ ମଣିଷ ! ମୋର ପିଲାଦିନ କଥା ମନେ ପଡ଼ି ହସ ଲାଗିଲା । ମୁଁ ନିହାତି ଶିଶୁ ଥିଲାବେଳେ ଯେବେ ରାଜାରାଣୀଙ୍କ କଥା ଶୁଣେ ମନେ ମନେ ଭାବେ, ଆମେ ଗୁଡ଼ଜଳର ଭାତ ଖାଉଚୁ ରାଜା ସୁନାର ଭାତ ଖାଉଥିବେ ! ଆମେ ପାଦରେ ଚାଲୁଚୁ ସେ ବୋଧହୁଏ ମୁଣ୍ଡରେ ଚାଲୁଥିବେ କି ଆଉ କେଉଁଥିରେ ଚାଲୁଥିବେ । ରାଜା ରାଣୀଙ୍କର ଚାଲିଚଳଣ, ଖିଆପିଆ ସବୁ ଅସ୍ୱାଭାବିକ ହେଉଥିବ ! ସେମିତି ନ ହେଲେ ବି ବିଲାତ ରାଣୀଙ୍କ ଅବସ୍ଥା କିଛିଟା ଅସ୍ୱାଭାବିକ । କାରଣ ବ୍ରିଟିଶ ରାଜା ବା ରାଣୀଙ୍କର ପଦ ଗୌରବ କି ପଦ କ୍ଷମତା ନାହିଁ । ବିଲାତ ଶାସନରେ ପାର୍ଲିଆମେଣ୍ଟ ଓ ମନ୍ତ୍ରୀମଣ୍ଡଳ ସର୍ବେସର୍ବା । ଏ ତାଙ୍କ ଇଙ୍ଗିତରେ କେବଳ ଯନ୍ତ୍ରଚାଳିତ କଣ୍ଢେଇ ପରି କାମ କାଟୁଛନ୍ତି । ନାହିଁ ବ୍ୟକ୍ତିଗତ ସ୍ୱାଧୀନତା, ନାହିଁ ଶାସନଗତ ଅଧିକାର । ଶାସନର ତୁଙ୍ଗ ଶିଖରରେ ରହିଚନ୍ତି ଏକ ଅଳଙ୍କାର ପରି । ବରଂ ବାଣ୍ଡରେ ସାଧାରଣ ଲୋକଙ୍କ ପରି ବୁଲି ଚକୋଲେଟ୍ ଖାଇ ପାରିବେ ନି କି ଆମ ପରି ଯେଉଁଠି ଇଚ୍ଛା ସେଠି ଚିନାବାଦାମ ଚୋବେଇ ପାରିବେନି ।

ରାଜପ୍ରାସାଦର ଭିତରର ସାଜସଜ୍ଜା କେଉଁଠି ଖୁବ୍ ଗାମ୍ଭୀର୍ଯ୍ୟଭରା ଓ ଆଡ଼ମ୍ବରପୂର୍ଣ୍ଣ । ବାହାର ପରିବେଶ ବି ବେଶ୍ ଚିତ୍ତାକର୍ଷକ । ପ୍ରାସାଦର ପ୍ରବେଶ ଦ୍ୱାର ପାଖରେ ରଖାଯାଇଚି ରାଣୀ ଭିକ୍ଟୋରିଆଙ୍କର ପ୍ରତିମୂର୍ତ୍ତି । ସେ ଯେ ଥିଲେ ପ୍ରକୃତ ରାଣୀ । ଅପର୍ଯ୍ୟାପ୍ତ କ୍ଷମତା, ଅସୀମ ପ୍ରତିପତ୍ତି । ସେତେବେଳେ ମହାରାଣୀ ଭିକ୍ଟୋରିଆଙ୍କ ନାମ ଭାରତର ଘରେ ଘରେ ପରିଚିତ ଥିଲା । ପ୍ରତିମୂର୍ତ୍ତି ହେଲେ ବି ସେ ଯେମିତି ସଜାଗ ପ୍ରହରୀ ପରି ରାଜପ୍ରାସାଦ ସମ୍ମୁଖରେ ରହିଚନ୍ତି । ସେ ହୁଏତ ଆଜି ତାଙ୍କ ସ୍ଥାନ ଯେ ଅଧିକାର କରିଛନ୍ତି ତାଙ୍କ ଦଶା ଦୁର୍ଦ୍ଦଶା ଦେଖି ଭ୍ରୂକୁଞ୍ଚନ କରୁଥିବେ ।

ଏହି ରାଜପ୍ରାସାଦର ପ୍ରହରୀ ବଦଳ (Changing of the guards)ର ଦୃଶ୍ୟ ଖୁବ୍ ମନୋରମ । ଏହା ସାଧାରଣତଃ ଦିନ ଘ ୧୧-୩୦ରେ ଅନୁଷ୍ଠିତ ହୁଏ । ଏହାକୁ ଦେଖିବାକୁ ବହୁତ ଲୋକ ରୁଣ୍ଡ ହୁଅନ୍ତି । ରାଣୀ ଭିତରେ ଥିଲେ ପ୍ରାସାଦ ଉପରେ ତାଙ୍କ ପତାକା

ଉଡୁଥାଏ । ବାହାରୁ କିନ୍ତୁ ଏ କୋଠାଟା ସେତେ ସୁନ୍ଦର ଦିଶେନି । ଗୋଟାଏ ଯେମିତି ବଡ଼ ଅଫିସ ଘର । ଗେଟ୍ ପାଖରେ ସବୁବେଳେ ବହୁତ ଲୋକ ରୁଣ୍ଡ ହୁଅନ୍ତି ରାଜପ୍ରାସାଦ ଦେଖିବାକୁ, ରାଣୀ ଯଦି ବାହାରନ୍ତି ବାହାରବେ ତାଙ୍କ ଉପରେ ଟିକିଏ ଦୃଷ୍ଟି ପକେଇବାକୁ ଖରା, ବର୍ଷା, ଶୀତ ସବୁଦିନେ ଲୋକଙ୍କର ଏଠି ଭିଡ । ବିଲାତବାସୀ ତାଙ୍କ ରାଜା ଓ ରାଣୀଙ୍କୁ ଖୁବ୍ ଭଲ ପାଆନ୍ତି, ଖୁବ୍ ସମ୍ମାନ ଦେଖାନ୍ତି । ତାଙ୍କର ଓ ତାଙ୍କ ପରିବାରର ଭଲମନ୍ଦ ଖବର ରଖନ୍ତି ଏବଂ ସେ ସମ୍ବନ୍ଧରେ ନିଜ ନିଜ ଭିତରେ ବହୁ ଆଳାପ ଆଲୋଚନା କରନ୍ତି । ସେମାନଙ୍କର କିଛି ଦୁଃଖ ବା ରୋଗ ହେଲେ ଏମାନେ ଆଖି ଛଳ ଛଳ କରିପକାନ୍ତି । ରାଜତନ୍ତ୍ର ବିଲାତବାସୀଙ୍କ ରକ୍ତଗତ । ସେଇଟା ଏ ଦେଶରୁ ଉଠି ପାରିବନି । ଆଗରୁ ଯେତେ ଚେଷ୍ଟା ହୋଇଚି ରାଜତନ୍ତ୍ରକୁ ବିନାଶ କରିବାକୁ ସେ ବିଫଳ ହୋଇଚି । ପ୍ରବଳ ପ୍ରତାପୀ କ୍ରମୱେଲ ରାଜା ପ୍ରଥମ ଚାର୍ଲସ୍‌ଙ୍କ ମୁଣ୍ଡକାଟ କରାଇ ବିଲାତରୁ ରାଜତନ୍ତ୍ର ଲୋପ କରିବାକୁ ଚେଷ୍ଟା କଲେ କିନ୍ତୁ ପାରିଲେନି । ପୁଣି ବିଲାତବାସୀ ଦ୍ୱିତୀୟ ଚାର୍ଲସଙ୍କୁ ନିମନ୍ତ୍ରଣ କରି ଆଣି ରାଜମୁକୁଟ ଅର୍ପଣ କଲେ ।

ରାଜପ୍ରାସାଦ ଭିତରକୁ ଯେଉଁମାନେ ଯାଉଥାନ୍ତି ସେମାନେ ତାଙ୍କ ବେଶଭୂଷାରେ ଖୁବ୍ ସାବଧାନ ଓ ଆଦବ୍‌କାଏଦା ପ୍ରତି ଖୁବ୍ ସଜାଗ ଥିଲାପରି ଜଣା ପଡୁଥାନ୍ତି । ହେବେନି ! ଜାଣି ତ ବିଲାତବାସୀ ଖୁବ୍ ଆଦବ୍‌କାଏଦା ପ୍ରିୟ । ପୁଣି ଦେଶର ସର୍ବୋଚ୍ଚକର୍ତ୍ତ୍ରୀ ରାଣୀଙ୍କ ଉଆସକୁ ଯାଉଚନ୍ତି । ମତେ ଟିକିଏ ହସ ମାଡ଼ିଲା । ରାଣୀ ନା ଚନ୍ଦ୍ରକାଣୀ । ଆଉ ତ ପୂର୍ବର କ୍ଷମତା ନାହିଁ । ଖାଲି ଗୋଟାଏ ସଖୀ-କୁଣ୍ଢେଇ ପରି ଆଡ଼ମ୍ବରପୂର୍ଣ୍ଣ ପରିବେଶ ଭିତରେ ଦିନ କାଟୁଛନ୍ତି । ବିଲାତରେ ବହୁତ ଯାଦୁଘର ଅଛି । ଏ ବି ଗୋଟାଏ ଯାଦୁଘର ନା ଚିଡ଼ିଆଖାନା ।

ହଁ, ଆଦବ୍‌କାଏଦା ! ବିଲାତବାସୀଙ୍କର ଆଦବ୍‌କାଏଦା ମୋହ ଅତି ଉଗ୍ର । ସବୁ କଥାରେ ସବୁ କାମରେ ସେମାନଙ୍କର ଗୋଟାଏ ଆବରଣ, ନିୟମ, ଶୃଙ୍ଖଳା । କୌଣସି କଥାଟା ସ୍ପଷ୍ଟ କହିବାକୁ ଏମାନଙ୍କର ମହାକୁଣ୍ଠା । ଖୁବ୍ ରକ୍ଷଣଶୀଳ ବି ଜାତିଟା । ପୁରାତନ ରୀତିନୀତି, କୋଠାବାଡ଼ି ଏପରିକି ଭଙ୍ଗାଗାଡ଼ିକୁ ସାଇତି ରଖନ୍ତି ଗଣ୍ଠିଧନ ପରି ।

କୌଣସି କଥା ଗଡ଼ ଗଡ଼ କରି କହିଯିବେ ନି, କି ଗୁଡ଼ାଏ ଗପିବେ ନି। ମନର ଭାବ ପ୍ରକାଶ କରନ୍ତି ଚପା ଗଳାରେ ଥଙ୍ଗେଇ ଥଙ୍ଗେଇ ଯେମିତି ଇଙ୍ଲିଶ ଭାଷା ଆସୁନି। ଇଂରେଜ ଲୋକଙ୍କୁ ଇଙ୍ଗ୍ଲିଶ୍ ଆସୁନି ? ନା ସେଇଟା ତାଙ୍କ ପ୍ରକୃତି। ଚୁପା ପ୍ରକୃତି। ଏଇଯେ ଚୁପା ପ୍ରକୃତି, ଚୁପା ପ୍ରବୃତ୍ତି ଏମାନଙ୍କର, ସେ ଯେ କେବେ ହୁଗୁଳି ଯାଇ ଉଗ୍ର ଭାବରେ ଆତ୍ମପ୍ରକାଶ ନ କରିବ ତା' କିଏ କହିବ ? ସେ ଉଗ୍ରଭାବର ତ ଲକ୍ଷଣ ଆଜିକାଲିର ନୂତନ ବଂଶଧରଠାରେ ଦେଖାଦେଲାଣି। ବାସ୍ତବିକ୍ ଏବର ବିଲାତି ବାଳକବାଳିକା, ଯୁବକଯୁବତୀ ଟିକିଏ ଉଗ୍ର ହୋଇ ଉଠିଛନ୍ତି। ହେବା ସ୍ୱାଭାବିକ। କାରଣ ଆଗର ସାମ୍ରାଜ୍ୟ ବା ପ୍ରତିପତ୍ତି ତ ନାହିଁ। ତେଣୁ ଦେଖା ଦେଇଛି ହତାଶା, ମାନସିକ ଦ୍ୱନ୍ଦ୍ୱ, ଉଗ୍ର ବେଆଡ଼ା ଭାବ, ଏକ ନୀରବ ପ୍ରତିବାଦ, ଏକ ଅଘୋଷିତ ବିପ୍ଳବ।

ଦିନେ ଏହି ବକିଂହାମ୍ ରାଜପ୍ରାସାଦ ପାଖରେ ଘୂରି ବୁଲୁଥାଏ ଏହା ସମ୍ବନ୍ଧରେ ନାନା ତଥ୍ୟ ସଂଗ୍ରହ କରିବାକୁ। ସତେ ଯେମିତି ଜଣେ ଗବେଷକ, କି ଉଦ୍ଭାବକ ଏକ ମହାନ୍ ସତ୍ୟ ଉଦ୍‌ଘାଟନରେ ବ୍ୟସ୍ତ। କିନ୍ତୁ ପ୍ରକୃତରେ ମୁଁ ସେଠି ଯେମିତି ଲୁଙ୍ଗୁପୁଙ୍ଗୁ ହେଉଥାଏ ବ୍ରିଟିଶ୍ ଗୁଇନ୍ଦା ମୋତେ ଚୋର ବୋଲି ସନ୍ଦେହ କରିବା ସ୍ୱାଭାବିକ। ବ୍ରିଟିଶ ପୋଲିସ ଭାରି ଚତୁର, ଭାରି ପାରଙ୍ଗମ। ବ୍ରିଟିଶ ଚୋର ବି କମ ଚାଲାକ୍ ନୁହନ୍ତି। ଥରେ ଲଣ୍ଡନର କେଉଁ ବ୍ୟାଙ୍କରେ ଡକାୟତି ହୋଇଥିଲା। ଖବର ପାଇ ପୋଲିସ୍ ସାଙ୍ଗେ ସାଙ୍ଗେ ଘଟଣା ସ୍ଥଳରେ ପହଞ୍ଚିଗଲେ। ଚାରିଆଡ଼େ ସମ୍ବାଦ ଚାଲିଗଲା। ପୋଲିସ ଭ୍ୟାନ୍ ସହରଯାକ ଘୂରି ବୁଲିଲେ। ଲଣ୍ଡନ ବାହାରକୁ ଯାଉଥିବା ସବୁ ଗାଡ଼ିକୁ ଯାଞ୍ଚ କରାଗଲା। ତଥାପି ଚୋରମାନଙ୍କର ପତ୍ତା ମିଳିଲାନି। ଏତେ ଶୀଘ୍ର କୁଆଡ଼େ ପଳେଇଲେ ? ରାସ୍ତାମାନଙ୍କରେ ବହୁ ସଙ୍କେତ ଆଲୋକ ଅଛି। ସେମାନଙ୍କୁ ଟପିବାକୁ ତ ବହୁତ ବେଳ ଲାଗିଥିବ। ଏତେ ଶୀଘ୍ର ଉଭେଇ ଯିବେ କୁଆଡ଼େ ? ନା, ଏଇଠି କେଉଁଠି ଲୁଚିଥିବେ। ଖୋଜ, ଚାରିଆଡ଼େ ଭଲକରି ଖୋଜ। ଖୁବ୍ ଭଲକରି ଖୋଜା ଚାଲିଲା। କ୍ଲବ, ମଇଦାନ, ଦୋକାନ ବଜାର ସବୁଆଡ଼େ ପୋଲିସ୍ ଖେଦିଗଲେ। ତଥାପି ଚୋରଙ୍କର ପତ୍ତାନାହିଁ। ଗାଡ଼ିଏ ନୋଟ ନେଇ କୁଆଡ଼େ ପଳେଇଲେ ?

ବହୁ ଦିନ ପରେ ଏ ଲୁଟର ଚକ୍କାର ସନ୍ଧାନ ମିଳିଲା । ଲଣ୍ଡନ ସହରରେ ନୁହେଁ ମିଡ୍‌ଲଣ୍ଡ୍‌ରେ କୌଣସି ଜଙ୍ଗଲରେ । ଏହା କିମିତି ହେଲା ? କେମିତି ଡକାଏତ ଦଳ ପୋଲିସ୍‌ ଘେର ଚପି ପଳେଇଲେ ! ବୁଝି ବୁଝି ଜଣା ପଡ଼ିଲା ଡକାୟତମାନେ ଯେଉଁବାଟ ଦେଇ ଯିବାକୁ ଠିକ୍‌ କରିଥାନ୍ତି ସେହି ରାସ୍ତାମାନଙ୍କର କେଉଁ ଦିନ କେଉଁ ସମୟରେ ସବୁ ସଙ୍କେତ ଆଲୁଅ ସବୁଜ ହୋଇପାରିବ ଯେପରିକି ସେସବୁ ତାଙ୍କ ଦ୍ରୁତ ଗତିରେ ବାଧା ଦେଇପାରିବନି, ଏହାକୁ ସବୁ ହିସାବ କିତାବ କରି ଠିକ୍‌ କଲେ ଏବଂ ଠିକଣା ସମୟରେ ଲୁଟ କରି ଏକ ଲୟରେ, ଏକ ନିଃଶ୍ୱାସରେ ଲଣ୍ଡନ ସହରୁ ବାହାରିଗଲେ । ପୋଲିସ୍‌ ଯେତେ ଶୀଘ୍ର ଆସିଲେ ବି ସେମାନେ ଖୋଜାଖୋଜି କରିବା ପୂର୍ବରୁ ଡକାଏତମାନେ ନିରାପଦ ସ୍ଥାନକୁ ବାହାରି ଯାଇଥିଲେ । ବାଃ କି ବୁଦ୍ଧିଆ ଓ ଚତୁର ଏ ଡକାଏତମାନେ । ତାଙ୍କ ଭିତରେ ଉଚ୍ଚକୋଟୀର ଗଣିତଜ୍ଞ ବି ଥିବେ । ତା' ନହେଲେ ସବୁ ସଙ୍କେତ ଆଲୁଅ ସବୁଜ ହେବାର ସମୟଟା ନିର୍ଦ୍ଦିଷ୍ଟ କଲେ କିମିତି !

ମୁଁ ଥରେ ଲଣ୍ଡନରେ ଲଣ୍ଡଭଣ୍ଡ ହୋଇ ବୁଲୁଥାଏ । ବକିଂହାମ ପାଲେସ୍‌ ରୋଡ୍‌ରେ ଥିବା ରାଣୀଙ୍କ ଚିତ୍ରଶାଳା (Queen's Gallery) ଦେଖିସାରି ଗୋଟିଏ ସୁବିଧାଜନକ ଉଚ୍ଚଜାଗାରୁ ରାଜପ୍ରାସାଦ-ସଂଲଗ୍ନ ବଗିଚାକୁ ବଡ଼ ବିକଳ ଭାବରେ ଲକ୍ଷ୍ୟ କରୁଚି, ଏହି ସମୟରେ ଜଣେ ପୋଷାକଧାରୀ ପୋଲିସ୍‌ କେଉଁଠି ଥିଲା ଖାଉଦର୍ପରେ ମୋ ଆଡ଼କୁ ମାଡ଼ି ଆସିଲା । ତାକୁ ଦେଖି ମୋ ପିଳେହି ପାଣି । କଣ ହେଲା ? କିଛି ଭୁଲଭଟକା ହେଲା କି ? ଭୁଲ ନହେଲା କିମିତି ! ତାଙ୍କ ମହାମାନ୍ୟ ରାଣୀଙ୍କ ଉଦ୍ୟାନକୁ ଏପରି ଉଙ୍କି ମାରିବାଟା ହେଲେ ଦେଖିପାରୁଚି କଣ ? ଛିଃ ! ଯେତେ ଚିପେଇ ଠିଆ ହେଲେ, ଯେତେ ବେକକୁ ଓଟପରି ଟେକିଲେ ବି କଣ ଦୁଉଚି ନା ଫୁଉଚି ! ଖୁରିଆଡେ ମେଘନାଦ ପାଚେରୀ । ଏତିକରେ କଣ ଇମିତି ମହାପାତକ ହୋଇଗଲା ଯେ ପୋଲିସ୍‌ ମହାଶୟ ବ୍ୟସ୍ତ ହୋଇପଡ଼ିଲେ । A Cheshire cat can look at the king ! ଡେସାୟାରର ବିଡ଼ାଳ ବି ରାଜାଙ୍କୁ ଚାହିଁପାରେ । ମୁଁ ରାଣୀଙ୍କ ଉଦ୍ୟାନକୁ ଚାହିଁ ଦେଇ ଇମିତି କଣ ଦୋଷକଲି ! ଅବଶ୍ୟ ମୋ ଢଙ୍ଗରଙ୍ଗଟା ବଡ଼ ବେଆଡ଼ା

ଜଣା ପଡୁଥିଲା । ତେବେ ଆଜି କଣ କରିବ ! ଗୁହିଁ ତ ଦେଇଚି ! ଏଇଲେ ତ ସେ ପୋଲିସ୍ କେତେ ଜେରା କରିବ ! ହୁଏତ ମୋ ଦେହ, ମୋ ବ୍ୟାଗ୍‌କୁ ଦରଣ୍ଡାଦରଣ୍ଡି କରିବ । ବ୍ୟାଗ୍‌ଟାକୁ ଗୁହିଁ ଦେଲାକ୍ଷଣି ଛୁଞ୍ଚିଟା ଦୁଲୁକି ଉଠିଲା । ତା' ଭିତରେ କେତେ କଣ ଅଛି । ବିଲାତର ଓ ଲଣ୍ଡନର ମାନଚିତ୍ର, ବିଭିନ୍ନ ଦର୍ଶନୀୟ ଜାଗାର ପ୍ରଚୁର ପତ୍ର, ଭିଟାମିନ୍ ବଟିକା, ଘରୁ ଆସିଥିବା କେତେ ଖଣ୍ଡ ଚିଠି, ଲଣ୍ଡନର କେତେକ ଦର୍ଶନୀୟ ଜାଗାର ଫଟୋ, ଗୋଟିଏ ଡବାରେ କିଛି ଗୁଆ-ଗୁଣ୍ଡି ବି ଅଛି । ଏସବୁକୁ ଦେଖି ସେ ପୋଲିସ୍ କଣ ଭାବିବ କେଜାଣି ! ହୁଏତ ମୋତେ ଗୁପ୍ତଚର ବୋଲି ସନ୍ଦେହ କରିପାରେ । ମୋ ଗୁଆ ଗୁଣ୍ଡିକୁ କୌଣସି ବିସ୍ଫୋରକ ଦ୍ରବ୍ୟ ବୋଲି ଧରି ନେଇପାରେ । ମଲା ମଣିଷ ! ଏଠୁ ପଳେଇଗଲେ ହୁଅନ୍ତା । କିନ୍ତୁ କିମିତି ପଳେଇବି ! ସେ ପୋଲିସ ତ ମୋ ଆଡ଼କୁ ଏକ ଲୟରେ ଧାଇଁଚି । ପଳେଇଗଲେ ବି ବେଶୀ ସନ୍ଦେହ ହେବ । ତେବେ ! ଏତେବେଳକୁ ପୋଲିସ୍ ମହାଶୟ ମୋ ପାଖରେ ଆସି ଠିଆ ହୋଇଯାଇଥାନ୍ତି ।

—ଏଠି କଣ କରୁଚ ? ବ୍ୟଙ୍ଗଭରା ମୁହଁରେ ପଚାରିଲେ ।

—ଟିକିଏ ଦେଖୁଚି ।

—କଣ ?

—ଏଇ ରାଜୋଦ୍ୟାନ ।

—ଦେଖାଯାଉଚି ?

—ଏଇ ଯତ୍ ସାମାନ୍ୟ !

—ଏଠୁ କଣ ଦେଖାଯିବ ! କାହିଁକି ସେ ଉଦ୍ୟାନଟିକୁ ଦେଖିବାକୁ ଏତେ ବ୍ୟାକୁଳତା ?

ମୋତେ ମଉକା ମିଳିଗଲା । ଆରମ୍ଭ କରିଦେଲି ବକ୍ତୃତା । କିମିତି ପାଠ ପଢ଼ିବାକୁ ବିଲାତ ଯାଇଥିଲି କିମିତି ବିଲାତରେ ସବୁ କଥା ଜାଣିବାକୁ, ସବୁ ଜାଗା ଦେଖିବାକୁ ମୋର ବ୍ୟାକୁଳତା ଇତ୍ୟାଦି ଇତ୍ୟାଦି କହିଗଲି ।

—ତୁମର ଚେଷ୍ଟା ସଫଳ ହେଉ ।

ଏତକ ସଂକ୍ଷେପରେ ସସ୍ମିତ ବଦନରେ କହିଦେଇ ପୋଲିସ୍ ମହାଶୟ ଅନ୍ତର୍ଦ୍ଧାନ ହେଲେ । ମୋ ପିଣ୍ଡରେ ପ୍ରାଣ ପଶିଲା । ଏଇ କଥାକୁ **ନାଆ** ପେଲିଦେଲି କଲିକତାକୁ !

ମୋର ଏ ଲଣ୍ଡନ ପୋଲିସ୍, ବିଖ୍ୟାତ ବନ୍ଧମାନଙ୍କ ପ୍ରତି ଗୋଟାଏ ମମତା ଜାଗିଉଠିଥାଏ । ବେଶଭୂଷା ଯେମିତି, ବ୍ୟବହାର କରନ୍ତି ସେମିତି । ବାସ୍ତବିକ୍ ଲଣ୍ଡନର ପ୍ରାୟ ୮୦ ଲକ୍ଷ ଲୋକଙ୍କ ସେବାରେ ନିଜକୁ ଯେପରି ଭାବରେ ଏମାନେ ନିୟୋଗ କରନ୍ତି ତାହା ଦେଖିଲେ ବଡ଼ ଆଶ୍ଚର୍ଯ୍ୟ ଲାଗେ । ତେଣୁ ଏମାନଙ୍କର କର୍ମପୀଠ ସ୍କଟଲଣ୍ଡ ୟାର୍ଡ ଦେଖିବାର ଇଚ୍ଛା ମୋ ମନରେ ପ୍ରବଳ ହୋଇ ଉଠିଥାଏ । ଦିନେ ଖୁବ୍ ଭୋରରୁ ନିଜର ନିତ୍ୟକର୍ମ ସାରି ପୃଥିବୀବିଖ୍ୟାତ ଏହି ସ୍କଟ୍‌ଲଣ୍ଡ୍ ୟାର୍ଡ ଦେଖିବାକୁ ଗଲି ।

ମନଟା ଯେମିତି ଭୟାକୁଳ ହୋଇ ଉଠିଥାଏ । କେତେ ଉପନ୍ୟାସ, କାହାଣୀରେ ସ୍କଟ୍‌ଲଣ୍ଡ ୟାର୍ଡ ସମ୍ବନ୍ଧରେ ବହୁ ବିଚିତ୍ର ବର୍ଣ୍ଣନା ପଢ଼ିଛି । ସାରଲକ୍ ହୋମସ୍, ଆଗାଥା କ୍ରିଷ୍ଟିଙ୍କ ଅପରାଧମୂଳକ ଉପନ୍ୟାସମାନଙ୍କରେ ସ୍କଟଲଣ୍ଡ ୟାର୍ଡର ବିଭିନ୍ନ କାର୍ଯ୍ୟକଳାପ ନେଇ ନାନା ଲୋମହର୍ଷକ ବିଷୟରେ ଉଲ୍ଲେଖ ଅଛି । ତେଣୁ ତା' ଭିତରକୁ ଯିବାକୁ ମନରେ ମହାଭୟ ମହାକୁଣ୍ଠା । ଏହି ସ୍କଟ୍‌ଲଣ୍ଡ୍ ୟାର୍ଡ ସେତେବେଳେ ଏମ୍‌ବ୍ୟାଙ୍କମେଣ୍ଟ୍‌ରେ ଅବସ୍ଥିତ ଥିଲା । ଏହା ପାଇଁ ଯେଉଁ ୨୦ ତାଲା ବିଶିଷ୍ଟ ନୂତନ ନିବାସ ପାର୍ଲିଆମେଣ୍ଟ ଭବନ, ଡାଇନିଂ ଷ୍ଟ୍ରିଟ୍ ଓ ବର୍କିଂହାମ୍ ରାଜପ୍ରାସାଦ ମଝାମଝି ତିଆରି କରାଯାଉଥିଲା ସେଥିକି ଏ ଉଠିଯାଇ ନ ଥାଏ । ବିକଳରେ ସିନା ଦଉଡ଼ି ଗଲି ତାକୁ ଦେଖିବାକୁ କିନ୍ତୁ ଏହାର ସେହି ପୁରୁଣାକାଳିଆ କୋଠାର ସାମନାରେ ଠିଆ ହୋଇ ଗ୍ଭରିଆଡ଼କୁ ଗ୍ଭହିଁଲି । ମନରେ ନାନା ଦୁଶ୍ଚିନ୍ତା । ଶେଷରେ ସ୍କଟଲଣ୍ଡ୍ ୟାର୍ଡ଼ରେ ପହଞ୍ଚିଗଲି ! କିଛି ଆପଦ ବିପଦ ଥାଇପାରେ । କଣ ଆଜି ଆପଦ ବିପଦ ଥିବ ? ଏଠାକୁ ବହୁ ଦେଶରୁ ପୋଲିସ୍ ଅଫିସର, ଗୁଇନ୍ଦା ଆସୁଚନ୍ତି ତାଲିମ୍ ପାଇବାକୁ ମୁଁ ତ ଆବଶ୍ୟକ ଅନୁମତିପତ୍ର ଯୋଗାଡ଼ କରିଚି । ତେବେ ଆଉ ଚିନ୍ତା କ'ଣ ?

ଏହି ସ୍କଟ୍‌ଲଣ୍ଡ୍ ୟାର୍ଡ଼ର ବାହାରୁ ଜାଣି ହେବନି ଏହା ଭିତରେ କି ଜଟିଳ, ବ୍ୟାପକ କାର୍ଯ୍ୟକଳାପ ଚାଲିଛି । କମ୍ କଥା ନୁହେଁ । ଲଣ୍ଡନ ଓ ତାହାର ଆଖପାଖ ଅଞ୍ଚଳର ପ୍ରାୟ ୨୦୦୦ ବର୍ଗ କିଲୋମିଟରରୁ ଅଧିକ ଇଲାକା ଏମାନଙ୍କ କର୍ତ୍ତୃତ୍ୱାଧୀନ । ପ୍ରତ୍ୟେକ ସରକାରୀ ଅଫିସ୍, କାରଖାନା, ବନ୍ଦର, ଅନାଥାଶ୍ରମ, ଗଣି ଆଡ଼୍‌ଡ଼ା, ହୋଟେଲ୍, ରେଷ୍ଟୁରାଁ, ସିନେମା, ଥିଏଟର, ରାସ୍ତାଘାଟ ସବୁ ଆଡ଼େ ଏହାର ଦୃଷ୍ଟି । ଏହି ଜନାକୀର୍ଣ୍ଣ ସହରରେ କେତେ କମ୍ ଗୋଳମାଳ, କମ୍ ଚୋରି ଡକାୟତି, କମ ଦଙ୍ଗାହେଙ୍ଗାମ୍, ଜୋର ଜୁଲୁମ ହୁଏନି । କିନ୍ତୁ କିମିତି ଏଠା ପୋଲିସ୍ ସେ ସବୁକୁ ଆୟତ୍ତ କରନ୍ତି ? କିନ୍ତୁ କରନ୍ତି ତ ନିୟନ୍ତ୍ରଣ ସେ ସବୁକୁ ସୁନ୍ଦର ରୂପେ ! ସେମିତି ଭିଡ଼ା ଓଟରା, ଧମକା ଚମକା, ମାରପିଟ୍ ଆଦି ନାହିଁ । ଏପରିକି ବନ୍ଧୁକ ପ୍ରାୟ ବ୍ୟବହାର କରନ୍ତି ନି । ତଥାପି ଆଇନ ଶୃଙ୍ଖଳା ବେଶ୍ ରକ୍ଷା କରନ୍ତି । ବେଶ୍ ଗାମ୍ଭୀର୍ଯ୍ୟପୂର୍ଣ୍ଣ ମଧୁର ଭାବ, ସାହାଯ୍ୟ କରିବାକୁ ନିରାଟ ବ୍ୟାକୁଳତା, ନିରାଟ ରୂପ । ବେଶ୍ ଚମତ୍କାର ଲାଗେ ଏମାନଙ୍କ ସାଙ୍ଗେ କଥାବାର୍ତ୍ତା କରିବାକୁ ।

ଗୋଟାଏ କଥା ମୁଁ ବିଶେଷ ଲକ୍ଷ୍ୟ କରିଥାଏ । କୌଣସିଠାରେ କିଛି ଗୋଳମାଳ ହେଲେ ସାଙ୍ଗେ ସାଙ୍ଗେ ପୋଲିସ୍ ଆସି ହାଜର ହେଇଯାନ୍ତି । କିମିତି ଏହା ସମ୍ଭବ ହୁଏ ! ଏତେ ବଡ଼ ଜନାକୀର୍ଣ୍ଣ ସହର । ଏତେ ଗଳି କନ୍ଦି । ତା'ପରେ ଗୋଟିଏ ନାଁ ବହୁ ଜାଗାରେ ଅଛି । ଖାଲି "ହାଇଷ୍ଟ୍ରିଟ୍" କହିଦେଲେ କୌଣସି ନିର୍ଦ୍ଦିଷ୍ଟ ସ୍ଥାନ ବୋଲି ବୁଝି ହେବନି । ତା'ର ଆଖପାଖରେ ରାସ୍ତା, ଅଫିସ ଆଦିର ସୂଚନା ଦେଇ ବୁଝେଇ ଦେବାକୁ ପଡ଼ିବ । କାରଣ ପ୍ରାୟ ୭୬ ଜାଗାରେ ହାଇଷ୍ଟ୍ରିଟ୍ ଅଛି । ଭାଗ୍ୟର କଥା ଯେ ସବୁ ନାଁ ଗୁଡ଼ାକ ଇମିତି ବହୁରୂପୀ ନୁହଁନ୍ତି । ନୋହିଲେ ଲଣ୍ଡନ ସହରଟା ପୋଲିସ୍ ପାଇଁ ଗୋଟାଏ ବଡ଼ ଗୋଲକ ଧନ୍ଦାରେ ପରିଣତ ହୋଇଥାନ୍ତା ।

ସ୍କଟ୍‌ଲଣ୍ଡ ୟାର୍ଡ଼ ଅଧୀନରେ ପ୍ରାୟ ୨୧୦୦୦ ପୋଲିସ୍ କାମ କରନ୍ତି । ସେମାନଙ୍କ ମଧ୍ୟରୁ ୧୩୦୦୦ରୁ ଅଧିକ ପୋଲିସ୍‌ଙ୍କର ସାଧା ପୋଷାକ । ଏମାନେ ରେଡ଼ିଓ, ଟେଲିଭିଜନ୍, ଟେଲିପ୍ରିଣ୍ଟର ଆଦି ସାହାଯ୍ୟରେ ଚାରିଆଡ଼ର ଖବର ରଖନ୍ତି ଏବଂ ସବୁ ପ୍ରକାର ଅପରାଧ ଓ

ଚୋରମାନଙ୍କୁ ଆୟତ୍ତ କରନ୍ତି । ସେମାନଙ୍କ ଭିତରେ ବହୁ ମହିଳା ପୋଲିସ ବି ଅଛନ୍ତି । ଏଠି ଦିନରାତି ୨୪ ଘଣ୍ଟା ପୋଲିସମାନେ ବିଭିନ୍ନ ଜାଗାରେ ଜଗି ବସିଥାନ୍ତି । କିଏ ରେଡ଼ିଓ ପାଖରେ, କିଏ ଟେଲିଭିଜନ ପାଖରେ, କିଏ ଟେଲିପ୍ରିଣ୍ଟର ପାଖରେ, କିଏ ଫୋନ୍ ଧରି, କିଏ ଲଣ୍ଡନର ମ୍ୟାପ ଧରି ବସିଥାନ୍ତି କେଉଁଠୁ କ'ଣ ଚୋରମାନଙ୍କର ଖବର ଆସିବ । ସ୍ୱିଚ୍ ବୋର୍ଡ଼ରେ ନାଲି ଆଲୁଅ ଜଳୁଥାଏ । ପୋଲିସ୍ ଯେତେବେଳେ ଫୋନ୍ ଧରି ଆବେଦନକାରୀଙ୍କ କଥା ଶୁଣନ୍ତି ସେ ଆଲୁଅ ସବୁଜ ହୋଇଯାଏ । ଲଣ୍ଡନ ଓ ତା' ପାଖଅଞ୍ଚଳରୁ ୯୯୯ ଡାଏଲ କଲେ ସ୍କଟ୍‌ଲାଣ୍ଡ ୟାର୍ଡ଼ର କର୍ମଚାରୀମାନେ ଘଟଣା କ'ଣ ବୁଝି ସାଙ୍ଗେ ସାଙ୍ଗେ ସେଠାକୁ ପୋଲିସ୍ ପଠାଇବାର ବନ୍ଦୋବସ୍ତ କରନ୍ତି ।

ବିଭିନ୍ନ ଫାଣ୍ଡିରେ, କେନ୍ଦ୍ର ଜାଗାରେ ଏମାନଙ୍କର ପୋଲିସ୍ ପ୍ରସ୍ତୁତ ଥାନ୍ତି । ଗାଡ଼ି, ଯାନ୍ତ୍ରିକ ଡଙ୍ଗା ଆଦି ପ୍ରସ୍ତୁତ ଥାଏ । କୌଣସିଠାରୁ କିଛି ଆପଦ ବିପଦର ସୂଚନା ପାଇଲେ ରେଡ଼ିଓ, ଟେଲିଫୋନ ଆଦିରେ ନିକଟତମ ପୋଲିସ କେନ୍ଦ୍ରକୁ ଖବର ଓ ନିର୍ଦ୍ଦେଶ ପଠାଇ ଦିଆଯାଏ ଏବଂ ତାହା ପାଇଲାମାତ୍ରେ ପୋଲିସମାନେ ତାଙ୍କ କାମରେ ଲାଗିଯାନ୍ତି । ଗାଡ଼ିରେ ରେଡ଼ିଓ ଲଗେଇ ପୋଲିସମାନେ ସ୍କୁଟରଆଡ଼େ ପଏଣ୍ଟରେ ମାରୁଥାନ୍ତି । କେହି କେହି ମଟରରେ ସାଇକେଲ ଧରି ଘୁରୁଥାନ୍ତି । ସ୍କଟ୍‌ଲାଣ୍ଡ ୟାର୍ଡ଼ କେନ୍ଦ୍ର ଅଫିସରୁ ନିର୍ଦ୍ଦେଶ ପାଇଲେ ଏମାନେ ବିଭିନ୍ନ ପୋଲିସ ଦଳ ସହିତ ଯୋଗସୂତ୍ର ସ୍ଥାପନ କରି ଏକତ୍ରିତ କାର୍ଯ୍ୟାନୁଷ୍ଠାନର ବ୍ୟବସ୍ଥା କରନ୍ତି । ଫଳରେ ସବୁ କାମଟା ଖୁବ୍ ତ୍ୱରାନ୍ୱିତ ଭାବରେ ଚାଲେ ।

ବେଳେ ବେଳେ ସେମାନଙ୍କ ପାଖରେ ବଡ଼ ବିଚିତ୍ର ଖବରସବୁ ଆସି ପହଞ୍ଚେ । ଜଣେ କିଏ ଫୋନ୍‌ରେ ଚିତ୍କାର କରି ଉଠେ ।

—କିଏ ସ୍କଟ୍‌ଲାଣ୍ଡ ୟାର୍ଡ଼ ?

—ହଁ ।

—ଶୀଘ୍ର ଆସନ୍ତୁ । ଅବସ୍ଥା ନିହାତି ସାଙ୍ଘାତିକ । ମୋର ବୁଢ଼ା ବାପା ସିଡ଼ିରୁ ଗଡ଼ି ପଡ଼ିଛନ୍ତି । ପୂରା ଅଚେତ । ମୁଁ ଡାକ୍ତର ଡାକିବାକୁ ଯାଇପାରୁନି କି ତାଙ୍କୁ ଉଠେଇ ବିଛଣାକୁ ନେଇ ପାରୁନି···

—କାହିଁକି ?

—ଓ ! ସେ ଟିକିଏ, ସେ ଟିକିଏ ମୋଟା । ମୁଁ ଉଠାଇ ପାରୁନି ।

—ଆପଣ କେଉଁଠୁ ଆସୁଛନ୍ତି ?

—ଆମ ଘରୁ

—ସେଇଟା କେଉଁଠି ?

—ଓହୋ ! ଆପଣ ଜାଣିବା ଉଚିତ୍ । ଅମୁକ ସିନେମା ପାଖରେ···

—ଯେ ସିନେମା କେଉଁଠି ? ସେ ନାଁରେ ତ ବହୁତ ସିନେମା ଘର ଅଛି ।

—ଓହୋ ! ଆପଣ ଜାଣିବା ଉଚିତ୍ । ଅମୁକ ରାସ୍ତା, ଅମୁକ ଗଳି, ଅମୁକ ନମ୍ବର ଘର ଇତ୍ୟାଦି ।

ଜାଗାର ଗୁରୁତ୍ଵଟା ଜଣା ପଡ଼ିବା କ୍ଷଣି ଭ୍ରମଣକାରୀ ପୋଲିସ୍ ଦଳଙ୍କୁ ଖବର ଦିଆଯାଏ । ପାଖ ଆଖରେ ଥିବା ଦୁଇଜଣ କନେଷ୍ଟବଳ (ବବି) ୮।୧୦ ମିନିଟ୍ ଭିତରେ ସେ ଜାଗାରେ ପହଞ୍ଚିଯାନ୍ତି । ବୁଢ଼ାଙ୍କୁ ଉଠାଇ ଶେଯରେ ଶୁଆନ୍ତି । ସେବା ଶୁଶ୍ରୂଷା କରନ୍ତି । ଗୁ'କ କଫି ତିଆରି କରି ଖାଇବାକୁ ଦିଅନ୍ତି । ଡାକ୍ତର ଡାକିବା ଦରକାର ହେଲେ ତାଙ୍କୁ ଡକାଇ ରୋଗୀଙ୍କୁ ତାଙ୍କ ଜିମା କରି ଫେରି ଆସନ୍ତି ।

ଆଜି କିଏ ଜଣେ ମହିଳା କେତେବେଳେ ବଡ଼ ବିବ୍ରତ ହୋଇ କହନ୍ତି, ତାଙ୍କ ବୁଢ଼ୀମା କାଲିଠାରୁ କୁଆଡ଼େ ଯାଇଛନ୍ତି ଫେରି ନାହାନ୍ତି । ତାଙ୍କ ସ୍ୱାସ୍ଥ୍ୟ ଆଦୌ ଭଲ ନୁହେଁ । ତେଣୁ ସେ ବିଶେଷ ଚିନ୍ତିତ । ପୁଣି ହଠାତ୍ ଘର କୁକୁରଟା କୁଆଡ଼େ ପଳାଇଯାଇଛି । ତାକୁ ସେ ଖୋଜି ଖୋଜି ନୟାନ୍ତ ହେଲେଣି । ବୁଢ଼ୀମା' ହୁଏତ କେଉଁରେ ଫେରି-ପାରନ୍ତି । କିନ୍ତୁ କୁକୁରଟାକୁ ଖୋଜି ଶୀଘ୍ର ବାହାର କରିବାକୁ ହବ । ନଚେତ୍ ଲଣ୍ଡନରେ ଯେମିତି ଦୁର୍ଘଟଣା ଘଟୁଛି ··ନଜର ଠିକଣା ଦେଇ ଇମିତି କେତେ କଣ ବକି ଚାଲନ୍ତି । ସାଙ୍ଗେ ସାଙ୍ଗେ ଚାରିଆଡ଼େ ଖବର ଚାଲିଯାଏ । କେତେ ସମୟ ବାଦେ ଜଣେ ମହିଳା ପୋଲିସ୍ ସେ ହଜିଥିବା

କୁକୁରକୁ ଧରି ଆସି ପହଞ୍ଚଯାନ୍ତି । ପରେ ଆଉ ଜଣେ ମହିଳା ପୋଲିସ୍ ତାଙ୍କ ବୁଢ଼ୀମା'ଙ୍କୁ ଧରି ଆସନ୍ତି । ଘରେ ଆନନ୍ଦ ଉଲ୍ଲାସ ଖେଳିଯାଏ । ବହୁତ ଧନ୍ୟବାଦ ପାଇ ମହିଳା ପୋଲିସ୍ ଫେରି ଆସନ୍ତି ।

ଦିନ ୮ଟା ବେଳକୁ ଲଣ୍ଡନ ରାସ୍ତାମାନଙ୍କରେ ଯାନବାହନ ଭିଡ଼ ବଢ଼ିଯାଏ । କେଉଁଠି ଯାତାୟାତରେ ଅସୁବିଧା ଘଟିଲା କେଉଁଠି ବସ୍ ଭାଙ୍ଗିପଡ଼ି ରାସ୍ତା ଅବରୋଧ କରିଛି ଏପରି କେତେ ସମସ୍ୟା ସୃଷ୍ଟି ହୁଏ । ତେଣୁ ସକାଳୁ ସକାଳୁ ଯାତାୟାତ ନିୟନ୍ତ୍ରଣରେ ଥିବା ପୋଲିସ୍ କର୍ମଚାରୀମାନେ ସଜାଗ ହୋଇ ସ୍ୱିଚ୍ ବୋର୍ଡ ପାଖରେ ବସି ରହନ୍ତି । କେଉଁଠୁ କିଛି ଅସୁବିଧା ବା ଦୁର୍ଘଟଣାର ଖବର ଆସିଲେ ସାଙ୍ଗେ ସାଙ୍ଗେ ତା'ର ବ୍ୟବସ୍ଥା କରନ୍ତି । କେଉଁଠି ଯଦି ରାସ୍ତାର ସଙ୍କେତ ଆଲୁଅରେ ଯାନ୍ତ୍ରିକ ଅସୁବିଧା ହେତୁ ନାଲି ଆଲୁଅ ଲିଭୁନି ତେବେ ମାଇଲ ମାଇଲ ଧରି ଲୋକ ଯାନବାହନ ଅଟକିଯାନ୍ତି । ଖବର ପାଇଲାକ୍ଷଣି ସାଙ୍ଗେ ସାଙ୍ଗେ ନିର୍ଦ୍ଦେଶ ଚାଲିଯାଏ ଟ୍ରାଫିକ୍ ଆଲୁଅ ପାଖରେ ପୋଲିସ୍ ଠିଆ ହୋଇ ଗାଡ଼ି ମଣିଷ ସମସ୍ତଙ୍କୁ ଛାଡ଼ୁ । ଅନ୍ୟ ଯେଉଁ ରାସ୍ତା ଦେଇ ଗାଡ଼ି ଛାଡ଼ିଲେ ଗହଳି ଶୀଘ୍ର ଭାଙ୍ଗିବ ତାର ବି ନିର୍ଦ୍ଦେଶ ଦିଆଯାଏ । ନିର୍ଦ୍ଦେଶ ପାଇବା କ୍ଷଣି ପାଖ ଆଖରେ ଥିବା ପୋଲିସ୍ ଆସି ଏ କାମରେ ଲାଗିଯାନ୍ତି । ଫଳରେ କିଛି ସମୟରେ ସବୁ ସଫା ।

କେଉଁଠି ଯଦି ଗାଡ଼ି ଗାଡ଼ି ଧକ୍କା ଲାଗି ସେଗୁଡ଼ିକ ଅଚଳ ହୋଇଗଲା ଓ ରାସ୍ତା ବନ୍ଦ ହୋଇଗଲା ତେବେ ନିର୍ଦ୍ଦେଶ ଯାଏ ଅନ୍ୟ କେଉଁ ରାସ୍ତା ଦେଇ ଗାଡ଼ି ଛଡ଼ାଯିବ । ଏମାନଙ୍କର ଲଣ୍ଡନ ଓ ତାର ଆଖପାଖ ଅଞ୍ଚଳର ରାସ୍ତା ଗଳି କନ୍ଦି ଆଖି ଆଗରେ ନାଚୁଥାଏ । ତେଣୁ ଅବିଳମ୍ବେ ଆବଶ୍ୟକ ନିର୍ଦ୍ଦେଶ ଦେବା କଷ୍ଟକର ହୁଏନି । ସାଙ୍ଗେ ସାଙ୍ଗେ ହି ଗାଡ଼ି ଚାଲିଯାଏ ଭାଙ୍ଗିଯାଇଥିବା ଯାନବାହନକୁ ଟାଣି ଟାଣି ଆଣି ନିରାପଦ ଜାଗାରେ ରଖିବା ପାଇଁ ।

ବିଭିନ୍ନ ବଖରାରେ ବିଭିନ୍ନ କାମ ଚାଲିଥାଏ । କୌଣସି ଦେଖଣାହାରୀ ଜାଣି ପାରିବେନି ଯେ ଏଇଟା ପୋଲିସ୍ ଅଫିସ୍ । କାରଣ ପୋଷାକଧାରୀ ପୋଲିସ୍ ଏଠାକୁ କମ୍ ଆସନ୍ତି । ଏଠାରେ କାମ କରୁଥିବା ପୋଲିସ୍‌ମାନଙ୍କୁ ବିଭିନ୍ନ ସ୍କ୍ୱାଡ଼ ବା ଦଳରେ ବିଭକ୍ତ କରାଯାଇଛି ।

ସେମାନେ ନିଜର ବିଭିନ୍ନ ଆସବାବ ଓ କାଗଜପତ୍ର ନେଇ ବ୍ୟସ୍ତଥାନ୍ତି । ଯାହା ପାଖକୁ ଯେଉଁ ସମ୍ବାଦ ବା ସଙ୍କେତ ଆସୁଥାଏ ସେଥିରେ ସେମାନଙ୍କର ଯାହା କାମ, ତାହା କରିଦେଇ ଅନ୍ୟ ଯେଉଁ ବିଭାଗର ସେଥିରେ ଆଉ କିଛି କାମ କରିବାର ଥାଏ ତାଙ୍କୁ ସେଥିର ସୂଚନା ଓ ସମ୍ପୃକ୍ତ କାଗଜପତ୍ର ଦେଇଦିଅନ୍ତି ।

ଫଟୋ ବିଭାଗ ପ୍ରତିଦିନ ଶହ ଶହ ଅଙ୍ଗୁଳି ଚିହ୍ନ ଆଦିର ଫଟୋ ପ୍ରସ୍ତୁତ କରି ତାକୁ ପରୀକ୍ଷା ନିରୀକ୍ଷା କରନ୍ତି ଏବଂ ଯେଉଁ ବିଭାଗରେ ତାର ଆବଶ୍ୟକତା ଥାଏ ସେଠାକୁ ସଂଗୃହୀତ ବିବରଣୀ ସହ ସେହି ଫଟୋକୁ ପଠାଇ ଦିଅନ୍ତି । ଫଟୋ ଉଠାଳମାନେ ମଧ୍ୟ ଶହ ଶହ ସଂଖ୍ୟାରେ ଭ୍ରାମ୍ୟମାଣ ଯାନରେ ବୁଲୁଥାନ୍ତି ତାଙ୍କର ବିଭିନ୍ନ ଆସବାବ ନେଇ । କେଉଁଠି କଣ ଗୋଳମାଳ, ଚୋରି ଡକାୟତି କି ହତ୍ୟା ଘଟିଲେ ଏମାନଙ୍କ ଭିତରୁ କେହି ସେଠାରେ ପହଞ୍ଚିଯାଇ ବିଭିନ୍ନ ଦୃଶ୍ୟର ଫଟୋ ଉଠାଇ ନିଅନ୍ତି । ପ୍ରତିଦିନ କେବଳ ଫଟୋ ଉଠାରେ ହଜାର ହଜାର ଟଙ୍କାର ଫିଲ୍ମ ବ୍ୟବହାର ହୁଏ । ବିଭିନ୍ନ ଦାଗୀ, ଠକ ଓ ଦୁଷ୍ଟ ଲୋକଙ୍କର ଫଟୋ ଏଠି ସ୍କଟଲ୍ୟାଣ୍ଡ୍ ୟାର୍ଡରେ ସାଇତା ହୋଇ ରଖାଯାଇଛି । କାହା ଉପରେ କୌଣସି କାରଣରୁ ସନ୍ଦେହ ହେଲେ ତାର ଫଟୋ ଅଙ୍ଗୁଳି ଚିହ୍ନ ବାହାର କରି ଅନୁସନ୍ଧାନ କାର୍ଯ୍ୟରେ ଲଗାଯାଏ । ଏମାନଙ୍କ ପାଖରେ ଯେତେ ଫଟୋ ଓ ଅଙ୍ଗୁଳି ଚିହ୍ନ ଅଛି ମୋର ମନେ ହେଲା ସାରା ଲଣ୍ଡନର କୌଣସି ଠକ, ବଦମାସ୍ ସେଥିରୁ ବାଦ୍ ଯାଇ ନାହାନ୍ତି । ନମ୍ବର ଓ ଅନ୍ୟାନ୍ୟ ସଙ୍କେତ ଦିଆଯାଇ ସେ ସବୁ ରଖା ହୋଇଛି । ଚାହିଁବା ମାତ୍ରେ ବାହାର କରାଯାଇ ପାରିବ ।

ଅପରାଧ ବିବରଣୀ ବିଭାଗ ସେମାନଙ୍କର ସୁବିଧା ଅନୁସାରେ ବିଭିନ୍ନ ସମ୍ବାଦକୁ ପରୀକ୍ଷା ନିରୀକ୍ଷା କରି ସାଇତି ରଖନ୍ତି । କିଛି ଚୋରି, ଡକାୟତି, ଖୁଣୀଙ୍କର କୌଣସି ସନ୍ଧାନ ମିଳିଥାଏ ସେ ବିଷୟରେ ଗବେଷଣା ଚାଲିଥାଏ । କୋର୍ଟ କଚେରୀରେ ବି ବହୁ ଅପରାଧର ବିବରଣୀ ଦରକାର ହୁଏ । କୌଣସି ପୋଲିସ୍ ଷ୍ଟେସନରୁ ଖବର ଆସିଲା ଜଣେ ଚୋର ସିନ୍ଧ କାଟିବେଳେ ଧରାପଡ଼ିଛି, ତାର ବୟସ ଏତେ, ଚେହେରା ଇମିତି, ତାର ନାଁ ଜୋନ୍‌ସ ବୋଲି କହୁଛି ଇତ୍ୟାଦି । ତା' ବିପକ୍ଷରେ ଯଦି ପୂର୍ବରୁ କିଛି ଅଭିଯୋଗ ଥାଏ ସେଇଟା ଜଣେଇବା ଦରକାର ।

ସାଙ୍ଗେ ସାଙ୍ଗେ ଖୋଜାଖୋଜ ଚାଲେ ଏବଂ ତାହା ସମ୍ବନ୍ଧରେ ପୂରା ବିବରଣୀ ଯୋଗାଇ ଦିଆଯାଏ । ଏପରିକି ସେ କେଉଁ ହୋଟେଲ, କେଉଁ ପବ୍‌କୁ ଯାଏ, କେଉଁ ଖାଦ୍ୟ ଖାଏ, କି ମଦ ପିଏ, କାହା କାହା ସହିତ କଥାବାର୍ତ୍ତା ହୁଏ ଆଦି ତାର ସମସ୍ତ ବ୍ୟକ୍ତିଗତ ତଥ୍ୟ ମିଳିଯାଏ ।

କୌଣସି ନିହାତି ଜରୁରୀ ଘଟଣା ଘଟିବାର ସମ୍ବାଦ ମିଳିଲେ ଯେ ସମ୍ବାଦ ପାଏ ସେ ଆଜ ତାକୁ ନିର୍ଦ୍ଦିଷ୍ଟ ବିଭାଗକୁ ପଠାଇବାକୁ ଚେଷ୍ଟା କରିନ । ସେ ଖବର ପାଇବାମାତ୍ରେ ନିଜେ ନିଜେ ତାର ବ୍ୟବସ୍ଥା କରେ । ଧର କୌଣସିଠାରୁ ଖବର ମିଳିଲା ଜଣେ କିଏ କାହାକୁ ଏକ ନିର୍ଜ୍ଜନ ଗଳି ମୁଣ୍ଡରେ ଗୁଳିକରି ପଳାଇ ଯାଇଛି । ସମ୍ବାଦଦାତାଙ୍କଠାରୁ ଘଟଣା ସ୍ଥାନର ବିବରଣୀ ଟେଲିଫୋନ୍‌ରେ ପାଇବାମାତ୍ରେ ଟେଲିଫୋନ୍ ଧରିଥିବା ପୋଲିସ ସାଙ୍ଗେ ସାଙ୍ଗେ ଗୋଟାଏ ସ୍ୱିଚ୍ ଟିପିଦିଏ । ଏଥିରେ ପ୍ରସମ୍ବାଦ ବିଭାଗରେ ଗୋଟିଏ ଶବ୍ଦ ବାଜିଉଠେ । ଫଳରେ ଯେଉଁମାନେ ବିଭିନ୍ନ ପୋଲିସ୍ ବ୍ୟବସ୍ଥା ପାଇଁ ବେତାର ସମ୍ବାଦ ପଠାନ୍ତି ସେମାନେ ତାଙ୍କର କାମ ବନ୍ଦ କରିଦିଅନ୍ତି ଏବଂ ଯେଉଁ ପୋଲିସ ଅଫିସର ଖୁନ୍‌ର ଖବର ପାଇଥାନ୍ତି ସେ ନିଜେ ଘଟଣା ସ୍ଥଳର ପାଖଆଖରେ ଥିବା ପୋଲିସମାନଙ୍କୁ କେଉଁଠିକୁ ଯିବାକୁ ହେବ କଣ କରିବାକୁ ହେବ ଏଥିପାଇଁ ନିର୍ଦ୍ଦେଶ ଦେଇଦିଏ ଏବଂ ସେହି ପୋଲିସ୍‌ମାନେ ତାଙ୍କ ପକେଟରେ ଥିବା ରେଡ଼ିଓରୁ ସମ୍ବାଦ ପାଇ ଅବିଳମ୍ବେ ଘଟଣାସ୍ଥଳକୁ ମାଡ଼ିଯାନ୍ତି । ଏତିକି ସରିଲା ପରେ ସେହି ଫୋନ୍ ଦାୟିତ୍ୱରେ ଥିବା ପୋଲିସ ପୁଣି ସ୍ୱିଚ୍‌କୁ ବଦଳାଇ ତାକୁ ତାର ପୂର୍ବ ଅବସ୍ଥାକୁ ଫେରାଇଆସେ, ଏଥିରୁ ସୂଚନା ପାଇଁ ବେତାର ସମ୍ବାଦ ବିଭାଗର କର୍ମଚାରୀମାନେ ତାଙ୍କ କାମ ପୁଣି ସୁରୁ କରନ୍ତି ଏବଂ ଟେଲିଫୋନ୍ ଦାୟିତ୍ୱରେ ଥିବା କର୍ମଚାରୀ ତାଙ୍କ କାମ ସାଧାରଣ ମତରେ ଆରମ୍ଭ କରନ୍ତି ।

କେତେକ ପୋଲିସ୍ କର୍ମଚାରୀଙ୍କ ପାଖରେ ଟେଲିଭିଜନ୍ ଥାଏ । ସେମାନେ ଅନ୍ୟକାମ କରିବା ସମୟରେ ଟେଲିଭିଜନ ଉପରେ ଲକ୍ଷ୍ୟ ରଖିଥାନ୍ତି । ପାର୍ଲିଆମେଣ୍ଟ ଭବନ ପାଖରେ ଯଦି କିଛି ଗୋଳମାଳ ହେବାର ସମ୍ଭାବନା ଥାଏ କିମ୍ବା ବ୍ୟାଙ୍କ୍ ଅଫ୍ ଇଂଲଣ୍ଡରୁ ଚୋରି ହେବାର

ଭଡ଼ୁଥାଏ କି ଲଣ୍ଡନ ଟାୱାରରୁ ରାଜକୀୟ ହୀରା; ନୀଳା ହରଣହୋଇ ହେବାର ଭଡ଼ୁଥାଏ ଏପରି ଗୁରୁତ୍ୱପୂର୍ଣ୍ଣ ଜାଗାମାନଙ୍କୁ ନଜରବନ୍ଦ ରଖିବାକୁ ସେଠାରେ ଲୁଚିଲା ଟେଲିଭିଜନ କ୍ୟାମେରା ଖଞ୍ଜି ଦିଆଯାଇଥାଏ ଯେପରି କି ସେଠାରେ କଣ ଘଟୁଛି ସ୍କଟ୍‌ଲ୍ୟାଣ୍ଡ ୟାର୍ଡ଼ରୁ ଜାଣିହେବ ।

ସେହିପରି କୌଣସି କାରଖାନା ବା ଦପ୍ତରରୁ ଯଦି କିଛି ଜିନିଷ ଗୁପ୍ତରେ ହରଣହୋଇ ହୋଇଯାଉଛି ଯାହା ଗୁଇନ୍ଦାମାନେ ଧରି ପାରୁ ନାହାନ୍ତି ସେପରି ଅନୁଷ୍ଠାନମାନଙ୍କରେ ଛୋଟ ଜାଗା ଦେଖି ଗୁପ୍ତ ଭାବରେ କ୍ୟାମେରା ଖଞ୍ଜି ଦିଆ ଯାଇଥାଏ ଏବଂ ସେହି ଫଟୋକୁ ପରୀକ୍ଷା କରି ଅପରାଧୀକୁ ଧରିବାକୁ ଚେଷ୍ଟା କରାଯାଏ । ଗୁଇନ୍ଦା ତ ସବୁବେଳେ ଘୂରିଆଡ଼େ ବୁଲୁଥାନ୍ତି । କିଏ କେଉଁଠି ଲାଞ୍ଚ ନେଲା, କିଏ କେଉଁଠି ବ୍ୟଭିଚାର କଲା ସେ ସବୁକୁ ଧରିବାକୁ ସେମାନେ ଚେଷ୍ଟା କରନ୍ତି ।

ହଜିବା ବିଭାଗ ବଡ଼ ଗୁରୁତ୍ୱପୂର୍ଣ୍ଣ । କାରଣ ସାଧାରଣତଃ ପିଲାମାନେ ହଜିଯାନ୍ତି କିମ୍ବା ଘରୁ ପଳାଇଯାନ୍ତି । ସେମାନେ ବିଭିନ୍ନ ପ୍ରକାର ଅପରାଧୀଙ୍କ କବଳରେ ପଡ଼ିଯିବା ସମ୍ଭାବନା ରହିଛି । ତେଣୁ ତାଙ୍କୁ ଖୋଜି ବାହାର କରିବା ଗୋଟିଏ ଗୁରୁ ଦାୟିତ୍ୱ । ସେଇଟା ସ୍କଟ୍‌ଲାଣ୍ଡ ୟାର୍ଡ ଖୁବ୍ ସୁନ୍ଦର ରୂପେ କରନ୍ତି । ଏହାର ଲୋକସମ୍ପର୍କ ବିଭାଗ ବି ଅଛି । ସ୍କଟ୍‌ଲାଣ୍ଡ ୟାର୍ଡ ସମ୍ବନ୍ଧରେ ଏବଂ ଏହାର କର୍ମକୁଶଳତା ସମ୍ବନ୍ଧରେ ଲୋକଙ୍କର ଧାରଣା କଣ ତାକୁ ଅନୁଧ୍ୟାନ କରିବାକୁ ବି ଲୋକ ଅଛନ୍ତି ।

ଅନେକଙ୍କର ଧାରଣା ଯେ ସ୍କଟ୍‌ଲାଣ୍ଡ ୟାର୍ଡ ସାରା ଇଂଲଣ୍ଡର ପୋଲିସମାନଙ୍କର ମୁଖ୍ୟ କାର୍ଯ୍ୟାଳୟ କିନ୍ତୁ ତାହା ନୁହେଁ । ଏହାର କାମ ହେଲା ଲଣ୍ଡନ ଓ ତା' ଆଖପାଖ ଅଞ୍ଚଳର ଆଇନ୍ ଶୃଙ୍ଖଳା ରକ୍ଷା କରିବା । ଏ କିଛି କମ୍ କାମ ନୁହେଁ । ସେଥିପାଇଁ ବହୁଗାଡ଼ି, ଯନ୍ତ୍ରପାତି, ଓ କ୍ୟାମେରା, ରେଡ଼ିଓ, ଟେଲିଭିଜନ୍ ଓ ଅନ୍ୟାନ୍ୟ ଆସବାବ୍ ବ୍ୟବହାର କରି ଶହ ଶହ ପୋଲିସ୍ ବିଭିନ୍ନ ରୂପରେ, ବିଭିନ୍ନ ଢଙ୍ଗରେ ଦିନରାତି କାର୍ଯ୍ୟବ୍ୟସ୍ତ ଥାନ୍ତି । ଅନେକ ହତ୍ୟାକାଣ୍ଡ, ଠକାମି, ଚୋରି, ଡକାୟତି ନେଇ ପୃଥିବୀର ଅନ୍ୟାନ୍ୟ ଦେଶରେ ବି ଏମାନଙ୍କୁ ବୁଲିବାକୁ ପଡ଼େ । ଅନ୍ୟାନ୍ୟ ଦେଶ ବି ବେଳେ ବେଳେ କୌଣସି ଜଟିଳ ଅପରାଧ ଅନୁସନ୍ଧାନ

କରିବାରେ ଏମାନଙ୍କର ସହାୟତା ନେଉଛନ୍ତି । ପୃଥିବୀର ବହୁଦେଶରୁ ସ୍କଟ୍‌ଲଣ୍ଡ ୟାର୍ଡ ଦେଖିବାକୁ ଓ ଏଠାରେ ତାଲିମ୍ ପାଇବାକୁ ଅନେକ କର୍ମକର୍ତ୍ତା ଆସନ୍ତି ।

ଲଣ୍ଡନ ସହରଟା ଯେପରି ବିଶାଳ ଏଥିରେ ଘଟୁଥିବା ଅପରାଧ ସଂଖ୍ୟା ସେହିପରି ବିଶାଳ । କିନ୍ତୁ ସ୍କଟ୍‌ଲଣ୍ଡ ୟାର୍ଡର ପୋଲିସ୍‌ବାହିନୀ ସେସବୁକୁ ବୈଜ୍ଞାନିକ ରୀତିରେ ଅନୁସନ୍ଧାନ କରି ଅପରାଧୀମାନଙ୍କୁ ଧରନ୍ତି । ବହୁ ଅପରାଧୀ ବର୍ଷ ବର୍ଷ ଅନୁସନ୍ଧାନ ପରେ ବି ଧରା ପଡ଼ିନାହାନ୍ତି । ତଥାପି ଅନୁସନ୍ଧାନ ଚାଲିଛି । ହଜାର ହଜାର ଜାଲ ଚେକ୍, ହଜାର ହଜାର ଡାକଟିକଟ୍ ସେଠାରେ ଜମା ହୋଇଛି । ସେସବୁ ସମ୍ବନ୍ଧରେ ଅନୁସନ୍ଧାନ କରି ବହୁ ଦୋଷୀଙ୍କୁ ଧରିଲେଣି । କେତେକର କୂଳ କିନାରା ଏମାନେ ପାଇପାରି ନାହାନ୍ତି । ତେବେ ବି ଚାଲିଛି ଅନୁସନ୍ଧାନ । କେତେ ଅନୁସନ୍ଧାନ, କେତେ ପରୀକ୍ଷା ନିରୀକ୍ଷା ସବୁବେଳେ ଚାଲିଛି, ସ୍କଟ୍‌ଲଣ୍ଡ୍ ୟାର୍ଡ଼ ଭିତରକୁ ନ ଗଲେ ଏହାର ବ୍ୟାପକତା, ଏହାର କର୍ମକୁଶଳତା, କାର୍ଯ୍ୟବ୍ୟସ୍ତତା ସମ୍ବନ୍ଧରେ ଧାରଣା କରି ହେବନି । ନିତି ନିତି କେବଳ କର୍ମଚାରୀମାନଙ୍କୁ ଭୋଜନ, ଜଳପାନ ଚା-କଫି ପ୍ରସ୍ତୁତ କରି ଯୋଗାଇବା ପାଇଁ ଶହ ଶହ ପାଚକ ପାଚିକା କାର୍ଯ୍ୟବ୍ୟସ୍ତ ଥାନ୍ତି ।

ଏହାର ଏକ ଯାଦୁଘର ବି ଅଛି । ଏଥିରେ ଚୋର ଡକାଏତ ଠକ-ଖୁଣୀଙ୍କ ହାତ-ହତିଆର ରଖାଯାଇଛି । ମୋଟାମୋଟି ଅପରାଧୀ-ମାନଙ୍କୁ ଧରିବାରେ, ବିଭିନ୍ନ ବେଆଇନ୍ କାମ, ଗଣ୍ଡଗୋଳ ଜବତ କରିବାରେ ସ୍କଟ୍‌ଲଣ୍ଡ ୟାର୍ଡ ପୋଲିସ୍‌ଙ୍କ କଳ-କୌଶଳ, ଅନୁସନ୍ଧାନ ପ୍ରଣାଳୀ ବଡ଼ ଚମତ୍କାର ମନେହୁଏ । ଅଭିଯାନ ପାଇଁ ଏମାନେ ସଦା ସର୍ବଦା ପ୍ରସ୍ତୁତ ହୋଇଥାନ୍ତି । ତଥାପି କେବେ କେବେ ଅପରାଧୀମାନଙ୍କ କଳକୌଶଳ ଏମାନଙ୍କୁ ବିଭ୍ରାନ୍ତ ବ୍ୟତିବ୍ୟସ୍ତ କରିପକାଏ । ଯାହାହେଲେ ବି ଏମାନଙ୍କର ଅଭିଯାନ କେବେ ବନ୍ଦ ହୁଏନି, କି କୌଣସି ଅପରାଧକୁ ଅବହେଳା କରି ଏମାନେ ଛାଡ଼ି ଦିଅନ୍ତିନି । ଧନ୍ୟରେ ସ୍କଟ୍‌ଲଣ୍ଡ ୟାର୍ଡ ! ଧନ୍ୟ ତୋର ପୋଲିସ୍ ଫଉଜ !

ମାର୍ଲେବୋନ୍ ରୋଡ଼ରେ ଥିବା ମାଡ଼ାମଟୁସା Madame Tussands ଆଉ ଏକ ଆକର୍ଷଣୀୟ ସ୍ଥାନ । ଏଠାରେ ବହୁ ବିଖ୍ୟାତ କୁଖ୍ୟାତ ନରନାରୀଙ୍କର ମହମ ମୂର୍ତ୍ତି ଦେଖିବାକୁ ମିଳେ । ଏଠାକାର ଭୟ-ଭବନ (Chamber of horrors) ର ଦୃଶ୍ୟ ଦେଖିଲେ ଛାତି ଥରଉଠିବ । ମୁଣ୍ଡ ଘୂରେଇ ଦେବ । ସେ ଘରଟା ଟିକିଏ ଅନ୍ଧାରିଆ । କେବଳ ହତ୍ୟାକାଣ୍ଡର ଯନ୍ତ୍ରପାତି ଛୁରି, ବର୍ଚ୍ଛା, ଖଣ୍ଡା, ହାତକଡ଼ା, ମୁଖା ଆଦିରେ ଆଲୁଅ ପଡ଼ୁଥାଏ । ଓହୋ ! ସେ ଦୃଶ୍ୟ କି ଭୟାନକ ! ଏହି ମହମମୂର୍ତ୍ତି ପ୍ରଦର୍ଶନୀ ପ୍ରଥମେ ୧୭୭୦ ଖ୍ରୀଷ୍ଟାବ୍ଦରେ ପାରିସ୍ ସହରରେ ଆରମ୍ଭ ହୋଇଥିଲା ଏବଂ ପରେ ୧୮୩୫ ଖ୍ରୀଷ୍ଟାବ୍ଦରେ ଏହା ଲଣ୍ଡନ ସହରକୁ ଚାଲିଆସିଲା । ସେହିଦିନଠାରୁ ଏହା ଲଣ୍ଡନରେ ରହିଛି । ମୃତ, ଜୀବିତ ପୃଥିବୀର ବହୁ ରାଜା, ରାଣୀ, ରାଜନୀତିଜ୍ଞ ଆଦିଙ୍କର ମୂର୍ତ୍ତି, ଏପରିକି ବହୁ ବିଖ୍ୟାତ ଘଟଣାର ଦୃଶ୍ୟ ମହମରେ ତିଆରି କରାଯାଇ ଏଠି ରଖାଯାଇଛି । ମହାତ୍ମାଗାନ୍ଧୀ, ପଣ୍ଡିତ ନେହେରୁ ଆଦି ଭାରତୀୟ ନେତାମାନଙ୍କର ପ୍ରତିକୃତି ଏଠି ଦେଖିଲି । ବଡ଼ ଜୀବନ୍ତ ଦେଖାଯାଉଥାନ୍ତି ଏ ମୂର୍ତ୍ତିସବୁ । ଗୋଟାଏ ସିନେମା କେଉଁଠି ଦେଖିଥିଲି । ତାର ନାଁ ବୋଧହୁଏ "ମହମ ଘର (Wax house)" । ଜଣେ ଖଳପ୍ରକୃତିର ଲୋକ ଗୋଟାଏ ବିଜ୍ଞାନାଗାର (Laboratory) କରି ସେଠାରେ ବିଭିନ୍ନ ଲୋକଙ୍କର ମହମର ମୁଣ୍ଡ ତିଆରି କରି ରଖିଥିଲା । ସେ ବହୁ ଲୋକଙ୍କୁ ମାରି ତାଙ୍କ ମୁଣ୍ଡରୁ ବାଳ, ମାଂସ ଆଦି କାଢ଼ି ଚର୍ବିରେ ତରଳା ମହମ ଢାଳି ଅପୂର୍ବ କୌଶଳରେ ମୂର୍ତ୍ତି ତିଆରି କରୁଥିଲା ଏବଂ ସେଥିରେ ପ୍ରକୃତ ଆଖି, ବାଳ ଦେଇ ତାକୁ ସଜେଇ ଦେଉଥିଲା । ଦର୍ଶକମାନେ ଦେଖି ଆଶ୍ଚର୍ଯ୍ୟାନ୍ୱିତ ହୋଇ ଯାଉଥିଲେ । ଏତ ଅବିକଳ ସେହି ଲୋକର ମୁଣ୍ଡ ! କିମିତି ଯେ ତାକୁ ତିଆରି କରୁଛି ! ମୃତ ଲୋକର ପରିବାରବର୍ଗ ଏହି ଅବିକଳ ପ୍ରତିମୂର୍ତ୍ତି ଦେଖି କୃତକୃତ୍ୟ ହୋଇ ଯାଉଥିଲେ ଏବଂ ବହୁତ ଦାମ୍ ଦେଇ ତାକୁ କିଣି ନେଉଥିଲେ । ସେମାନେ କିନ୍ତୁ ଜାଣିପାରୁନଥିଲେ ଯେ ଏ ମହାତ୍ମା ଲୋକଙ୍କୁ ମାରି ତାଙ୍କ ମୁଣ୍ଡ ସାହାଯ୍ୟରେ ଏପରି କଳା ନୈପୁଣ୍ୟ ଦେଖାଉଥିଲା । ପରେ ଅବଶ୍ୟ ସବୁ ଜଣାଗଲା ।

ଏଇଟା ଅବଶ୍ୟ କାହାଣୀ, ସିନେମା କାହାଣୀ । କିନ୍ତୁ ମାଡ଼ାମ ଟୁସାରେ ସେମିତି କିଛି ଅପକର୍ମ ଚାଲିନି ତ ! ପଚାରି ବୁଝିଲି, ନା

ସେମିତି ସନ୍ଦେହ କରିବାର କିଛି କାରଣ ନାହିଁ । ତେବେ ରକ୍ଷା ! ଯାହାହେଉ ସେଠାରେ ଥିବା ମହମମୂର୍ତ୍ତିଗୁଡ଼ିକ ମନଦେଇ ଦେଖିଲି । କିନ୍ତୁ ବିଲାତର ରାଜା ପ୍ରଥମ ଚାର୍ଲସ ଓ ସ୍କଟ୍‌ଲାଣ୍ଡର ରାଣୀ ମେରି ଆଦିଙ୍କର ମୁଣ୍ଡକାଟ ଦୃଶ୍ୟ ଦେଖି ଦେହ ଉପରେ ଶୀତେଇ ଉଠିଲା । ଓହୋ, କି ଭୟାନକ ଦୃଶ୍ୟ ! ସେମାନଙ୍କୁ ତଳକୁ ମୁହଁକରି ଶୁଆଇ ଦିଆଯାଇଛି ଏବଂ ଘାତୁକମାନେ ବିରାଟ ବିରାଟ କଟୁରି ବା ଖଡ୍‌ଗରେ ତାଙ୍କ ମୁଣ୍ଡ ହାଣୁଚନ୍ତି । ମହମ ମୂର୍ତ୍ତିର ଦୃଶ୍ୟ ତ ଏଡ଼େ ଭୟଙ୍କର । ପ୍ରକୃତ ଦୃଶ୍ୟ କେଡ଼େ ଭୟଙ୍କର ହୋଇ ନଥିବ । ଏସବୁ ଦେଖିଲା ପରେ ଆଉ ସେଠାରେ ରହିବାକୁ ଇଚ୍ଛା ହେଲାନି । ଛୁଟିପିଟି ହୋଇ ପଳାଇ ଆସିଲି ।

ସେହି ମାର୍ଲେବୋନ୍ ରୋଡ଼ରେ ଗୋଟିଏ ତାରକା-ଭବନ ( Planetorium ) ଅଛି । ତାରକା ଖଚିତ ନଭୋମଣ୍ଡଳର ଅପୂର୍ବ ଦୃଶ୍ୟ ଏଠାରେ ଦେଖିବାକୁ ମିଳେ । ସକାଳ ୧୧ଟାରୁ ସନ୍ଧ୍ୟା ୬ଟା ପର୍ଯ୍ୟନ୍ତ ଏହା ଖୋଲାରହେ ଏବଂ ପ୍ରତି କ୍ଷେପରେ ପ୍ରାୟ ଘଣ୍ଟାଏ ପର୍ଯ୍ୟନ୍ତ ରାତି ଆକାଶର ବିଭିନ୍ନ ଶୋଭା ଗୋଟିଏ ଯନ୍ତ୍ର ସାହାଯ୍ୟରେ ପ୍ରଦର୍ଶିତ ହୁଏ । ସେହି ଘରଟିର ଛାତ ଗୋଲାକାର ଗମ୍ବୁଜ ପରି । ତାହାର ବାହାର ଉପର-ଭାଗରେ ତମ୍ବା ଛପର କରାଯାଇଥାଏ । ଘରକୁ ଅନ୍ଧାର କରି ଛାତର ତଳଭାଗରେ ଛାୟା ଓ ଆଲୋକର ବିଚିତ୍ର ସମାବେଶରେ ଚନ୍ଦ୍ର, ତାରା ଓ ବିଭିନ୍ନ ଗ୍ରହ ଉପଗ୍ରହଙ୍କର ସ୍ଥିତି, ଗତି ଆଦି ଦେଖାଇ ଦିଅନ୍ତି । ଛାତର ନିମ୍ନ ଅଂଶରେ ଦେଖାଯାଉଥାଏ ଲଣ୍ଡନର ଦିଗ୍‌ବଳୟ ଓ ବିଭିନ୍ନ ବିଖ୍ୟାତ କୋଠା, ଗିର୍ଜା ଆଦିର ଦୃଶ୍ୟ । ତେଣୁ ତାହା ଭିତରେ ଥିବାଯାଏ ଲଣ୍ଡନ ଆକାଶର ଦୃଶ୍ୟ ଦେଖିଲାପରି ମନେହୁଏ ।

ଆଗରୁ ତ ଦୋକାନ-ବଜାର ବହୁତ ବୁଲିଥିଲି । ମାଛହାଟ ମୋର ବଡ଼ ପ୍ରିୟ । ତେଣୁ ଲୋର ଥେମସ୍ ଷ୍ଟ୍ରିଟ୍‌ର ବିଖ୍ୟାତ ମାଛହାଟ ବିଲିଙ୍ଗସ୍ ଗେଟ୍‌ରେ ବୁଲିବାକୁ ମୋତେ ଭାରି ଭଲ ଲାଗେ । ଯେତେବେଳେ ସୁବିଧା ପାଏ ସେଠାକୁ ଯାଏ । ସେଠାର ମାଛବିକାଳିଙ୍କ ମତିଗତି, ଢଙ୍ଗରଙ୍ଗ ବଡ଼ ବିଚିତ୍ର ଲାଗେ । ସକାଳୁ ସକାଳୁ ଏମାନଙ୍କର ଆଡ୍‌ଡ଼ାଟା ବେଶ୍ ଜମି ଉଠେ । କଣ ତାଙ୍କ ଗ୍ରାମ୍ୟ ଭାଷାରେ କଥାବାର୍ତ୍ତା ହେଉଥାନ୍ତି କିଛି ବୁଝି ହୁଏନି, କିନ୍ତୁ ଏମାନେ ବେଶ୍ କର୍ମଠ, କର୍ମତତ୍ପର ଥାନ୍ତି । ସେମାନଙ୍କ କନ୍ଧ

ଭାଷା ଆମର ପୂରା ଅବୋଧ୍ୟ; କିନ୍ତୁ ତାଙ୍କ ବଚନିକା, ଅଭିନୟ କୌଣସି ଗ୍ରାମ୍ୟ ରଙ୍ଗମଞ୍ଚରେ ଅଭିନୀତ ଏକ ପ୍ରହସନ ପରି ମନେହୁଏ । ଏମାନଙ୍କର ଏ ବିଚିତ୍ର ଭାଷା 'କକ୍‌ନି' ଜିନିଷଟି କଣ ଜାଣିବାକୁ ଭାରି ଇଚ୍ଛା ହେଲା । ଏହି କକ୍‌ନିର ଏକ ରହସ୍ୟମୟ ବର୍ଣ୍ଣନା ପ୍ରସିଦ୍ଧ ନାଟ୍ୟକାର ବର୍ଣ୍ଣାର୍ଡଶ ତାଙ୍କ ପିଗାମିଲିଅନ୍ (Pygamylion) ନାଟକରେ ଦେଇଛନ୍ତି । ବେଶ୍ ଆମୋଦଦାୟକ ଲାଗେ ଏ କକ୍‌ନି ଭାଷା ଓ ତାକୁ କହୁଥିବା ଲୋକଙ୍କର ଢଙ୍ଗରଙ୍ଗ ।

ଏହି କକ୍‌ନି ଶବ୍ଦଟିର କୌଣସି ବ୍ୟୁତ୍ପତ୍ତି ନାହିଁ । ଏହା ପ୍ରଥମେ ଗ୍ରାମାଞ୍ଚଳରେ ବିକୃତାକାର ଅଣ୍ଡାର ବର୍ଣ୍ଣନାରେ ବ୍ୟବହୃତ ହେଉଥିଲା । ପରେ ଯେ କୌଣସି ଅବାଗିଆ ବା ଉଦ୍ଭଟ ଲୋକକୁ ଏହି ନାଁରେ ଡକା ଗଲା । କିନ୍ତୁ ପ୍ରକୃତରେ ଚିପ୍‌ସାଇଡ୍ (Cheapside) ସେଣ୍ଟ୍ ମାଲେ'ବୋ (St. Mary-le-bow) ଚର୍ଚ୍ଚର ଘଣ୍ଟା ଶୁଣାଯାଉଥିବା ଅଞ୍ଚଳରେ ଯେଉଁମାନଙ୍କର ଜନ୍ମ ତାଙ୍କୁ କକ୍‌ନି କହନ୍ତି । ଏମାନଙ୍କ ଭାଷା ଇଷ୍ଟଏଣ୍ଡ୍ ଓ ଡକ୍‌ସ୍‌ମାନଙ୍କରେ ଶୁଣିବାକୁ ମିଳେ ।

ବିଭିନ୍ନ ରାସ୍ତା ଓ ଗଳିମାନଙ୍କରେ ଥିବା ଦୋକାନସବୁକୁ ଛାଡ଼ିଦେଲେ ବହୁ ବଡ଼ ବଡ଼ ବଜାର ବା ହାଟ ଅଛି ଯେ କି କୌଣସି କୌଣସି ଜିନିଷର ବନ୍ଦୀଖର୍ଦ୍ଦି କେନ୍ଦ୍ର ହିସାବରେ ବିଶେଷ ବିଖ୍ୟାତ । କୋଭେଣ୍ଟ ଗାର୍ଡନ୍ ମାର୍କେଟରେ ଫଳ ଓ ପନିପରିବାର ବିରାଟ ପାଇକାରୀ ବଜାର ଅଛି । ଲିଡ଼େନ୍ ହଲ ମାର୍କେଟରେ ଫଳ, ପନିପରିବା ଓ ମାଛ ମାଂସ ଆଦିର ଖୁବ୍ ଖୁଚୁରା କାରବାର ଚାଲେ । ସ୍ମିଥ୍ ଫିଲଡ୍ ମାର୍କେଟରେ ମାଂସ, କୁକୁଡ଼ା ଆଦିର ବହୁ ପାଇକାରୀ ଦୋକାନ ଅଛି । ଏମିତି କେତେ ଆଉ କେତେ ଦୋକାନ ବଜାର । ବାସ୍ତବିକ୍ ଲଣ୍ଡନରେ ଆଉ ଯାହା ଅଭାବ ଥାଉ, ଦୋକାନ ବଜାରର ଆଦୌ ଅଭାବ ନାହିଁ ।

ଲଣ୍ଡନର ପାର୍କଗୁଡ଼ିକ ଅନ୍ୟ ଏକ ଆକର୍ଷଣ । ଏହି ଜନବହୁଳ ବିରାଟ ସହରରେ ଏହି ଖୋଲା-ପଡ଼ିଆଗୁଡ଼ାକ, ତାକୁ ତୁମେ ପାର୍କ କହ, ମଇଦାନ କହ, ଛୋଟା ବଗିଚା କହ, ବେଶ୍ ଦରକାରୀ । ଲଣ୍ଡନ ସହରର ନାଲି ବସ୍ ପରି ଏହି ପାର୍କସବୁ ତାର ଏକ ବିଶେଷତ୍ୱ । ଯୁଆଡ଼େ

ଗଲେ ଏଥିଭିତରୁ ଗୋଟେ ନା ଗୋଟେ ଦୃଷ୍ଟି ପଥରେ ପଡ଼େ । ଏକେ ତ ଏହି ସହରର ଲୋକସଂଖ୍ୟା ବେଶୀ । ପୁଣି ସେଥିରୁ ଅନେକଙ୍କର ନିଜର ବାସଗୃହ ନାହିଁ । ତେଣୁ ଏହି ସର୍ବସାଧାରଣ ପାର୍କଗୁଡ଼ିକ ଲଣ୍ଡନବାସୀଙ୍କର ବହୁତ ଦରକାରରେ ଆସେ । ସହର ଭିତରେ ବସ୍, କୋଚ୍, କାର୍‌ର ଘେଁ ଘୁଁ ଶବ୍ଦ ପରିବର୍ତ୍ତେ ଏହି ପାର୍କଗୁଡ଼ିକର ଗ୍ରାମ୍ୟ ପରିବେଶ ବେଶ୍ ଉପଭୋଗ୍ୟ । ଏଠି ଶୁଣିବାକୁ ମିଳେ ପକ୍ଷୀମାନଙ୍କର କର୍କଶ ବା ମଧୁର କଣ୍ଠର ତାନ । ଦେଖିବାକୁ ମିଳେ ଗଛଲତାର ସବୁଜିମା ଏବଂ ବିଭିନ୍ନ ପ୍ରକାର୍ ଫୁଲର ଶୋଭା । ଜଳକେଳି, ବଣଭୋଜି, ଟେନିସ୍‌ଖେଳ, ଘୋଡ଼ାଚଢ଼ା ଆଦି ପାଇଁ ଏ ପାର୍କସବୁ ବେଶ ସୁବିଧାଜନକ । ମୋଟାମୋଟି ଯେ ଯେମିତି ଫୂର୍ତ୍ତି କରିବାକୁ ଚାହିଁବ ସେ ବିନାବାଧାରେ ଏ ପାର୍କମାନଙ୍କରେ ତାହା ଚଳାଇ ପାରିବ ।

ହାଇଡ୍ ପାର୍କ ତ ବିଶ୍ୱବିଖ୍ୟାତ । ଏହାକୁ ଲାଗିଛି କେନ୍‌ସିଙ୍ଗ୍‌ଟନ୍ ଗାର୍ଡନ୍ । ଏହାର ପରିବେଶ ବେଶ୍ ଧୀରଶାନ୍ତ । ଲଣ୍ଡନ ସହରର କୋଳାହଳ ଏଠିକି ପ୍ରାୟ ଶୁଣାଯାଏନି । କୌଣସି ଏକ ନିରାଟ ମଫସଲକୁ ଗଲାପରି ଲାଗେ । ଅନ୍ୟାନ୍ୟ ପାର୍କ ଅପେକ୍ଷା ଏଠି ବହୁତ ଧାଈ (Nannies) ଦେଖାଯାନ୍ତି । ସେମାନେ ସୁନ୍ଦର ଚକ୍ ଚକ୍ ଧଳାପୋଷାକ ପିନ୍ଧି, ସେମାନଙ୍କ ମାର୍ଫତରେ ଯେଉଁ ଶିଶୁମାନେ ଥାଆନ୍ତି ସେମାନଙ୍କୁ ପିଲା-ଟଣା ଗାଡ଼ିରେ ଠେଲି ଠେଲି ଏହି ପାର୍କରେ ଥିବା ଗୋଲ୍ ପୋଖରୀ ( Round pond ) କୁ ନିଅନ୍ତି ଏବଂ ପିଲାମାନଙ୍କୁ ଖୁସି କରେଇବାକୁ ନମୁନା ଡଙ୍ଗା ( Model boat ) ଭସାନ୍ତି । ଏହି ପାର୍କରେ ଗ୍ରୀସୀୟ ଦେବତା 'ପିଟର ପ୍ୟାନ୍'ଙ୍କର ଗୋଟିଏ ପ୍ରତିମୂର୍ତ୍ତି ଅଛି । ପିଟର ପ୍ୟାନ୍ ବଣ ଜଙ୍ଗଲର ଠାକୁର । ତାଙ୍କର ପିତା ହେଉଛନ୍ତି ମରକର (Mercu y) ଓ ମା ଜଣେ ବନର ଅପ୍‌ସରା । ସେ କେଉଁଠି ବଣ ପାହାଡ଼ରେ ବୁଲିବାକୁ ଖୁବ୍ ଭଲ ପାଉଥିଲେ । ମିଲଟନ ତାଙ୍କୁ ସର୍ବ ସୌନ୍ଦର୍ଯ୍ୟ ଓ ଚିର ବସନ୍ତର ପ୍ରତୀକ ରୂପେ ବର୍ଣ୍ଣନା କରିଛନ୍ତି । ତେଣୁ ତାଙ୍କ ପ୍ରତିମୂର୍ତ୍ତି ଏହି ସୁନ୍ଦର ଉଦ୍ୟାନରେ ରଖାଯିବାର ସାର୍ଥକତା ବେଶ୍ ଉପଲବ୍‌ଧି କରିହୁଏ ।

ଲଣ୍ଡନର ମଧ୍ୟାଂଶରେ ଯେତେ ସବୁ ପାର୍କ ଅଛି ତା’ ମଧ୍ୟରେ ରିଜେଣ୍ଟ୍ ପାର୍କ ସବୁଠାରୁ ବଡ଼ । ଏଥିରେ ଥିବା ଚିଡ଼ିଆଖାନା ଯୋଗେ ଏହାର ଖ୍ୟାତି । କିନ୍ତୁ ପ୍ରକୃତିରେ ଚିଡ଼ିଆଖାନା ଏହି ପାର୍କ ଭିତରେ ନାହିଁ । ଏହା ପାର୍କର ଉତ୍ତର ପଟକୁ ଲାଗିଛି । ଏଠାକୁ ଆଗରୁ ଥରେ ଦୁଇଥର ଯାଇଥିଲି । ମାତ୍ର କାଲେ ଆଉ କଣ ଦର୍ଶନୀୟ ଜିନିଷ ଅଜ୍ଞାତରେ ରହିଯାଇଥିବ ସେଥିପାଇଁ ଆଉଥରେ ଗଲି । ଏଥିଭିତରେ ଥିବା ଗୋଳେଇ ରାସ୍ତା ଦେଇ ଏପଟ ସେପଟ ବୁଲିଲି । ଏହାର କ୍ୱିନ୍ ମେରୀ ଗୋଲାପ ବଗିଚା (Queen Mary's Rose Garden) ବେଶ୍ ଚିତ୍ତାକର୍ଷକ । ଏପରି ସୁନ୍ଦର ଗୋଲାପ ବଗିଚା ମୁଁ ବିଲାତରେ ଅନ୍ୟ କେଉଁଠି ଦେଖିନି । ଏଠାରେ ଗୋଟାଏ ଜାପାନୀ ବଗିଚା (Japanese Garden) ଅଛି । ଏହି ପାର୍କରେ ଖେଳାଖେଳର ବେଶ୍ ସୁବିଧା, ବିଶେଷତଃ ଟେନିସ୍‌ର । ଏହାର ଉତ୍ତରପଟେ ଗୋଟିଏ ନାଳ ଅଛି । ସେଥିରେ ନୌକା ବିହାରର ବ୍ୟବସ୍ଥା କରାଯାଇଛି । ଏଠି ବି ଗୋଟିଏ ମୁକ୍ତାଙ୍ଗନ ଥିଏଟର (Open-air Theatre) ଅଛି । ସେଠାରେ ସାଧାରଣତଃ ସେକ୍‌ସପିଅରଙ୍କ ନାଟକସବୁ ପରିବେଷଣ କରାଯାଏ ।

ଗ୍ରୀନ ପାର୍କ ମଧ୍ୟ ଲଣ୍ଡନର ମଧ୍ୟାଂଶରେ ଅବସ୍ଥିତ । ଏଠାରେ ଖାଲି ଗଛ ଓ ଘାସପଡ଼ି (Trees and lawns) ଦେଖିବାକୁ ମିଳେ । ଫୁଲଗଛ ପ୍ରାୟ ନାହିଁ । ନାଁଟା ବୋଧହୁଏ ସେଥିଯୋଗେ ସବୁଜ ଉଦ୍ୟାନ (Green park) ବୋଲି ରଖାଯାଇଛି । ପୂର୍ବ କାଳରେ ବିଲାତରେ ଏକ ବିଚିତ୍ର ରୀତି ପ୍ରଚଳିତ ଥିଲା । ଯଦି ଦୁଇ ଜଣଙ୍କର କଳି ଲାଗୁଥିଲା ସେମାନଙ୍କୁ ଲଢ଼ିବାକୁ କୁହାଯାଉଥିଲା । ଯେ ସେ ଲଢ଼େଇରେ ଜିତୁଥିଲା ତାର ଜିଦ୍ ବା ଦାବୀ ବଜାୟ ରହୁଥିଲା । ଏହି ଗ୍ରୀନ୍‌ପାର୍କ ସେ ପ୍ରକାର ବ୍ୟକ୍ତିଗତ ଲଢ଼େଇ ବା ମଲ୍ଲଯୁଦ୍ଧର ପ୍ରଧାନ ପୀଠ ଥିଲା ।

ବକିଂହାମ୍ ପ୍ରାସାଦକୁ ଲାଗି ସେଣ୍ଟ୍ ଜେମସ୍ ପାର୍କ St. James park) । ଏହା ଲଣ୍ଡନର ସବୁଠାରୁ ପୁରାତନ ପାର୍କ । ଅଷ୍ଟମ ହେନେରିଙ୍କ ସମୟରେ ଏହି ପାର୍କର ସୃଷ୍ଟି । ପ୍ରଥମ ଜେମସ୍ ଏଥିରେ ଏକ ବନ୍ୟ ପଶୁଭବନ (Managerie) ତିଆରି କରିଥିଲେ । ଦ୍ୱିତୀୟ ଚାର୍ଲସ୍

ଏହାକୁ ଭର୍ସାଇଲସ୍ ପରି କରିବାକୁ ଏଥିରେ ବହୁତ ନାଳ ଖୋଳାଇ-ଥିଲେ । ଚତୁର୍ଥ ଜର୍ଜ ଏହାକୁ ବିଲାତି ରୂପ ଦେବାକୁ ଏହି ନାଳସବୁ ପୋତାଇ ଏଥିରେ ଏକ ବଡ଼ ପୋଖରୀ ଖୋଳାଇଲେ ଏବଂ ତାହା ହ୍ରଦ ନାଁରେ ପାର୍କର ସୌନ୍ଦର୍ଯ୍ୟ ବୃଦ୍ଧି କଲା । ଏବେ ବି ସେ ହ୍ରଦ ଅଛି । ଏଠାରେ ପେଲିକାନ୍ ଆଦି ବିଭିନ୍ନ ଜଳ-ପକ୍ଷୀ ଦେଖିବାକୁ ମିଳନ୍ତି । ବିଖ୍ୟାତ ମଲ ରାସ୍ତା (The Mall) ଏହି ପାର୍କର ଗୋଟିଏ ଅଂଶ । ଏହାର ଲଗାଲଗି ଗ୍ରିନ୍‌ପାର୍କ ଏବଂ ଏହାର ଅଦୂରରେ ରାଜୋଦ୍ୟାନ (Palace gardens) । ଏହି ଉଦ୍ୟାନ ସମୂହ ପରିବେଶ ମଧ୍ୟରେ ବକିଙ୍ଗ୍‌ହାମ୍ ରାଜପ୍ରାସାଦ ଅବସ୍ଥିତ ।

ଦିନେ ସେଣ୍ଟ୍ ଜେମସ୍ ପାର୍କରେ ବୁଲୁଛି, ହଠାତ୍ ଦୃଷ୍ଟି ପଡ଼ିଲା ଗୋଟିଏ ଯୁଗଳ ମୂର୍ତ୍ତିଙ୍କ ଉପରେ । ଠିକ୍ ଯୁଗଳ ମୂର୍ତ୍ତି ନୁହଁନ୍ତି କାରଣ ରାଧାକୃଷ୍ଣଙ୍କ ଯେଉଁ ଯୁଗଳ ମୂର୍ତ୍ତିର ବର୍ଣ୍ଣନା ଆମେ ପୁରାଣମାନଙ୍କରେ ପଢ଼ୁ ବା ଚିତ୍ର ଓ ଦେବାଳୟରେ ଦେଖୁ ଏ ଦୁହେଁ ସେମିତି ଯୋଡ଼ି ହୋଇ ଠିଆ ହୋଇ ନଥାନ୍ତି; କିନ୍ତୁ ହଳବାନ୍ଧି ପଡ଼ିଥାନ୍ତି । ମହିଳାଙ୍କ କୋଳରେ ମୁଣ୍ଡଦେଇ ଶୋଇଥାନ୍ତି ଯୁବକ ଜଣକ । କିଏ ଏମାନେ ? କଣ ପ୍ରେମିକ-ପ୍ରେମିକା ନା ସ୍ୱାମୀ-ସ୍ତ୍ରୀ । ମହିଳା ଜଣକ ତାଙ୍କ କୋଳାଶ୍ରିତ ପୁରୁଷଙ୍କ ତୁଳନାରେ ଖୁବ୍ ବୟସ୍କା, ବୟସ୍କା ବି । ତେବେ ଏ କ'ଣ ମା-ପୁଅ । ହେଲେ ଏତେବଡ଼ ପୁଅକୁ କୋଳରେ ଶୁଆଇଛନ୍ତି କାହିଁକି ? ପୁଅମଣିଙ୍କୁ କଣ ବେମାରି ଧରିଲା ? କି ବେମାରି ଧରିଲା ଏ ପାର୍କରେ । ଏ ଦେଶରେ ତ ମା' ପୁଅଙ୍କର ଏତେ ନିବିଡ଼ ସମ୍ପର୍କ ଦେଖାଯାଏନି । ପୁଅ ଟିକିଏ ବଡ଼ ହେଲେ ସେ ତ ଏଠି ମା'ଠାରୁ ପୂରା ଅଲଗା ରହେ । ତେବେ କିଏ ଏମାନେ ? କ'ଣ ଏମାନଙ୍କର ସମ୍ପର୍କ ? ନିଶ୍ଚୟ ଏମାନେ ପ୍ରେମିକ ପ୍ରେମିକା ବା ସ୍ୱାମୀସ୍ତ୍ରୀ । ପ୍ରେମରେ ବୟସର ବ୍ୟବଧାନ ବାଧା ସୃଷ୍ଟି କରି ପାରେନି । ଏମିତି କେତେ କ'ଣ ଚିନ୍ତାର ସୁଅ ମୋ ମୁଣ୍ଡ ଭିତରେ ଛୁଟିଲା ।

ଷ୍ଟିଭେନ୍‌ସନ୍ ହାଜ୍‌ଲିଟ ଆଦି ପ୍ରସିଦ୍ଧ ପ୍ରାବନ୍ଧିକମାନେ କହିଚନ୍ତି ବୁଲିବୁଲି କଲାବେଳେ ମନକୁ ନାନା ଚିନ୍ତାରେ ଭାରାକ୍ରାନ୍ତ କରିବା ଉଚିତ

ନୁହେଁ କାରଣ ମନଟା ଖୋଲା ଓ ନିର୍ମଳ ନ ରହିଲେ ବାହ୍ୟ ପ୍ରକୃତିର ପ୍ରଭାବ ଅନୁଭବ କରିହୁଏନା । କିନ୍ତୁ ମୋର ପ୍ରକୃତିଟା ଏହାର ଠିକ୍ ଓଲଟା । ମୁଁ ପାଦରେ ହେଉ ଯାନବାହନରେ ବୁଲାବୁଲି କଲାବେଳେ ଆଖି ଦୁଇଟାରେ ଘରଆଡ଼କୁ ଚାହୁଁଥାଏ ସିନା କିନ୍ତୁ ମୁଣ୍ଡ ଭିତରେ ଚାଲିଥାଏ ଯେମିତି । ପାକୁଳି ଅବଶ୍ୟ କରୁ ନଥାଏ । ତେବେ ମଝିରେ ମଝିରେ ଓଠ ଦୋହଲି ଯାଉଥାଏ । ପଦେ ଅଧେ ଅସ୍ପଷ୍ଟ କଥା କଣ୍ଠନାଳୀରୁ ବାହାରି ପଡ଼ୁଥାଏ ।

ତେବେ କିଏ ଏମାନେ ? ଯେ ହୁଅନ୍ତୁ ମୋର ସେଥିରେ ଯାଏ ଆସେ କେତେ । ଇମିତି ତ କେତେ ଏଠିକି ଆସିଚନ୍ତି । ଯାଙ୍କ ପାଇଁ କାଇଁ ଏତେ ଚିନ୍ତା ! ଚିନ୍ତା କରେ ନ କରେ ଗୋଡ଼ ଦିଟା କିନ୍ତୁ ସେହିଆଡ଼କୁ ମାଡ଼ି ଚାଲିଲେ । ଟିକିଏ ଆଗେଇ ଯିବାପରେ ଦେଖେ ତ ସେମାନେ ଆଉ କେହି ନୁହନ୍ତି ମୋ ପୂର୍ବପରିଚିତ ଶ୍ରୀମାନ୍ ଭଟ୍ଟ ଓ ଶ୍ରୀମତି ଦେଶାଇ । ବାଃ, ବେଶ୍ ଆନନ୍ଦ-ଉଲ୍ଲାସ କରୁଚନ୍ତି ତ ! କରନ୍ତୁ ଯେତେ ଇଚ୍ଛା ଆନନ୍ଦ ଉଲ୍ଲାସ । କିନ୍ତୁ ଯାଙ୍କ ସମସ୍ୟାର କଣ କିଛି ସମାଧାନ ହେଲା ? ଯାହାହେଉ, ମୋର ସେଥିରେ ମୁଣ୍ଡ ପୂରେଇବା ଦରକାର ନାହିଁ । ମାଞ୍ଚେଷ୍ଟରର ଘଟଣା ମନେ ପଡିଯିବାରୁ ଆଗକୁ ଯିବାକୁ ଇଚ୍ଛା ହେଲାନି ।

ଭାଗ୍ୟ ଯେ ଶ୍ରୀମତି ଦେଶାଇ ମୋତେ ଦୂରରୁ ଚିହ୍ନି ପାରିଲେନି । କାରଣ ପାଗଟା ଟିକିଏ ଅନ୍ଧାରିଆ ଥିଲା । ଆଉ ମୁଁ ଥଣ୍ଡା ଲାଗିବା ଭୟରେ ଦେହରେ ମୋର ହବିଟ ଓଭର କୋର୍ଟଟା ପିନ୍ଧିଥାଏ ଏବଂ ମୁଣ୍ଡରେ ଗୋଟିଏ ମଫଲାର ଜୋର୍‌ରେ ଭିଡ଼ିଥାଏ । ଯାହାହେଉ ନ ଚିହ୍ନିଚନ୍ତି ଭଲ । ନୋହିଲେ ଏଇଲେ ଗୁଡ଼ାଏ ଗଡର୍ ଗଡର୍ ହେବାକୁ ପଡ଼ିଥାନ୍ତା ! ଚୁପ୍‌କିନା ପୃଷ୍ଠଭଙ୍ଗ ଦେଇ ଅନ୍ୟ ଆଡ଼େ ମୁହାଁଇଲି । ଉଃ ରକ୍ଷା ମିଳିଲା !

# ଗୃହ କାମ ଛାଡ଼ ନାହିଁ !

ବିଲାତର ଭୌଗୋଳିକ ଆୟତନ ତୁଳନାରେ ଏଠାର ଶିକ୍ଷାୟତନମାନଙ୍କର ସଂଖ୍ୟା ଖୁବ୍ ବେଶୀ । ଆଗରୁ ଅକ୍ସଫୋର୍ଡ଼ କେମ୍ବ୍ରିଜ୍ ପରି, ବହୁ ପୁରାତନ ବିଶ୍ୱବିଦ୍ୟାଳୟମାନ ଅଛି ଏବଂ ଆଜିକାଲି ବି ବହୁ ବିଶ୍ୱବିଦ୍ୟାଳୟ ସ୍ଥାପନ କରାଯାଇଛି । ଅକ୍ସଫୋର୍ଡ ଓ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଯୋଡ଼ିକ ସାରା ପୃଥିବୀରେ ବିଖ୍ୟାତ । ଶିକ୍ଷାବିତ୍‌ମାନେ କହନ୍ତି ଏହି ଦୁଇ ବିଶ୍ୱବିଦ୍ୟାଳୟ ପାରିସ୍ ଓ ବୋଲଗ୍ନା ବିଶ୍ୱବିଦ୍ୟାଳୟର ପରମ୍ପରା ଓ ରୀତିନୀତି ଦ୍ୱାରା ଆଧାରିତ । ସେହିପରି ସ୍କଟ୍‌ଲଣ୍ଡର ବିଶ୍ୱବିଦ୍ୟାଳୟମାନଙ୍କରେ ଜର୍ମାନୀର ପୁରାତନ ବିଶ୍ୱବିଦ୍ୟାଳୟମାନଙ୍କର ଛାପ ରହିଯାଇଛି । ଲଣ୍ଡନ ବିଶ୍ୱବିଦ୍ୟାଳୟର ଖ୍ୟାତି ଓ ବ୍ୟାପ୍ତି ଖୁବ୍ ଯଥେଷ୍ଟ । ସାରା ବିଲାତର କଲେଜ ଛାତ୍ରଛାତ୍ରୀ ସଂଖ୍ୟାର ପ୍ରାୟ ପଞ୍ଚମାଂଶ ଏହା ଅଧୀନରେ ଅଧ୍ୟୟନ କରନ୍ତି । ଆଉମଧ୍ୟ ରେଡ଼୍‌ବିକ୍, ଓ୍ୱେଲସ୍, ଉତ୍ତର ଷ୍ଟାଫୋର୍ଡ଼ ସାୟାର, ସସେକ୍‌ସ, ୟର୍କ, ପୂର୍ବ ଆଙ୍ଗ୍ଲିଆ ଆଦି ଅନ୍ୟ ବିଶ୍ୱବିଦ୍ୟା ଳୟମାନ ଅଛି । ଏହି ବିଶ୍ୱବିଦ୍ୟାଳୟମାନଙ୍କର ଅଧ୍ୟାପନା ରୀତି ଓ ପରମ୍ପରା ଅନେକାଂଶରେ ପରସ୍ପରଠାରୁ ଭିନ୍ନ ହେଲେ ବି ସେମାନଙ୍କ ମଧ୍ୟରେ କିଛି କିଛି ସାମଞ୍ଜସ୍ୟ ଅଛି । ସେମାନେ ଯେଉଁ ଡିଗ୍ରୀ ବା ଉପାଧି ପ୍ରଦାନ କରନ୍ତି ତା'ର ମହତ୍ତ୍ୱ ଖୁବ୍ ବେଶୀ । ଆମ ଭାରତୀୟ ଲୋକେ ଏହି ବିଲାତି ଡିଗ୍ରୀ ପାଇବାକୁ ମହାବିକଳ । ସେ ନିଜ ନାଁ ପାଖରେ ବି. ଏ. (ଅକ୍‌ସନ) ବା ବି. ଏସ୍‌ସି (କାଣ୍ଟାବ୍) ଲେଖିପାରିଲେ ସେତିକି ନିଜକୁ ଧନ୍ୟ ଧନ୍ୟ ମନେକରନ୍ତି । ଆମ ଦେଶପରି ସେମାନଙ୍କ ପାଠ୍ୟକ୍ରମରେ ଆଇନ୍, ଦର୍ଶନ, କଳା, ବିଜ୍ଞାନ ଆଦି ଅନ୍ତର୍ଭୁକ୍ତ ଏବଂ ଆମ ଦେଶରେ ଯେମିତି ପାଠ୍ୟକ୍ରମ ସହିତ ଜୀବିକା ଅର୍ଜନ ମନ୍ତ୍ରାର ବିଶେଷ ଘନିଷ୍ଠ ସମ୍ପର୍କ ନାହିଁ, ତାଙ୍କ ଦେଶର ଅବସ୍ଥା ମୋଟାମୋଟି ସେଇଆ । ବିଲାତରେ ବି ଆମ ଦେଶପରି ସାଧାରଣ ପାଠ୍ୟକ୍ରମ ଛଡ଼ା ପଶୁ ଚିକିତ୍ସା, କୃଷି, ଡାକ୍ତରୀବିଦ୍ୟା ଆଦି ବୈଷୟିକ ଶିକ୍ଷା ଓ ନାଟକ, ସଙ୍ଗୀତ, ନୃତ୍ୟ, ଚିତ୍ରକଳା ଆଦି ସାଂସ୍କୃତିକ ଶିକ୍ଷାର କଲେଜ ଓ ବିଦ୍ୟାଳୟମାନ ଅଛି । ଯେଉଁ ଛାତ୍ରମାନେ କଲେଜ ଶିକ୍ଷାର ସୌଭାଗ୍ୟ ଲାଭକରନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ

କଳା ବା ବିଜ୍ଞାନ ବିଷୟରେ ପଢନ୍ତି । ଅନେକେ ଅବଶ୍ୟ ବୈଷୟିକ ଶିକ୍ଷାୟତନରେ ଯୋଗ ଦିଅନ୍ତି, ଯେଉଁଠାକି ତାଙ୍କ ଜୀବିକା-ବୃତ୍ତିରେ ସାହାଯ୍ୟ କରେ । କିନ୍ତୁ ଅନ୍ୟମାନଙ୍କ ପକ୍ଷରେ ଏହି ବିଶ୍ୱବିଦ୍ୟାଳୟ ଶିକ୍ଷା ଜୀବିକା ଉପାର୍ଜନରେ ବିଶେଷ ସହାୟକ ହୁଏ ନାହିଁ । ତେଣୁ ଏହି କଳା-ବିଜ୍ଞାନ ଶିକ୍ଷା ଅନେକାଂଶରେ ଅସାର ପରି ମନେ ହୁଏ ।

କିନ୍ତୁ ଏହି ସାଧାରଣ ଶିକ୍ଷା ସମ୍ବନ୍ଧରେ ଅନେକେ ଯୁକ୍ତି କରନ୍ତି ଯେ କଲେଜମାନଙ୍କର ଛାତ୍ରଛାତ୍ରୀମାନେ ତିନି ଚାରିବର୍ଷ ବିଭିନ୍ନ ବିଷୟରେ ଉଚ୍ଚ ଶିକ୍ଷା ଲାଭକଲେ ସେମାନଙ୍କ ମାନସିକ ଶକ୍ତିର ପୂର୍ଣ୍ଣ ବିକାଶ ସମ୍ଭବ ହୁଏ । ତେଣୁ ତାହା ତାଙ୍କ ଜୀବିକା-ବୃତ୍ତିରେ ନିଶ୍ଚୟ ସାହାଯ୍ୟ କରେ । ବିଲାତର ବିଶ୍ୱବିଦ୍ୟାଳୟ ଶିକ୍ଷାରେ ଆମ ଦେଶ ପରି ବହୁ ସମସ୍ୟା ଦେଖା ଦେଇଛି । ଆଉ କେତେ ଅଧିକ କଲେଜ ଖୋଲାଯିବ ଏବଂ ସାଧାରଣ କଳା-ବିଜ୍ଞାନ ଶିକ୍ଷାନୁଷ୍ଠାନ ଓ ବୈଷୟିକ ଶିକ୍ଷାନୁଷ୍ଠାନମାନଙ୍କ ମଧ୍ୟରେ ଯେଉଁ ଅନୁପାତ ରହିଛି ତାହା ସେପରି ରହିବ କି ସେଥିରେ କିଛି ବ୍ୟତିକ୍ରମ କରାଯିବ କି ଅନ୍ୟ କେଉଁ ପ୍ରକାର ଶିକ୍ଷାୟତନ ଖୋଲାଯିବ ଏହି ବିଷୟରେ ସେ ଦେଶର ଶିକ୍ଷାବିତ୍‌ମାନେ ଓ ସରକାର ନାନା ଚିନ୍ତା ଓ ବ୍ୟବସ୍ଥା କରୁଛନ୍ତି ।

ଭାରତପରି ବିଲାତର କଲେଜ ଶିକ୍ଷା ଯେପରି ଜନସାଧାରଣଙ୍କ ଦୈନନ୍ଦିନ କାର୍ଯ୍ୟକଳାପରୁ ଟିକିଏ ଅଲଗା ରହିଲା ପରି ମନେହୁଏ । ବିଭିନ୍ନ ପାଠ୍ୟକ୍ରମରେ ଛାତ୍ରଛାତ୍ରୀମାନେ ଶହ ଶହ ବା ହଜାର ହଜାର ବର୍ଷ ପୂର୍ବେ କଣ ଘଟିଥିଲା ଏବଂ ପରେ କ'ଣ ଘଟିବ କେତେକାଂଶରେ ସେହି ବିଷୟସବୁ ଅଧ୍ୟୟନ କରନ୍ତି; କିନ୍ତୁ ବର୍ତ୍ତମାନ କଣ ଘଟୁଛି ଏବଂ କଣ ଘଟିବା ଉଚିତ୍ ସେ ବିଷୟ ସେମାନଙ୍କ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ ହେଲାପରି ମନେ ହୁଏନି । ଜନସାଧାରଣଙ୍କ ମନରେ ଏହି ତଥାକଥିତ ଉଚ୍ଚଶିକ୍ଷା ବିପକ୍ଷରେ ଏକ ତୀବ୍ର ବିରୋଧର ଉଦ୍ରେକ ହୋଇଛି ।

ସେ ଯାହାହେଉ ବିଲାତର ବିଭିନ୍ନ ବିଶ୍ୱବିଦ୍ୟାଳୟ ଦେଖିବାର ବାସନା ମୋର ବହୁ ଦିନରୁ ଥିଲା । ବେଳେ ବେଳେ ସୁବିଧା ପାଇଲେ ଲଣ୍ଡନ ବିଶ୍ୱବିଦ୍ୟାଳୟକୁ ଯାଇ ସେଠାକାର ଛାତ୍ରଛାତ୍ରୀଙ୍କ ପଢ଼ାପଢ଼ି ଚାଲିଚଳନ ଆଦି ଦେଖେ । ସେଠାକାର ଶିକ୍ଷାର ପରିସର, ଖେଳ,

ସଞ୍ଚରଣର ବ୍ୟବସ୍ଥା ଆଦି ମୋ ମନରେ ଗଭୀର ରେଖାପାତ କରିଥିଲା । ସବୁଟା ଖୁବ୍ ସୁଷମ ସୁନ୍ଦର; ବେଶ୍ ଚିତ୍ତାକର୍ଷକ; କିନ୍ତୁ ତାଙ୍କ ଓଡ଼ିଆ ବିଭାଗ ଦେଖି ମୋତେ ହସମାଡ଼ିଲା । ଆଶ୍ଚର୍ଯ୍ୟ କଥା ! ବାହାରବାସୀ କ'ଣ ଓଡ଼ିଆରେ ଗବେଷଣା କରିବେ, ଓଡ଼ିଆ ସାହିତ୍ୟ ଚର୍ଚ୍ଚା କରିବେ । କିନ୍ତୁ ପ୍ରକୃତରେ ସେଥିର ବେଶ୍ ସୁନ୍ଦର ବୈଜ୍ଞାନିକ ବ୍ୟବସ୍ଥା କରାଯାଇଛି । ଯେଉଁ ଅଧ୍ୟାପକ ସେ ଦାୟିତ୍ୱରେ ଅଛନ୍ତି ସେ ଓଡ଼ିଆ ଭାଷାର ଧ୍ୱନିମୂଳକ (Phonetic) ରେକର୍ଡ଼ କେତେଖଣ୍ଡ କରାଇ ଦେଇଥାନ୍ତି । ଭଲ ଓଡ଼ିଆ ପୁସ୍ତକାଗାରଟିଏ ବି ଥାଏ । ସେହି ପୁସ୍ତକାଗାରରେ ମୋର "କୋଇଲି କାହାଣୀ", "ଆଦର୍ଶ ପରିବାର" ଆଦି ବହି ଦେଖି ବେଶ ଉଲ୍ଲସିତ ହୋଇ ଉଠିଲି । ଲଣ୍ଡନ ସହରରେ ପୁଣି ଏକ ବିଖ୍ୟାତ ବିଶ୍ୱବିଦ୍ୟାଳୟରେ ମୋ ପରି ଜଣେ ନଗଣ୍ୟ ଲେଖକର ବହି ରଖାଯାଇଛି । ଏତ କିଛି କମ୍ ସୌଭାଗ୍ୟର ବିଷୟ ନୁହେଁ । କିନ୍ତୁ ଏ କଥା ସମ୍ଭବ ହେଲା କିମିତି ? ଏ ବିଷୟରେ ଅନୁସନ୍ଧାନ କରି ବୁଝିଲି ଯେ ଏମାନେ ବିଭିନ୍ନ ଭାରତୀୟ ଓ ଅନ୍ୟାନ୍ୟ ଦେଶର ଭାଷାରେ ଗବେଷଣା କରିବାକୁ ଓ ଶିକ୍ଷା ଦେବାକୁ ଗୋଟିଏ ଗୋଟିଏ ବିଭାଗ ଖୋଲିଛନ୍ତି ଏବଂ ସେହି ସେହି ଭାଷାରେ ଗୋଟିଏ ଗୋଟିଏ ଉନ୍ନତ ଧରଣର ପୁସ୍ତକାଗାର ରଖିଛନ୍ତି । ପୁସ୍ତକ ଗୁଡ଼ିକର କଥାବସ୍ତୁ ନେଇ ସେମାନଙ୍କର ଶ୍ରେଣୀ ବିଭାଗ କରାଯାଇଛି । ମୋ ବହିରେ ହାସ୍ୟୋଦ୍ଦୀପକ ଓ ବ୍ୟଙ୍ଗମୂଳକ ଲେଖାଥିବାରୁ ତାକୁ ସେହି ବିଭାଗର ଅନ୍ତର୍ଭୁକ୍ତ କରାଯାଇ ରଖାଯାଇଛି । ଏସବୁ ଯେମିତି ଆମ ଦେଶ ଓ ଆମ ପ୍ରତି ଏକ ବିରାଟ ବ୍ୟଙ୍ଗପରି ମନେ ହେଲା । ଓଡ଼ିଆ ଲୋକେ ଓଡ଼ିଆରେ, ସଂସ୍କୃତରେ ଶିକ୍ଷା ଲାଭ କରିବେ ଗବେଷଣା କରିବେ ବାହାରରେ । କିନ୍ତୁ କରୁଛନ୍ତି ତ !

ଯାହା ପାରିଲି ଲଣ୍ଡନ ବିଶ୍ୱବିଦ୍ୟାଳୟ ବୁଲିବୁଲି କରି ଦେଖିଲି । ମନ ଥାଏ କେମ୍ବ୍ରିଜ ଓ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟ ଦୁଇଟି ଦେଖିବାକୁ । ଲଣ୍ଡନରୁ କେମ୍ବ୍ରିଜ୍ ୫୪ ମାଇଲ ଓ ଅକ୍ସଫୋର୍ଡ ୫୭ ମାଇଲ । ପ୍ରଥମେ ବାହାରିଲି ଅକ୍ସ୍‌ଫୋର୍ଡ଼ । ମେଠାକୁ ବସ ଓ ଟ୍ରେନ୍‌ରେ ଯାଇହୁଏ । ମୁଁ ବସ୍ ଆଶ୍ରା ଧରିଲି । ସେଥିରେ ଥାନ୍ତି ଜଣେ ପଥ-ପ୍ରଦର୍ଶକ (Guide) । ସେ ବାଟଯାକ ବିଭିନ୍ନ ସ୍ଥାନର ଐତିହାସିକ

ମାହାତ୍ମ୍ୟ ନେଇ ବକ୍ତୃତା ଚଳାଇଥାନ୍ତି । ତାଙ୍କ କଥାରୁ ଜଣାଯାଉଥାଏ ଯେମିତି ବିଲାତର ପ୍ରତିକୋଣ, ଅନୁକୋଣ, ବୃକ୍ଷଲତା ଏପରିକି ପ୍ରତି ଧୂଳିକଣାରେ କିଛି ନା କିଛି ମହତ୍ତ୍ୱ ରହିଛି । କେଉଁଠି କେଉଁ ସାହିତ୍ୟିକ ବାସ କରୁଥିଲେ ତ କେଉଁଠି କେଉଁ ନାମଜାଦା ଜମିଦାର (Lord) ରହୁଥିଲେ, ଏ ସବୁ ଶୁଣି ଶୁଣି କାନ ବଧିର ହୋଇଯାଉଥାଏ । ହେଲେ ତାଙ୍କ ପାଟି ବନ୍ଦ ହେଉନଥାଏ । ବେଶ୍ ଆନନ୍ଦଦାୟକ ଲାଗୁଥାଏ ଏ ଯାତ୍ରା । ଅକ୍ସଫୋର୍ଡରେ ପହଞ୍ଚିବା ପରେ ବସ୍ ତା' ଘାଟିରେ ଅଟକି ଗଲା ଏବଂ ଆମ୍ଭମାନଙ୍କୁ କୁହାଗଲା, ଯେ ଯୁଆଡ଼େ ମନଇଚ୍ଛା ବୁଲି ନିର୍ଦ୍ଧିଷ୍ଟ ସମୟରେ ବସ୍ ପାଖକୁ ଫେରି ଆସିବାକୁ । ମୁଁ ମହାଆନନ୍ଦରେ ମୋ କୋଥଳିଟା ହାତରେ ଧରି ଅକ୍ସଫୋର୍ଡ ସହର ପରିକ୍ରମା କରିବାକୁ ବାହାରି ପଡ଼ିଲି । କେଉଁଠି ଠିଆ ହୋଇ, କେଉଁଠି ଉଙ୍କିମାରି, ସୁବିଧା ଦେଖି କାହାକୁ କ'ଣ ପଚାରି ମୁଁ ଏହି ବିଖ୍ୟାତ ବିଶ୍ୱବିଦ୍ୟାଳୟ ସମ୍ବନ୍ଧରେ ତଥ୍ୟ ସଂଗ୍ରହ କରିବାକୁ ଲାଗିଲି ।

ଆମ ଦେଶରେ ବିଶ୍ୱବିଦ୍ୟାଳୟର କେନ୍ଦ୍ରପୀଠକୁ ସାଧାରଣତଃ ଜନାକୀର୍ଣ୍ଣ ସହରାଞ୍ଚଳଠାରୁ ଦୂରରେ ରଖାଯାଏ ଯେପରି ବାଣୀ ଆରାଧନାରେ କିଛି ବାଧା ନ ଜନ୍ମିବ । କିନ୍ତୁ ଅକ୍ସ୍‌ଫୋର୍ଡରେ ଦେଖିଲି ସହର ଓ ବିଶ୍ୱବିଦ୍ୟାଳୟ ଭିତରେ କୌଣସି ସେପରି ସମ୍ମାନଜନକ ବ୍ୟବଧାନ ନାହିଁ । କି କଥା ଏ ! ମା ବୀଣାପାଣିଙ୍କୁ ଏପରି ଅବଜ୍ଞା କାହିଁକି ? ଏହି ଶିଳ୍ପସମୃଦ୍ଧ ସହରର ଦୋକାନ ବଜାରକୁ ଲାଗି କଲେଜ ସବୁ ତିଆରି ହୋଇଛି । କ'ଣ ଏହାର କାରଣ ?

ପ୍ରାୟ ଏକହଜାର ବର୍ଷ ତଳେ ଏହି ବିଶ୍ୱବିଦ୍ୟାଳୟ ସ୍ଥାପିତ ହୋଇଥିଲା । ସେତେବେଳେ ହୁଏତ ସହରମାନଙ୍କରେ ଜନଗହଳି ସେତେ ନ ଥିଲା । ତେଣୁ ବିଶ୍ୱବିଦ୍ୟାଳୟ ସବୁକୁ ସହର ବଜାରର ଦୂରରେ ରଖିବାର କୌଣସି ଆବଶ୍ୟକତା ନଥିଲା । ସେତେବେଳେ ଵି ଏ ଜାଗା ବଣ-ଜଙ୍ଗଲରେ ପୂର୍ଣ୍ଣ ଥିବ । ତେଣୁ ଜନବସତି ଭିତରେ ବିଶ୍ୱବିଦ୍ୟାଳୟ ରହିବାକୁ ଅନେକେ ନିରାପଦ ମନେ କରିଥିବେ । କାଳକ୍ରମେ ସହର ଓ ତାହାର ଦୋକାନ ବଜାର ବଢ଼ି ଯାଇଥିବାରୁ ପରିସ୍ଥିତିଟା ଏପରି ବେଆଡ଼ା ଲାଗୁଛି ।

ଅକ୍ସଫୋର୍ଡ଼ ସହର ଥେମସ୍ ନଦୀ କୂଳରେ ଅବସ୍ଥିତ । ଏଠାରେ ଏହାକୁ ଆଇସିସ୍ ବୋଲି କହନ୍ତି । ଚେରୱେଲ୍ ନଦୀ ଥେମସ୍ ସହିତ ଏହିଠାରେ ମିଶିଛି । ଚେରୱେଲ୍ ନଦୀ ଉପରେ ଥିବା ମାଗ୍‌ଡାଲେନ୍ ପୋଲର ଦୃଶ୍ୟ ଖୁବ୍ ସୁନ୍ଦର । ଅକ୍ସଫୋର୍ଡ଼ର ପ୍ରଧାନ ରାସ୍ତା ହେଲା 'ହାଇ ଷ୍ଟ୍ରିଟ୍' ଓ 'ବ୍ରୋଡ୍ ଷ୍ଟ୍ରିଟ୍' । ହାଇ ଷ୍ଟ୍ରିଟ୍ ଦେଇ ଗତି କଲେ ବହୁତ କଲେଜ୍ ଦେଖିବାକୁ ମିଳେ । ସେଣ୍ଟ୍ ମେରୀ ଚର୍ଚ୍ଚ ପାଖଦେଇ ଡାହାଣକୁ ଗଲେ ଏକ ବିରାଟ ଭବନ "ରାଡ୍‌କ୍ଲିଫ୍ କାମେରା" ଉପରେ ଦୃଷ୍ଟି ପଡ଼େ । ଏହାର ଏକ ଚମତ୍କାର ଗମ୍ବୁଜ (dome) ଅଛି । ବିଶ୍ୱବିଖ୍ୟାତ ବଡ଼୍‌ଲିଆନ୍ (Bodlein) ପୁସ୍ତକାଗାରର ଏହା ପାଠାଗାର (Reading room) ରୂପେ ବ୍ୟବହୃତ ହୁଏ ।

ତ୍ରୟୋଦଶ ଶତାବ୍ଦୀଠାରୁ ବିଭିନ୍ନ ଯୁଗର ବିଭିନ୍ନ ଭାସ୍କର୍ଯ୍ୟ ଏହି ଅକ୍ସଫୋର୍ଡ଼ ସହରରେ ଦେଖିବାକୁ ମିଳେ । ବିଶେଷ ଆକର୍ଷଣୀୟ ଏହାର କଲେଜସବୁ । ଏମାନଙ୍କର ବାହାର ଚେହେରା ଦେଖିବାକୁ ସେତେ ମନୋରମ ନୁହେଁ । କେଉଁ କାଳର ପୁରୁଣା କୋଠାକୁ ବହୁ ଯତ୍ନରେ ରଖାଯାଇଛି । ହେଲେ ସେଥିରେ ପଢ଼ାପଢ଼ି ଓ ଗବେଷଣାର ବ୍ୟବସ୍ଥା ଖୁବ୍ ଚମତ୍କାର । ସବୁଠି ଧୀର ଶାନ୍ତ, ଗୁରୁଗମ୍ଭୀର ପରି ଜଣାପଡ଼େ । କେଉଁଠି ଅଧ୍ୟାପକମାନେ ବହିଗଦା ଭିତରେ ବସି ଅଧ୍ୟୟନରେ ବ୍ୟସ୍ତ । କେଉଁଠି ଛାତ୍ରଛାତ୍ରୀମାନେ ବହି ଖାତାପତ୍ର ଧରି ବାହାରି ଆସୁଥାନ୍ତି ଖୁବ୍ ପ୍ରଫୁଲ୍ଲ, ସତେଜ ଭାବରେ । ଆମ ଦେଶର ସ୍କୁଲ କଲେଜମାନଙ୍କର ହୋ-ହୋ, ହା-ହା ପ୍ରାୟ ନାହିଁ । ମୋଟାମୋଟି ଏଠା କଲେଜଗୁଡ଼ିକରେ ଅଧ୍ୟୟନ ଓ ଅଧ୍ୟାପନା କାମ ଯେପରି ଶାନ୍ତିପୂର୍ଣ୍ଣ ପରିବେଶ ଭିତରେ ଚାଲିଛି, ସେଇଟା ମୋତେ ଖୁବ୍ ଭଲ ଲାଗିଲା ।

କେମ୍ବ୍ରିଜ୍ ସହର ବ୍ୟବସାୟର ଏକ ପୀଠ । ଅକ୍ସଫୋର୍ଡ଼ ପରି ଏଠାରେ ବି ଜନବସତି, ଶିକ୍ଷା କେନ୍ଦ୍ରମାନଙ୍କ ମଧ୍ୟରେ କୌଣସି ସମ୍ମାନଜନକ ବ୍ୟବଧାନ ନାହିଁ । ଦୋକାନ ବଜାର ପାଖେ ପାଖେ ବିଭିନ୍ନ କଲେଜ ଓ ସେମାନଙ୍କର ବକ୍ତୃତା ଭବନ (Lecture Hall) ଅବସ୍ଥିତ । ଏଠାର କଲେଜ ଗୃହ ଓ ବିଭିନ୍ନ ବିଖ୍ୟାତ ଅଟ୍ଟାଳିକାଗୁଡ଼ିକର ଭାସ୍କର୍ଯ୍ୟ ବେଶ୍ ମନୋରମ । ତ୍ରୟୋଦଶ ଶତାବ୍ଦୀଠାରୁ ବହୁ କଲେଜ

ଏଠାରେ ପ୍ରତିଷ୍ଠିତ ହୋଇଛି । ସେଥିରେ ନର୍ମାନ୍ ଓ ଗଥିକ୍ ନିର୍ମାଣ କଳାର ନମୂନା ଦେଖିବାକୁ ମିଳେ । କ୍ୟାମ୍ ନଦୀ କୂଳରେ ବହୁ କଲେଜ ଅବସ୍ଥିତ । ସେଥି ମଧ୍ୟରେ କ୍ୱିନ୍ସ (Queen's), ଟ୍ରିନିଟି (Trinity) ସେଣ୍ଟ ଜନ୍‌ସ୍ (St. John's) ଆଦି କଲେଜ ସବୁ ଖୁବ୍ ବିଖ୍ୟାତ । ଏଗୁଡ଼ିକ ଯେଉଁ ଅଞ୍ଚଳରେ ଅବସ୍ଥିତ ତାକୁ ବ୍ୟାକ୍ସ (Backs) ବୋଲି କହନ୍ତି । କ୍ୟାମ୍ ନଦୀରେ ଛୋଟ ଛୋଟ ଡଙ୍ଗାସବୁ ଯା'ଆସ କରୁଥାନ୍ତି । ସେଥିରୁ ଗୋଟିଏ ଭଡ଼ାରେ ନେଇ ନଦୀର ଘାସପୂର୍ଣ୍ଣ କୂଳ ଓ ପଥର ପୋଲ ତଳ ଦେଇ ଘୁରି ବୁଲିଲେ ସେଠାରୁ ଏହି କଲେଜଗୁଡ଼ିକର ଦୃଶ୍ୟ ବେଶ୍ ଉପଭୋଗ କରି ହୁଏ । ମୋଟାମୋଟି ଅକ୍‌ସଫୋର୍ଡ଼ ଓ କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ ଦୁଇଟି ଦେଖି ମୁଁ ବେଶ୍ ଆତ୍ମତୃପ୍ତି ଲାଭକଲି ।

ଉଚ୍ଚାକାଙ୍କ୍ଷା, ଉଗ୍ର ମନୋଭାବ ଓ ତରଳ ତାରୁଣ୍ୟର ପୀଠସ୍ଥଳୀ ଏବଂ ଶିକ୍ଷା ଓ ସାଧନାର କେନ୍ଦ୍ର ରୂପେ ଏମାନେ ସାରା ବିଶ୍ୱରେ ବହୁକାଳରୁ ପ୍ରଭୂତ ଖ୍ୟାତି ଅର୍ଜ୍ଜନ କରିଛନ୍ତି । ନିଜ ଦେଶରେ ଥିଲାବେଳେ ଏହି ବିଶ୍ୱବିଦ୍ୟାଳୟମାନଙ୍କର ଖୁବ୍ ଉଚ୍ଚାଙ୍ଗ ପ୍ରଶଂସା ଶୁଣିଥିଲି । ଯେଉଁମାନେ ଏଠାରୁ କୌଣସି ଡିଗ୍ରୀ ହାସଲ କରିଛନ୍ତି ସେମାନଙ୍କ ଦର ତ କହିଲେ ନ ସରେ । ଯାହାହେଉ ସେହି ବିଖ୍ୟାତ ଶିକ୍ଷାକେନ୍ଦ୍ରମାନଙ୍କୁ ସ୍ୱଚକ୍ଷୁରେ ଦେଖି ବେଶ୍ ଆତ୍ମପ୍ରସାଦ ଲାଭ କଲି ।

ବିଶେଷ ଆନନ୍ଦ ମିଳିଲା ସେମାନଙ୍କ ତୃଣାଚ୍ଛାଦିତ ଭୂମି (Lawns) ଦେଖି । ଶହ ଶହ ବର୍ଷ ଧରି ତାକୁ ଯେପରି ମଖମଲି ଗଦି ପରି ରଖା ଯାଇଛି ତାକୁ ଦେଖିଲେ ବଡ଼ ଆଶ୍ଚର୍ଯ୍ୟ ଲାଗେ । ଅବଶ୍ୟ ଇଂରେଜମାନେ ଖୁବ୍ ଫୁଲ ଓ ବଗିଚା ପ୍ରିୟ । ଟିକିଏ ଖରା ପ ଗ ହେଲେ ସେମାନେ ନିଜ ନିଜ ବଗିଚା କା ରେ ଲାଗିଯା'ନ୍ତି । ଶନିବାର, ରବିବାର ଓ ଅନ୍ୟାନ୍ୟ ଛୁଟି ଦିନମାନଙ୍କରେ ଫୁଲଗଛ ମୂଳ ସଫା କରିବା, ସେଥିରେ ପାଣିଦବା ତାଙ୍କର ପ୍ରଧାନ କାମ । ଲଣ୍ଡନରେ ପ୍ରତିବର୍ଷ ଚେଲ୍‌ସିଆ ପୁଷ୍ପ ପ୍ରଦର୍ଶନୀ ଅନୁଷ୍ଠିତ ହୁଏ । ଏଥିରେ ସୁଗନ୍ଧଯୁକ୍ତ ଓ ନିର୍ଗନ୍ଧ ବହୁ ପ୍ରକାର ଫୁଲ ଯଥା—ଲୁପିନସ୍, ଆଷ୍ଟର, ଡେଲଫିନ୍, ଫକ୍ ସଗ୍ଲୋଭସ୍, ପପି, ଅର୍କିଡ଼୍, ରୋଡ଼ୋଡେଣ୍ଡ୍ରନ୍, ଆଜଲିଆ, ଡାହାଲିଆ ଆଦି ଦେଖିବାକୁ ମିଳେ । ସବୁଠାରୁ ଗୋଲାପ ଫୁଲ ଏମାନଙ୍କର ଅତି ପ୍ରିୟ । ଗୋଟିଏ ସୁପ୍ରତିଷ୍ଠିତ

ଗୋଲାପ ଫୁଲ ପାଇବାକୁ ବିଲାତି ବାଳାଙ୍କର ମହା ବ୍ୟାକୁଳତା । ମୁଁ ବିଲାତରେ ଯୁଆଡ଼େ ବୁଲିଚି ସବୁଠାରେ ବିଲାତବାସୀଙ୍କ ପୁଷ୍ପପ୍ରେମ ସେମାନଙ୍କ ସୁରକ୍ଷିତ ବାଡ଼ ବଗିଚାମାନଙ୍କରୁ ବେଶ୍ ବୁଝି ପାରିଚି । ଅକ୍ସଫୋର୍ଡ୍, କେମ୍ବ୍ରିଜ୍‌ରେ ମଧ୍ୟ ସେଇଆ ଦେଖିଲି ।

ପାଠକେନ୍ଦ୍ର ସବୁ ଦେଖିସାରିଲା ପରେ ନାଟ୍ୟ କେନ୍ଦ୍ର ଆଡ଼କୁ ମନ ଢାଳିଲି । କ'ଣ ଯାହା ଗୀତ ନାହିଁ । "ମୁଁ ତ ଗୃହ କାମ ଛାଡ଼ି ନାଟ କରିବି ରେ ! ପାଠରେ ତ ନାଟ ମଜା, ନାହିଁ ତହିଁ ହେବି ରଜା...।"

ଠିକ୍ କଲି ବିଖ୍ୟାତ ନାଟ୍ୟକାର ସେକ୍ସପିଅରଙ୍କ ଜନ୍ମସ୍ଥାନ ଷ୍ଟ୍ରାଟଫୋର୍ଡ଼ ଅପନ ଆଭନ୍ ଦେଖିବାକୁ ଯିବି । ସେତକ ନ କଲେ ମନରେ ଏକ ଅତୃପ୍ତ ବାସନା ରହିଯିବ । ମୁଁ ଜଣେ ସାଧାରଣ ନାଟ୍ୟକାର ଓ ଅସାଧାରଣ ନାଟ୍ୟପ୍ରେମୀ । ତେଣୁ ନାଟ୍ୟ-ସମ୍ରାଟ୍ ସେକ୍ସପିଅରଙ୍କ ପ୍ରତି ଅବଜ୍ଞା ପ୍ରକାଶ କରିପାରୁଚି କେଉଁଠି !

ଓ୍ୱାର୍‌ୱିକ୍ ସାୟାର୍‌ରେ ଅବସ୍ଥିତ ଷ୍ଟ୍ରାଟଫୋର୍ଡ଼ ଅପନ ଆଭନ୍ ଲଣ୍ଡନ୍‌ରୁ ପ୍ରାୟ ୯୧ ମାଇଲ । ସେଠାକୁ ଟ୍ରେନ୍‌ରେ ଓ ବସ୍‌ରେ ଯାଇହୁଏ । ମୋର ତ ସବୁବେଳେ ବସ୍ ବାହନ । ମୁଁ ସେଇ ବସ୍‌ରେ ବାହାରିଲି । ସେ ବସ୍‌ରେ ବି ଥା'ନ୍ତି ପଥପ୍ରଦର୍ଶକ । ସେ ସେକ୍ସପିଅରଙ୍କ ଜନ୍ମସ୍ଥଳୀ ଓ ତାଙ୍କ ଜୀବନର ବିଭିନ୍ନ ରହସ୍ୟ ନେଇ ଚଳାଇଥାନ୍ତି ବକ୍ତୃତା । ଆଉ ବାଟରେ ଯେଉଁ ବିଖ୍ୟାତ ଜାଗା ପଡ଼ୁଥାଏ ସେସବୁ ସମ୍ବନ୍ଧରେ ଅନେକ କିଛି କହୁଥାନ୍ତି । ମୋ ମନରେ ଅପୂର୍ବ ଉଛାହ । ବହୁ ଦିନରୁ ଆକାଙ୍‌କ୍ଷିତ ଏହି ଷ୍ଟ୍ରାଟଫୋର୍ଡ଼ ଅପନ ଆଭନ୍ ଦେଖିହେବ ଏବଂ ସେକ୍ସପିଅରଙ୍କ ଜୀବନ ସମ୍ବନ୍ଧରେ ଅନେକ କିଛି ଜାଣିହେବ ଏକଥା ଭାବି ମୁଁ ବେଶ୍ ପ୍ରଫୁଲ୍ଲ ଥାଏ । ମଝିରେ ମଝିରେ ମୁଁ ପଥପ୍ରଦର୍ଶକଙ୍କୁ ଅନେକ କିଛି ପଚାରି ପଚାରି କରି ମୋ ମନର ଅଭିମାନ ମେଣ୍ଟାଉ ଥାଏ ।

ଷ୍ଟ୍ରାଟଫୋର୍ଡ଼ ଅପନ ଆଭନ୍‌ରେ ପହଞ୍ଚି ଆମେ ପ୍ରଥମେ ସେକ୍ସପିଅରଙ୍କ ବାସସ୍ଥଳୀ ପରିକ୍ରମା କଲୁ । ସେ ଯେଉଁ ଘରେ

ରହୁଥିଲେ ତା’ର କାନ୍ଥ ପଥରରେ ତିଆରି ଏବଂ କାନ୍ଥର ମଝିରେ ମଝିରେ କାଠର ଖମ୍ବ ଅଛି । ଏ ଘର କେବେ ତିଆରି ହୋଇଥିଲା ତାହାର ନିର୍ଦ୍ଦିଷ୍ଟ ଇତିହାସ ନାହିଁ । ତେବେ ଏହାର ଆକାର ପ୍ରକାରରୁ ଜଣାପଡ଼େ ଯେ ଏହା ବୋଧହୁଏ ପଞ୍ଚଦଶ ଶତାବ୍ଦୀର ଶେଷ ଭାଗରେ କିମ୍ବା ଷଷ୍ଠଦଶ ଶତାବ୍ଦୀର ପ୍ରଥମ ଭାଗରେ ତିଆରି ହୋଇଥିଲା । ଏଠାକାର ଅନ୍ୟାନ୍ୟ ଘର ପରି ଏହା ସ୍ଥାନୀୟ ଉପାଦାନରେ ତିଆରି ହୋଇଛି । ଆର୍ଡେନ୍ ଜଙ୍ଗଲ (Forest of Arden)ର କାଠ ଓ ଉଇଲମ୍‌କୋଟ୍ (Wilmcote) ପାହାଡ଼ର ପଥର ଏଥିରେ ବ୍ୟବହାର କରାଯାଇଛି ।

ସେକ୍‌ସପିଅରଙ୍କ ଏହି ତଥାକଥିତ ବାସଗୃହରେ କାଳକ୍ରମେ ନାନା ପରିବର୍ତ୍ତନ ଘଟିଛି ଏବଂ ଏହା ବହୁବାର ହାତରୁ ହାତକୁ ହସ୍ତାନ୍ତରିତ ହୋଇ ଶେଷରେ ଏକ ଟ୍ରଷ୍ଟବୋର୍ଡ଼ ଦ୍ୱାରା ସଂରକ୍ଷିତ ଓ ପରିଚାଳିତ ହେଉଛି ।

ବହୁକାଳରୁ ଏହି ବିଶ୍ୱବିଖ୍ୟାତ ନାଟ୍ୟକାର ଓ କବିଙ୍କ ବାସଗୃହ ଦେଖିବା ପାଇଁ ବିଲାତର ଓ ଅନ୍ୟ ଦେଶର ବହୁଲୋକ ଆସିବାକୁ ଆରମ୍ଭ କରିଥିଲେ । ଯେଉଁମାନେ କାଳକ୍ରମେ ଉକ୍ତ ଘରର ମାଲିକ ହେଲେ ବା ତା ଦାୟିତ୍ୱରେ ରହିଲେ ସେମାନେ ଏହି ପରିସ୍ଥିତିର ସୁବିଧା ନେଇ ବେଶ୍ କିଛି ଫାଇଦା ଉଠାଇଲେ ଏବଂ ନାନା ଠକାଠକି ଆରମ୍ଭ କରିଦେଲେ ।

୧୭୯୩ରୁ ୧୮୨୦ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ମିସେସ୍ ହର୍ନବି ନାମ୍ନୀ ଜଣେ ମହିଳା ଏହି ଘରେ ବାସ କରୁଥିଲେ ଏବଂ ଏଠାକୁ ଆସୁଥିବା ଯାତ୍ରୀମାନଙ୍କ ପଥ-ପ୍ରଦର୍ଶିକା ରୂପେ କାର୍ଯ୍ୟ କରୁଥିଲେ । ସେ ବେଶ୍ କିଛି ରୋଜଗାର କରିବାକୁ ସେକ୍‌ସପିଅରଙ୍କ ବ୍ୟବହୃତ ଜିନିଷ ବୋଲି କହି ଅନେକ ପ୍ରକାରର ଠକାଠକି ଜିନିଷ ବିକିଲେ । ଏହା ଜଣା ପଡ଼ିବାରୁ ବିଲାତର ଦୁର୍ନାମ ହେଲା ଏବଂ ଷ୍ଟ୍ରାଟଫୋର୍ଡ଼ ଓ ସେକ୍‌ସପିଅରଙ୍କ ସମ୍ମାନରେ ଆଞ୍ଚ ଆସିଲା । ୧୮୪୭ ଖ୍ରୀଷ୍ଟାବ୍ଦରେ ଯେତେବେଳେ ସମ୍ବାଦ ପ୍ରଚାରିତ ହେଲା ଯେ ସେକ୍‌ସପିଅରଙ୍କ ଏହି ବାସସ୍ଥଳୀ ବିକ୍ରୀ ହେବ ସେତେବେଳେ ବିଲାତରେ ଗୋଟାଏ ଚହଳ ପଡ଼ିଗଲା । ବଡ଼ ବଡ଼ ଦଲାଲ ଏହି ଘରକୁ କିଣି ସେଥିରୁ ବହୁ କିଛି ମୁନାଫା

ଉଠାଇବାକୁ ଉଦ୍ୟମ କରୁଥିଲେ । ଏ ସମ୍ବନ୍ଧରେ ବାହାରର ବିଖ୍ୟାତ ଖବର କାଗଜ "ଦି ଟାଇମସ୍" ରେ ପ୍ରକାଶ ପାଇଲା ଯେ ଦଳେ ଲାଭଖୋର ଲୋକ ସେକ୍ସପିଅରଙ୍କ ଘରର ଚଟାଣ ପର୍ଯ୍ୟନ୍ତ ଭାଙ୍ଗି ତାକୁ ଆମେରିକାରେ ବିକ୍ରୀ କରିବାକୁ ଚକ୍ରାନ୍ତ କରୁଛନ୍ତି । ଏ ସମ୍ବନ୍ଧରେ ନାନା ଗୁଜବ ବି ପ୍ରଚରିତ ହେଲା । ଏଥିରେ ସାରା ବାହାରରେ ଘୋର ଆଲୋଡ଼ନ ସୃଷ୍ଟି ହେଲା ଏବଂ ସେକ୍ସପିଅରଙ୍କର ଏହି ପବିତ୍ର ସ୍ମୃତି-ପୀଠକୁ କିପରି ରକ୍ଷା କରାଯିବ ସେଥିପାଇଁ ଲଣ୍ଡନରେ ଓ ଷ୍ଟ୍ରାଟଫୋର୍ଡ଼ରେ କମିଟିମାନ ଗଠିତ ହେଲା, ଚାନ୍ଦା ଆଦାୟ କରିବାକୁ ଅନୁରୋଧ ପତ୍ର ଚାରିଆଡ଼େ ବଣ୍ଟାଗଲା ଏବଂ ପାଣ୍ଠି ସଂଗ୍ରହ କରିବା ପାଇଁ ନାଟକ ଅଭିନୟ ଓ ସଙ୍ଗୀତ ଆସର ପ୍ରଭୃତି ଚାଲିଲା । ଏକ ସମ୍ବାଦପତ୍ର ବି ପ୍ରକାଶିତ ହେଲା ।

ଯେଉଁଦିନ ଲଣ୍ଡନରେ ସେକ୍ସପିଅରଙ୍କ ଘର ନିଲାମ ହେବାର କଥା ସେଦିନ ଗୋଟାଏ ବେଳେ ମିଷ୍ଟର ରବିନସ୍ ବୋଲି ଜଣେ ଭଦ୍ରଲୋକ ନିଲାମର ବିଭିନ୍ନ ସର୍ତ୍ତ ଘୋଷଣା କଲେ ଏବଂ ବୁଝାଇ ଦେଲେ ଯେ ସେକ୍ସପିଅରଙ୍କ ଜନ୍ମସ୍ଥାନଟି ତାଙ୍କ ଓ୍ୱିଲ ଅନୁସାରେ କ୍ରେତା-ମାନଙ୍କର ହେବ । ଏତିକିବେଳେ ଜଣେ ଲୋକ ତାଙ୍କୁ ବାଧାଦେଇ କହିଲେ, ସେ ଯେଉଁଘର ବିକ୍ରୀ କରିବାକୁ ଯାଉଛନ୍ତି ସେ ଯେ ସେକ୍ସପିଅରଙ୍କର ପ୍ରକୃତ ଜନ୍ମସ୍ଥାନ ତାହାର ପ୍ରମାଣ ଦିଅନ୍ତୁ । ରବିନ୍ସ ତାହାର ଉତ୍ତରରେ କହିଲେ, ସେ ସ୍ଥାନଟି ସେକ୍ସପିଅରଙ୍କ ଜନ୍ମସ୍ଥଳୀ ରୂପେ ଖ୍ୟାତି ଅର୍ଜନ କରିଛି । ସେକ୍ସପିଅରଙ୍କ ବାପା ସେଠାରେ ରହୁଥିଲେ । ସେଠାରେ ଯେ ସେକ୍ସପିଅର ଜନ୍ମ ଗ୍ରହଣ କରିଥିଲେ ଏବଂ ତହିଁରେ ଜୀବନର ଅଧିକାଂଶ କାଳ କଟାଇଥିଲେ ଏଥିରେ କୌଣସି ସନ୍ଦେହ ନାହିଁ । ଯେଉଁମାନଙ୍କର ଏଥିରେ ବିଶ୍ୱାସ ହେଉନି ସେମାନେ ସେ ସମ୍ବନ୍ଧରେ ବିତର୍କ ନ ଉଠାଇ ଏହି ନିଲାମ୍‌ରେ ଅଂଶ ଗ୍ରହଣ ନ କରନ୍ତୁ ।

ଶେଷ ଯାହାହେଉ ନିଲାମରେ ସେକ୍ସପିଅର କମିଟି ତିନି ହଜାର ପାଉଣ୍ଡ ଦେଇ ସେ ଘରକୁ କିଣିଲେ । ଏହି କମିଟିର ଉଦ୍ଦେଶ୍ୟ ଥିଲା ଏହି ଘରର ରକ୍ଷଣାବେକ୍ଷଣ ପାଇଁ ସେମାନେ ତାହା ସରକାରଙ୍କ ହାତରେ ଅର୍ପଣ କରିବେ । କିନ୍ତୁ ତାହା ସମ୍ଭବ ହେଲା ନାହିଁ । ତେଣୁ ଷ୍ଟ୍ରାଟଫୋର୍ଡର ସେକ୍ସପିଅର କମିଟି ଏହାର ଦାୟିତ୍ୱ ନେଲେ । ସେମାନେ ସେହି ଘରକୁ

ମରାମତି କରି ସେଥି ସହିତ ଏକ ସୁନ୍ଦର ବଗିଚା ଯୋଡ଼ିଦେଲେ । ୧୮୯୧ ଖ୍ରୀଷ୍ଟାବ୍ଦରେ ପାର୍ଲିଆମେଣ୍ଟର ଏକ ଆଇନ ବଳରେ ଏହାର ରକ୍ଷଣାବେକ୍ଷଣର ଦାୟିତ୍ୱ ଏକ ଟ୍ରଷ୍ଟବୋର୍ଡ଼ ହାତରେ ଦିଆଗଲା । ସେମାନେ ସେକ୍‌ସପିଅରଙ୍କ ବାସ ଗୃହ ଓ ତାହା ସହିତ ସମ୍ପୃକ୍ତ ଥିବା ସମ୍ପତ୍ତିର ପରିଚାଳନା ଭାର ପାଇଲେ । ଏହି ଟ୍ରଷ୍ଟ ବୋର୍ଡ଼ ସେକ୍‌ସପିଅରଙ୍କ ସମ୍ବନ୍ଧରେ ଏକ ପୁସ୍ତକାଗାର, ଏକ ମହାଫିସ (Record room) ଓ ଏକ ଯାଦୁଘର ତିଆରି କରି ଏହି ସ୍ଥାନର ମାହାତ୍ମ୍ୟ ବଢ଼ାଇଛନ୍ତି ।

ଶହେ ବର୍ଷ ତଳେ ସେକ୍‌ସପିଅରଙ୍କ ଜନ୍ମସ୍ଥାନ ଦେଖିବାକୁ ବାର୍ଷିକ ପ୍ରାୟ ୨୦୦୦ ଲୋକ ଆସୁଥିଲେ । ବର୍ତ୍ତମାନ ସେମାନଙ୍କ ସଂଖ୍ୟା ବଢ଼ି ଅଢେଇ ଲକ୍ଷ ଉପରକୁ ଗଲାଣି । କିନ୍ତୁ ଘରଟିର ସେମିତି କିଛି ବିଶେଷ ମାହାତ୍ମ୍ୟ ନାହିଁ । ଗୋଟିଏ ପୁରୁଣା କାଳର ଦୋମହଲା ଘର । ଏହାର ପଶ୍ଚିମ ପଟରେ ଥିବା ଗୋଟିଏ ବଖରାରେ ସେକ୍‌ସପିଅର ଜନ୍ମ ଗ୍ରହଣ କରିଥିଲେ ବୋଲି କୁହାଯାଉଛି । ଘରଟିର ଗଠନ କୌଶଳ ଏଲିଜାବେଥ୍‌ଙ୍କ ଯୁଗର । ମୋଟାମୋଟି ସେ କାଳରେ ଷ୍ଟ୍ରାଫୋର୍ଡ଼ ଅଧିବାସୀ ଗୋଟିଏ ମଧ୍ୟବିତ୍ତ ପରିବାରର ଘର ଯେପରି ହେବାର କଥା ସେକ୍‌ସପିଅରଙ୍କ ଘରଟିର ଚେହେରା ସେହିପରି । କେବଳ ଟ୍ରଷ୍ଟବୋର୍ଡ଼ ଯାହା ତାକୁ ସଜଡ଼ାସଜଡ଼ି, ମରାମତି କରି ତାକୁ ଟିକିଏ ସୁନ୍ଦର କରିଚନ୍ତି । ଏଥିରେ ରଖାଯାଇଥିବା ବାସନକୁସନ ଓ ଅନ୍ୟାନ୍ୟ ଆସବାବରୁ ସେ କାଳର ଚାଲିଚଳଣି ଘରକରଣା ବିଷୟରେ କିଛି ସୂଚନା ମିଳେ ।

ହେନ୍‌ଲେ ଷ୍ଟ୍ରିଟ୍ ପଟରୁ ଏହି ଘରେ ପ୍ରବେଶ କରିବାର ବାଟ । ପ୍ରଥମ ବଖରାଟି ଅଭ୍ୟର୍ଥନା ଗୃହ ( Reception room ) ରୂପେ ବ୍ୟବହୃତ ହେଉଥିବାର ସୂଚନା ମିଳେ । ତା ପର ବଖରାଟି ପ୍ରଧାନ ରହିବା ଘର । ଏହାର ଗଠନ ପ୍ରଣାଳୀ ଏକ ବିଚିତ୍ର ଧରଣର । କାନ୍ଥ ମଝିରେ କାଠ ଖୁଣ୍ଟ, କାଠ ଶ୍ରେଣୀରେ ଗ୍ରୁଡ ତିଆରି କରାଯାଇଛି । ଘରଟିରେ କାଠର ବେଶ୍ ବ୍ୟବହାର ହୋଇଛି । ଏହାର ଖଦଖଦଡ଼ିଆ ପଥର ଚଟାଣ ସେକ୍‌ସପିଅରଙ୍କ ସମୟର ବୋଲି କୁହାଯାଉଛି । ରହିବା ଘରଟି ଆଧୁନିକ ଦୃଷ୍ଟିରୁ ବିଳାସପୂର୍ଣ୍ଣ ନ ହେଲେ ବି ବେଶ୍

ଆବାସମଦାୟକ ହୋଇଥିବ । ଏହି ରହିବା ଘରର ଗୋଟାଏ ଦ୍ୱାର ଦେଇ ଯାଦୁଘରକୁ ବାଟ । ଯାଦୁଘରେ ସେକ୍‌ସପିଅର୍‌ଙ୍କ ସମ୍ପର୍କୀୟ ନାନା ଚିତ୍ର, ଦଲିଲ, ବହି ଆଦି ରଖାଯାଇଛି । ଉପର ମହଲାରେ ଗୋଟିଏ ବଖରାରେ ସେକ୍‌ସପିଅରଙ୍କ ବଂଶାବଳୀ, ଜୀବନଯାତ୍ରା ପ୍ରଣାଳୀ ଓ ରଚିତ ଗ୍ରନ୍ଥମାଳାର ବିଭିନ୍ନ ଉପାଦାନ ସମ୍ବନ୍ଧରେ ଚିତ୍ରସବୁ ଦେଖିବାକୁ ମିଳେ । ସେକ୍‌ସପିଅର ପିଲାଦିନେ ସ୍କୁଲରେ ଯେଉଁ ଡେସ୍କ ବ୍ୟବହାର କରୁଥିଲେ ତାକୁ ଏଠାରେ ରଖାଯାଇଛି । ମୁଖ୍ୟ ରହିବା ଘରର ଠିକ୍ ଉପରେ ଉପର ମହଲାରେ ଯେଉଁ ବଖରାଟି ଅଛି ସେଥିରେ ସେକ୍‌ସପିଅର ଜନ୍ମ ହୋଇଥିଲେ ବୋଲି କୁହାଯାଉଛି ।

ସେକ୍‌ସପିଅରଙ୍କର ବାସଗୃହ, ସେଥି ସଂଲଗ୍ନ ବଗିଚା ଓ ଆଖପାଖ ଜାଗାମାନଙ୍କରେ ବୁଲାଲାବେଳେ ମୁଁ ବଡ଼ ଭାବାବିଷ୍ଟ ହୋଇ ପଡ଼ିଥିଲି । ତାଙ୍କ ନାଟକମାନଙ୍କର ବିଭିନ୍ନ କାହାଣୀ ଓ କଥାବସ୍ତୁ ମନେପଡ଼ି ଏକ ଅପୂର୍ବ ମାଦକତା ସୃଷ୍ଟି କଲା । କେହି କେହି କହନ୍ତି ସେକ୍‌ସପିଅର ବୋଲି କେହି ନ ଥିଲେ । କିଏ କହନ୍ତି ସେକ୍‌ସପିଅରଙ୍କ ନାଟକ ସବୁ ବ୍ୟାକନ୍ ଲେଖିଥିଲେ । ସେ ଯାହାହେଉ ସେକସପିଅର ବୋଲି କିଏ ଥାଉ ବା ନଥାଉ ତାଙ୍କ ତଥାକଥିତ ବାସଗୃହ ବିଭିନ୍ନ ଆସବାବ ଆଦି ଯେମିତି ସଜଡ଼ା ସଜଡ଼ି ହୋଇ ରଖା ଯାଇଛି ସେଥିରେ ଏପରି ଜଣେ ପ୍ରତିଭାଶାଳୀ ନାଟ୍ୟକାର ଓ କବି ଥିଲେ ବୋଲି କାହାର ଅବିଶ୍ୱାସ ହେବନି । ନିଶ୍ଚୟ ଜଣେ କେହି ଏପରି ମହାପୁରୁଷ ଥିଲେ । ତାଙ୍କ ନାଁ ସେକ୍‌ସପିଅର ହେଉ ବା ଆଉ ଯାହା କିଛି ହେଉ । ସେ ହୁଏତ ଏହି ଷ୍ଟ୍ରାଟ୍‌ଫୋର୍ଡ଼ରେ ଜନ୍ମଗ୍ରହଣ କରିଥିଲେ । ବାସ୍ତବିକ୍ ସେକସପିଅରଙ୍କ ଅସ୍ତିତ୍ୱ ନେଇ ଯାହା ବାଦ-ବିସମ୍ବାଦ ଥାଉ ନା କାହିଁକି ବିଲାତବାସୀ ଏହି ମହାତ୍ମାଙ୍କ ସମ୍ବନ୍ଧରେ ନାନା ତଥ୍ୟ ସଂଗ୍ରହ କରି, ନାନା ଗବେଷଣା ଚଳେଇ ଏହି ନାମରେ ଜଣେ ବିଖ୍ୟାତ ନାଟ୍ୟକାର ଓ କବିଙ୍କୁ ଯେ ପ୍ରତିଷ୍ଠିତ କରି ପାରିଛନ୍ତି ଏବଂ ତାଙ୍କର ତଥାକଥିତ ବାସସ୍ଥାନକୁ ଏକ ତୀର୍ଥ ଭୂମିରେ ପରିଣତ କରିଛନ୍ତି ଏଥିରେ ଆଦୌ ସନ୍ଦେହ ନାହିଁ । ସେକ୍‌ସପିଅରଙ୍କ ନିଜସ୍ୱ ବା ପରସ୍ୱ ପ୍ରତିଭା ଆଜି

ଯେ ମହାସ୍ଥାନ୍ ହୋଇ ଉଠିଛି ସେ ଅନେକଟା ତାଙ୍କ ପୃଷ୍ଠପୋଷକ, ସମାଲୋଚକ, ଗବେଷକ ଓ ପୂଜକମାନଙ୍କ ଯୋଗୁଁ ।

ସେକ୍ସପିଅରଙ୍କ ତଥାକଥିତ ଜନ୍ମସ୍ଥାନ ଭଲ କରି ଦେଖିବାର ଇଚ୍ଛା ମୋର ଏପରି ପ୍ରବଳ ହୋଇ ଉଠିଥିଲା ଯେ ସେଦିନ ଲଣ୍ଡନକୁ ନ ଫେରିବା ପାଇଁ ସିଦ୍ଧାନ୍ତ କଲି । ସେଠାରେ ଥିବା ତାଙ୍କ ସ୍ମୃତି ରଙ୍ଗମଞ୍ଚ (Memori s Theai re) ରେ ନାଟକଟିଏ ଦେଖିବାକୁ ଭାରି ମନଥାଏ । ସେଦିନ "ଭେନିସର ବଣିକ" (Merchant of Venice) ଅଭିନୀତ ହେବାର ଥିଲା । ଏଣେ ତେଣେ ବୁଲିବୁଲି କରି ସନ୍ଧ୍ୟାରେ ଗଲି ଥିଏଟର ଦେଖିବାକୁ ।

ରଙ୍ଗମଞ୍ଚର ସାଜସଜ୍ଜା ଓ ଅଭିନୟ ବେଶ୍ ଉପଭୋଗ୍ୟ ହେଲା । ଅବଶ୍ୟ ଏକଥା ସତ ଯେ ଯେପରି ଭାବରେ ସେକ୍ସପିଅରଙ୍କ ନାଟକ ତାଙ୍କ ସ୍ମୃତି ରଙ୍ଗମଞ୍ଚରେ ବା ଅନ୍ୟତ୍ର ମାର୍ଜିତ ଭାବରେ ପରିବେଷିତ ହେଉଥିଲା ସେକ୍ସପିଅରଙ୍କ ସମୟରେ ସେଇଟା ସମ୍ଭବପର ହେଉ ନଥିଲା । ସେତେବେଳେ ବା ରଙ୍ଗମଞ୍ଚର ନିର୍ମାଣକୌଶଳ ଓ ଅଭିନୟ ପ୍ରଣାଳୀ କେତେଟା ଉନ୍ନତି କରିଥିଲା ! ଲୋକେ କହନ୍ତି ଚାରି ଖଣ୍ଡି ପଟା ଏବଂ ଗୋଟିଏ ପ୍ରବୃତ୍ତି (Four boards an l a passion) ହେଲେ ଗୋଟିଏ ଭଲ ନାଟକ ଅଭିନୀତ ହୋଇ ପାରିବ ! ମୋଟାମୋଟି ଏହି ନୀତିଟା ସେକ୍ସପିଅରଙ୍କ ସମୟରେ ଚାଲୁଥିଲା । ସେତେବେଳର ବିଲାତି ରଙ୍ଗମଞ୍ଚ ନିହାତି ସାଧାରଣ, ନିହାତି ବେଆଡ଼ା ଥିଲା । ନାଟକ ବୋଲି ଯାହା ଅଭିନୟ କରାଯାଉଥିଲା, ସେ ଅନେକଟା ମୁଷ୍ଟିଯୁଦ୍ଧ, ଅନେକଟା ଦଙ୍ଗାହେଙ୍ଗାମ, ଅନେକଟା ସର୍କସ୍ ପରିଦର୍ଶକଙ୍କ ସମକ୍ଷରେ ପରିବେଷିତ ହେଉଥିଲା । ଗୁଡ଼ାଏ ଚିତ୍କାର ଗୁଡ଼ାଏ ଅଙ୍ଗଭଙ୍ଗୀ ଗୁଡ଼ାଏ ଧାଁଧପଡ଼ ଏମିତି କିଛି ଥିଲା ସେତେବେଳର ଥିଏଟର । ଆଜିକାଲି ସେପ୍ରକାର ଅଭିନୟ କଲେ ଲୋକେ ତାହାର ତୀବ୍ର ସମାଲୋଚନା କରିବେ । ବର୍ତ୍ତମାନ ନାଟକାଭିନୟ ଗୋଟାଏ କଳା ନୁହେଁ ଏକ ବିଜ୍ଞାନରେ ପରିଣତ ହେଲାଣି କିନ୍ତୁ ସେକ୍ସ-ପିଅରଙ୍କ ସମୟରେ ସେଇଟା କିମ୍ଭୂତ କିମାକାର ରୂପ ନେଇଥିଲା । ତଥାପି ତାକୁ ଲୋକ ଦେଖୁଥିଲେ ଶହ ଶହ, ହଜାର ହଜାର ସଂଖ୍ୟାରେ ଏବଂ

ଲୋକଙ୍କ ରୁଚିକୁ ଚାହିଁ ସେକ୍‌ସପିଅର ବିଭିନ୍ନ ଧରଣର ବହୁ ନାଟକ ରଚନା କରିଗଲେ ।

ସେକ୍‌ସପିଅରଙ୍କ ଜୀବନକାଳ ୧୫୬୪ ଖ୍ରୀଷ୍ଟାବ୍ଦରୁ ୧୬୧୬ ଖ୍ରୀଷ୍ଟାବ୍ଦ ମାତ୍ର ୫୨ ବର୍ଷ ଏବଂ ସେଥିରେ ତାଙ୍କର ନାଟ୍ୟକାର ଜୀବନ ମାତ୍ର ୨୦ ବର୍ଷ, କିନ୍ତୁ ଏହି ସ୍ୱଳ୍ପ ସମୟ ଭିତରେ ସେକାଳର ନାଟ୍ୟଜଗତରେ ସେ ଏକ ବିପ୍ଳବ ଆଣିଥିଲେ । ତାଙ୍କ ନାଟକ ପ୍ରଭାବରୁ ସେତେବେଳର ରଙ୍ଗମଞ୍ଚରେ ବି ବହୁତ ଉନ୍ନତି ଘଟିଥିଲା । ଘଟିବା ସ୍ୱାଭାବିକ । କାରଣ ନାଟକ ଓ ରଙ୍ଗମଞ୍ଚ ପରସ୍ପର ସହିତ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ । ଗୋଟିକର ଉନ୍ନତି ଘଟିଲେ ଅନ୍ୟଟି ନିଶ୍ଚୟ ସମୃଦ୍ଧ ହେବ ।

ବାସ୍ତବିକ୍ ବିଲାତରେ ତାହା ହିଁ ଘଟିଥିଲା । ପ୍ରଥମ ଏଲିଜାବେଥ୍‌ଙ୍କ ରାଜତ୍ୱ ପୂର୍ବରୁ ରଙ୍ଗମଞ୍ଚର ଅବସ୍ଥା ଯଥା ତଥା ଥିଲା । ଏଣୁ ତେଣୁ ଦି ଚାରିଖଣ୍ଡ କଣା କନାପଟା ଟାଙ୍ଗିଦେଇ ସେତେବେଳେ ବିଲାତବାସୀ ନାଟକ ଅଭିନୟ କରୁଥିଲେ ।

କିନ୍ତୁ ସେକ୍‌ସପିଅରଙ୍କ ସମୟରେ ବିଲାତ ରଙ୍ଗମଞ୍ଚର ବିଶେଷ ଉନ୍ନତି ଘଟିଲା । ବିଭିନ୍ନ ନାଟକର ପ୍ରଭାବରେ ରଙ୍ଗମଞ୍ଚରେ ନାନା ବ୍ୟବସ୍ଥା କରାଗଲା । ପ୍ରେକ୍ଷାଳୟର ଗୋଟିଏ ଦିଗରେ ରଙ୍ଗମଞ୍ଚ ଓ ଅନ୍ୟ ଦିଗମାନଙ୍କରେ ଦର୍ଶକଙ୍କୁ ନେଇ ଯେଉଁ ଏକମୁଖୀ ରଙ୍ଗମଞ୍ଚ ଓ (Pro cenium :tage)ର ଉଦ୍ଭବ ହେଲା ସେ ସମ୍ପୂର୍ଣ୍ଣ ରୂପରେଖ ନେଲା ଏହି ସମୟରୁ । ବାସ୍ତବିକ୍ ଏଲିଜାବେଥ୍‌ଙ୍କ ରାଜତ୍ୱକାଳ ଥିଲା ନାଟ୍ୟ କଳାର ସ୍ୱର୍ଣ୍ଣଯୁଗ । ମାର୍ଲୋ, ସେକ୍‌ସପିଅର୍, ବେନ୍ ଜନସନ୍, ବିମଣ୍ଟ, ଫ୍ଲେଚର, ମାସିଞ୍ଜର, ୱେବଷ୍ଟର ପ୍ରଭୃତି ମାତ୍ର କେତେଟା ବର୍ଷ ମଧ୍ୟରେ ବହୁ ନାଟକ ରଚନା କରି ବିଲାତର ନାଟ୍ୟ-ସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି ।

ଯାହାହେଉ ଷ୍ଟ୍ରାଟ୍‌ଫୋର୍ଡ ଅପନ୍ ଆଭନରେ ବହୁ ବୁଲାବୁଲି, ବହୁ ଦେଖା ଦେଖି, ଉଣ୍ଡା ଉଣ୍ଡି କରି ଲଣ୍ଡନ ଫେରିଲୁ । ଏଥି ମଧ୍ୟରେ "ସମାଜ" କାଗଜର ତତ୍କାଳୀନ ସମ୍ପାଦକ ଶ୍ରୀଯୁକ୍ତ ଶ୍ରୀହର୍ଷ ମିଶ୍ର ବିଲାତ ଭ୍ରମଣରେ ଯାଇଥାନ୍ତି । ଆମେ ତାଙ୍କୁ ସଶ୍ରଦ୍ଧ ନିମନ୍ତ୍ରଣ କରି ଦୁଇ ତିନଥର

ଆମର ଅତିଥି କରିଥିଲୁ । ବେଶ୍ ଖିଆପିଆ ଚାଲିଲା, ବେଶ୍ ଖୁସି ଗପ ହେଲା । ମୁଁ ତାଙ୍କୁ ମୋ ବହିଗୁଡ଼ାକ ଦେଖାଇ ଦେଇ କହିଲି ଦେଖନ୍ତୁ ଏ ବୟସରେ ଆମକୁ ଏତେ ପଢ଼ିବାକୁ ପଡ଼ୁଚି, ଅଙ୍କ, ଆଇନ୍, ମନସ୍ତତ୍ତ୍ୱ, ପରିସଂଖ୍ୟାନ ସବୁ କିଛି । ତା'ସାଙ୍ଗରେ ତ ପୁଣି ମୁଦ୍ରଣ ଶିଳ୍ପ ସମ୍ବନ୍ଧରେ ସବିଶେଷ ଜ୍ଞାନ ଅର୍ଜନ କରିବାକୁ ପଡ଼ିବ । ସେ ମହାଶୟ ମୋ କୃତିତ୍ୱ ଦେଖି ଚମକି ଉଠିଲେ । ବୋଧହୁଏ ସେ ଅଲିଭର ଗୋଲ୍ଡସ୍ମିଥ୍‌ଙ୍କ ବର୍ଣ୍ଣିତ "ଗ୍ରାମ୍ୟ ଚାଟଶାଳୀ ଶିକ୍ଷକ (Village School master)"ଙ୍କ ପ୍ରତିଭା ମୋ ଉପରେ ଆରୋପ କରିଥିବେ"। "That ony small head could carry all he knows" ଗୋଟିଏ ଛୋଟ ମୁଣ୍ଡରେ ଏତେ ଜ୍ଞାନ ! ସେ ମୋତେ ପ୍ରଶଂସା କରିବାକୁ ଆରମ୍ଭ କରିବା ପୂର୍ବରୁ ମୁଁ ଟିପ୍ପଣୀ ଦେଇ କହିଲି, ଏଠି ବହୁତ ବିଷୟ, ବହୁତ କହି ବହୁତ ପରୀକ୍ଷା । କିନ୍ତୁ ପାଶ୍ କରିବା ଆଦୌ କଷ୍ଟ ନୁହେଁ କାରଣ ଭାରତ ପରି ଏଠି ବି କପି ଚାଲେ । ସେ ହୋ ହୋ କରି ହସି ଉଠିଲେ । କାଳେ ତାଙ୍କର ମୋ ସମ୍ବନ୍ଧରେ କିଛି ନ୍ୟୂନ ଧାରଣା ହେବ ସେଥିଲାଗି ପୁଣି ତାଙ୍କୁ ବୁଝେଇ କହିଲି 'ମୁଁ କିନ୍ତୁ ନିଷ୍ଠାର ସହିତ ଏସବୁ ହଜମ କରିବାରେ ଲାଗିପଡ଼ିଚି କାରଣ ମୁଁ ତ ଆଉ ଏ ବୟସରେ କପି କରିପାରିବିନି । ସେଇଟା ତରୁଣମାନଙ୍କର ଏକଚାଟିଆ ଅଧିକାର ।'

ସେ ହସୁଥାନ୍ତି ।

ଆହୁରି ବହୁତ ଜାଗା ଦେଖିବାର ଥାଏ । ବିଲାତର ଦକ୍ଷିଣରେ ଥିବା ଓ୍ୱାଇଟ୍ ଦ୍ୱୀପ (The isle of Wighte) । ପରିସ୍ଥିତି ଓ ଦୃଶ୍ୟ ଖୁବ୍ ଚମତ୍କାର । ତେଣୁ ଏହାକୁ ଉଦ୍ୟାନ ଦ୍ୱୀପ କହନ୍ତି । ଦକ୍ଷିଣ ଉପକୂଳରେ ବର୍ନମାଉଥ୍ ଏକ ବିଖ୍ୟାତ ଜାଗା । ଏହାର ପ୍ରଶସ୍ତ ବେଳା ଭୂମିରେ ବୁଲିବାକୁ ଓ ସୂର୍ଯ୍ୟସ୍ନାନ କରିବାକୁ ବହୁତ ଲୋକ ଏଠାକୁ ଆସନ୍ତି । ଧାଡ଼ି ଧାଡ଼ି ହୋଇ, ଯୋଡ଼ି ଯୋଡ଼ି ହୋଇ ଶୋଇଥାନ୍ତି ଅର୍ଦ୍ଧ ଉଲଗ୍ନ ଅବସ୍ଥାରେ ସୂର୍ଯ୍ୟକିରଣରେ ଗାଧୋଇ ଦେହକୁ ଶକ୍ତ ଓ ସତେଜ କରିବାକୁ । ଏଠାରେ ବହୁତ ଖୋଲା ଜାଗା ଓ ସୁନ୍ଦର ସୁନ୍ଦର ଫୁଲ ଉଦ୍ୟାନ ଅଛି । ଫୁଟବଲ, ଟେନିସ୍ ଆଦି ଖେଳ, ନାଚଗୀତ, ଥିଏଟର ସିନେମା ଓ ମ୍ୟାଜିକ୍ ସୋ ଆଦି ଏଠି ବେଶ୍ ଚାଲେ ।

ଉବର୍ନ ଆବେ (Woburn Abbey) ଆଉ ଏକ ପ୍ରସିଦ୍ଧ ସ୍ଥାନ । ଏହା ଲଣ୍ଡନର ଉତ୍ତରରେ ଅବସ୍ଥିତ । ସେଠାରେ ବହୁ ମୂଲ୍ୟବାନ୍ କଳା ଓ ଭାସ୍କର୍ଯ୍ୟର ନମୁନା ଦେଖିବାକୁ ମିଳେ । ୧୮୪୧ ଖ୍ରୀଷ୍ଟାବ୍ଦରେ ମହାରାଣୀ ଭିକ୍ଟୋରିଆ ତାଙ୍କ ସ୍ୱାମୀ ରାଜକୁମାର ଆଲବର୍ଟଙ୍କ ସହିତ ଏଠାରେ ରହୁଥିଲେ । ତାଙ୍କ ଶୟନ କକ୍ଷର ଦୃଶ୍ୟ ଅତୀବ ମନୋରମ । ଏହି ପୁରାତନ ପ୍ରାସାଦକୁ ମରାମତି କରି ଖୁବ୍ ସୁସଜ୍ଜିତ ଭାବରେ ରଖାଯାଇଛି ଦର୍ଶକମାନଙ୍କୁ ଆକର୍ଷଣ କରିବାକୁ । ଏଥିରେ ଗ୍ରୋଟୋ ବୋଲି ଗୋଟିଏ କୋଠରୀ ଅଛି ଯେଉଁଥିରେ ଶିପ୍‌ରେ ବହୁ କାରୁକାର୍ଯ୍ୟ କରାଯାଇଛି । ଏହି ପ୍ରାସାଦର ବାହାରେ ଏକ ଚିଡ଼ିଆଖାନା ଓ ଗୋଟିଏ କଳାକେନ୍ଦ୍ର (Art gallery) ରହିଛି । ଏମିତି ବହୁ ପୁରାତନ ପ୍ରାସାଦ ତ ଦେଖିପାରିଥାଏ । ଭାବିଲି ବିଲାତବାସୀ ତାଙ୍କ ଅତୀତ ଗୌରବରୁ ବେଶ୍ ଫାଇଦା ଉଠାଉଛନ୍ତି ।

ବହୁ ଅଡେ ବୁଲାବୁଲି ଚାଲିଥାଏ । ଏଣେ ମାଡ଼ି ଆସୁଥାଏ ଆମ ଶିକ୍ଷା ଅନୁଷ୍ଠାନର ଶେଷ ପରୀକ୍ଷାସବୁ କରାଳରୂପ ଧରି । ତାପରେ ଆନୁଷଙ୍ଗିକ ବିଷୟମାନଙ୍କରେ ବାହାର ପରୀକ୍ଷାସବୁ ଅଛି । ଏହି ପରୀକ୍ଷା-ବୈତରଣୀ ପାରିହେବାକୁ କଠିନ ସାଧନା ଆବଶ୍ୟକ । ଶିକ୍ଷାଟା ଯଦି ଖାଲି ବୁଲାବୁଲି, ଦେଖାଦେଖିରେ ପର୍ଯ୍ୟବେକ୍ଷିତ ହେଉଥାନ୍ତା ତେବେ କେତେ ଆନନ୍ଦଦାୟକ ହୁଅନ୍ତା ସେ ! କିନ୍ତୁ ଏ ମୁଖସ୍ଥ, କଣ୍ଠସ୍ଥ ବିଦ୍ୟା ବଡ଼ ବେଦନାଦାୟକ । ଶେଷରେ ବହୁ ତୋଡ଼ମୋଡ଼ ଦେଇ ଆସିଲା ସେ ପରୀକ୍ଷାସବୁ । କେଉଁଦିନ ଦୁଇଟା, କେଉଁଦିନ ତିନଟା । ଦିନେ ଦିନେ ବସାକୁ ଫେରୁ ଫେରୁ ରାତି ୯ଟା ହୋଇଯାଏ । ଏକେବାରେ ଥକ ପଡ଼େ । ଖଟ ଉପରେ ବ୍ୟାଗ୍ ଫଣ୍ଡକ ପକାଇ ଦେଇ ଉପର ମହଲାକୁ ଉଠିଯାଏ ରାଜା-ରାଣୀଙ୍କ ପାଖକୁ । ରାଣୀ ସସ୍ନେହରେ ଚା’ ପରଷି ଦିଅନ୍ତି, ନାନା ଖୁସି ଗପ କରନ୍ତି । ହେଲେ ସେଥିରେ ଯେମିତି କ୍ଲାନ୍ତି, ଶ୍ରାନ୍ତିର ଅପନୋଦନ ହୁଏନି । କିନ୍ତୁ ରାଜାଙ୍କର ଖରା-ବର୍ଷା, ଥଣ୍ଡା-ଗରମ, ରୋଗ-ବଇରାଗ ସବୁପାଇଁ ଗୋଟିଏ ଉପଚାର, ବ୍ରେକ୍‌ନକ୍‌କୁ ଚାଲ । ରାଣୀ ସହର୍ଷ ବଦନରେ ଆପତ୍ତି କରି ଉଠନ୍ତି, ବ୍ରେକ୍‌ନକ୍‌କୁ କାହିଁକି ଯିବ ?

— ଟିକିଏ ପିଇଦେଲେ ସବୁ ଦୁଃଖ କଷ୍ଟ ଶାନ୍ତ ହୋଇଯିବ !

ରାଜା ହସି ହସି ଉତ୍ତର ଦଅନ୍ତି ।

ବ୍ରେକ୍‌ଫାଷ୍ଟକୁ ଦୁହେଁ ଯାଉ । ରାଜା ପିଅନ୍ତି । ମୁଁ ମଧ୍ୟ ମୋର ସେ ପ୍ରିୟ ବ୍ରାଣ୍ଡିରୁ ଟିକିଏ ପିଇଦିଏ । ରାଜା ଖୁସୀ ହୋଇ ପଚାରନ୍ତି— କିମିତି ଲାଗୁଚି ?

—କିଛି ଭଲ ଲାଗୁନି ତ !

— ନାଇଁ, ଲାଗିବ, ଲାଗିବ ।

ବାସ୍ତବିକ୍ ବିଶେଷ କିଛି ପରିବର୍ତ୍ତନ ଅନୁଭବ କରିପାରେନି । ହେଲେ ରାଜାଙ୍କ ମନରକ୍ଷା କରିବାକୁ କୁହେଇ କହେ, ହଁ ଭଲ ଲାଗୁଚି । ବ୍ରେକ୍‌ଫାଷ୍ଟରୁ ଫେରି କଣ ଟିକିଏ ଖାଇଦେଇ ଶୋଇପଡ଼େ । କେଜାଣି ନିଦ୍ରା ଦେବୀଙ୍କ ଆଶ୍ରାନେଲେ ଟିକିଏ ଶାନ୍ତି ମିଳିବ ! ଏଣୁ ତେଣୁ କଣ ଭାବୁ ଭାବୁ କେତେବେଳେ ନିଦ ଚାଲି ଆସେ । ତା'ପରେ ଆରମ୍ଭ ହୋଇଯାଏ ସ୍ୱପ୍ନ, ନାନା ସ୍ୱପ୍ନ ! ସଜବାଜ ହୋଇ ଦେଶକୁ ଫେରୁଚି । ବାଟରେ ଜାହାଜ ଅଟକି ଯାଏ । ଏ କଣ ! ଦରିଆ ମଝିରେ ଜାହାଜ ବନ୍ଦ ହୋଇଗଲା ! ପୁଣି ଉପାୟ ? ବିକଳ ହୋଇ ଉଡ଼ାଜାହାଜ ଖୋଜେ । ଦୂରରୁ କେଉଁଠୁ ବିରାଟ ଡେଣା ଲମ୍ବେଇ ଚାଲିଆସେ ଏକ ଅଦ୍ଭୁତ ପକ୍ଷୀ । ଏଁ ଏଇଟା ତ ଉଡ଼ାଜାହାଜ ନୁହେଁ । ଏ କଣ ଆମକୁ ପିଠିରେ ବସେଇ ନେଇ ପାରିବ ? ନ ପାରିବ କାଇଁକି ? ସ୍ୱୟଂ ଭଗବାନ ତ ଗରୁଡ଼ ଉପରେ ବସି ସାରା ବିଶ୍ୱ ପରିକ୍ରମା କରନ୍ତି । ହୋଇଟି ବହୁତ ଲୋକ ତ ଆସି ତା ପିଠିରେ ବସିଲେଣି । ମୁଁ ବି ବସେ । କିନ୍ତୁ ଟିକେଟ୍ ? କିଏ କହିଲା, ନା ଟିକେଟ୍ ଦରକାର ନାହିଁ । ତା' କେଶ୍ । ଟଙ୍କା ଅଭାବକୁ ଏ ମହା ସୁବିଧା । କିନ୍ତୁ ସ୍ୱା ପିଠିରୁ ମୁଁ ଯଦି ଖସି ପଡ଼େ ତେବେ ତ ମହା ବିପଦ । ଏ ବିରାଟ ସମୁଦ୍ରରେ ବୁଡିଯାଇ କ୍ଷଣକେ ମୋ ସତ୍ତା ହରେଇ ବସିବି । ଉଡ଼ାଜାହାଜରେ କିନ୍ତୁ ମହା ସୁବିଧା । ଗଦିଦିଆ ସିଟ୍ । ଚାରିଆଡ଼ ବନ୍ଦ । ଦରକାର ପଡ଼ିଲେ ଅଣ୍ଟାରେ ବେଲ୍‌ଟ ବାନ୍ଧିଦେବ । ତେଣିକି ଉଡ଼ାଜାହାଜ ଯେତେ ଏପଟ ସେପଟ ହେଲେ ବି କିଛି ଡର ନାହିଁ, ପଡ଼ିବାର ଭୟ ନାହିଁ । କିନ୍ତୁ ଏଥିରେ ତ ସିଟ୍ ନାହିଁ କି ଚାରିପଟେ କିଛି ନାହିଁ । ନାହିଁ କଣ ? ଅଛି ନା । ଚାରିଦଟେ କଣ ପତଳା ପତଳା କାଚ ବାଡ଼

ଦିଆ ଯାଇଚି । କିନ୍ତୁ ସବୁଟା ସ୍ପଷ୍ଟ ଦେଖାଯାଉନି କାହିଁକି ? ଦେଖାଯିବ କିମିତି ? ଏକଣ ସାଧାରଣ ଉଡ଼ାଜାହାଜ ହୋଇଚି ! ଏତ ଗରୁଡ଼ ପକ୍ଷୀ । ଗରୁଡ଼ ? ମୁଁ କଣ ଦେବତା ନା ସ୍ୱୟଂ ଭଗବାନ ? ମୋ ସାଙ୍ଗରେ ଏତେ ଲୋକ ଥିଲେ ସେ ସବୁ କୁଆଡ଼େ ଗଲେ ? କେଉଁଠି ଓହ୍ଲାଇ ପଡ଼ିଥିବେ । ଓହ୍ଲାଇଲେ କିମିତି ? ଉଡ଼ା ଜାହାଜ ତ କେଉଁଠି ଅଟକି ନି । ଉଡ଼ା ଜାହାଜ ନୁହେଁ, ସେଇ ପକ୍ଷୀ, ଗରୁଡ଼ ପକ୍ଷୀ । ମୋତେ ତ କାହିଁ କିଛି ଭଲ ଦେଖା ଯାଉନି । ସବୁ ଅନ୍ଧାରିଆ, ସବୁ ଝାପ୍ସା, ଝାପ୍ସା । ଏ ଏଇଟା ଏମିତି ଏପଟ ସେପଟ ହେଉଚି କାହିଁକି । ମୁଁ ପଡ଼ିଯିବି ଯେ ! ପଡ଼ିଯିବ କଣ ! ପଡ଼ ଯାଉଚି ତ ! ଏଁ, କଣ କରିବି ? ମହା ବିପଦ ।

ହଠାତ୍ ନିଦ ଭାଙ୍ଗିଗଲା । ଆଖି ଫିଟେଇ ଚାହିଁଲି, ମୁଁ ଆମ ସେଇ କାମଡେନ୍ ରୋଡ଼ ବସା ଘରରେ ଶୋଇଚି ଚକିଆକୁ ଜାବୁଡ଼ି ଧରି । ପାଖ ସିଢ଼ିଘରୁ ମୃଦୁ ଦୁର୍ଗନ୍ଧ ଭାସି ଆସୁଚି । ଦେହଟା ଟିକିଏ ଶୀତେଇ ଉଠିଲା ! ଏଁ ସ୍ୱପ୍ନ ! ନିଦ ତେବେ ଭଲ ହୋଇନି । ନିଦ ଭଲ ନ ହେଲେ ତ ମୁଣ୍ଡ ଠିକ୍ ହେବନି । ଆଉ ବହୁତ ପରୀକ୍ଷା ବାକି ଅଛି । କାହିଁକି ଏପରି ସ୍ୱପ୍ନ ଦେଖିଲି ? ହଁ, ଘର ମନେ ପଡ଼ିଲାଣି ।

ବହୁଦିନ ଧରି ପରୀକ୍ଷା ଚାଲିଥାଏ । ଏ ପରୀକ୍ଷା ଦୁଃଖଟା ଯେମିତି ସରିବାର ନୁହେଁ । କେବେ କେବେ ପରୀକ୍ଷା ମଝିରେ ଫାଙ୍କ୍ ଥିଲେ କୁଆଡ଼େ ଟିକିଏ ବୁଲିଆସେ ମନ ପରିବର୍ତ୍ତନ କରିବାକୁ । ଏଥି ଭିତରେ ଅର୍ଲସ୍ କୋର୍ଟ୍ ଓ ଅଲିମ୍ପିଆରେ ପ୍ରଦର୍ଶନୀ ଚାଲିଥାଏ, ବିଭିନ୍ନ କଳ-କବ୍‌ଜା ଯନ୍ତ୍ରପାତି, ମୋଟର ଗାଡ଼ି ଆଦିର । ଦଳବାନ୍ଧି ସେସବୁ ଦେଖିବାକୁ ଯାଉ । ବିଲାତ-ରହଣି ସରି ଆସୁଥିବାରୁ କେତେ ଆହା-ହା ଉହୁ-ହୁ କରୁ । ମନ ପୂରେଇ କ'ଣ ଦେଖିଯାଉ, ଭଲ କରି କ'ଣ ଖାଇ ବସୁ ।

କୌଣସି ମତେ ପରୀକ୍ଷା ପର୍ବଟା ଶେଷ ହୋଇଯିବାରୁ ମନରେ ମହା ଆଶ୍ୱସ୍ତି ଭାବ ଚାଲି ଆସିଲା । କେବଳ ଫଳ ଜାଣିବାକୁ ବାକି ଥାଏ । ଫଳ ତ ଜଣା ପଡ଼ିବ । ସେଥିପାଇଁ ଚିନ୍ତା ନାହିଁ । ଦିନେ ଦୁଇଦିନ ଆଗ ନିଶ୍ଚିନ୍ତ ଭାବରେ ଶୋଇଲି । ତେବେ ଅନ୍ୟ କେଉଁଠି କ'ଣ ପରୀକ୍ଷା ଦେବାକୁ ହେବ, ଅନ୍ୟ କେଉଁ ଯାଗା ସବୁ ଦେଖାଯିବ ସେ ବ୍ୟବସ୍ଥାସବୁ

ଯିବାକୁ ପଡ଼ିଲା । ୟୁରୋପ ଭ୍ରମଣ ପାଇଁ ଆବଶ୍ୟକ ବୈଦେଶିକ ମୁଦ୍ରା ଯୋଗାଡ଼ରେ ବି ରହିଲି ।

ଆମ ଶିକ୍ଷା ଅନୁଷ୍ଠାନର ପରୀକ୍ଷା ସରିଯିବା ପରେ ଅନୁଷ୍ଠିତ ହେଲା ବିଦାୟକାଳୀନ ଆଲୋଚନା ଚକ୍ର । ମୁଁ ସେଥିରେ ବିଶେଷ ଉତ୍ସାହସହ ଯୋଗଦେଲି । ବିଲାତବାସ, ସେଠାକାର ପଢ଼ାପଢ଼ି ନେଇ ମନରେ ଯେଉଁ ତିକ୍ତତା ଥିଲା ସେସବୁ ନେଇ ବିଷ ଉଦ୍‌ଗାର କଲି ଭାଷା ମାଧ୍ୟମରେ । ସେମାନଙ୍କର ଯେତେ ଦୋଷ-ଦୁର୍ବଳତା ମୋ ଦୃଷ୍ଟିରେ ପଡ଼ିଥିଲା ସେଥିପ୍ରତି ତୀବ୍ର କଟାକ୍ଷ ପାତ କରି ଗର୍ଜି ଉଠିଲି । ଶେଷରେ ଉପସଂହାରରେ କହିଲି "ତୁମେ ବିଲାତବାସୀ ଭାରତକୁ ଧ୍ୱଂସ କରିଥିଲ । ବର୍ତ୍ତମାନ ମୁଁ ଦେଖୁଛି ତୁମେ ବିଲାତକୁ ଧ୍ୱଂସ କରିବାରେ ଲାଗିଛ । (You the Britishers ! you ruined India and now I find you are ruining England.) ତୁମେମାନେ ନିହାତି ରକ୍ଷଣଶୀଳ । ପୁରୁଣା ଗାଡ଼ି, ପୁରୁଣା ଜିନିଷର ମୋହ ତୁମର ଏବେ ବି ତୁଟିନି । ଛୁଟି ଦିନମାନଙ୍କରେ ବା ଖେଳ କସରତ୍ ଦେଖିବାକୁ ତୁମେ ଯେପରି ତୁମର ଭଙ୍ଗା ପୁରୁଣା ଗାଡ଼ି ଧରି ବାହାରି ପଡ଼, କୌଣସି ପର୍ବପର୍ବାଣୀରେ ତୁମେ ଯେପରି ତୁମର ପୁରୁଣାକାଳିଆ ପୋଷାକପତ୍ର ପିନ୍ଧ, ସେଥିରୁ ସାରା ବିଲାତଟା ଗୋଟାଏ ଜୀବନ୍ତ ଯାଦୁଘର, ପୋଖରି ଚିଡ଼ିଆଖାନା ପରି ଜଣା ପଡ଼େ । ଆମେ ଏତେ ଦୂର ଦୂରାନ୍ତରୁ ଏଠିକି ଆସିଥିଲୁ ବୈଷୟିକ ଜ୍ଞାନ ଅର୍ଜନ କରିବାକୁ; କିନ୍ତୁ ତୁମେ ଆମକୁ ଏ ଘୋଷାପାଠ ଶିଖାଉଛ । ପୁଣି ପରୀକ୍ଷାରେ ଗୃହୀତ କପି । ତୁମର ମୌଳିକତା ନାହିଁ, ନୂଆ ନୂଆ ଗବେଷଣା ନାହିଁ । ତୁମେ ତୁମ ପୁରାତନକୁ ଜାବୁଡ଼ି ଧରିଛ । ଯାହା ବର୍ଣ୍ଣାର୍ଡ଼ସ୍ କହିଥିଲେ, ତୁମ ବିଲାତ ଦିନେ କେବଳ ଗୋଟିଏ କ୍ରୀଡ଼ା ଭୂମିରେ ପରିଣତ ହେବ ଏଥିରେ ସନ୍ଦେହ ନାହିଁ ।" ଏପରି କେତେ କ'ଣ ବକି ଗଲି । ମୁଁ ଏତେ ଭାବପ୍ରବଣ ହୋଇ ଉଠିଥିଲି ଯେ ମନକୁ ଯାହା ଆସିଲା ନାନା ପ୍ରକାର ହାସ୍ୟୋଦ୍ଦୀପକ ଉଦାହରଣ ସହ ଅତି ଓଜସ୍ୱିନୀ ଭାଷାରେ ବିଲାତବାସୀ, ସେମାନଙ୍କର କାରିଗରୀ ଶିକ୍ଷା, ପାଠପଢ଼ା ନୀତି, ରକ୍ଷଣଶୀଳ ମନୋଭାବକୁ ତୀବ୍ର ଆକ୍ରମଣ କଲି । ମଝିରେ ମଝିରେ ଶ୍ରୋତାମାନଙ୍କର ବିପୁଳ କରତାଳି

ଅଙ୍କାଡ଼ ହୋଇ ପଡୁଥାଏ । ଏଥିରେ ମୁଁ ଉତ୍ସାହିତ ହୋଇ କହିଚାଲିଥାଏ । ବକ୍ତୃତା ସରିଲା ବେଳକୁ ଘନ ଘନ କରତାଳି ଉଠିଲା । ଶେଷରେ ଯେତେବେଳେ ସବୁ ଶାନ୍ତ ହୋଇଗଲା ମୁଣ୍ଡରେ ଚେତା ପଶିଲା । ମହା ବିପଦ ! ମୁଁ ଯେପରି ଭାବରେ ବିଲାତବାସୀଙ୍କୁ ସମାଲୋଚନା କଲି ସେଥିରେ ଆମ ଅନୁଷ୍ଠାନର କର୍ମକର୍ତ୍ତାମାନେ ମୋ ଉପରେ ଖୁବ୍ ରାଗିଥିବେ ଏବଂ ମୋର ବକ୍ତୃତା ସେମାନଙ୍କର ଖୋଦ ମହାମାନ୍ୟ ରାଣୀଙ୍କ ମାନସମ୍ମାନରେ କୁଠାରାଘାତ କଲା ବୋଲି ଦାହିଦେଇ ମୋ ବିପକ୍ଷରେ ରାଜଦ୍ରୋହ ଅଭିଯୋଗ ଆଣିବେ । ଫଳରେ ମୋତେ ଏ ଦେଶରୁ ବହିଷ୍କୃତ ହେବାକୁ ପଡ଼ିବ ।

ମୋର ପୂର୍ବରୁ ଏ ସମ୍ବନ୍ଧରେ ଏକ ତିକ୍ତ ଅଭିଜ୍ଞତା ଥିଲା, ଅବଶ୍ୟ ଭାରତରେ । ସ୍ୱାଧୀନତା ପ୍ରାପ୍ତିର ପୂର୍ବ ଅବସ୍ଥା । ବୋଧହୁଏ ୧୯୪୪ ମସିହା ହେବ । ପ୍ରବଳ ପ୍ରତାପୀ ଇଂରେଜମାନେ ଭାରତରେ ତାଙ୍କର ଦମନମୂଳକ ଶାସନ ଚଳାଇଥାନ୍ତି । ସେହି ସମୟରେ ଓଡ଼ିଶା ସରକାରଙ୍କର ଅମଲାମାନେ ସେମାନଙ୍କର କେତେକ ଦାବୀ ପୂରଣ ଲାଗି ଆନ୍ଦୋଳନ କରୁଥାନ୍ତି । ମୁଁ ସେହି ଅମଲାମାନଙ୍କ ଏକ ସଭାରେ ସେମାନଙ୍କୁ ଧର୍ମଘଟ କରିବା ପାଇଁ ପ୍ରସ୍ତୁତ ରହିବାକୁ ଉପଦେଶ ଦେବା ଛଳରେ କହିଲି, "I want to give you the advice which Oliver Cromwell gave to his puritanic followers, believe in God but keep your gun-powder ready and dry." ଅଲିଭର କ୍ରମୱେଲ ତାଙ୍କ ପ୍ୟୁରିଟାନ ଅନୁଚରମାନଙ୍କୁ ଯେଉଁ ଉପଦେଶ ଦେଇଥିଲେ ମୁଁ ସେହି ଉପଦେଶ ଆପଣମାନଙ୍କୁ ଦେବାକୁ ଚାହେଁ । ଭଗବାନଙ୍କ ଉପରେ ବିଶ୍ୱାସ ରଖିପାର; କିନ୍ତୁ ଗୁଳା-ବାରୁଦକୁ ଗରମ ଓ ଟାଟକା ରଖ । ଏଥିରେ ଶ୍ରୋତାମାନଙ୍କ ଭିତରେ ଗୋଟିଏ ଚହଳ ପଡ଼ି ଯାଇଥିଲା । ଅମଲାମାନେ ଖୁବ୍ ବାହାବା କଲେ ସତ; କିନ୍ତୁ ଯେଉଁ ଉଚ୍ଚପଦସ୍ଥ ସରକାରୀ ହାକିମମାନେ ସେଠାରେ ଉପସ୍ଥିତ ଥିଲେ ସେମାନେ ଦୀର୍ଘଶ୍ୱାସ ଘୁଡ଼ି ସୁଁ ସୁଁ ହୋଇ ଉଠିଲେ ।

ଏ ସମ୍ବନ୍ଧରେ ତୀବ୍ର ପ୍ରତିକ୍ରିୟା ସୃଷ୍ଟି ହେଲା । ଅନେକ କହିଲେ ମୁଁ ରାଜଦ୍ରୋହ ପ୍ରଚାର କରୁଛି । ଫଳରେ ମୋ ଚାକିରି ଜୀବନରେ ନାନା

ଜଟିଳତା ସୃଷ୍ଟି ହେଲା । ଏ ତ ଘଟିଲା ଆମ ନିଜ ଦେଶରେ । କିନ୍ତୁ ଏଠି ଯେ ଖୋଦ୍ ବିଲାତରେ ବ୍ରିଟିଶ୍ ଶାସନକୁ ଭାବପ୍ରବଣ ହୋଇ ଏପରି ତୀବ୍ର ସମାଲୋଚନା କଲି ତାର ଫଳ ନିଶ୍ଚୟ ଭୟାନକ ହବ । କିନ୍ତୁ ମୋର ଏ ଆଶଙ୍କା ମିଥ୍ୟାରେ ପରିଣତ ହେଲା । ସଭାରେ ତ କରତାଳି ମାଧ୍ୟମରେ ଯାହା ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ପାଇଲି । ସଭା ପରେ ବହୁ ଅଧ୍ୟାପକ ଓ ସହପାଠୀ ମୋ ସହିତ ଅତ୍ୟୁଷ୍ମ ସହର୍ଷ କରମର୍ଦ୍ଦନ କରି ମୋତେ ଅଭିବାଦନ ଜଣାଇଲେ । ବାକି ଯେ କେତେ ଦିନ ମୁଁ ବିଲାତରେ ରହିଲି ମୋର ଅଧ୍ୟାପକ ଓ ବନ୍ଧୁମାନଙ୍କ ଭିତରୁ ଯାହା ସହିତ ଦେଖାହେଲା ସେମାନେ ମୋ ବକ୍ତୃତା ପାଇଁ ମୋତେ ବହୁ ପ୍ରଶଂସା କଲେ । "Oh what a brilliant lecture you gave ! ଓଃ ! ତୁମେ କି ଚମତ୍କାର ବକ୍ତୃତା ଦେଲ !" ସରକାରଙ୍କ ଆଡ଼ୁ ବି କୌଣସି ବିପଦର ସୂଚନା ମିଳିଲାନି । ମନେ ମନେ ଭାବିଲି, ଏ ଜାତିର ନିଶ୍ଚୟ ମହତ୍ତ୍ୱ ଅଛି । ଏ ଦେଶ ଯେ ସ୍ୱାଧୀନତା ଓ ଗଣତନ୍ତ୍ରର ଏକ ମହାନ୍ ପୀଠ ଏଥିରେ ସନ୍ଦେହ ନାହିଁ । ଯେଉଁମାନେ ନିଜର ସମାଲୋଚନାକୁ ଏପରି ନିର୍ବିକାର ଚିତ୍ତରେ ଗ୍ରହଣ କରିପାରନ୍ତି ସେମାନଙ୍କ ମନ ଓ ଆଦର୍ଶ କେତେ ଉଚ୍ଚ । ନା, ଏ ଜାତିର ଅଧଃପତନ ସହଜରେ ସମ୍ଭବ ନୁହେଁ ।

ବାସ୍ତବିକ୍ ବିଲାତବାସୀଙ୍କର ଏହା ଗୋଟିଏ ମହତ୍ ଗୁଣ । ସମାଲୋଚନାକୁ ଯେ ଏମାନେ ସାଣ୍ଡଓ୍ୱିଚ୍ ବା ଫିସ୍ ଆଣ୍ଡ ଚିପ୍‌ସ ପରି ସହଜରେ ହଜମ କରିପାରନ୍ତି ତାହା ନୁହେଁ ତାକୁ ବେଶ୍ ଉପଭୋଗ ବି କରନ୍ତି । ମୁଁ ସାହେବମାନଙ୍କ ସହିତ କଥାବାର୍ତ୍ତା କଲାବେଳେ ବହୁ ସମୟରେ ସେମାନଙ୍କର ଆଚାର-ବ୍ୟବହାର, ରୀତିନୀତିକୁ ସମାଲୋଚନା କରିବସେ । ବହୁ ପ୍ରକାର କଟୂ ମନ୍ତବ୍ୟ, ବହୁ ଖୁଣ୍ଟା ଦିଏ; କିନ୍ତୁ କେବେ କେହି ମୋ କଥାରେ ସେମିତି ବିଶେଷ ପ୍ରତିବାଦ କରିବା ମୁଁ ଦେଖିନି ବରଂ ସେମାନେ ମୋ ସହିତ ସ୍ୱର ମିଶାଇ ପଦେ ଅଧେ କହନ୍ତି ବା ଟିକିଏ ହସି ଦିଅନ୍ତି । ଏହା ବିଲାତବାସୀଙ୍କ ଚରିତ୍ରର ବିଶେଷ ମହତ୍ତ୍ୱ ।

ପରୀକ୍ଷା ସରିବା ପରେ ପରେ ସୁରବାବୁ ସ୍ୱଦେଶ ବାହୁଡ଼ାର ବ୍ୟବସ୍ଥା କଲେ । ତାଙ୍କର ସବୁକାମ ସିଧାସଳଖ, କୌଣସି ଲଦିବା ଛନ୍ଦିବା ନାହିଁ ।

କୌଣସି ଜଞ୍ଜାଳ, ଗୋଳମାଳ ନାହିଁ । ବଳାତ ଆସିଥିଲେ ପାଠ ପଢ଼ିବାକୁ । ବେଶ୍, ସେଇ ପାଠପଢ଼ା, ସେଇଟା ଶୋଇକରି କରନ୍ତୁ କି ବସିକରି କରନ୍ତୁ ଯାଏ ଆସେ ନାହିଁ । ଅବଶ୍ୟ ପାଠପଢ଼ାରେ ବେଶୀ ସମୟ ଯାଏ କି ପାନଖିଆ, ସିଗାରେଟ ଟଣା, ଚା' ପିଆରେ ବେଶୀ ସମୟ ଯାଏ ସେକଥା ଠିକ୍ କରି କହିହେବନି । କିନ୍ତୁ ବୁଲବୁଲି ବେଶୀ ନାହିଁ । ଖେଳାଖେଳି ଆଦୌ ନାହିଁ । ହଁ, ତାଙ୍କୁ ଯେ କହିବ ଏକନିଷ୍ଠ ବ୍ୟକ୍ତି । ସେଇ ବ୍ୟକ୍ତିଙ୍କୁ ବିଦାୟକାଳୀନ ସମ୍ବର୍ଦ୍ଧନା ଦେବାକୁ ଆମେ ସମସ୍ତେ ଲାଗିପଡ଼ିଲୁ । ଆମର ସ୍ୱଦେଶ ଫେରିବା ଡେରି ଥାଏ । ସୁରବାବୁ ଆମ୍ଭମାନଙ୍କର ପ୍ରତିନିଧି ଭାବରେ ଆଗ ଯାଇ ଆମ ପ୍ରିୟ ପରିବାରମାନଙ୍କ ସହିତ ପ୍ରତ୍ୟକ୍ଷ ସମ୍ପର୍କ ସ୍ଥାପନ କରିବେ । ତେଣୁ ତାଙ୍କ ସ୍ୱଦେଶ ବାହୁଡ଼ାଟା ଆମ ସ୍ୱଦେଶ ବାହୁଡ଼ା ପରି ଲାଗୁଥାଏ । ସୁରବାବୁ କଣ ଖାଇବେ, କ'ଣ ପିଇବେ ଏସବୁ ନେଇ ଆମେ ବ୍ୟସ୍ତ ହୋଇପଡ଼ିଲୁ ଏବଂ ତାଙ୍କ ହାତରେ ଆମ ସ୍ତ୍ରୀ-ପିଲାମାନଙ୍କ ପାଖକୁ କି ବାର୍ତ୍ତା ପଠେଇବୁ ଏବଂ କି କି ଜିନିଷ କିଣିଦବୁ ସେଥିରେ ମହା ଉତ୍ସାହରେ ଲାଗିଗଲୁ ।

ଯେଉଁଦିନ ସୁରବାବୁ ଭାରତ ଉଦ୍ଦେଶ୍ୟରେ ବ୍ୟୋମଜାନ ଧରିବେ ସେଦିନ ଆମ ବସାରେ ଗୋଟାଏ ଖଣ୍ଡିମତ ଉତ୍ସବ ଆରମ୍ଭ ହୋଇଗଲା । ରନ୍ଧାବଢ଼ା ଚାଲିଥାଏ, ପିଆପିଇର ବ୍ୟବସ୍ଥା ହେଉଥାଏ । ତା'ଭିତରେ ଜମି ଉଠୁଥାଏ ଟାହି-ଟାପରା, ହସ କୌତୁକ । କିନ୍ତୁ ସେ ସବୁରେ ସୁରବାବୁ ପୂରା ଅନାବିଷ୍ଟ ଥାଆନ୍ତି । ଖାଲି ଗୁମ୍ ମାରି ବସିଥାନ୍ତି । ଏହାର କାରଣ ବିଭିନ୍ନ ଭୁଣ୍ଡରେ ବିଭିନ୍ନ ପ୍ରକାରେ ପ୍ରକାଶ ପାଇଲା । କିଏ କହିଲା, ସୁରବାବୁଙ୍କୁ ବିଳାତ-ବିରହ ବାଧୁଛି । କିଏ କହିଲା, କି ବିଳାତ-ବିରହ ହୋ ! ସୁରବାବୁ ତ ତାଙ୍କ ଗୁଣ୍ଡି, ଗୁଡ଼ାଖୁ ନେଇ ଖାଣ୍ଟି ଓଡ଼ିଆ ଜୀବନ ଏଠି ଯାପନ କରୁଥିଲେ । ଅସଲ କଥା ଉଡ଼ାଜାହାଜରେ ଯିବାରେ ଦେହକୁ ପୀଡ଼ା ହେବ ବୋଲି ସକାଳୁ ସେ ଭଲ କରି ମୁନ୍ଦାଏ ସୋମରସ ପିଇ ଦେଇଚନ୍ତି । ହଉ ପିଅନ୍ତୁ !

ଆମେ ମଧ୍ୟ ଏହି ବିଦାୟ ଉତ୍ସବରେ ପରିବେଷଣ କରିବାକୁ ବିଭିନ୍ନ ପ୍ରକାର ସୋମରସର ବ୍ୟବସ୍ଥା କରିଥିଲୁ । ଖାଇବା ପର୍ବଟା

ଆରମ୍ଭ ହେବା ଆଗରୁ ଆମ ବସାର ବନ୍ଧୁମାନେ ବହୁ ଆତ୍ମୀୟତା ଦେଖାଇ ସୁରବାବୁଙ୍କୁ ବେଶ୍ ସ୍ୱଚ୍ଛ ଛଅ ଗିଲାସ ସୋମରସ ପିଇବାକୁ ଦେଲେ । ସେ ବି ଆପତ୍ତି କଲେନି । କାରଣ ନିଶାକର ପାନୀୟର ଆତିଶଯ୍ୟ ନେଇ ସେ କେବେ ବିବ୍ରତ ହେବାର ଆମେ ଦେଖିନୁ । ନାନା ପାଟିଗୁଣ୍ଡି, ହସଗପ ଭିତରେ ବହୁ ରୁଚିକର ଖାଦ୍ୟର ସଦ୍‌ବ୍ୟବହାର ହେଲା । ସମସ୍ତଙ୍କର ଦୃଷ୍ଟି ଥାଏ ସୁରବାବୁଙ୍କ ଉପରେ । ପରିବେଷଣକାରୀମାନେ ମନଇଚ୍ଛା ତାଙ୍କ ପ୍ଲେଟରେ ବିଭିନ୍ନ ଖାଦ୍ୟପଦାର୍ଥ ଅଜାଡ଼ି ଦେଉଥାନ୍ତି । ଏଥିରେ ନେତୃତ୍ୱ ନେଇଥାନ୍ତି ରାଣୀ । ସେ ତ ଆମ କାମ୍‌ଡେନ୍ ରୋଡ୍ ବସାର ମୁଖ୍ୟ ଅତିଥି-ସତ୍‌କାରିଣୀ (Chief hostess) । ତାଙ୍କ ସ୍ନେହ-ଶ୍ରଦ୍ଧାକୁ ଅବଜ୍ଞା କରିବା ଆମ କାହା ପକ୍ଷରେ ସମ୍ଭବ ନୁହେଁ । ତେଣୁ ସୁରବାବୁ ନା କହିପାରୁ ନଥାନ୍ତି । ତା'ପରେ ସେ ସାଧାରଣତଃ ସ୍ୱଳ୍ପଭାଷୀ । ଗୁଡ଼ାଏ ଏଣୁ ତେଣୁ କହି ତାଙ୍କ ପାତ୍ରରେ ଖାଦ୍ୟ ପଦାର୍ଥର ଅଜାଡ଼ାକୁ ଏଡ଼ି ପାରିଲେନି । ବରଂ ଏକନିଷ୍ଠ ଭାବରେ ସାମନାରେ ଥିବା ଖାଦ୍ୟ ଦ୍ରବ୍ୟର ଗଦାକୁ ପେଟ ଭିତରକୁ ଠେଲିବାରେ ଲାଗିଲେ । କିନ୍ତୁ ଏ ଯୁଦ୍ଧରେ ସେ ଯେମିତି ଥକି ପଡ଼ୁଥିଲେ କାରଣ ସେ ଯେତେ ଖାଉଥାନ୍ତି ତା'ଠାରୁ ବେଶୀ ପୁଣି ତାଙ୍କ ପାତ୍ରରେ ଅଜାଡ଼ା ହେଉଥାଏ । ଶେଷରେ ସେ ବିରକ୍ତ ହୋ'ଇ ଉଠିଲେ ଏବଂ ପାଟି ତା' କାମରେ ଲାଗିଥିବା ବେଳେ ଗଁ ଗଁ ହୋଇ କେତେ କ'ଣ ମନା କରିବା ଛଳରେ କହି ଲାଗିଲେ ।

କାଳେ ସେ ଖାଇବା ଯାଗାରୁ ହଠାତ୍ ଉଠି ପଡ଼ିବେ ସେଥିପାଇଁ ମୁଁ ତାଙ୍କୁ ପ୍ରବୋଧ ଦେବାକୁ ଗୋଟିଏ କାହାଣୀ କହି ବସିଲି । କାହାଣୀ ନୁହେଁ ପ୍ରକୃତ ସତ ଘଟଣା । ଡ଼: ପି: ସାହେବ ସେ କାଳର ଆମ ବିହାର ଓଡ଼ିଶା ପ୍ରଦେଶର ଶିକ୍ଷା ନିର୍ଦ୍ଦେଶକ ଥାନ୍ତି । ସେ ଥରେ ପୁରୀ . ରାହାଙ୍ଗ ଶାସନର କୌଣସି ସ୍କୁଲ ପରିଦର୍ଶନ କରିବାକୁ ଯାଇଥିଲେ । ସାଙ୍ଗରେ ନେଇଥାନ୍ତି ତାଙ୍କ ନବ-ବିବାହିତା ସ୍ତ୍ରୀଙ୍କୁ । ସେ କାଳର କଥା । ସେତେବେଳେ ବ୍ରାହ୍ମଣ ଶାସନରେ ଏଭି ଫିରଙ୍ଗୀ ଦମ୍ପତିଙ୍କୁ ଯଥୋଚିତ ଚର୍ଚ୍ଚା କରିବା ସମ୍ଭବ ହୁଅନ୍ତା କିମିତି ! ଚପ୍ କଟ୍‌ଲେଟ୍ କି ରେଷ୍ଟୁରାଣ୍ଟ ଆଦ ତ ମିଳିବ ନି । ସାହେବଯୋଗ୍ୟ ଖାଦ୍ୟ ପାନ ପାଇଁ ଶଙ୍ଖ ଥାଳିଆ ବା କାହିଁ ? କଂସା ଥାଳି, ଗିନାରେ ତ ଖାଇବାକୁ ଦେଲେ ସେ ମାଗ୍ର

ହୋଇଯିବ । ତେଣୁ ଚୁଡ଼ାଘସା, କଦଳୀ ଚକଟା, ଡାଲମା ଆଦି ବ୍ରାହ୍ମଣମାନଙ୍କର ପ୍ରିୟ ଖାଦ୍ୟ ସାମଗ୍ରୀ ପଥର ବାସନରେ ପରଷିଦେଲେ ଖୁବ୍ ବେଶୀ ବେଶୀ କରି । ଗୁହାଳ ଦେଲେ ପଥର କୁଣ୍ଡିରେ ଏକ୍‌ଦମ୍ ଢାଳେ ଢାଳେ । ଏସବୁ ଏତେ ବଢ଼ାହେବା ଦେଖି ଡ଼.ପି. ସାହେବ ରାଗି ଉଠିଲେ । ଏଗୁଡ଼ା ଏତେ କଣ ? ଆମେ କ'ଣ ଅସୁର ହୋଇଚୁ ! ତାଙ୍କ ସ୍ତ୍ରୀ ଏବେ ବିଲାତରୁ ଆସିଚନ୍ତି । ଖାଇବା ପିଇବାରେ ଏ ଆଦବ୍ କାଏଦାର ବ୍ୟତିକ୍ରମ ଦେଖି ସେ କଣ ଭାବିବେ ! ଏସବୁ ଚିନ୍ତାକରି ସେ ବଡ଼ ବିବ୍ରତ ହୋଇପଡ଼ିଲେ । ଫଳରେ ଉଦ୍‌ଯୋକ୍ତାମାନେ ବଡ଼ ଅସୁବିଧାର ସମ୍ମୁଖୀନ ହେଲେ । କଣ କହି ସାହେବଙ୍କୁ ପ୍ରବୋଧ ଦେବେ ଠିକ୍ କରିପାରିଲେନି । ସାହେବ ସାହେବାଣୀ ଖାଇବା ପିଇବାରେ ଯଦି ଅସନ୍ତୁଷ୍ଟ ହୁଅନ୍ତି; ତେବେ ତ ସ୍କୁଲପରିଦର୍ଶନର ଫଳାଫଳ ଆଦୌ ସନ୍ତୋଷଜନକ ହେବନି । ତେବେ ପୁଣି କଣ କରାଯିବ ?

ଜଣେ ଚତୁର ପଣ୍ଡିତ ଥିଲେ । ସେ ସାହେବଙ୍କୁ ବୁଝେଇ କହିଲେ "ହିନ୍ଦୁମାନେ ବଡ଼ ଅତିଥିପରାୟଣ । ସେମାନେ ଯାହାକୁ ବେଶୀ ସମ୍ମାନ, ସ୍ନେହ, ଶ୍ରଦ୍ଧା ଦେଖେଇବାକୁ ଚାହାନ୍ତି ତାଙ୍କୁ ଖୁବ୍ ବେଶୀ ପରିମାଣରେ ଖାଇବା ପିଇବାକୁ ଦିଅନ୍ତି । ଆପଣ ନୂଆ ବିଭା ହୋଇ ଆସିଚନ୍ତି । ତେଣୁ ଆପଣଙ୍କ ମେମ୍‌ସାହେବଙ୍କୁ ଅତ୍ୟଧିକ ସମ୍ମାନ, ସ୍ନେହ, ଶ୍ରଦ୍ଧା ଦେଖାଇବାକୁ ଏପରି ଏତେ ଏତେ ବଢ଼ାଯାଇଚି ।" କଥାଟା ଶୁଣି ଡ଼: ପି: ସାହେବ ଖେଁ ଦଃସେ ହସି ଉଠିଲେ ଏବଂ ସାଙ୍ଗେ ସାଙ୍ଗେ ଏହାର ତାତ୍ପର୍ଯ୍ୟ ତାଙ୍କ ଧର୍ମପତ୍ନୀଙ୍କୁ ବୁଝାଇଦେଲେ । ସେ ମଧ୍ୟ ଏକୋକାରେ ପ୍ରେମେ ହୋଇ ଉଠିଲେ । ଯଦିଓ ଜୋର୍‌ରେ ହସିବା ସାହେବମାନଙ୍କ ଆଦବ କାଏଦାର ବିରୁଦ୍ଧ ତଥାପି ସ୍ୱାମୀ-ସ୍ତ୍ରୀ ଦୁହେଁ ହସି ହସି ଗଡ଼ିଗଲେ । ସ୍କୁଲ ପରିଦର୍ଶନର ଫଳାଫଳ ଖୁବ୍ ସନ୍ତୋଷଜନକ ହେଲା । ହବନି ! ଡ଼:ପି: ସାହେବ ଓ ତାଙ୍କ ସହଧର୍ମିଣୀଙ୍କୁ ଖାଦ୍ୟ ଜରିଆରେ ଯଥେଷ୍ଟ ଆଦର ଅଭ୍ୟର୍ଥନା ପ୍ରଦର୍ଶନ କରାଯାଇଥିଲା । ମୁଁ ଏକଥା ବର୍ଣ୍ଣନା କରି ସୁରବାବୁଙ୍କୁ ବୁଝେଇ ଦେଲି ଯେ ତାଙ୍କୁ ଶ୍ରୀମତୀ ମିଶ୍ର ଓ ଅନ୍ୟମାନେ ଖୁବ୍ ସ୍ନେହଶ୍ରଦ୍ଧା କରନ୍ତି । ତେଣୁ ସେ ବିଲାତରୁ ବିଦାୟ ନେଇ ଯାଉଥିବାରୁ ସେମାନେ ତାଙ୍କୁ ଅତ୍ୟଧିକ ମାତ୍ରାରେ ଖାଇବା ପିଇବାକୁ

ଦେଉଥାନ୍ତି । ତେଣୁ ସେଥିରେ ବିରକ୍ତ ନ ହୋଇ ଯେତେ ପାରୁଥାନ୍ତି ସେ ଖାଇଯାନ୍ତି । ସୁରବାବୁ ଏତେବେଳକୁ ପୂରା ଗୁମ୍ ପାଲଟି ଯାଇଥିଲେ । ମୋ କଥାର ତାତ୍ପର୍ଯ୍ୟ ସେ ବୁଝିଲେ କି ନାହିଁ କେଜାଣି କିନ୍ତୁ ହାତ ଜୋର୍‌ରେ ଚଳେଇଥାନ୍ତି । ଖାଦ୍ୟ ସାମଗ୍ରୀରେ ଝାଗର ଆଧିକ୍ୟ ହେତୁ ତାଙ୍କ ମୁହଁ ଲାଲ ପଡ଼ିଯାଇଥାଏ । ଆଖି ଛଳ ଛଳ ହୋଇ ଉଠୁଥାଏ । ଆମେ ସବୁ ଭାବିଲୁ, ତାଙ୍କୁ ବିରହ ବ୍ୟଥା ଘାରିଛି । ତେଣୁ ତାଙ୍କୁ ପ୍ରବୋଧ ଦେବାକୁ ନାନା କଥା କହୁଥାଉ । ଖାଇବା ସରିବା ପରେ ରଜା ସୁରବାବୁଙ୍କୁ ପୁଣି ଭଲକରି ମୁଠାଏ ଗୁଣ୍ଡି ପାନ କରିବାକୁ ଦେଲେ । ସେ ସେତକ ପିଇଦେଇ, ହାତ ଧୋଇ ଖଟ ଉପରେ ଗୋଡ଼ହାତ ମେଲାଇ ପଡ଼ିଗଲେ । ସମସ୍ତେ କହିଲେ ହଁ, ସେ ଟିକିଏ ଶୋଇ ପଡ଼ନ୍ତୁ । ଠିକ୍ ବେଳାରେ ତାଙ୍କୁ ଉଠାଇ ଉଡ଼ାଜାହାଜ ଘାଟିକି ପଠାଇ ଦିଆଯିବ ।

ଟିକକ ପରେ ସୁରବାବୁଙ୍କର ହେଁକା ଉଠିଲା ଭଳି ହାକୁଟି ଆସିଲା । ସେ ଯେମିତି ଛଟପଟ ହେଉଥାନ୍ତି । କିଏ ପାଣି ଆଣି ଦେଲା ହାକୁଟି ବନ୍ଦ କରିବାକୁ । କିନ୍ତୁ ହାକୁଟି ବନ୍ଦ ନ ହୋଇ ବଢ଼ି ଚାଲିଲା । ଆମେ ଭାବିଲୁ, ଆମକୁ ଛାଡ଼ିଯିବେ ବୋଲି ସେ ଦୁଃଖରେ ଏମିତି ଘାଏଲା ହୋଇ ଯାଇଛନ୍ତି, କାନ୍ଦିବାକୁ ଆରମ୍ଭ କରିଛନ୍ତି । ଅବଶ୍ୟ ମମତା-ବିରହ, ସ୍ନେହ-ପ୍ରେମ ଆଦି କୋମଳ ଗୁଣଗୁଡ଼ିକ କେବେ ସୁରବାବୁଙ୍କୁ ବେଶୀ ବ୍ୟତିବ୍ୟସ୍ତ କରିବାର ଆମେ ଦେଖି ନ ଥାଉ । ତଥାପି ମଣିଷ ମନ ତ ! ଏତେ ଦିନ ଏକାଠି ରହିବା ପରେ ଯେତେବେଳେ ଆମ୍ଭମାନଙ୍କୁ ଛାଡ଼ି ଯାଉଛନ୍ତି ସେ ଦୁଃଖରେ ଭାଙ୍ଗି ପଡ଼ିବା ସ୍ୱାଭାବିକ ।

ସୁରବାବୁ ଆଖି ବନ୍ଦ କରି ଖଟ ଉପରେ ପଡ଼ିଥାନ୍ତି । ଆମେମାନେ ନାନା ଗପସପ କରୁଥାଉ । ରାତିର ଶେଷ ପ୍ରହରରେ ସେ ଆମଠାରୁ ବିଦାୟ ନେଇ ଯିବାର କଥା । ସମସ୍ତେ ପ୍ରାୟ ସଜାଗ ରହି ବାଦଲ ତାଙ୍କ ପାଖରେ ଜଗି ରହିଥାଏ । କିଛି ସମୟ ପରେ ଗୋଟାଏ ଗଁ ଗଁ ଶବ୍ଦ ହେଲା । କି ଶବ୍ଦ ଏ, କୁଆଡ଼ୁ ଆସିଲା ? ନା, ସୁରବାବୁ କାହାକୁ ଡାକିଲେ । ପରେ ପରେ ସୁରବାବୁ ଏଣ୍ଡୁଅ ପରି ମୁଣ୍ଡ ହଲେଇ ଅ-ଅ କରିବାକୁ ଆରମ୍ଭ କରିଦେଲେ । ଏ କ'ଣ ! ବିରହ ବ୍ୟଥାରୁ ବସୂଚକାର

ଲକ୍ଷଣ କାହିଁକି ଦେଖାଗଲା ? ସାଙ୍ଗେ ସାଙ୍ଗେ ସୁରବାବୁ ଖୁବ୍ ଜୋର୍‌ରେ ବାନ୍ତି ଆରମ୍ଭ କରିଦେଲେ । ବାନ୍ତି ସେ ନୁହେଁ, ଖାଦ୍ୟ-ପେୟର ବନ୍ୟା ! ଭୁହାକୁ ଭୁହା ତାଙ୍କ ପେଟ ଭିତରୁ ବହୁ ଘନ, ତରଳ ଜିନିଷ ଅଗ୍ରୁଡ଼ି ସ୍ରୋତରେ ବାହାରି ପଡ଼ୁଥାଏ । ଘର ଚଟାଣ ସେଥିରେ ଭର୍ତ୍ତି ହୋଇଗଲା । ଜଳପ୍ରପାତରୁ ଜଳୀୟ କଣା ବହୁଦୂର ପଡ଼ିଲା ପରି ସେଥିରୁ ଟୋପାଏ ଟୋପାଏ ଆମ ଉପରେ ପଡ଼ୁଥାଏ । କିନ୍ତୁ ସେଥି ପ୍ରତି କାହାରି ଲକ୍ଷ୍ୟ ନାହିଁ ।

ସୁର ବାବୁଙ୍କର ଏ ହେଲା କ'ଣ ? ଏତେ ବାନ୍ତି । ପ୍ରଚଣ୍ଡ ଅଗ୍ନ୍ୟୁତ୍ପାତ ପରି ତାଙ୍କ ପେଟ କୋଠରିରୁ ଭୁହାକୁ ଭୁହା ବାହାରି, ଆସୁଥାଏ ସକଳ ଖାଦ୍ୟ ସାମଗ୍ରୀ, ବହୁ ପ୍ରକାରର, ବହୁ ରଙ୍ଗର, ସଘନ, ଅର୍ଦ୍ଧତରଳ, ଖାଲି ଜଳ, ରଙ୍ଗୀନ୍ ରସ ଇତ୍ୟାଦି । ଏଁ ! ଏତେ କ'ଣ ଜିନିଷ ତାଙ୍କ ପେଟରେ ଥିଲା ? ଲୋକେ କହନ୍ତି ଭଗବାନଙ୍କ ପେଟରେ ସାତ ବିଶ୍ୱ ରହିଛି । ଅସମ୍ଭବ କ'ଣ ! ମଣିଷ ପେଟ ଗୃହଖଣ୍ଡିକରେ ଯେ ଏତେ ଜିନିଷ ରହି ପାରିଲା — ! ସୁରବାବୁଙ୍କୁ ଛୁଆଁ ବନ୍ଦ କରାଗଲା । ଲେମ୍ବୁ, ହେଙ୍ଗୁ ଆଦି ଶୁଙ୍ଘାଇ ଦିଆଗଲା । ତଥାପି ଅବସ୍ଥା ସମ୍ଭଳା ପଡ଼ୁ ନଥାଏ । କାହା ଘରେ ହଇଜା ଆରମ୍ଭ ହୋଇଗଲେ ଯେମିତି ଅବସ୍ଥା ସୃଷ୍ଟି ହୁଏ ଆମ ବସାର ପରିସ୍ଥିତି ମୋଟାମୋଟି ସେହିପରି ହୋଇ ଉଠିଲା ।

ଘଟଣାଟା ନିରାଟ ଦୁଃଖ-ଦାୟକରୁ କ୍ରମେ ହାସ୍ୟୋଦ୍ଦୀପକ ହୋଇ ଉଠିଥାଏ । କେହି କେହି କ୍ଷୀଣ କଣ୍ଠରେ କହି ସାରିଥାନ୍ତି, ସୁରବାବୁ ଟିକିଏ ବେଶୀ ମାତ୍ରାରେ ପିଇଦେଲେ । ବେଶୀ ? ଏ ପାନୀୟ ଜିନିଷଟା କେବେ ତ ସୁରବାବୁଙ୍କୁ ବେଶୀ ହୁଏନି । ନା, ଖୁବ୍ ବେଶୀ । ଯେ ଯେତେ ଦେଲା ତାକୁ ପିଇଲେ । ଆଗରୁ ବୋଧହୁଏ ନିଜେ ବ୍ରେକ୍‌ନକ୍‌କୁ ଯାଇ କିଛି ପିଇଥିଲେ । ତାପରେ ଖାଇଲେ ବି ଖୁବ୍‌ବେଶୀ । ତାକୁ ସହଜରେ ଜୀର୍ଣ୍ଣ କରିବାକୁ ଖାଇସାରି କିଛି ପିଇଲେ । କିନ୍ତୁ ଯେତେ ପିଇଲେ ସେତ ବାନ୍ତି କରିବାର ଲୋକ ନୁହନ୍ତି । ବାନ୍ତି ବୋଲି ବାନ୍ତି ! ଘରେ ବାନ୍ତି ଲହଡ଼ା ମାରୁଛି । ତଥାପି ଅ-ଅ ବନ୍ଦ ହେଉନି । ନା, ଆମକୁ ଘୁଡ଼ିପିବେ ଏଇ ସବୁ ଯୋଗେ ଏ କାଣ୍ଡ ଘଟିଲା ! ସୁରବାବୁ କୁମ୍ଭାଟୁଆ ଆଖିପରି ନାଲି ଟକ୍‌ଟକ୍ ଡୋଳା ଦୁଇଟାକୁ ବୁଲେଇ ମୋଟା।

ରଜା କହିଲେ, "ନାଇଁ ମ, ସକ୍ ଫକ୍ କିଛି ନୁହେଁ । ବେଶୀ ଟିକିଏ ପିଇ ଦେଲି । ଶେଷରେ ରଜା ଯେଉଁ ଓ୍ୱାଇନ୍‌ଟିକ ଦେଲେ ସେ ଢେର କଡ଼ା ।

ସମସ୍ତେ ଖେଁ କରି ହସି ଉଠିଲେ । କିଏ କହିଲା, ବେଶୀ ପିଇବାକୁ ଦେଲେ ଯଦି ତୁମେ ମନା କଲନି । ସୁରବାବୁ କ୍ଷୀଣ କଣ୍ଠରେ ଉତ୍ତର ଦେଲେ । ମନା ତ କରି ପାରିଲିନି । ସମସ୍ତେ ପୁଣି ଜୋରରେ ହସି ଉଠିଲେ ।

ଯାହାହେଉ ସୁରବାବୁ ଖୁବ୍ ଶୀଘ୍ର ପ୍ରକୃତିସ୍ଥ ହୋଇ ଉଠିଲେ । ଏବଂ ତାଙ୍କୁ ବିଦାୟ ଦେବାର ବ୍ୟବସ୍ଥା କରାଗଲା । ଆମେ ଯାହା ଭାବିଥିଲୁ ସେ ଆମକୁ ଛାଡ଼ିଗଲାବେଳେ ଦୁଃଖରେ ଭାଙ୍ଗିପଡ଼ିବେ ସେପରି କିଛି ଲକ୍ଷଣ ତାଙ୍କଠାରେ ଦେଖାଗଲାନି । ବରଂ ହାସ୍ୟକୌତୁକ ଭିତରେ ସେ ଯେତେବେଳେ ଜର୍ବକାର ଭାବରେ ଟ୍ୟାକ୍‌ସି ବାହାନରେ ଉଠିଲେ ଝାଲି ଫଷ୍ଟେଜରେ ପଦେ କହିଲେ—"ଆଜି କିଏ ଏ ଶଳା ଦେଶରେ ରହେ । ତୁମେମାନେ ସେମିତି ବୋକା ବୋଲି ..... ।"

ମୁଁ କାଲୁ ତାଙ୍କୁ ତାଗଦ୍ କରି କହିଲି, ହଁ ହୁସିଆର ସୁରବାବୁ ! ଘରେ ପହଞ୍ଚିବା ପୂର୍ବରୁ ଆଜି ଯେମିତି କେଉଁଠି ବେହୁସିଆର ହବନି ନ ପଥ । ସୁରବାବୁ କହିଲେ "ତା ଠିକ୍ ଯେ, ତଥାପି ଥଣ୍ଡା ଭରମ କଥା ତ ପୁଣି ଭାବିବାର ଅଛି । ତେବେ ଚେଷ୍ଟା କରିବି ।" ଏହି ଶେଷ ଆଶ୍ୱାସନା ବାଣୀରେ ଯେପରି ଆମ କାହାର ବିଶ୍ୱାସ ହେଲାନି । ପରିସ୍ଥିତିଟାକୁ ହୃଦୟଙ୍ଗମ କରି ସମସ୍ତେ ଏକ ସ୍ୱରରେ ହସି ଉଠିଲୁ ।

## ନଗରେଷୁ ପ୍ୟାରିସ୍

ଆମ ଶିକ୍ଷା ଅନୁଷ୍ଠାନର ପରୀକ୍ଷା ସରିବା ପରେ ସୁରବାବୁ ତ ସ୍ୱଦେଶକୁ ଫେରିଗଲେ । ଶକ୍ତିବାବୁ ଗଲେ ୟୁରୋପ ଭ୍ରମଣରେ । ମୋର ବି ୟୁରୋପ ଭ୍ରମଣରେ ଯିବାର କଥା । କିନ୍ତୁ ଆଉ କେତୋଟା ବାହାର ପରୀକ୍ଷା ବାକି ଥାଏ । ଅନ୍ୟ କେତୋଟା ଦପ୍ତର, ଅନୁଷ୍ଠାନକୁ ଯାଇ ସେଠାକାର କାର୍ଯ୍ୟପ୍ରଣାଳୀ ଅନୁଧ୍ୟାନ କରିବାକୁ ଠିକ୍ କରିଥାଏ । ତେଣୁ ଯଦିଓ ଫ୍ରାନସ୍, ଜର୍ମାନ ପ୍ରଭୃତି ଦେଶ ଦେଖିବାକୁ ମୋର ମନ ବିକଳ ହୋଇ ଉଠିଥାନ୍ତି ତଥାପି ସାଙ୍ଗେ ସାଙ୍ଗେ ତେଣେ ବାହାରିଯିବା ସମ୍ଭବ ହେଲାନି । କିନ୍ତୁ ଆମେ ଯେ କେତେ ଜଣ ମିଶି ୨୩୫ ନମ୍ବର କାମ୍ଡେନ୍ ରୋଡ଼ରେ ଗୋଟାଏ ମେସ କରିଥିଲୁ, ମୋ ଛଡ଼ା ଅନ୍ୟମାନେ କିଏ କୁଆଡ଼େ ଯିବାରୁ ସେଇଟା ବନ୍ଦ ହୋଇଗଲା । ମୁଁ ରହିଥିଲି ଭୂମି ମହଲାର ଆମ ମେହ୍ନି ମଳିନ, ଆବର୍ଜନାର ସୁବାସଭରା ଘରେ ମୋ ଲଣ୍ଡନ ରହଣିର ବାକି ତକ ଦିନ କଟାଇଥାନ୍ତି । ସେ ଘର ଯେତେ ଅସ୍ପୃହଣୀୟ ହେଲେ ବି ତା' ପ୍ରତି ମୋର ଗୋଟାଏ ମମତା ଜାଗି ଉଠିଥାଏ । ଏତେ ଦିନ ଆମକୁ ସେ ଆଶ୍ରୟ ଦେଇଛି । ଆମେ ତା' ଉପରେ କେତେ କମ୍ ଅତ୍ୟାଚାର କରିନୁ ! ଖାଲି ସୁରବାବୁ ତା' ଚଟାଣରେ ଯେତେ ପୋଡ଼ା ସିଗାରେଟ୍ ପକାଇଛନ୍ତି, ତାର କାନ୍ଥ, କବାଟରେ ଯେତେ ଚୂନ ଖଇରର ଛାପ ମାରି ଦେଇଛନ୍ତି, ଏବେ ବି ତାର ସ୍ମୃତି ବିଦ୍ୟମାନ । ଆମେ ତାର ବିଶେଷ ଯତ୍ନ ନେଇ ପାରିନୁ । ତାକୁ ବିଶେଷ ଭାବରେ ସଫାସୁତୁରା ରଖିପାରିନୁ । ତେଣୁ ତାକୁ ଘୃଣା କରିବା ନିହାତି ଅମାନୁଷିକତା ହେବ !

ଅବଶ୍ୟ ଶନିବାର, ରବିବାର ଆଦି ଛୁଟି ଦିନମାନଙ୍କରେ ସମସ୍ତେ ମିଶି ବା ପାଳି କରି ତାର ସଫେଇ କାମରେ ଲାଗିପଡ଼ୁ । ଖଣ୍ଡେ ବେଣ୍ଟ ଲଗା ବ୍ରସ ଧରି, ଚିରା କନାପଟାରେ ପୋଛି ତାର ଚେହେରାକୁ

ଟିକିଏ ମାର୍ଜିତ କରିବାକୁ ଚେଷ୍ଟା କରୁ । ବିଶେଷ କିନ୍ତୁ କିଛି ଫଳ ହୁଏ ନା । କାରଣ ଆମ ଫୋପଡା କଚଡ଼ା, ବେହୁସିଆରି କାରବାରରେ ଆବର୍ଜନା ସବୁ ଏପରି ତାର ମଜ୍ଜାଗତ ହୋଇ ଯାଇଥାଏ ଯେ ତାକୁ ସମ୍ପୂର୍ଣ୍ଣ ରୂପେ ପରିଷ୍କାର ପରିଚ୍ଛନ୍ନ କରିବା ଅସମ୍ଭବ । ତେଣୁ ଆମେ ସେଠା ଛାଡ଼ିବାର ବହୁଦିନ ଯାଏ ସେ ଯେ ଆମର ସ୍ମୃତି ବହନ କରିଥିବ ଏଥିରେ ସନ୍ଦେହ ନାହିଁ । ଯାହାହେଉ ତାକୁ ଛାଡ଼ିବାକୁ ମୁଁ ବାଧ୍ୟ ହୋଇଥିଲି । କାରଣ ଏତେ ବଡ଼ ଘରଟାଏ ମୁଁ ଏକା କ'ଣ କରିଥାନ୍ତି ! ତାର ପୂରା ଭଡ଼ାଟା ବି ମୋ ପକ୍ଷରେ ଏକା ବହନ କରିବା କଷ୍ଟକର । ଅନ୍ୟମାନେ ଚାଲିଯିବା ପରେ ମୋତେ ସେ ଘରଟା ବଡ଼ ନିଛାଟିଆ ଲାଗୁଥାଏ । ତେଣୁ ଘର ମାଲିକ ସହିତ କଥାବାର୍ତ୍ତା କରି ସବୁ ଉପର ମହଲାରେ ଗୋଟିଏ ଛୋଟ ବଖରା ଭଡ଼ା ନେବାର ବ୍ୟବସ୍ଥା କଲି ।

ସେ ଉପର ଘରଟାର ଗୋଟାଏ ବିଶେଷ ଆକର୍ଷଣ, ତାର ଉତ୍ତର ପଟ ବାରେଣ୍ଡାରେ ଠିଆହେଲେ ଲଣ୍ଡନ ସହରର ଅଧିକାଂଶ ଦେଖାଯାଏ । ଏଇଟା ମୋ ପକ୍ଷରେ କିଛି କମ୍ ସୌଭାଗ୍ୟର ବିଷୟ ନୁହେଁ । ଲଣ୍ଡନକୁ କୌଣସି ଆଡ଼ୁ କୌଣସି ପ୍ରକାରେ ଦେଖିଲେ ମୁଁ ନିଜକୁ କୃତାର୍ଥ ମନେକରେ । ତେଣୁ ସବା ଉପର ମହଲାର ଏ ଘରଟି ମୋତେ ବେଶ୍ ମୁଗ୍‌ଧ କରିଥିଲା । କିନ୍ତୁ ଯେଉଁଦିନ ମୋ ଜିନିଷପତ୍ର ମୁଁ ଆମ ପୂର୍ବ ମେସ୍‌ଘରୁ ଧରି ବାହାରି ଆସିଲି ମନଟା ଦୁଃଖରେ ଭାଙ୍ଗି-ପଡ଼ିଲା । ଆଖି ଛଳ ଛଳ ହୋଇଗଲା । ଆହା-ହା, କେତେ ସୁଖ-ଦୁଃଖରେ ଯେଉଁ ଘରଟି ଆମକୁ ଆଶ୍ରୟ ଦେଇଥିଲା ତାକୁ ପୁଣି ଛାଡ଼ିବାକୁ ପଡ଼ିଲା । ଉପର ବଖରାରେ ଜିନିଷପତ୍ର ସଜାଡ଼ିଲା ବେଳେ ମୋତେ ବଡ଼ ଅଶ୍ୱସ୍ତିକର, ଖୁବ୍ ଏକା ଏକା ଲାଗୁଥାଏ । କେହି ନଥାନ୍ତି ପାଖରେ କଥାବାର୍ତ୍ତା କରିବାକୁ, ଖୁସି ଗପ କରିବାକୁ । ତାଲା ବନ୍ଦ କରି ଶ୍ରୀମତୀ ମିଶ୍ରଙ୍କ ପାଖକୁ ଚାଲି ଗଲି । ସେ ମୋ ମୁହଁକୁ ଚାହିଁ ହସି ଉଠିଲେ । କହିଲେ, କ'ଣ ହେଲା ? ଘର ମନ ପଡ଼ିଲାକି ? ଘରକୁ ଫେରିବା ଯେତିକି ପାଖେଇ ଆସିବ ମନ ତ ସେତିକି ଉତଲା ହେବ । ତାଙ୍କ କଥାରେ ବ୍ୟଙ୍ଗଭରା ଛଟା । ମୁଁ କୋହ କୋହ ହୋଇ କହିଲି ଘରତ ମନେ ପଡ଼ୁଛି ସତ, କିନ୍ତୁ ଆଜି ଅଘୋରି ହୋଇଗଲି । ନୂଆ ବସା

ବାନ୍ଧିସାରିଲଣି । ହେଲେ ମନ ଭଲ ଲାଗୁନି । ସାଙ୍ଗ ସାଥିମାନେ କିଏ କୁଆଡ଼େ ଗଲେଣି । ମୁଁ ଏକା ପଡ଼ିଛି !

ଶ୍ରୀମତୀ ମିଶ୍ର ମୋତେ ସାନ୍ତ୍ୱନା ଦେଇ କେତେ କଣ କହିଲେ । ଚାହା କରି ପରଷି ଦେଲେ । ମୁଁ ଟି. ଭି. ଦେଖୁଥାଏ । ରାଜା ବସାକୁ ଫେରିଲାରୁ ରାଣୀ ତାଙ୍କୁ ବନେଇ ଚୂନେଇ ମୋ ବିଷୟରେ କେତେ କଥା କହିଲେ । ରାଜା କହିଲେ "କିଛି ଚିନ୍ତା ନାହିଁ । ସବୁ ଦୁଃଖ ସାଙ୍ଗେ ସାଙ୍ଗେ ଭୁଲି ହୋଇଯିବ । ଆମେ ଟିକିଏ ବ୍ରେକ୍‌ନକ୍‌ରୁ ଆସୁ ।" ରାଣୀ ରାଜାଙ୍କର ଏ ଢଙ୍ଗ ଦେଖି କହିଲେ, "ବ୍ରେକ୍‌ନକ୍ କାହିଁକି ଯିବ ? ଲୁଗାପଟା ବଦଳାଅ । ମୁଁ ଖାଇବାକୁ ବାଢ଼ି ଦେଉଛି । ଦୁହେଁ ବସି ଖାଅ ।" ରାଜା ରସିକତା କରି କହିଲେ । ହାଁ, ଖାଇବାଟା ! ଆଗ ଆମେ ଟିକିଏ ପିଇ ଆସୁ । ବୁଝୁନା ମାନସିକ ଦୁଃଖର ଅପନୋଦନ ପାଇଁ ବ୍ରେକ୍‌ନକ୍ ଯିବା ଛଡ଼ା ଉପାୟ ନାହିଁ । ଏତିକି କହି ମୋ ହାତ ଧରି ବାହାରି ପଡ଼ିଲେ । ରାଣୀ ସ୍ୱାମୀଙ୍କର ଏପରି ଆଚରଣରେ ପ୍ରାୟ ଅଭ୍ୟସ୍ତ ହୋଇ ଯାଇଥିଲେ । ସେ ଆଉ କିଛି ନ କହି ଚୁପ୍ ରହିଲେ ।

ବ୍ରେକ୍‌ନକ୍ ପବ୍ । ବହୁବାର ସେଠାକୁ ଯାଇଛି, ଅବଶ୍ୟ ରାଜାଙ୍କ ସହିତ ନଚେତ୍ ସୁରବାବୁଙ୍କ ସାଙ୍ଗେ । ଦେଖେ ସେଠାରେ ଦଳ ଦଳ ଲୋକ ଗୋଟିଏ ଗୋଟିଏ କାଚ ଜଗ୍‌ରେ କଲରାପଣି ରସ ଭରି ଦେଖା-ଯାଉଥିବା ବିଅର୍‌ରୁ ଆଞ୍ଜୁଳାକରି ମୁନ୍ଦାଏ ମୁନ୍ଦାଏ ଧରି ବସିଥାନ୍ତି । ଟିକିଏ ଟିକିଏ ସେଥିରୁ ପିଉଥାନ୍ତି, ଟିକିଏ ଟିକିଏ ଖବର କାଗଜକୁ ଚାହୁଁଥାନ୍ତି । ପଦେ ଅଧେ କାହା ସାଙ୍ଗରେ କଥାବାର୍ତ୍ତା କରୁଥାନ୍ତି । ମୁହଁରେ ସେମାନଙ୍କର ଅପୂର୍ବ ଜ୍ୟୋତି । ମନରେ ତାଙ୍କର ଅପୂର୍ବ ଶାନ୍ତତା । କେହି କେହି ହ୍ୱିସ୍କି, ରମ୍, ବ୍ରାଣ୍ଡି ପିଉଥାନ୍ତି କିନ୍ତୁ ଅଧିକାଂଶ ଧରିଥାନ୍ତି ବିଅର ଗିଲସ । ମୋର ତ ସବୁବେଳେ ସେଇ ବ୍ରାଣ୍ଡି । କମଳାରସ ଦେଇ ବା ସୋଡ଼ା ମିଶାଇ ସେଥିରୁ ବେଳେ ବେଳେ ଟିକିଏ ପିଇଦିଏ ଦୁଃଖ କଷ୍ଟ ଭୁଲିଯିବାକୁ, ଶାରୀରିକ, ମାନସିକ ଅବସାଦରୁ ରକ୍ଷା ପାଇବାକୁ । କିନ୍ତୁ ସେଥିରେ ବିଶେଷ କିଛି ଲାଭ ହେଲାପରି ଜଣାପଡ଼େନି । ଦେହ ଟିକିଏ ଶିରଶିର ଲାଗେ । କିଛି ସମୟ ପାଇଁ ମନରେ ଆସେ ନୀରବ ନିଶ୍ଚଳ ଭାବ । କିନ୍ତୁ ଘରେ ହୋଇ ହୁଏ । ହୋଇ ମୁଁ ବାସ୍ତବରେ

ଅଭାବ ! ଯାହା ଖାଇଲେ ତ ଅଳ୍ପ ସମୟରେ ସେ ଜୀର୍ଣ୍ଣ ହୋଇଯାଇ ପୁଣି ଆରମ୍ଭ ହୋଇଯାଏ ଭୋକ ।

ଯାହାହେଉ ସେଦିନ ସନ୍ଧ୍ୟାଟା ରାଜାଙ୍କ ପିଇବା ବ୍ୟବସ୍ଥା, ରାଣୀଙ୍କ ଖାଇବା ବ୍ୟବସ୍ଥା ଯୋଗୁ ବେଶ୍ ଉପଭୋଗ୍ୟ ହୋଇ ଉଠିଲା । କିନ୍ତୁ ରାତି ଏଗାରଟା ବେଳକୁ ଯେତେବେଳେ ସେ ନିର୍ଜନ କୋଠରୀର ଖଟଟାରେ ଆସି ପଡ଼ିଗଲି, ମନକୁ କେତେ ଭାବନା, ଚିନ୍ତା ମାଡ଼ିଆସିଲା । ପରୀକ୍ଷାର ଫଳାଫଳ କଣ ହବ, ଆଉ କୁଆଡ଼େ କୁଆଡ଼େ ଯିବି, କଣ ଶିଖିବି, ଆଉ ଦିନାକେତେ ବିଲାତରେ ରହିବି ଇତ୍ୟାଦି । ୟୁରୋପରେ ଯେଉଁଏ ବୁଲିଆସି ସ୍ୱଦେଶ ଅଭିମୁଖରେ ବାହାରିବି ? ପ୍ରକୃତରେ ଘରକୁ ଫେରିବାକୁ ମନ ଯେତେ ବିକଳ ହେଲେ ବି ବିଲାତ ଛାଡ଼ିବାକୁ ଇଚ୍ଛା ହେଉ ନ ଥାଏ । ବିଲାତ ରହଣିର ଶେଷାଂଶ ପାଇଁ ମନେ ମନେ ଗୋଟାଏ କର୍ମ-ଯୋଜନା କରି ବସିଲି । କିନ୍ତୁ ସେ କି ବ୍ୟାପକ ଯୋଜନା, କି ସୁବୃହତ୍ ପରିକଳ୍ପନା ! ତାକୁ କାର୍ଯ୍ୟକାରୀ କରିବାକୁ ମୋତେ ତ ଆଉ ବର୍ଷେ ବିଲାତରେ ରହିବାକୁ ପଡ଼ିବ । ଆଉ ବର୍ଷେ ରହିବାର ବି ଉଦ୍ୟମ କରୁଥାଏ ।

ମୋତେ ଭାରତ ସରକାର କଲମ୍ବୋ ଯୋଜନା ଅନୁସାରେ ବିଲାତରେ ତାଲିମ୍ ପାଇବାକୁ ମନୋନୀତ କରିଥାନ୍ତି । ତେଣୁ ସେଇଟା କାର୍ଯ୍ୟକାରୀ କରିବାକୁ ମୁଁ ଚେଷ୍ଟା କରୁଥାଏ । ତାହେଲେ ସେ ବାବଦରେ ଯେଉଁ ବୃତ୍ତି ଟଙ୍କା ମିଳିବ ସେଥିରେ ମୋର ଆର୍ଥିକ ଅନାଟନ ଦୂର ହୋଇଯିବ । ଇମିତି କେତେ କଳ୍ପନା ଜଳ୍ପନା କରୁ କରୁ କେତେବେଳେ ନିଦ ଲାଗି ଆସିଲା । ନିଦ ଭିତରେ ନାନା ଦୁଃସ୍ୱପ୍ନ । ରାତି ଥାଉ ଥାଉ ନିଦ ଭାଙ୍ଗିଗଲା । ଖଟ ଉପରେ ଏପଟ ସେପଟ ଛଟପଟ ହେଉଥାଏ । ମନରେ ଘୋର ନୈରାଶ୍ୟ । ଭାବିଲି ନିତ୍ୟକର୍ମ ସାରି କୁଆଡ଼େ ବୁଲିବୁଲି କରିବାକୁ ଗଲେ ଟିକିଏ ମନ ପରିବର୍ତ୍ତନ ହେବ । ଉଠିପଡ଼ି ତଳମହଲା ପାଇଖାନାକୁ ଗଲି । ଭିତରଆଡ଼ ଅନ୍ଧାର ଥାଏ । କେଉଁଠି କମିତି ବିଜୁଳି ବତୀ ଜଳୁଥାଏ । ଫେରିଲା ବେଳକୁ ଆଖି ପଡ଼ିଲା ଆମର ସେହି ପୂର୍ବ ବସାଘର ଉପରେ । ସେଇଟା ବନ୍ଦଥାଏ । ନୂଆ ଭଡ଼ାଟିଆ ଜୁଟି ନାହାନ୍ତି । ଜୁଟିଲେ ସେଠାରେ ରହି ଆମ ଯାଗା ଦଖଲ କରିବେ ।

ଯେଉଁଠି ଆମେ ଆନନ୍ଦ ବିହାର କରୁଥିଲୁ ସେଠାରେ ଅନ୍ୟ ଲୋକ ରହିବେ । ଆମ ଗ୍ୟାସନଳୀ, ଆମ ଗ୍ରେଷେଇ ଶାଳ ବ୍ୟବହାର କରିବେ ଅନ୍ୟ ଲୋକ, ଏଇଟା ଯେମିତି ବରଦାସ୍ତ କରି ହେଉ ନଥାଏ । ମନେ ପଡ଼ିଲା ମୋ ଖଟ ପାଖରେ ଥିବା ଝରକା କଥା । ମୁଁ ଖଟ ଉପରେ ବସି ସେଇ ଝରକା ଦେଇ କେତେ ବାହାରକୁ ଲକ୍ଷ୍ୟ କରିଛି ନିବାସିତ ବିରହୀ ଯକ୍ଷ ପରି । ସବୁଟା ମନେ ପଡ଼ିବାରୁ ମୋର ଆଖି ଦୁଇଟା ଛଳଛଳ ହୋଇ ଉଠିଲା ।

ମୋର ନୂଆ ବଖରାକୁ ଯିବା ପୂର୍ବରୁ ଯେଉଁଠି ଚିଠିପତ୍ର ଆସି ଥୁଆହୁଏ ସେଠାରେ ଖୋଜିଲି ଯଦି ଘରୁ ବା କେଉଁଠୁ ଚିଠି ଆସିଥିବ । ଗତ ଦିନ ଉପର ବେଳା ଚିଠି ଛାଡ଼ା ଦେଖି ନ ଥାଏ । ଦୈବାତ୍ ଦେଖିଲି ମୋ ନାଁରେ ଖଣ୍ଡିଏ ଚିଠି ଅଛି । ସେଇଟା ଆସିଥିଲା ମୋର ଜଣେ ଅଧ୍ୟାପକଙ୍କ ପାଖରୁ । ସେ ମୋ ସ୍ୱଦେଶ ପ୍ରତ୍ୟାବର୍ତ୍ତନ ପାଇଁ ଶୁଭମନାସି, ତାଙ୍କ ପଢ଼ାଉଥିବା ବିଷୟରେ ମୁଁ ଶହେରୁ ଅଶି ନମ୍ବରରୁ ଅଧିକ ରଖିଛି ତାର ସୂଚନା ୮୦+ଆକାରରେ ଦେଇଥିଲେ । ସେଇଟା ଦେଖିବା ପରେ ମନରେ ଟିକିଏ ଆଶ୍ୱସ୍ତିଭାବ ଆସିଲା । ପରୀକ୍ଷାର ଫଳାଫଳ ସମ୍ବନ୍ଧରେ ଯେଉଁ ଦୁଶ୍ଚିନ୍ତା ଥିଲା ସେଇଟା ଅନେକାଂଶରେ କମିଗଲା । ସେ ମହାନୁଭବ ଅଧ୍ୟାପକଙ୍କ ପ୍ରତି ଭକ୍ତି ଓ ଶ୍ରଦ୍ଧାରେ ମୁଣ୍ଡ ନଇଁଗଲା । ବାସ୍ତବିକ କି ମହତ୍ କି ଦୟାର୍ଦ୍ର ଏହି ବୃଦ୍ଧ ଅଧ୍ୟାପକ । ମୋ ପଢ଼ିବା ସମୟରେ ତ ମୋ ପ୍ରତି ଯାହା ସ୍ନେହ, ଦୟା ଦେଖାଉଥିଲେ, ପରୀକ୍ଷା ପରେ ବି ସେ ମୋତେ ଭୁଲି ନାହାନ୍ତି ଏବଂ ମୋର ମାନସିକ ଅବସ୍ଥା ବୁଝିପାରି ମୋତେ ସାନ୍ତ୍ୱନା ଦେବାକୁ ଏ ଚିଠି ଦେଇଛନ୍ତି ! ବାସ୍ତବିକ୍ ମୋର ଲଣ୍ଡନ ରହଣି ବେଳେ କେତେକ ଅଧ୍ୟାପକ ଓ ଅନ୍ୟ ଭଦ୍ରଲୋକଙ୍କ ସମ୍ପର୍କରେ ଆସିଥିଲି ଯାହାଙ୍କ ବ୍ୟବହାର ମୋତେ ବିଶେଷ ଭାବରେ ମୁଗ୍ଧ କରିଥିଲା ।

ବେଳେବେଳେ ମୋ ନୂଆ କୋଠରୀର ବାରେଣ୍ଡାରେ ବୁଲିଲାବେଳେ ମୁଁ ଲଣ୍ଡନ ସହରର ଚାରିଆଡ଼କୁ ଲକ୍ଷ୍ୟ କରେ । ରାସ୍ତାରେ ଯାତାୟାତ କରୁଥିବା ଲୋକଙ୍କୁ ଚାହେଁ । ମନେ ମନେ ଭାବେ ବିଲାତ ଓ ବିଲାତବାସୀଙ୍କ କଥା । କିଏ ଜଣେ କହିଛନ୍ତି : କେବଳ ଇଂଲଣ୍ଡ

ଯେ ଗୋଟିଏ ଦ୍ୱୀପ ତା' ନୁହେଁ, ଏହାର ପ୍ରତ୍ୟେକ ଅଧିବାସୀ ବି ଗୋଟିଏ ଗୋଟିଏ ଦ୍ୱୀପ ।

କଥାଟା ଯେପରି ସତ ସତ ଲାଗିଲା । ବାସ୍ତବିକ୍ ଏ ଲୋକଗୁଡ଼ାକ କେତେ ଆତ୍ମ-କେନ୍ଦ୍ରିକ । ମୋର ସେଇ ବୃଦ୍ଧ ଅଧ୍ୟାପକଙ୍କ ପରି କେତେକ ମହାମାନ୍ୟ ଲୋକଙ୍କୁ ଛାଡ଼ିଦେଲେ ଅନ୍ୟମାନେ ନିହାତି ସ୍ୱାର୍ଥପର । ଆପଣା କଥା ଛଡ଼ା ଅନ୍ୟ କଥା ଏମାନେ ଭାବନ୍ତି ନି । ନିଜ ପରିବାରର କଥା ବି ନୁହେଁ । ତେଣୁ ଏମାନେ ବେଶ୍ ସ୍ୱାଧୀନ । ଏମାନଙ୍କ ପାରିବାରିକ ଜୀବନରେ ବିଶେଷ କିଛି ଜଞ୍ଜାଳ ନଥାଏ । ଫଳରେ ଜୀବନକୁ ଖୁବ ଉପଭୋଗ କରି ପାରନ୍ତି ।

ବିଲାତବାସୀ କିନ୍ତୁ ଭାରି ରକ୍ଷଣଶୀଳ । ବହୁ କାଳରୁ ପ୍ରଚଳିତ ଆଦବ-କାଏଦାକୁ ଖୁବ୍ ମାନି ଚଳନ୍ତି । ବିଭିନ୍ନ ଅଞ୍ଚଳରେ ନାନା ପ୍ରକାର ସାମାଜିକ ରୀତି, ପର୍ବପର୍ବାଣୀ, ପାରିବାରିକ ପ୍ରଥା ପ୍ରଚଳିତ । ସେସବୁ ଏମାନେ ଖୁବ ନିଷ୍ଠାର ସହିତ ପାଳନ କରନ୍ତି । ସେକ୍‌ସପିଅରଙ୍କ ଜନ୍ମସ୍ଥାନ ଷ୍ଟ୍ରାଫୋର୍ଡ ଅପନ ଆଭନରେ ଏକ ଉତ୍ସବ ପାଳନ କରାଯାଏ, ଏହି ବିଖ୍ୟାତ ନାଟ୍ୟକାରଙ୍କ ସ୍ମୃତି ରକ୍ଷା ଉଦ୍ଦେଶ୍ୟରେ । ଏହି ଉତ୍ସବ ଦିନ ସେକ୍‌ସପିଅରଙ୍କ ନାଟକମାନଙ୍କରେ ଥିବା କେତେକ ଚରିତ୍ରର ବେଶ-ପୋଷାକ ପିନ୍ଧି ଲୋକେ ବାହାରନ୍ତି ଓ ତାଙ୍କ ନାଟକାବଳୀରୁ କିଛି କିଛି କହନ୍ତି । ଏହା ଜନସାଧାରଣଙ୍କ ଭିତରେ ବେଶ୍ ଆନନ୍ଦ-ଉଲ୍ଲାସ ସୃଷ୍ଟି କରେ ।

କେମ୍ବ୍ରିଜ୍ ସାୟାର୍‌ର ସ୍ୱାଫ୍‌ହାମ୍‌ରେ ଏକ ଲଙ୍ଗଳ ଉତ୍ସବ ପାଳନ କରାଯାଏ । ଜାନୁଆରି ମାସର ସୋମବାରି ଦିନ ପିଲାମାନେ ରାସ୍ତାରେ ଏକ ଲଙ୍ଗଳ ଟାଣି ଟାଣି ନିଅନ୍ତି । ଏଥିରୁ କୃଷି କାର୍ଯ୍ୟ ଆରମ୍ଭର ସୂଚନା ମିଳେ । ଏହି ଉପଲକ୍ଷେ ବିଭିନ୍ନ ସ୍ଥାନରେ ନାନା ଖେଳକସରତ୍‌ର ଆୟୋଜନ କରାଯାଏ । ଏହି ଉତ୍ସବ ଅନେକାଂଶରେ ଆମ ରଜ ପର୍ବର ରୂପାନ୍ତର ପରି ମନେ ହୁଏ । ଆମର ଯେପରି ଅଗହନ ପୂର୍ଣ୍ଣିମୀକୁ ଅଗ୍ନି ଉତ୍ସବ ପାଳିତ ହୁଏ, ନଭେମ୍ବର ଲଣ୍ଡନର ଆଲେକ୍‌ଜେଣ୍ଡ୍ରେଲରେ ସେହିପରି ଏକ ଉତ୍ସବ ପାଳନ କରାଯାଏ । ନବବର୍ଷର

ପୂର୍ବଦିନ ଯୁବକ-ଯୁବତୀମାନେ ନିଆଁ ଜାଳି ସେଥିରେ ପିଠା ଭାଜନ୍ତି ଏବଂ ସେହି ନିଆଁ ପାଖରେ ନାଚଗୀତରେ ମାତି ଉଠନ୍ତି । ବାହାରର ବିଭିନ୍ନ ଜାଗାରେ ଏହି ଉତ୍ସବ ବିଭିନ୍ନ ସମୟରେ ପାଳିତ ହୁଏ ।

ଆମ ମାର୍ଗଶିର ମାସ ମାଣ-ପୂଜା ପରି ସ୍କଟ୍‌ଲଣ୍ଡରେ ଏକ ପର୍ବ ପାଳିତ ହୁଏ । ଶସ୍ୟ ଅମଳ ସମୟରେ ଏକ ଖୋଲା ପଡ଼ିଆରେ ଗୋଟିଏ ଟେବୁଲ ପକାଯାଏ । ତା ଉପରେ ଶସ୍ୟକେଣ୍ଡା ରଖାଯାଇ ତାକୁ ସ୍ତ୍ରୀ ରୂପରେ ସଜାଯାଏ ଏବଂ ତା' ପାଖରେ ଆନନ୍ଦ-ଉତ୍ସବ କରାଯାଏ । ସ୍କଟ୍‌ଲଣ୍ଡରେ ଆଉ ଏକ ଉତ୍ସବ ପାଳିତ ହୁଏ । ଇନ୍‌ଭର୍ନେସ୍ ସାୟାରର କଲୋଡ଼େନରେ ଥିବା ସେଣ୍ଟ୍‌ମେରୀଙ୍କ କୂଅ (St. Mary's well)ର ପାଣି ସେ ଉତ୍ସବରେ ଲୋକେ ପିଅନ୍ତି । ସେହି କୂଅରେ ଲୋକେ ସିଲିଂ, ପେନସ୍ ଆଦି ମୁଦ୍ରା ପକାନ୍ତି ଓ ଆଖ ପାଖରେ ଥିବା ଗଛମାନଙ୍କରେ ରଙ୍ଗିନ୍ କନା ବାନ୍ଧି ଏହି ଉତ୍ସବ ପାଳନ କରନ୍ତି । ସେମାନଙ୍କର ବିଶ୍ୱାସ ଯେ ଏଥିରେ ସେମାନଙ୍କର ଦୁଃଖ-ଦୁର୍ଦ୍ଦଶା ଦୂର ହୋଇଯାଏ । ସ୍କଟ୍‌ଲଣ୍ଡରେ ଆଉ ଅନେକ ପ୍ରକାର ଉତ୍ସବ ପାଳିତ ହୁଏ, ଯହିଁରେ କ ସ୍କଟିସ୍‌ଲୋକଙ୍କର ଗୀତ, ଯନ୍ତ୍ର ସଙ୍ଗୀତ, ପୋଷାକପତ୍ର ଓ ଖାଦ୍ୟ ପଦାର୍ଥକୁ ପ୍ରାଧାନ୍ୟ ଦିଆଯାଏ । ଗୋଟିଏ ଉତ୍ସବରେ ସେମାନଙ୍କର ଯେ ପରମ୍ପରାଗତ ପ୍ରିୟ ଖାଦ୍ୟ ତାକୁ ପ୍ରସ୍ତୁତ କରି ସେସବୁକୁ ଗୋଟିଏ ଟ୍ରେରେ ରଖି ନିଆଯାଏ । ଲୋକେ ସେମାନଙ୍କର ଜାତୀୟ ପୋଷାକ ପିନ୍ଧି ପେଁକାଳି ( Pipe ) ବଜେଇ ତାହା ସଙ୍ଗରେ ଯା'ନ୍ତି । ହାଲଓ୍ବିନ୍‌ରେ ଏକ କୌତୁକ-ଖେଳ ପ୍ରଚଳିତ ଅଛି । ଗୋଟିଏ କୁଣ୍ଡରେ ପାଣି ରଖି ସେଥିରେ ଗୋଟିଏ ସେଓ ଭସାଯାଏ ଏବଂ ସେହି ସେଓକୁ ଲୋକେ ପାଟିରେ କାମୁଡ଼ି ଉଠାନ୍ତି । ଜ୍ଞାମାର୍କରେ ଜ୍ଞନମରି ଦିବସ ପାଳନ କରାଯାଏ । ଏଥିରେ ଜଣେ ଝିଅକୁ ଜ୍ଞନମରର ରାଣୀ ହିସାବରେ ମୁକୁଟ ପିନ୍ଧାଇ ଦିଆଯାଏ ଏବଂ ସେହି ତଥାକଥିତ ରାଣୀ ନୂଆ ଚକ୍‌ଚକ୍ ପେନିସବୁ ପିଲାମାନଙ୍କୁ ବାଣ୍ଟେ । ନର୍ଦ୍ଦ-ମ୍ବରଲଣ୍ଡର ଟାଇନ୍ ମାଉଥରେ ପ୍ରତ୍ୟେକ ବର୍ଷ ଏକ ଉତ୍ସବ ପାଳନ କରାଯାଏ, ଯହିଁରେ ମାଛଧରା ଡଙ୍ଗା ଓ ସମୁଦ୍ରକୁ ଆଶୀର୍ବାଦ ଦିଆଯାଏ ଏବଂ ମାଛଧରାଳିମାନେ ଯେପରି ନିରାପଦରେ ବହୁତ ମାଛ ଧରିବେ ସେ କଥା କାମନା କରାଯାଏ ।

ଇଂଲଣ୍ଡ୍, ସ୍କଟ୍‌ଲଣ୍ଡ୍ ଓ ଅୟର୍‌ଲଣ୍ଡ୍‌ରେ ଏହିପରି ନାନା ଉତ୍ସବ ପାଳିତ ହୁଏ । ସେମାନଙ୍କର ସାରବସ୍ତୁ ଥାଉ ବା ନଥାଉ ଲୋକେ ସ୍ଥାନୀୟ କିମ୍ବଦନ୍ତୀ ଓ ଚଳଣୀକୁ ଆଶ୍ରାକରି ଏସବୁକୁ ବହୁ ନିଷ୍ଠାର ସହିତ ପାଳନ କରନ୍ତି ଏବଂ ଯାହା ତାଙ୍କର ନିଜସ୍ୱ ବା ସ୍ୱତନ୍ତ୍ର ସେ ଯେତେ ପୁରୁଣା ହେଲେ ବି ତାକୁ ସହଜରେ ଛାଡ଼ନ୍ତି ନି ।

କଲମ୍ବୋ ଯୋଜନାକୁ ଆଶ୍ରୟ କରି ଆଉଥରେ କେତେ ବିଲାତରେ ରହିବାର ଆଶା ମୋର ଫସର ଫାଟିଗଲା । ତେଣୁ ୟୁରୋପ୍ ଆଡ଼େ ଟିକିଏ ବୁଲିଆସି ନିଜ ଦେଶକୁ ଫେରିବା ବାଟ କାଟିବା କଥା ବିଚାର କଲି । ଫ୍ରାନ୍‌ସ, ଜର୍ମାନୀ ପ୍ରଭୃତି ଯେଉଁ ଦେଶକୁ ଯିବାର କଥା ସେ ଦେଶର ଦୂତାବାସ (Embassy)କୁ ଯାଇ ପ୍ରବେଶାଦେଶ (Visa) ଯୋଗାଡ଼ରେ ଲାଗିଲି । ଏଣେ ବୁଲାବୁଲି ବି ଚାଲିଥାଏ । ଆଉ ଯେଉଁଠି ଯାହା ପରୀକ୍ଷା ଦେବାର କଥା କି କିଛି ଶିଖିବାର ଥାଏ, ସେସବୁ ବି ତ୍ୱରାନ୍ୱିତ ଭାବରେ ଚାଲିଲା । ଯେଉଁ ଜାଗା ବିଲାତ ଛାଡ଼ିବା ଆଗରୁ ଆଉଥରେ ଦେଖିବାର ଆଶା ନଥାଏ, ତା'ଠାରୁ ମନେ ମନେ ବିଦାୟ ନେଉଥାଏ । ଆହା-ହା ଭଲ ହେଉ ମନ୍ଦ ହେଉ, କେତେ ଏସବୁ ଜାଗା ବୁଲିଛି । କିନ୍ତୁ ଆଉ ସେସବୁ ନେହାଲିଥି କରିବା ସମ୍ଭବ ନୁହେଁ । ମନ ଘରମୁହାଁ ଧଇଁଲାଣି । ତେଣୁ ବିଦାୟ । ହେ ବନ୍ଧୁ ବିଦାୟ । ବନ୍ଧୁ ନା ବନ୍ଧାଣୀ ! ଯାହା ହେଉ ।

ଏଥି ମଧ୍ୟରେ ବ୍ରିଟିଶ୍ ସରକାରଙ୍କ ମୁଦ୍ରଣ ଓ ଲିଖନୋପକରଣ ବିଭାଗର ମୁଖ୍ୟ ଦପ୍ତରକୁ ଯାଇ ସେଠାକାର କାର୍ଯ୍ୟପ୍ରଣାଳୀ ସମ୍ବନ୍ଧରେ ଯତ୍‌କିଞ୍ଚିତ ଜ୍ଞାନ ଅର୍ଜନ କରିସାରିଥାଏ । ପରିଶେଷରେ ୟୁରୋପ ଅଭିମୁଖରେ ବାହାରିବା ପୂର୍ବରୁ ଶେଷଥର ପାଇଁ ହାଇଡ୍ ପାର୍କକୁ ଗଲି । ସେଠାକାର ସୁଦୃଶ୍ୟ, କୁଦୃଶ୍ୟ ସମ୍ବନ୍ଧରେ ଯେତେ ହତାଶ ହେଲେ ବି ତାର ଆକର୍ଷଣ ମୁଁ ଏଡ଼ି ପାରୁନଥାଏ । କି କଥାଏ ! ବିଲାତ ଛାଡ଼ିବି ହାଇଡ୍ ପାର୍କଠାରୁ ବିଦାୟ ନ ନେଇ । ହଠାତ୍ ତରତରରେ ହାଇଡ୍ ପାର୍କରେ ବୁଲୁଚି ହଠାତ୍ ସାମନାରେ ଦେଖିଲି ଶ୍ରୀମାନ୍ ଭୁଟ୍ଟୋ ଓ ଶ୍ରୀମତୀ ଦେଶାଇ ହାତ ଧରାଧରି ହୋଇ ବୁଲୁଚନ୍ତି । କଣ, ଏମାନେ ଆଜଯାଏ ବି

ଅଲଗା ହୋଇ ନାହାନ୍ତି । ଅଲଗା ହେବେ କଣ ! ବେଶ୍ ତ ଲଗାଲଗି ହୋଇ ରହିଚନ୍ତି ।

ପରସ୍ପରକୁ ଅନ୍ତର୍ମୁଖ ସମ୍ବର୍ଦ୍ଧନା ଜଣାଇ ସାରିଲା ପରେ ମୁଁ କୁହେଇ ଆରମ୍ଭ କଲି "ମୁଁ ୟୁରୋପ ବୁଲି ଯାଉଚି । ସେଠାରୁ ଫେରି ଘରଚ ଅଭିମୁଖରେ ଜଳଯାତ୍ରା ଆରମ୍ଭ କରିବି । ତେଣୁ ଆଜି ଆପଣମାନଙ୍କ ସଙ୍ଗେ ଦେଖା ହୋଇପାରିବ ନା।" ଏ କଥା ଶୁଣି ସେମାନେ ମୁହଁ ଶୁଖାଇ ଦେଲେ । ମୋ ଉପଦେଶ, ପରାମର୍ଶରେ ସେମାନଙ୍କର କିଛି ଲାଭ ହେଉ ବା ନ ହେଉ ମୋ ଆଗରେ ସେମାନଙ୍କର ଦୁଃଖ କାହାଣୀ କହି ଅନେକଟା ସାନ୍ତ୍ୱନା ପାଉଥିଲେ ସେଇଟା ବନ୍ଦ ହୋଇଯିବ । ସେମାନଙ୍କୁ ସାନ୍ତ୍ୱନା ଦେବାକୁ ଯାଇ ପଚାରିଲି "ତୁମର ପୁଣି କଣ ଶେଷ ନିଷ୍ପତ୍ତି ହେଲା ?"

ଦୁହେଁ କିଛିକ୍ଷଣ ପାଇଁ ନୀରବ । ମୁଁ ବାରମ୍ବାର ସେମାନଙ୍କ ମୁହଁକୁ ଚାହିଁ ଚିନ୍ତା କରୁଥାଏ, ଏପରି ପ୍ରଶ୍ନ କରିବା ମୋ ପକ୍ଷରେ ଠିକ୍ ହେଲା ନା ଭୁଲ ! କିଛି ସମୟ ପରେ ବାବୁ ଭୂଷା ଜଣେ ନିରାଟ ପ୍ରେମିକ-ପରି ବ୍ୟଥାକୁଳ କଣ୍ଠରେ କହିଲେ "ଆମ ଭବିଷ୍ୟତର ସୁଖ ଦୁଃଖ ବର୍ତ୍ତମାନ ପୂରା ନିର୍ଭର କରୁଚି ମୋ ପ୍ରିୟତମାଙ୍କ ଉପରେ ।"

—କିପରି ? ମୁଁ ଉତ୍କଣ୍ଠାର ଚୁପ ସମ୍ଭାଳି ନ ପାରି ପଚାରିଲି ।

ଉତ୍ତର ଦେଲେ ଶ୍ରୀମତୀ ଦେଶାଇ ।

—ସେ ମୋତେ ବିବାହ କରିବାକୁ ଚାହୁଁଚନ୍ତି । କିନ୍ତୁ···

କିନ୍ତୁ ଅସୁବିଧା କଣ ? ଦୁହିଁଙ୍କର ତ ମନ ମିଳୁଚି । ମଝିରେ ହସ ମାଡ଼ ଆସୁଥାଏ । କିନ୍ତୁ ମୁଁ ନିଜକୁ ସଞ୍ଜତ କରି କଥାବାର୍ତ୍ତା ଚାଲୁ ରଖିବାକୁ ଚେଷ୍ଟାକଲି ।

—କିନ୍ତୁ ତା' କିମିତି ସମ୍ଭବ ? ତାଙ୍କର ଘରେ ବିବାହିତା ସ୍ତ୍ରୀ ଅଛନ୍ତି । ମୋ ପାଖରେ ମୋର ସ୍ୱାମୀ !

ଘଟଣା ଏଥିରୁ କୌଣସି କଥାଟା ତ ସ୍ୱାମୀଙ୍କୁ ଅଜଣା ନ ଥିଲା ! ସବୁ ଜାଣି ଶୁଣି ତ ପ୍ରେମ ପସରା ମେଲାଇ ଦେଲେ ଆଜି ଏଇଲେ କାହିଁ ଶୁଖିଲୁ ଶୁଖିଲୁ ହଉଚନ୍ତି !

ଶ୍ରୀମତୀ ଦେଶାଇ କହିଚାଲିଥାନ୍ତି । "ବିବାହ ନ କରି ଆମ ଦୁହିଁଙ୍କର ଆତ୍ମୀୟତାଟା ଯଦି ବନ୍ଧୁତାରେ ସୀମାବଦ୍ଧ ରହନ୍ତା..."

"ମୁଁ କିନ୍ତୁ ବିବାହ ଛଡ଼ା ଅନ୍ୟ କୌଣସିଥିରେ ସନ୍ତୁଷ୍ଟ ହୋଇ ପାରିବି ନି । ଆମକୁ ବିବାହ କରିବାକୁ ଦିଅଁ ହେବ ।" ଏପରି ଔପନ୍ୟାସିକ ଭାଷାଗୁଡ଼ିକ ଯାବଜ୍ଜୀବନ ଶାରଦ୍ଧ ସହି ପ୍ରକାଶ କଲେ ବାବୁ ଭୁଞ୍ଚା ।

କ୍ରମେ ଦୁହିଁଙ୍କର ବଚନିକା ବେଶ୍ ଉଷ୍ମ ହୋଇ ଉଠିଲା । ଦୁହେଁ ନିଜ ନିଜର ଯୁକ୍ତି ଜୋର୍‌ରେ ବାଢ଼ୁଥାନ୍ତି ମତେ ସାକ୍ଷୀ ରଖି ଏବଂ ବେଳେ ବେଳେ ମୋର ମତ ପଚାରୁଥାନ୍ତି ।

ମହା ଅସୁବିଧାରେ ପଡ଼ିଲି । ମୋ ମୁଣ୍ଡ ତ ନାନା ଚିନ୍ତାରେ ଭରିଯାଉ, ମୁଁ ଏମାନଙ୍କୁ ବା କଣ ହିତୋପଦେଶ ଦେବି ? କଥାଟା ବି ବେଶ୍ ଜଟିଳ । କଣ କହିବି କିଛି ଠିକ୍ କରିପାରୁ ନ ଥାଏ । ତେଣୁ ମାଷ୍ଟରଙ୍କୁ ଅଙ୍କ ନ ଆସିଲେ ସେ ପିଲାଙ୍କୁ ଭୁଲେଇବାକୁ ଯେମିତି ଗୁରୁଗମ୍ଭୀର ସ୍ୱରରେ ତାକୁ ନିଜ ଚେଷ୍ଟାରେ କରିବାକୁ ଛାତ୍ରଛାତ୍ରୀଙ୍କୁ ପରାମର୍ଶ ଦିଅନ୍ତି ମୁଁ ସେମିତି ଆଖୁଡ଼ା ଆପୁଡ଼ ହୋଇ କହିଲି "କଥାଟାକୁ ଆଉ ଟିକିଏ ଗମ୍ଭୀର ଭାବରେ ଦୁହେଁଯାକ ଚିନ୍ତାକର । ଦୁଇଟା ଗୋଟାଏ ନିଷ୍ପତ୍ତିରେ ପହଞ୍ଚିବ ।" କୌଣସିମତେ ସେମାନଙ୍କ ପାଖରୁ ଖସି ଆସି ସ୍ୱସ୍ତିର ନିଶ୍ୱାସ ମାରିଲି ।

ୟୁରୋପ ଭ୍ରମଣର ସବୁ ବ୍ୟବସ୍ଥା ହୋଇ ସାରିଥାଏ । ବିଲାତ ରହଣି ଭିତରେ ଆଗରୁ ଥରେ ବନ୍ଧୁମାନଙ୍କ ଗହଣରେ ଫ୍ୟାରିସ୍ ଯାଇଥିଲି । ସେ ଅବଶ୍ୟ ଅଳ୍ପ ସମୟ ପାଇଁ, ସେଠାରେ ହେଉଥିବା ମୁଦ୍ରଣ ଶିଳ୍ପର ଏକ ପ୍ରଦର୍ଶନୀ ଦେଖିବାକୁ । ଲଣ୍ଡନରୁ ଟ୍ରେନ୍‌ରେ ଡୋଭର ପର୍ଯ୍ୟନ୍ତ ଯାଇ ସେଠାରୁ ଏକ ଷ୍ଟିମ୍ର ଜାହାଜରେ ଡୋଭର ପ୍ରଣାଳୀ ପାର ହେଲୁ । ଇଂଲଣ୍ଡ ଓ ଫ୍ରାନ୍ସ ମଧ୍ୟରେ ଥିବା ଏହି ଅଣଓସାରିଆ ଜଳଭାଗ ଅତିକ୍ରମ କଲାବେଳେ ସୃଷ୍ଟିଅଞ୍ଚଳର ଦୃଶ୍ୟ ବେଶ ଚିତ୍ତାକର୍ଷକ ମନେ ହେଉଥାଏ । ଆମେସବୁ ଜାହାଜ ଭିତରୁ ଡେକ୍ ଉପରକୁ ଓ ଡେକ୍ ଉପରୁ ତଳକୁ ଖୁବ୍ ଉଲ୍ଲାସ, ଉନ୍ମାଦନା ସହି ଯା'ଆସ କରୁଥାଉ । ଜାହାଜ ଭିତରେ ଗ୍ରାମ୍‌ଫୋନ୍ ରେକର୍ଡ଼ ବାଜୁଥାଏ । ଏହି ସଙ୍ଗୀତର

ମୂର୍ଚ୍ଛନାରେ ସମସ୍ତେ ଆତ୍ମହରା ହୋଇ ଉଠିଥାନ୍ତି । କେଉଁଠି ଚାଲିଥାଏ ଚା-କଫି ପାନ, କେଉଁଠି ସୋମରସର ସଦ୍‌ବ୍ୟବହାର । ଏହିପରି ହସ ଖୁସି ଆନନ୍ଦ-ଉଲ୍ଲାସ ଭିତରେ ଫ୍ରାନ୍‌ସ ଉପକୂଳରେ ଥିବା କାଲେ ବନ୍ଦରରେ ପହଞ୍ଚିଗଲୁ । ସେଠାରୁ ଟ୍ରେନ୍ ଧରି ପ୍ୟାରିସ୍ ସହରକୁ ରୱାନା ହେଲୁ ।

ନାନା ଆମୋଦ-ପ୍ରମୋଦର ଗନ୍ତାଘର ଏବଂ ବିଶ୍ୱବିଖ୍ୟାତ ପାରିସ୍ ସହର ଦେଖିବାକୁ ମନରେ ମହା ବ୍ୟାକୁଳତା । ଯେଉଁମାନେ ଆଗରୁ ସ୍ୱାଁକୁ ଦେଖିଥିଲେ ସେମାନେ ଏଠାକାର ଚାଲିଚଳଣି, ଆଚାର ବ୍ୟବହାର ସମ୍ବନ୍ଧରେ ନାନା କଥା ଗପୁଥାନ୍ତି । ଏଥିରେ ମୋ ମନର ଉଚ୍ଚାଟଭାବ ଆହୁରି ବଢ଼ିଯାଇଥାଏ । ମନେ ମନେ ଠିକ କରିଥାଏ ମୁଦ୍ରଣ ଶିଳ୍ପର ପ୍ରଦର୍ଶନୀ ଦେଖିବା ସଙ୍ଗେ ସଙ୍ଗେ ପ୍ୟାରିସ୍ ସହରଟାକୁ ଭଲକରି ପରିକ୍ରମା କରିଦେବି । ଆମ ସାଙ୍ଗରେ ଜଣେ ମାର୍କିନ୍ ସହପାଠୀ ବନ୍ଧୁଥିଲେ ଯେ କି ପ୍ୟାରିସ୍‌ର ଏକ ପ୍ରକାର ପୋକ । ତେଣୁ ପ୍ୟାରିସ୍ ସହର ଆବିଷ୍କାର କରିବାରେ ତାଙ୍କୁ ମୁଁ ମନେ ମନେ ସାରଥୀ ରୂପେ ବାଛିଥାଏ । ଆମର ବିଲାତି ଓ ଆମେରିକାନ ବନ୍ଧୁମାନେ ତାଙ୍କର ବନ୍ଧୁବାନ୍ଧବ ବା ଆତ୍ମୀୟ ସ୍ୱଜନଙ୍କ ପାଖରେ ରହିଲେ । ଆମେ ଯେ କେତେ ଜଣ ଭାରତୀୟ ଥାଉ ସେ ସବୁ ଗୋଟିଏ ଶସ୍ତା ହୋଟେଲରେ ଏକାଠି ରହିଲୁ ।

ମୁଁ ପ୍ରଥମେ ପ୍ୟାରିସ୍ ସହରର ଗୋଟାଏ ମାନଚିତ୍ର ( Paris par Arrondissement ) କିଣିନେଲି । ସେଥିରେ ପ୍ୟାରିସ୍ ସହରର ସବୁ ରାସ୍ତାଘାଟ, ଟ୍ୟୁବ୍‌ରେଳର ନକ୍‌ସା ଓ ବର୍ଣ୍ଣନା ଥାଏ । ଆଉ ମଧ୍ୟ ଥାଏ ବିଭିନ୍ନ ପୁରାତନ ଓ ଆଧୁନିକ କୀର୍ତ୍ତିପୀଠଗୁଡ଼ିକର ସୂଚନା ଓ ଛବି ( Nouveu Plan Paris Monumental ) । ଦାମ୍ କିନ୍ତୁ ୧୦ ଫ୍ରାଙ୍କ୍ । ସେଇଟା ଦେଲାବେଳକୁ ମନରେ ଟିକିଏ କଷ୍ଟ ହେଲା । କିନ୍ତୁ ପ୍ୟାରିସ୍ ସହର ଆବିଷ୍କାର କରିବାକୁ ଏହି ମହାନ୍ ଅସ୍ତ୍ରଟା ନିହାତି ଦରକାର । ଜର୍ମାନ୍ ସେନାପତି ଫିଲ୍‌ଡମାର୍ଶାଲ ରୋମେଲ୍ କେଉଁଠି ଦ୍ୱିତୀୟ ମହାଯୁଦ୍ଧର ଶେଷ ପର୍ଯ୍ୟାୟରେ ଆବଶ୍ୟକ ଅସ୍ତ୍ରଶସ୍ତ୍ରର ଅଭାବରୁ ଖଣ୍ଡିଏ ଖେଳନା ବନ୍ଧୁକ ଧରି କେତେକ ଯୁଦ୍ଧ ଜୟ କରିଥିଲେ । ମୁଁ ସେହିପରି ଏହି ମାନଚିତ୍ର ଖଣ୍ଡିକ ଧରି ପାରିସ୍ ସହର

ବିଜୟ୍ନ ନକଲେ ବି ତାଙ୍କୁ ବିଟଶେଷଭାବେ ପରିକ୍ରମା କରିବାର ପରିକଳ୍ପନା କଲି ।

ଆମ ପ୍ରଦର୍ଶନୀ ହେଉଥାଏ ପାଲେସ୍ ଡ଼ ଲା ଡିଫେନ୍ସ ( Palais dela Difence )ରେ । ସକାଳୁ ନିତ୍ୟକର୍ମ, ଜଳ ।ନ ଆଦି ସାରି ଆମେ ପ୍ରଦର୍ଶନୀ ଦେଖିବାକୁ ଚାଲିଯାଉ । ସେଠାରେ ଦିନସାକ ବୁଲି ଯାହା ଯେମିତି ଦେଖୁ । ଥାଉଁଏ ପ୍ରଚୁର ପତ୍ର, ଗୁଡ଼ାଏ ମୁଦ୍ରିତ ବିବରଣୀ ଧରୁ । ସନ୍ଧ୍ୟା ହେଲେ ଯେ ଯୁଆଡ଼େ ମନଇଚ୍ଛା ଯାଉ । କିନ୍ତୁ ଯିବୁ କୁଆଡ଼େ ? ସେ ବିରାଟ ନଗରୀର ସବୁଟା ଯେପରି ରହସ୍ୟାବୃତ୍ତ, କୁହେଳିକାମୟ ମନେ ହେଉଥାଏ । ଚାରିଆଡ଼ ଅବଶ୍ୟ ନିର୍ମଳ ଆଲୋକରେ ଜକ୍‌ଜକ୍ ଝକ୍‌ଝକ୍ ଦେଖାଯାଏ । ଲୋକେ କହନ୍ତି ପାରିସ୍‌ର ସନ୍ଧ୍ୟା ବେଶ୍ ଚିତ୍ତାକର୍ଷକ । କିନ୍ତୁ ତାଙ୍କୁ କିମିତି ଉପଭୋଗ କରିବାକୁ ହେବ ଆମକୁ ଜଣା ନଥାଏ । ଏହାର ବିଭିନ୍ନ ରହସ୍ୟାଛନ୍ନ ଅଞ୍ଚଳ, ଅନ୍ଦର ମହଲର ବର୍ଣ୍ଣନା ଶୁଣି ଡ଼ର ଲାଗୁଥାଏ । ତଥାପି ତାହାର ଅଭେଦ୍ୟ ତଥ୍ୟ ଜାଣିବାକୁ ଏବଂ ବିଭିନ୍ନ ରହସ୍ୟ ଉଦ୍‌ଘାଟନ କରିବାକୁ ମନ ବିକଳ ହେଉଥାଏ । ଆମ ସହପାଠୀ ବନ୍ଧୁ ଜନ୍‌ସନ ଜଣେ ଧନୀକ ମାର୍କିନ୍‌ବାସୀଙ୍କ ପୁତ୍ର । ମୁଁ ତା'ପିଛା ଧରିଥାଏ ମୋତେ, ସେ ଏହି ପାରିସ୍ ବୈତରଣୀ ପାରି ହେବାରେ ସାହାଯ୍ୟ କରିବ ବୋଲି ।

ପ୍ରଦର୍ଶନୀରୁ ବାହାରି ମାଟିତଳ ରେଲର ଆଶ୍ରା ନେଉ । ଏହି ରେଲ୍‌କୁ ପାରିସ୍‌ରେ ମେଟ୍ରୋ କହନ୍ତି । ମେଟ୍ରୋରେ ବୁଲାବୁଲି ପାଇଁ ଗୋଟିଏ ଟିକେଟ ବହି (Carnet) କିଣିଥାଉ । ଏକାଠି ବେଶୀ ଟିକେଟ୍ କିଣିଲେ ଟିକିଏ ଶସ୍ତା ପଡ଼େ । ସେଥିରୁ ଗୋଟିଏ ଟିକେଟ୍‌ରେ ପାରିସ୍‌ର ଯେ କୌଣସି ଜାଗାକୁ ଥରେ ଯାଇହୁଏ । ଟିକେଟ୍ ଧରି ମାଟିତଳ ଟ୍ରେନରେ ବସି ଯାଉ ସିନା କିନ୍ତୁ ଯିବୁ କୁଆଡ଼େ ? ପାରିସ୍‌ର ମାନଚିତ୍ର ଦେଖି ସେମିତି କିଛି ବୁଝି ହୁଏନି । ସେ ଦୃଷ୍ଟିରୁ ଲଣ୍ଡନରେ ବୁଲାବୁଲିଟା ସହଜ ଲାଗେ; କାରଣ ସେଠାର ସବୁ ନାଁ ଗୁଡ଼ାକ ସରଳ । କିନ୍ତୁ ପାରିସ୍ ରାସ୍ତାଗୁଡ଼ାକ ମାନଚିତ୍ରରୁ ସହଜରେ ବୁଝି ହୁଏନି । ଷ୍ଟେସନ ନାଁ ଗୁଡ଼ାକ ପୁଣି ବିଚିତ୍ର । Sivres Babylone, St. Georges Poissoniere, Filles du Calvaire, Mitchel-

Ange Moliter, Simpla Glaciere) ଇମିତ କେତେ କ'ଣ । ଏଥିରୁ କ'ଣ ବୁଝିହେବ ? ପୁଣି ସେ ନାଁଗୁଡ଼ାକର ଉଚ୍ଚାରଣ ବଡ଼ ବିଚିତ୍ର । ତେବେ ସହରର ମଧ୍ୟସ୍ଥଳକୁ ଆସିବାକୁ ଲକ୍ଷ୍ୟ ରଖି ପ୍ରଦର୍ଶନୀରୁ ବାହାରୁ । ପୋର୍ଟ ଡ଼ି ନଲି ଷ୍ଟେସନରୁ ମେଟ୍ରୋ ଟ୍ରେନ୍ ଯାଏ ଡିରେକ୍ସନ ଚ୍ୟାଟୋ ଡ ଭେନ୍ସନ୍ସ (Direction Chateau de Vencenes)କୁ । ସେଠାରେ ପହଞ୍ଚି ଆମର ଗନ୍ତବ୍ୟ ସ୍ଥାନକୁ ଯାଉ ।

ପ୍ଲେସ ଡ଼ି ଲା କନ୍‌କର୍ଡ଼ (Place de la Concorde) ଆଭିନ୍ୟୁ, ଡେଶ୍ ଚ୍ୟାମ୍ପସ୍ ଏଲିସିଜ୍ (Avenue Des Champs Elysees, ଆର୍କ ଡ଼ି ଟ୍ରାୟମ୍ଫ ଲଟଏଲ (Arc De Triomphe de Letoile), ଇଫେଲ ଟାୱାର (Tour Eiffel), ରୁ ଡ଼ି ରିଭୋଲି (Rue-de-Rivoli) ଆଦି ସ୍ଥାନଗୁଡ଼ିକ ସହରର ପ୍ରାୟ ମଧ୍ୟ ଅଞ୍ଚଳରେ ଅବସ୍ଥିତ । ସେହି ସବୁ ସ୍ଥାନକୁ ଯାଉ । କନ୍‌କର୍ଡ଼ ଜାଗାଟି ବେଶ୍ ରମଣୀୟ । ପ୍ରାୟ ଦୁଇ ମାଇଲ୍ ବ୍ୟାସ ବିଶିଷ୍ଟ ଏହି ବୃତ୍ତାକାର ଦର୍ଶନୀୟ ସ୍ଥାନଟିର ଚାରିପଟେ ମଟର ବୃତ୍ତାକାର ଗାଡ଼ିଗୁଡ଼ିକ ଘିଁ ଘିଁ କରି ଧୀରେ ଧୀରେ ଚାଲିଯାନ୍ତି । ଏହାର ଅଳ୍ପ ଦୂରରେ ସିନ୍ ନଦୀ ସହରକୁ ଏକ ପ୍ରକାର ଦ୍ୱିଖଣ୍ଡିତ କରି ବହିଯାଇଛି । ବିଭିନ୍ନ ଦିଗକୁ ଏଠାରୁ ରାସ୍ତା ପଡ଼ିଛି । ରାସ୍ତା କଡ଼ଯାକ ଗଛ ଧାଡ଼ି ଧାଡ଼ି । ସବୁଆଡ଼େ ମଟର ମାନମାନ ଚାଲିଥାନ୍ତି । ମଝି ଜାଗାରେ ବହୁ ମଟର ବହୁ ଲୋକ ଜମା ହୋଇଥାନ୍ତି । ସନ୍ଧ୍ୟାବେଳେ ଏଠାର ଦୃଶ୍ୟ ବେଶ୍ ମନୋରମ । ଏହି କନ୍‌କର୍ଡ଼ ଯାଗାଟାରେ ଠିଆହୋଇ ଚାରିଆଡ଼କୁ ଚାହିଁଲେ ବହୁତ କିଛି ଦେଖିବାକୁ ମିଳେ । ଏଠାରୁ ଯେଉଁ ରାସ୍ତାଟା ବିଜୟ ସ୍ତମ୍ଭ (Arc de Trimphe) ଆଡ଼େ ଯାଇଛି ତାହାର ରାତ୍ରିକାଳୀନ ଦୃଶ୍ୟ ଖୁବ୍ ଚିତ୍ତାକର୍ଷକ । ମଟରଗୁଡ଼ିକ ଧାଡ଼ିବାନ୍ଧି ଚାଲିଥାନ୍ତି । ସେମାନଙ୍କ ପଛର ନାଲି ଆଲୁଅସବୁ ରକ୍ତ ରଙ୍ଗର ମଣି-ମୁକ୍ତା ମାନପରି ଦେଖାଯାନ୍ତି ।

ପ୍ରଥମ ଦିନ ଜହନସନ୍ କହିଲି, ମଣ୍ଟ୍ ପାର୍ନେଶ୍ ଦିନ ଭେନ୍ୟୁକୁ ଯାଇ ସେଠାରୁ ଅନ୍ୟ ଯୁଆଡ଼େ ଗିବାକୁ ହେବ । ମୁଁ ପଚାରିଲି ମଣ୍ଟ୍ ପାର୍ନେସ୍ କାହିଁକି ? ଉତ୍ତର ମିଳିଲା, ପାରିସ୍‌ରେ ସାନ୍ଧ୍ୟ ଭ୍ରମଣ ଆରମ୍ଭ କରିବାର ପ୍ରଧାନ ବାଟ ହେଲା କୌଣସି କେଫ୍‌ରେ କିଛି ପିଆପିଇ କିଛି ଖିଆଖେଇ କରି ସତେଜ ହୋଇ ବାହାରିବା । ମଣ୍ଟ ପାର୍କରେ ଏହି

ଖିଆପିଆର ବ୍ୟବସ୍ଥା ଖୁବ୍ ଭଲ । ତାହା ହିଁ କରାଗଲା । ସେଠାରେ ଥିବା ଡୋମ୍ ନାମକ ଜଳଖିଆ ଦୋକାନକୁ ଗଲୁ । ଜହ୍ନସନ୍ ସେଠାରେ ବେଶ୍ ଭଲକରି ପଇଲା । ପାରିସ୍‌ରେ ମଦ ଓ ଖାଦ୍ୟପେୟର ଦାମ୍ ଦୋକାନର ନାମ ଓ ସମ୍ମାନ ଉପରେ ନିର୍ଭର କରେ । ଯେଉଁ ଦୋକାନ ଯେତିକି ବଡ଼ ସେଠାରେ ପରିବେଷଣ କରାଯାଉଥିବା ଖାଦ୍ୟପେୟର ମୂଲ୍ୟ ସେତିକି ଚଢ଼ା । ମଦ ସାଙ୍ଗରେ ଖଣ୍ଡିଏ ଟିକଟ୍ ମିଳେ । ସେଥିରେ ଚେତାବନି ଥାଏ, Service non Compris। ବକ୍‌ସିସ୍ (Tips) ଦାମ୍‌ର ଅନ୍ତର୍ଭୁକ୍ତ ନୁହେ । ସେଇଟାକୁ ଅଲଗା ଦେବାକୁ ହେବ ।

ଲଣ୍ଡନ ପରି ପାରିସ୍‌ରେ ଟିପସ୍ ଦେବା ପ୍ରଥାଟା ବେଶ୍ ଚଳେ । ସିନେମା ଥିଏଟର ଆଦି ସବୁ ଜାଗାରେ ଟିପସ୍ ଦେବାକୁ ପଡ଼େ । କୌଣସି ଜାଗାରେ ଟିପସ୍ ଦେବ କି ନାହିଁ ବୋଲି ଯଦି ସନ୍ଦେହ ହୁଏ ତେବେ ଟିପସ୍ ଦେଇଦେବା ଭଲ । ତାହେଲେ କୌଣସି ଗୋଳମାଳର କାରଣ ରହିବ ନାହିଁ । ବଡ଼ ବିଚିତ୍ର କଥା ତ ! ଯାହା ପାଖରେ ଯଥେଷ୍ଟ ଅର୍ଥ ଥିବ ସେ ସିନା ସନ୍ଦେହରେ ପଡ଼ିଲେ ନିର୍ମଳ ମନରେ ବକସିସ୍‌ଟା କରିଦେଇ ଦେବ । କିନ୍ତୁ ମୋ ପରି ଯେଉଁମାନେ ସାମାନ୍ୟ ଅର୍ଥ ଯୋଗାଡ଼ କରି ସାରା ସଂସାରଟା ପରିକ୍ରମା କରିବାକୁ ଗୃହାନ୍ତି ସେମାନେ ତ ବକ୍‌ସିସ୍ ଦେବାରେ ଏତେ ମୁକ୍ତହସ୍ତ ହୋଇପାରିବେ ନି । ଯାହାହେଉ ଜହ୍ନସନ୍ ଯେତେବେଳେ ମୋ ସାଙ୍ଗରେ ଥାଏ ସେ ମୋତେ ଏ ଅଡୁଆରେ ନ ପକାଇ ବିଲର ଦାମ୍ ଓ ବକ୍‌ସିସ୍ ଏକାଠି ନିଜେ ବଢ଼ାଇଦିଏ । ତେବେ ସେଦିନ ଡୋମ୍‌ରେ ଯେତେବେଳେ ୪୦ ଫ୍ରାଙ୍କର ବିଲ ଆସିଲା ମୁଁ ଚମକି ଉଠିଲି । କି ଆଶ୍ଚର୍ଯ୍ୟ ଏ ସମାନ୍ୟ ଖିଆପିଆର ଦାମ୍ ଏତେ ! ଏଠି ଲୋକ ଚଳିବ କମିତ !

ନାନା କଥାବାର୍ତ୍ତା ମଧ୍ୟରେ ସୂତେ ଜହ୍ନସନକୁ ଜଣାଇ ଦେଇଥାଏ ଯେ ମୁଁ କୌଣସି ବିଳାସପୂର୍ଣ୍ଣ ହୋଟେଲ, ରେଷ୍ଟୁରାଁକୁ ଯିବାକୁ ପସନ୍ଦ କରେନି । ମହାତ୍ମା ଗାନ୍ଧିଙ୍କ ଦେଶ ଆମର । ଆମେ ଅପବ୍ୟୟ, ଆଡମ୍ବରକୁ ଭଲ ନ ପାଇବା ସ୍ୱାଭାବିକ । ମୋ କଥାର ଗୂଢ଼ ରହସ୍ୟ ଜହ୍ନସନ୍ ବୁଝି ପାରିଲା କି ନାହିଁ କେଜାଣି ! ତାପରି ଧନିକ ମାର୍କିନ୍ ସନ୍ତାନ ଉପରେ ମୋ ଉପଦେଶ ବାଣୀର କୌଣସି ପ୍ରଭାବ ପଡ଼ିଲା ପରି ଜଣାଗଲାନି । ତହିଁ

ଆଉଦିନ ସେ ଗଲା ପ୍ଲେସ୍ ସେଣ୍ଟ୍ ଜରମେନ୍ ଡେସ ପ୍ରେସ୍ (Place St. Germain des Pre's)କୁ । ସେଠାକାର ସାଜସଜ୍ଜା, ଜାକଜମକ ଦେଖି ମୁଁ ସ୍ତମ୍ଭୀଭୂତ ହୋଇଗଲି । ଆହୁରି ସ୍ତମ୍ଭୀଭୂତ ହେଲେ ସେଠାକାର ବିଲ ଦେଖି । ଖାଲି ପିଆପିଇ ଓ ଜଳପାନର ଦାମ ୮୦ ଫ୍ରାଙ୍କ୍ ବା ନବେ ଟଙ୍କାକୁ ଟପି ଯାଇଥାଏ । ବାପ୍‌ରେ ବାପ୍ ଏତେ ଦାମ୍ ! ମୁଦ୍ରାସ୍ଫୀତି ନେଇ ଭାରତରେ ଲୋକେ କେତେ ପାଟିତୁଣ୍ଡ କରନ୍ତି କିନ୍ତୁ ଏଠା ଦରଦାମ୍ ତ ଅତି ଅସାଧାରଣ । ବାସ୍ତବିକ୍ ମୁଦ୍ରାସ୍ଫୀତି ଓ ବେକାରି ଫ୍ରାନ୍‌ସର ବଡ଼ ସମସ୍ୟା । ପନିପରିବା ଓ ଫଳର ଦାମ୍ ଅତ୍ୟଧିକ । ବିଭିନ୍ନ ଜୀବଜନ୍ତୁଙ୍କ ଚମଡ଼ାଲଗା ବା ପକ୍ଷୀଙ୍କ ପରଲଗା ପୋଷାକ କଥା ଛାଡ଼ । ଖଣ୍ଡିଏ ସାଧାରଣ ପୋଷାକର ଦାମ୍ ପ୍ରାୟ ୮୦୦ ଫ୍ରାଙ୍କ୍ ବା ପ୍ରାୟ ଟ ୯୦୦ଙ୍କା !

ଏ ଦରଦାମ୍‌ର ଚୋଟ୍ ଦେଖି ଭାବିଲି ଆଉ ଜହନସନ୍ ସାଙ୍ଗରେ ବୁଲିବା ସମ୍ଭବ ନୁହେଁ । ତାକୁ ବୁଝେଇ ଦେଲି ଯେ ମୋର ମୋଟା-ମୋଟି ପାରିସ୍‌ର ରାସ୍ତାଘାଟ ସମ୍ବନ୍ଧରେ ଧାରଣା ହୋଇଗଲାଣି । ତେଣୁ ସେ ଆଉ ମୋ ପାଇଁ ବ୍ୟସ୍ତ ହେବା ଦରକାର ନାହିଁ । ଜହନସନ୍ ଏଥିରେ ସାଙ୍ଗେ ସାଙ୍ଗେ ରାଜି ହୋଇଗଲା । ମୋ ପରି ଅନାଡ଼ିକୁ ନେଇ ପାରିସ୍ ବିହାର କରିବା ତା ପକ୍ଷରେ ବୋଧହୁଏ ସୁବିଧାଜନକ ହେଉ ନ ଥିଲା । ତେଣିକି ମୁଁ ଏକା ଏକା ଚାରିଆଡ଼େ ବୁଲାବୁଲି କଲି । ଆମ ମୁଦ୍ରଣ-ପ୍ରଦର୍ଶନୀ ମଣ୍ଡପକୁ ସିନ୍‌ନଦୀର ଧାରେ ଧାରେ ବସ୍ ଯା'ଆସ କରୁଥାଏ । ମୁଁ ଅନେକ ସମୟରେ ବସ୍‌କୁ ଆଶ୍ରା ନ କରି ପାରିସ୍ ସହର ଦୃଶ୍ୟ ଦେଖିବାକୁ ସିନ୍‌ନଦୀ କୂଳେ କୂଳେ ଚାଲିକରି ଯାଏ । ଫେରିବାବେଳେ ବି ଅନେକ ସମୟରେ ସେଇଆ କରେ । ନଦୀ କୂଳର ସାଜସଜ୍ଜା, ବଜାର ବିପଣୀ ଦେଖି ମୁଁ ମୁଗ୍ଧ ହୋଇ ଉଠିଥାଏ । କେଉଁଠି କେହି ଚିତ୍ରକର ଗୋଟିଏ ରଙ୍ଗିନ୍ ଛତାତଳେ ବସି ଚିତ୍ର ଆଙ୍କିବାରେ ବ୍ୟସ୍ତ । କେଉଁଠି ସୁନ୍ଦରୀ ଯୁବତୀ ଦଳ ସେମାନଙ୍କ ପ୍ରେମିକମାନଙ୍କୁ ସାଙ୍ଗରେ ଧରି ଆନନ୍ଦ ବିହାର କରୁଥାନ୍ତି । କେଉଁଠି କେବଳ ଦୁଇ, ତିନିଜଣ ଯୁବତୀ ବା ମହିଳା କୌଣସି ଗଛତଳେ କଣ ଖଣ୍ଡେ ପକେଇଦେଇ ତା' ଉପରେ ଗୋଡ଼ହାତ ଲମ୍ବେଇ ପଡ଼ିଯାଇଥାନ୍ତି ବେହୁସିଆର ଭାବରେ । କେଉଁଠି ମୁକ୍ତାଙ୍ଗନରେ ଚାଲିଚି ଚା, କଫି ଓ ମଦ ବିକ୍ରୀ । ସିନ୍ ନଦୀ

କୂଳରେ ଓ ଅନ୍ୟାନ୍ୟ ବହୁ ସ୍ଥାନରେ ଯୌନଚିତ୍ର ସବୁ ବିକ୍ରି ହୁଏ । ଭାରତର କାମସୂତ୍ର ଓ ଗୀତାର ଫ୍ରେଞ୍ଚ ସଂସ୍କରଣ ଏସବୁ ଦୋକାନରେ ଦେଖିବାକୁ ମିଳେ । ଆଉମଧ୍ୟ ଦେଖିବାକୁ ମିଳେ ଭାରତର ବିଭିନ୍ନ ମନ୍ଦିର ଓ ଦେବାଳୟରେ ଥିବା ଯୌନପ୍ରକ୍ରିୟାରତ ମୂର୍ତ୍ତିସବୁର ଚିତ୍ର ।

ମୋ ପାଇଁ ଏହି ଏକାକୀ ବିହାର ବେଶ୍ ସୁବିଧାଜନକ ହେଲା । ମନଇଚ୍ଛା ଯୁଆଡ଼େ ସିଆଡ଼େ ବୁଲାବୁଲି କରେ । ଭୋକ କଲେ ଗୋଟେ ଦି'ଟା ହଟ୍ ଡଗ୍ ଓ କପେ ଟି' ପିଇଦିଏ । ହଟଡଗ୍ ଏକ ବିଚିତ୍ର ଖାଦ୍ୟ । ଲମ୍ବା, ଲମ୍ବା ପାଉଁରୁଟିକୁ ଦି'ଫାଳ କରି ତା ଭିତରେ ଜଆନାଡ଼ ପରି ନାଳୁଆ ନାଳୁଆ କଣ ଦିଅନ୍ତି । ସେ କେଉଁଠି ମାଂସ ! ସେ ଯାହାହେଉ ସେଗୁଡ଼ିକ ବେଶ୍ ଭଲ ଲାଗେ । ନୋହିଲେ ଖାଲି ପାଉଁରୁଟି ଓ ତା' ସାଙ୍ଗରେ ଗୋଟାଏ ଗୋଟାଏ ସେଓ ଖାଏ । ଏଠାରେ ଯେଉଁ ପାଉଁରୁଟି ମିଳେ ସେସବୁ ବିଭିନ୍ନ ପ୍ରକାରର, ଲମ୍ବା ଲମ୍ବା, ବଙ୍କା ବଙ୍କା । ବେଶ୍ ମଜା ଲାଗେ ତାକୁ ଚୋବାଇବାକୁ । ବେଳେବେଳେ ଭୋକର ଆତିଶଯ୍ୟ ସମ୍ଭାଳି ନ ପାରି କୌଣସି, କୌଣସି ହୋଟେଲ ବା ରେଷ୍ଟୁରାଁରେ ପଶେ । ସେମାନଙ୍କର ସାଜସଜ୍ଜା, ଅର୍ଦ୍ଦଳୀମାନଙ୍କର ବେଶ ପୋଷାକ ବେଶ୍ ଚିତ୍ତାକର୍ଷକ ମନେହୁଏ । ତେଣୁ ଖାଇବା କମ୍, ଦେଖା ଦେଖି ବେଶୀ ଥାଏ ମୋର ମାତ୍ର ।

ସନ୍ଧ୍ୟାପରେ ବେଶୀ ସମୟ ବୁଲେ କଙ୍କଡ, ଗ୍ଲିମସ୍ ଏଲସିଜ୍ । ଆର୍କ ଡି ଟ୍ରାୟମ୍ଫ୍, ଇଫେଲ ଟାୱାର, ରୁ ଡ଼ି ରିଭୋଲି ଆଦି ଜାଗାରେ । ଦିନବେଳା ଯାଏ ପାରିସ୍‌ର ଚିତ୍ରଶାଳା, ଯାଦୁଘର ଦେଖିବାକୁ । ପାରିସ୍‌ରେ ବହୁତ ଚିତ୍ରଶାଳା ଓ ଯାଦୁଘର ଅଛି । ସ୍ୱଳ୍ପ ସମୟ ଭିତରେ ସବୁ ଦେଖିବା ସମ୍ଭବପର ନୁହେଁ । ତେବେ ଯେତେଟା ପାରିଲି ଦେଖିଲି । ଗୋଟାଏ କଥା ମନକୁ ବିଶେଷଭାବରେ ଛୁଇଁଲା । ପାରିସ୍‌ର ଅଧିବାସୀ ବେଶ୍ ଚିତ୍ରକଳାପ୍ରିୟ । ସିନ୍ ନଦୀ କୂଳରେ ବହୁ ଚିତ୍ରକର ରଙ୍ଗିନ୍ ଛତା ଖଣ୍ଡେ ଖଣ୍ଡେ ପୋତି ତା'ତଳେ ବସି ଚିତ୍ର ଆଙ୍କୁଥାନ୍ତି । ବହୁ ଯାଗାରେ ଯୁବତୀମାନଙ୍କର ନଗ୍ନ ଚିତ୍ର ବିକ୍ରି ହେଉଥାଏ । ଅନେକ ଲୋକ ବିଶେଷତଃ ପରିଭ୍ରମଣକାରୀମାନେ ସେସବୁ କିଣୁଥାନ୍ତି । ସେ ଛବି ମଧ୍ୟରୁ ଅନେକ ବଡ଼ ଅଶ୍ଳୀଳ । ହେଲେ ଫରାସୀ ଲୋକେ ଶ୍ଳୀଳ, ଅଶ୍ଳୀଳ ବିଷୟର

କରନ୍ତିନ । ସେମାନେ ହେଲେ ସୌନ୍ଦର୍ଯ୍ୟର ଉପାସକ । ଯାହା ସୁନ୍ଦର, ଯାହା ଉପଭୋଗ୍ୟ ସେମାନେ ତାର ଆଦର କରନ୍ତି ।

ପାରିସ୍‌ରେ ବହୁତ ବଡ଼ି ଆଡ଼୍ଡା Night Club ଅଛି । ସେଥିରେ ନାଚଗୀତ, ବିଭିନ୍ନ ଯୌନ ପ୍ରକ୍ରିୟାର ଉଦ୍ଭଟ ପ୍ରଦର୍ଶନୀ ହୁଏ । ସେ ସବୁରେ ଟିକିଏ ଆଖି ପକାଇବାକୁ ମନ ବିକଳ ହେଉଥାଏ । ଦିନେ ଜହନ୍‌ସନଙ୍କୁ କହିଲି "ପାରିସ୍‌ର ଅନ୍ଧର ମହଲ ଟିକିଏ ଦେଖାନ୍ତେନି ?" ସେ ହସି ହସି ପଚାରିଲେ, "ପାଖରେ କେତେ ଫ୍ରାଙ୍କ ଅଛି ?" ମୁଁ ଗମ୍ଭୀର ଭାବରେ ମୋ ସ୍ୱଳ୍ପ ସମ୍ବଳର ସୂଚନା ଦେଲି । ସେ ନୈରାଶ୍ୟ ପ୍ରକାଶ କରି କହିଲେ, "ସେତିକରେ ଚଳିବନି । ସେସବୁ ଅଞ୍ଚଳକୁ ଗଲେ ବହୁତ ଅର୍ଥ ଦରକାର । ତେବେ ମୋ ପାଖରେ କିଛି ଅଛି । ହେଉ ଯିବା ।"

ପ୍ରଥମେ ଜହନ୍‌ସନଙ୍କୁ କହି ଗୋଟେ ଦୁ'ଟା ଫରାସୀ ଥିଏଟର ଦେଖିବାକୁ ଗଲି । ସେଠାକାର ଥିଏଟର ଦେଖିବାକୁ ମୋର ବିଶେଷ ବ୍ୟାକୁଳତା ଥାଏ । କିନ୍ତୁ ନାଟକର ବଚନିକା ବୁଝିବି କିମିତି ? ମୋତେ ତ ଫରାସୀ ଭାଷା ଜଣା ନଥାଏ । ମୋର ସମ୍ବଳ ହେଲା ମାତ୍ର କେତେଟା ଫରାସୀ ଶବ୍ଦ ଯଥା ମଁସିଅର୍ (Mon e ), ମାଡାମ୍ (Madame) Ehbien (Excellent), C' est exqui t (Very wonderful) Helas ! (Alas), ! Au-Revoir (good bye) Mon d eu (my God) (Ma Ch ri my dear) ଇତ୍ୟାଦି । ଏହି ଶବ୍ଦସବୁ ବ୍ୟବହାର କରି ସଙ୍କେତରେ ଫରାସୀ ଲୋକଙ୍କ ସହିତ ଭାବବିନିମୟ କରେ । ତେବେ ଅନେକ ପାରିସ୍‌ବାସୀ ଇଂରେଜୀ ବୁଝନ୍ତି ଓ କହନ୍ତି । ସେ ଯାହାହେଉ କୌଣସିମତେ ବୁଲିବୁଲି, ଖିଆପିଆ କାମ ଚଳି ଯାଉଥିଲା । କିନ୍ତୁ ଫରାସୀ ନାଟକୀୟ ଭାଷା ତ ମୋ ପକ୍ଷରେ ପୂରା ଅବୋଧ । ଜହନ୍‌ସନ କିନ୍ତୁ ସେ ସବୁରେ ବେଶ୍ ପୋଖତ । ତେଣୁ ଫରାସୀ ନାଟକ ଉପଭୋଗ କରିବା ସେତେ କଷ୍ଟକର ହେଲାନି । ମୋର ମାର୍କିନ୍ ବନ୍ଧୁ ଟୀକା ଟିପ୍‌ପଣୀ ସହ ମୋତେ ସବୁ ବୁଝାଇ ଦେଉଥାନ୍ତି ।

ପାରିସ୍‌ର ନାଇଟ୍ କ୍ଲବ୍ ଆଦି ଅନ୍ଧର ମହଲର ଅନୁଭୂତିଟା ବଡ଼ ବିଚିତ୍ର । ଆମେ ଅଳ୍ପ କେତେଟା ଜାଗାକୁ ଯାଇଥିଲୁ । କିନ୍ତୁ

ସେଠାକରେ ଯାହା ଦେଖିଲି ମୁଁ ପୂରା ଅବାକ୍ ହୋଇଗଲି । ସେସବୁ ତ ଭାଷାରେ ବର୍ଣ୍ଣନା କରିବା ସମ୍ଭବ ନୁହେଁ । ତେବେ ସାଧାରଣ, ଅସାଧାରଣ ବେଶ୍ୟାଳୟ ଛଡ଼ା ଯୌନ ଜଗତରେ ଯେତେ ପ୍ରକାର ଉଦ୍‌ଭଟ ପରିକଳ୍ପନା କରାଯାଇପାରେ ସେସବୁ ପାରିସ୍‌ରେ ଚାଲେ । ଅନେକ ଗାର୍ଡ଼ି ଆଡ଼୍‌ଡ଼ାରେ ଯୁବତୀ ଓ ମହିଳାମାନେ ପୂରା ବା ପ୍ରାୟ ଉଲଗ୍ନ ହୋଇ ନାଚନ୍ତି ଏବଂ ବିଭିନ୍ନ ଅଙ୍ଗଭଙ୍ଗୀ କରି ଯୌନାଙ୍ଗମାନଙ୍କର ସୁଷମା ପ୍ରଦର୍ଶନ କରନ୍ତି । ବହୁ ଲୋକ ଖୁବ୍ ଚଢ଼ାଦରରେ ଟିକେଟ୍ କିଣି ସେସବୁ ଦେଖିବାକୁ ଯାନ୍ତି । ଯାହାହେଉ ଏସବୁ ବିଚିତ୍ର ପରୀରାଜ୍ୟରେ ବେଶୀ ବୁଲିବା ସମ୍ଭବ ହେଲାନି । କାରଣ ଫାଙ୍କ୍ ଗୁଡ଼ାକ ପାଣିପରି ବହିଯାଉଥାଏ । ତେଣୁ ଅଳ୍ପ ବୁଲି ବେଶୀ ଜହନସନ୍‌ଙ୍କୁ ପଚାରିପଚାରି କରି ଏସବୁ ସମ୍ବନ୍ଧରେ ଅଭିଜ୍ଞତା ଆହରଣ କଲି ।

ମୁଦ୍ରଣ ପ୍ରଦର୍ଶନୀ ଦେଖିବାକୁ ଆମେ ମାତ୍ର କେତେଦିନ ପାଇଁ ପାରିସ୍ ଯାଇଥାଉ । ମୁଁ ଅବଶ୍ୟ କିଛିଦିନ ଅଧିକା ରହିଲି । ତଥାପି ପାରିସ୍ ପରିଭ୍ରମଣର ମୋହ ତୁଟି ନଥାଏ । ସୁବିଧା ଦେଖି ପୁଣି ପାରିସ୍ ଆସିବି ଏଇ ବାସନା ମନରେ ରଖି ଲଣ୍ଡନ ଫେରିଗଲି । ପରୀକ୍ଷା ପରେ ଯେତେବେଳେ ପଢ଼ାପଢ଼ି ଝଞ୍ଜାଳ ତୁଟିଗଲା ଏବଂ ବୁଲାବୁଲିରେ ବିଲାତ ବିଜୟ କରିସାରିଲି, ଫ୍ରାନସ୍, ଜର୍ମାନୀ ପ୍ରଭୃତି ଦେଶ ବୁଲି ଦେଖିବାକୁ ମନ ବିକଳ ହେଲା । କିନ୍ତୁ ପାଖରେ ଯାହା ଅର୍ଥ ସମ୍ବଳ ଥିଲା ସେ ସରି ଆସିଥାଏ । ବିଲାତ ଯିବା ଆଗରୁ ଷ୍ଟେଟ୍ ବ୍ୟାଙ୍କରେ କିଛି ଟଙ୍କା ଜମା କରି ଯାଇଥିଲି ଦରକାର ହେଲେ ତାକୁ ମଗେଇବାକୁ । ସେତିକି ବୈଦେଶିକ ମୁଦ୍ରାରେ ପରିଣତ କରିବାର ଅନୁମତି ପାଇଥାଏ । ତେଣୁ ଷ୍ଟେଟ୍ ବ୍ୟାଙ୍କର କଟକ ଶାଖାକୁ ଲେଖିଲି ଶୀଘ୍ର ସେ ଟଙ୍କା ପଠାଇବାକୁ । କିନ୍ତୁ ସେତେବେଳେ ଭାରତରେ ଡ଼ାକଘରମାନଙ୍କରେ ଧର୍ମଘଟ ଚାଲିଥିବାରୁ ସେ ମୋ ପାଖରେ ଠିକ୍ ବେଳାରେ ପହଞ୍ଚି ପାରିଲାନି । ଦୁଇ ତିନିଥର ଲଣ୍ଡନରେ ଥିବା ଷ୍ଟେଟ୍ ବ୍ୟାଙ୍କ୍‌କୁ ଯାଇ ନିରାଶ ହୋଇ ଫେରିଥାଏ । ଶେଷରେ ଯେଉଁଦିନ ସେ ଟଙ୍କା ମିଳିଗଲା ଆଉ କାଳ-ବିଳମ୍ବ ନ କରି ପାରିସ୍ ଅଭିମୁଖରେ ବାହାରି ପଡ଼ିବାର ମନସ୍ଥ କଲି । କିନ୍ତୁ ଜାହାଜରେ ଗଲେ ତ ବେଶୀ ସମୟ ଲାଗିବ ତେଣୁ ଉଡ଼ାଜାହାଜର ଆଶ୍ରା ନେଲି ।

ଥମାସ୍ କୁକ୍ କମ୍ପାନୀ ଏହି ବୁଲାବୁଲି ବ୍ୟବସ୍ଥା କରିବାରେ ଖୁବ୍ ଧୁରନ୍ଧର । ସେମାନଙ୍କୁ ଫୋନ୍ କରି କହିଲି ମୋ ପାଇଁ ପାରିସ୍‌କୁ ଖଣ୍ଡେ ଉଡ଼ାଜାହାଜ ଟିକେଟ ଖୁବ୍ ଶୀଘ୍ର ବ୍ୟବସ୍ଥା କରିବାକୁ । ସେମାନେ ସହାନୁଭୂତି ସହ ଉତ୍ତର ଦେଲେ ଘଣ୍ଟାକ ଭିତରେ ସେମାନେ ଜଣାଇବେ । ସତକୁସତ ଘଣ୍ଟାଏ ପୂରିବା ଆଗରୁ ଫୋନ୍‌ରେ ସନ୍ଦେଶ ମିଳିଲା, ଟିକେଟ୍‌ର ବ୍ୟବସ୍ଥା ହୋଇଯାଇଛି, ସନ୍ଧ୍ୟା ପାଞ୍ଚଟା ବେଳକୁ ମୋତେ ତାଙ୍କ ଅଫିସ୍‌ରେ ପହଞ୍ଚିବାକୁ ହେବ । ମୁଁ ଏଥିରେ କୃତକୃତ୍ୟ ହୋଇ ଶ୍ରୀମତୀ ମିଶ୍ରଙ୍କୁ ସବୁ ଜଣାଇଲି । ସେ ମୋତେ ଇଉରୋପ ଭ୍ରମଣ ପାଇଁ ଶୁଭେଚ୍ଛା ଜଣାଇ ଭଲକରି ଖାଇବାକୁ ଦେଲେ । ସେଦିନ ବୋଧହୁଏ ଶନିବାର ଥାଏ । ଡ଼ାକ୍ତର ଅଗ୍ରୱାଲ ପ୍ରଭୃତି ବନ୍ଧୁମାନେ ଆମ ବସାରେ ଯୁଟିଥାନ୍ତି । ସେମାନଙ୍କ ସହିତ କିଛି ସମୟ ଗପସପ କରି ଉଡ଼ାଜାହାଜ ଘାଟି ଅଭିମୁଖରେ ବାହାରି ପଡ଼ିଲି ।

ଉଡ଼ାଜାହାଜ ଉପରକୁ ଉଠିଲା ବେଳକୁ ରାତି ହୋଇ ଯାଇଥାଏ । ଆକାଶମାର୍ଗରୁ ପୃଥିବୀର ଦୃଶ୍ୟ ଖୁବ୍ ଚମତ୍କାର ମନେହେଲା । ବିଭିନ୍ନ ରଙ୍ଗର ଆଲୋକମାଳା ଧରଣୀ ବକ୍ଷରେ ହୀରାମାଳାର ହାର ପରି ଝଟକୁଥାଏ । ବିଳାତ ଉପକୂଳର ନିବିଡ଼ ବୃକ୍ଷଲତା ଭିତରୁ ଉଦ୍‌ଭାସିତ ହୋଇ ଉଠୁଥାଏ ବିଜୁଳି ଆଲୋକର ପ୍ରଭା । ମୁଁ ଉଡ଼ାଜାହାଜର ଗୋଟିଏ ଝରକା ପାଖରେ ବସି ବଡ଼ ବିମୁଗ୍ଧ ଭାବରେ ଦେଖୁଥାଏ ଦୁଇଆଡ଼ର ଶୋଭା । ଏପଟେ ବିଳାତ, ସେପଟେ ଫ୍ରାନସ୍ । ମଝିରେ ବ୍ରିଟିଶ୍ ପ୍ରଣାଳୀ ଗୋଟାଏ ନେଳିଆ-କାଳିଆ ଖାଇ ପରି ଦେଖାଯାଉଥାଏ । ନା, ଗୋଟାଏ ବୃହତ୍ କୃଷ୍ଣସର୍ପ ଦୁଇପଟର ବଣ ଜଙ୍ଗଲକୁ କାୟା ବିସ୍ତାରି ପଡ଼ିରହିଛି । ଦୁଇଆଡ଼ର ଦୃଶ୍ୟ ବେଶ୍ ଛବିଳ-ସୁନ୍ଦର, ଚିତ୍ତାକର୍ଷକ ମନେ ହେଉଥାଏ । ଅଳ୍ପ ସମୟ ପରେ ଚାଲିଆସିଲା ପାରିସ୍ ଉଡ଼ାଜାହାଜ ଘାଟୀ । ଏଁ ଏତେ ଚଞ୍ଚଳ ! କେତେ ବାଟ କି ଉଡ଼ାଜାହାଜ ପାଇଁ !

ପାରିସ୍‌ରେ ପହଞ୍ଚିବାକୁ ମନ ମୋର ବିକଳ ହେଉଥାଏ । ତେଣୁ ଉଡ଼ାଜାହାଜ ଯେତେବେଳେ ତା ଘାଟିରେ ସଗର୍ବେ ଓହ୍ଲାଇଲା ମୁଁ ମହା ଖୁସି ହୋଇଗଲି । କିନ୍ତୁ ପରେ ପରେ ମନକୁ ଚିନ୍ତା ଘାରିଲା ଏ ମହା ନଗରୀରେ ପ୍ରଥମ ରାତିଟା କଟାଇବି କେମିତି ! ଆଗରୁ ତ କିଛି

ବନ୍ଦୋବସ୍ତ କରନ୍ତି । ଦେଖାଯାଉ, ଟିକଏ ବୁଝାବୁଝି କରି ଗୋଟିଏ ଶ୍ରେଷ୍ଠକାଷ୍ଠ ହୋଟେଲରେ ରହିବି । ସେଇଟା ଯଦି ସୁବିଧାଜନକ ହେବ ପ୍ୟାରିସ୍ ରହଣୀ ସମୟରେ ସେଇଠାରେ ଆଶ୍ରା ନେବି ନଚେତ୍ ପରଦିନ ଅନ୍ୟ ହୋଟେଲକୁ ଯିବି । ଇମିତି ଭାବି ଉଡ଼ାଜାହାଜ ଘାଟିର ଅଭ୍ୟର୍ଥନା ଗୃହକୁ ଚାଲିଲି । ମୋ ସାଙ୍ଗରେ ଅନ୍ୟ ଯାତ୍ରୀମାନେ ବି ଥାନ୍ତି । ଏହି ସମୟରେ ଦଳେ ଯୁବତୀ ଆମ ଆଡ଼କୁ ମାଡ଼ି ଆସିଲେ । କାହାର ବର୍ଣ୍ଣ ଗୋରି, କାହାର ସାନ୍ଦେଳା, କାହାର ହଳଦିଆ । ସେମାନେ ଆମକୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇ, କୁଆଡ଼େ ଯିବୁ, କେଉଁଠି ରହିବୁ ଆଦି ଅନେକ ପ୍ରଶ୍ନ ଏକ ସଙ୍ଗରେ ଫରାସୀ, ଇଂରେଜୀ, ସ୍ପେନ୍ ଭାଷାରେ ପଚାରିଗଲେ । ଦୈବାତ୍ ଯାତ୍ରୀମାନଙ୍କ ମଧ୍ୟରେ ମୁଁ ଏକା ଏସୀୟ ଲୋକ ଥାଏ । ବାକି ସମସ୍ତେ ଶ୍ୱେତାଙ୍ଗ, ଫରାସୀ, ବିଲାତି । ଏହି ଶ୍ୱେତାଙ୍ଗ ଲୋକମାନଙ୍କ ମଧ୍ୟରୁ କେତେକ ପ୍ୟାରିସ୍‌ର ଅଧିବାସୀ । ଅନ୍ୟ କେତେକଙ୍କର ରହିବା ହୋଟେଲ ଠିକ୍‌ଠାକ୍ ହୋଇଥାଏ । ସେମାନଙ୍କ ପିଛା ଦୁଇ ତିନିଜଣ ଝିଅ ଲାଗିଗଲେ, ବାକି ଚାରି ପାଞ୍ଚ ଜଣ ମୋ ପିଛା । ମୋ ପ୍ରତି କାହିଁକି ଏତେ ଅନୁଗ୍ରହ । ଓ ! ମୁଁ ନବାଗନ୍ତୁ ବୋଲି ସେମାନେ ବୁଝିଯାଇଥିଲେ । ତେଣୁ ସାଙ୍ଗେ ସାଙ୍ଗେ ଆରମ୍ଭ କରିଦେଲେ ପ୍ରଶ୍ନବାଚୀ ଭୁହାକୁ ଭୁହା, କୁଆଡ଼େ ଯିବେ ? କେଉଁଠି ରହିବେ ? କମିତିକା ହୋଟେଲ ଦରକାର ? କଣ ଖାଇବେ ? କଣ ପିଇବେ ଇତ୍ୟାଦି ।

ଏସବୁ ଦେଖି ମୋର ପିଳେହିପାଣି । ଅବଶ୍ୟ ବୁଝିଗଲି ସେମାନଙ୍କର ଉଦ୍ଦେଶ୍ୟ । ସେମାନେ ବିଭିନ୍ନ ହୋଟେଲ ତରଫରୁ ସେଠି ନିମୁତ୍ ହୋଇଥାନ୍ତି ସେମାନଙ୍କ ପାଇଁ ଗ୍ରାହକ ଯୋଗାଡ଼ କରିବାକୁ । ତେଣୁ ମୋତେ ଉପଯୁକ୍ତ ଶିକାର ଭାବି ତାଙ୍କ କାମରେ ଲାଗିଗଲେ । ପରିସ୍ଥିତିଟା ହୃଦୟଙ୍ଗମ କରିସାରିଲା ପରେ ମନରେ ଟିକଏ ଦମ୍ଭ ଆସିଲା । କିନ୍ତୁ ଏହି ତରୁଣୀମାନେ ମୋ ପରି ଜଣେ ହତଭାଗା ପିଛୁ ଧରିଚନ୍ତି କାହିଁକି ? ମୋର ଆର୍ଥିକ ସମ୍ବଳ ଏତେ ସୀମିତ ଯେ ମୁଁ ସେ ରାତିଟା ସେଇ ଉଡ଼ାଜାହାଜ ଘାଟିରେ କଟେଇବି ବୋଲି ଭାବୁଥାଏ । କିନ୍ତୁ ସେମାନଙ୍କୁ ଯେତେ ନିବର୍ତ୍ତାଇଲେ ବି ସେମାନେ ଜମା ନିରାଶ ହେଉ ନଥାନ୍ତି । ହସି ହସି ଚଳେଇଥାନ୍ତି ସେମାନଙ୍କ ଅଭିଯାନ । ନାନା

ପ୍ରକାର ଥଟ୍ଟା ପରିହାସ କରୁଥାନ୍ତି, ନାନା ଇଙ୍ଗିତପୂର୍ଣ୍ଣ ପ୍ରଶ୍ନ ପଚାରୁଥାନ୍ତି । ହୋଟେଲରେ କ'ଣ ଜଣିକିଆ ବିଛଣା କି ଦି ଜଣକିଆ ବିଛଣା ଦରକାର ? ଖାଇବା ପିଇବା ଛଡ଼ା ଅନ୍ୟ କି ବ୍ୟବସ୍ଥା ଚାହାନ୍ତି ? କିମିତିକା ହୋଟେଲ ଦରକାର, କ'ଣ ଖୁବ୍ ଉଚ୍ଚକୋଟୀର ନା ମଧ୍ୟମ ଧରଣର ? ଇମିତି ଗପି ଚାଲିଥାନ୍ତି । ଜଣେ ଦିଜଣ ବି କୌଣସି ହୋଟେଲ ସାଙ୍ଗେ ଫୋନରେ କଥାବାର୍ତ୍ତା ଆରମ୍ଭ କରି ଦେଲେ । ମୁଁ ନିଜର ନ୍ୟୂନତା ବେଶୀ ପ୍ରକାଶ ନ କରି ତାଙ୍କୁ ବୁଝେଇବାରେ ଲାଗିଥାଏ ଯେ ମୋର ଏତେ ବ୍ୟାପକ ବ୍ୟବସ୍ଥା ଦରକାର ନାହିଁ । ମୁଁ କୌଣସି-ମତେ ଚଳିଯିବି ।

ନା, ନା, କୌଣସିମତେ କାହିଁ ଚଳିବେ ? ଆମେ ସବୁ ବ୍ୟବସ୍ଥା କରିଦେବୁ । ସେମାନେ ମୋତେ ସାନ୍ତ୍ୱନା ଦେବାରେ ଲାଗିଥାନ୍ତି !

ଆହାରେ କି ଦୟା ! ତାଙ୍କ କବଳରୁ ଖସିବାର କୌଣସି ଉପାୟ ନ ଦେଖି ଶେଷରେ ସେ ବାଧ୍ୟବାଧକ ସାହାଯ୍ୟ ନେବାକୁ ଆଗଭର ହେଲି । ସାମାନ୍ୟ ବିନୟ ର ସହିତ କହିଲି, ମୋର ଗୋଟିଏ ଶସ୍ତା ହୋଟେଲ ଦରକାର । ଏଥିରେ ସେମାନେ ବିଗୁଣ ନ ହେଲେ ଦ୍ୱିଗୁଣ ଉତ୍ସାହରେ ପରିହାସ କରିବସିଲେ । "ହଁ, ହଁ, ଶସ୍ତା ହୋଟେଲ ଭଲ । ସେଠାରେ ଯାହା ଚାହିଁବ ତା' ମିଳିପାରିବ । କିନ୍ତୁ ଶସ୍ତା ହୋଟେଲ କାହିଁକି ? ଅନ୍ୟ ହୋଟେଲରେ ବି ସବୁ ବ୍ୟବସ୍ଥା ହୋଇପାରିବ ।"

ତେଣୁ ଅନ୍ୟ ଉପାୟ ନଦେଖି ମୋ ମରମ କଥା ଅର୍ଥାତ୍ ଅର୍ଥର ଅଭାବ ବିଷୟଟା ପ୍ରକାଶ କଲି । ସେଇଟା ସେମାନେ ବିଶ୍ୱାସ କରିବାକୁ ନାରାଜ । ପ୍ୟାରିସ୍‌କୁ ବୁଲିବାକୁ ଆସିଛି, ପାଖରେ ଯଥେଷ୍ଟ ଧନବଳ ନାହିଁ, ଏକଥା କିଏ କାହିଁ ବିଶ୍ୱାସ କରିବ ! ହେଲେ ମୋ କଥା ମୋତେ ଜଣା । ମାତ୍ର ଶହେ ପାଉଣ୍ଡ ବୈଦେଶିକ ମୁଦ୍ରାର ଅନୁମତି ଦେଇଥାନ୍ତି ଭାରତୀୟ ହାଇକମିଶନ । କିନ୍ତୁ ପ୍ୟାରିସ୍ ସହରର ଏହି ପଣ୍ଡିଆଣୀଙ୍କର ଢଙ୍ଗରଙ୍ଗ, ଠାଣିବାଣୀ ସବୁ ବିଚିତ୍ର । ସବାକ୍ ନିର୍ବାକ୍ ନାନା ଇଙ୍ଗିତ ଦେଇ ମୋତେ ଖର୍ଚ୍ଚ ସୁଅର ମୁହାଁକୁ ଠେଲିଦେବେ ବୋଲି ବସିଥିଲେ । ମୁଁ କଣ୍ଠରେ ଟିକିଏ କର୍କଶ ଭାବ ରଖି କହିଲି "ମୋର ପାଖ ଆଖରେ ଗୋଟିଏ ଷ୍ଟେଟକାଠର ହୋଟେଲ ଦରକାର ।

ସେଇଟା ଯଦି ପାରନ୍ତି ବ୍ୟବସ୍ଥା କରନ୍ତୁ । ନଚେତ୍ ମୋତେ ଛାଡ଼ନ୍ତୁ, ମୁଁ ମୋ ବାଟରେ ଯାଏ ।” ଏଥିରେ ସେମାନେ ଟିକିଏ ଦବିଗଲେ । ଫୋନ୍ କରି ହୋଟେଲଟାଏ ଠିକ୍ କରିଦେଲେ । ମୋତେ ତାର ଠିକଣା ଦେଇ ଗୋଟିଏ ଟ୍ୟାକ୍ସିବାଲା ଡାକିଲେ ଏବଂ ତା’ ହାତରେ ମୋତେ ସମର୍ପି ଦେଲେ । ହସି ହସି ମୋତେ ବିଦାୟ ଦେଲାବେଳେ ପ୍ୟାରିସ୍‌ର ରହସ୍ୟପୂର୍ଣ୍ଣ ପରିବେଶ ସମ୍ବନ୍ଧରେ କେତେକ ଇଙ୍ଗିତପୂର୍ଣ୍ଣ ତଥ୍ୟ ବଖାଣିବାକୁ ଭୁଲିଲେନି । କିନ୍ତୁ ସେତେବେଳେ ସେସବୁ ଶୁଣିବାକୁ ମୋର ଆଉ ଧୈର୍ଯ୍ୟ ନଥାଏ ।

ଟ୍ୟାକ୍ସିରେ ବସିଯିବା ପରେ ମନରେ ନାନା ସନ୍ଦେହ ଉଙ୍କି ମାରିଲା । ଏ ମୋତେ କୁଆଡ଼େ ନବ, କେତେ ଭଡ଼ା ହାଙ୍କିବ ! ଫରାସୀ ଭାଷା ତ ମୋତେ ଜଣା ନାହିଁ । ତେଣୁ ଟ୍ୟାକ୍ସିବାଲାକୁ ସବୁ ବୁଝେଇ କହିବା ସମ୍ଭବ ନୁହେଁ । ଜହ୍ନସନ୍‌ଠାରୁ ଶୁଣିଥାଏ ପ୍ୟାରିସ୍‌ର ଟ୍ୟାକ୍ସି-ବାଲାମାନେ ବଡ଼ ଧୂର୍ତ୍ତ । ଟିକିଏ ସୁବିଧା ପାଇଲେ ବେଶ୍ କିଛି ଠକି ନେଇଯାନ୍ତି । ତେବେ କ’ଣ କରାଯିବ ? ଏ ତ କ’ଣ ବହୁତ ବାଟ ଆସିଲାଣି । ଏଣେ ତେଣେ କେତେ ଗଳି କନ୍ଦିରେ ପଶୁଚି । ହଉ କ’ଣ ହେଉଚି ! ଧରି ଧୈର୍ଯ୍ୟ ଯେନରେ ସାନ୍ତ୍ୱନା ! ଏମିତି ଭାବୁ ଭାବୁ ଟ୍ୟାକ୍ସି ଆସି ଗୋଟାଏ ହୋଟେଲର ସାମନାରେ ଠିଆ ହେଲା । ମୋ ପିଣ୍ଡରେ ଯେମିତି ପ୍ରାଣ ପଶିଲା । ପରେ ପରେ ଜଣେ ମହିଳା ଆସି ମୋ ସୁଟ୍-କେଶଟା ଧଇଲେ । ଟ୍ୟାକ୍ସିବାଲା କହିଲା ତା’ର ଭଡ଼ା ହେଲା ୭୦ ଫ୍ରାଙ୍କ୍ ମାନେ ପ୍ରାୟ ଚାରି ପାଉଣ୍ଡ ଦଶ ଶିଲିଂ । ସେ କଥା ଶୁଣି ମୋ ଦେହରୁ ପଳେ ରକ୍ତ ଶୁଖିଗଲା । ହାୟରେ ଦୁର୍ଭାଗ୍ୟ ! ଖାଲି ଟ୍ୟାକ୍ସିରେ ଆସିବା ଖର୍ଚ୍ଚ ଏତେ !

ଆଉ ଉପାୟ ନଥିଲା । ଟ୍ୟାକ୍ସିବାଲାକୁ ଭଡ଼ା ଦେଇଦେଲି । ହୋଟେଲର ପରିଚାରିକା ମୋତେ ସାଦରେ ପାଛୋଟି ନେଇ ଦ୍ୱିତୀୟ ମହଲାର ଗୋଟିଏ ଛୋଟ କୋଠରି ଦେଖାଇ ଦେଲେ । ମୁଁ ମୋ ସୁଟ୍‌କେଶ ଖଣ୍ଡିକ ଟେବୁଲ ଉପରେ ରଖିଦେଇ ବିଛଣା ଉପରେ ବସି ପଡ଼ିଲି । କିଛି ସମୟ ପରେ ସେ ପରିଚାରିକା ଆସି ପଚାରିଲେ, ମୁଁ ଖାଇବି କି ନାହିଁ । ମୋତେ ଭାରି ଭୋକ ହେଉଥାଏ; କିନ୍ତୁ ଖର୍ଚ୍ଚ ଭୟରେ

ମନାକଲି । ସେ ଗ୍ରୁଲଗଲେ ମତେ ଚିନ୍ତା ସାଗରରେ ଭସେଇ ଦେଇ ତଳ ମହଲାରୁ ନାଚଗୀତର ମଧୁ ଝଙ୍କାର ଭାସି ଆସୁଥାଏ । ମନ ହେଉଥାଏ ଯାଇ ସେ ଆନନ୍ଦ-ଉଲ୍ଲାସରେ ମିଶି ଯିବାକୁ । କିନ୍ତୁ ଖର୍ଚ୍ଚ କଥା ଚିନ୍ତା କରି ନିଜକୁ ସେ ସୁଖରୁ ବଞ୍ଚିତ କରିବାକୁ ବାଧ୍ୟହେଲି । ନା, ସାବଧାନତା, ନିହାତି ସାବଧାନତା ଦରକାର । ନଚେତ୍ ସାରା ଇଉରୋପ ବୁଲିବାକୁ ଯେ ସାମାନ୍ୟ ପୁଞ୍ଜି ଯୋଗାଡ଼ କରିଚି ସେ ପ୍ୟାରିସ୍ ସହରର ଏହି ହୋଟେଲରେ ଶେଷ ହୋଇଯିବ !

ଏମିତି ନାନା କଥା ଭାବି ମୋ ବଖରାର କବାଟ ବନ୍ଦ କରି ହୋଟେଲରୁ ବାହାରି ପଡ଼ିଲି । ରାତି ପ୍ରାୟ ୧୦ଟା । ତଥାପି ରାସ୍ତାରେ ଜନସ୍ରୋତର ବିରାମ ନାହିଁ । ଯାନବାହନ ତାଙ୍କ ଶୃଙ୍ଗା ବଜାଇ ଏଣେ ତେଣେ ଯା'ଆସ କରୁଥାନ୍ତି । ମୋ ହୋଟେଲର ଅବସ୍ଥିତିକୁ ଭଲ କରି ଲକ୍ଷ୍ୟ କରି ଯେଉଁଆଡ଼େ ଜନଗହଳି ବେଶୀ ଜଣାଗଲା ସେହିଆଡ଼େ ଗ୍ରୁଲିଲି । ଉଦ୍ଦେଶ୍ୟ ହେଲା, ସହରର ସେ କେଉଁ ଅଂଶ ସେଇଟା ଲକ୍ଷ୍ୟ କରିବି ଏବଂ ପ୍ୟାରିସ୍‌ର ରାତି ଶୋଭା ଦେଖିବି । ତା' ସାଙ୍ଗେ ସାଙ୍ଗେ କେଉଁଠି କ'ଣ ସୁବିଧା ଦେଖି କିଛି ଖାଇବି । ଏତେ ବଡ଼ ଜନାକୀର୍ଣ୍ଣ କୋଳାହଳପୂର୍ଣ୍ଣ ସହର । ମୋତେ କିନ୍ତୁ ଏକା ଏକା, ଡର ଡର ଲାଗୁଥାଏ । ତେବେ ବି ସାହସ ବାନ୍ଧି ଥୋଡ଼ାଏ ବାଟ ଗ୍ରୁଲିଗ୍ରୁଲି ଗଲି । ଆଖପାଖର ରାସ୍ତାଗୁଡ଼ାକର ନାଁ ଚୁପ୍ କରି ଟିପି ଦେଉଥାଏ ଏବଂ ଚାରିଆଡ଼କୁ ଗ୍ରୁହିଁ କିଏ କେଉଁଠି କ'ଣ କରୁଚି ସେସବୁ ଲକ୍ଷ୍ୟ କରୁଥାଏ । ଦୈବାତ୍ ଗୋଟିଏ ହଟ୍‌ଡଗ୍ ଦୋକାନ ହାବୁଡ଼େ ପଡ଼ିଲା । ତା'ଠାରୁ ଦୁଇଟି ହଟଡଗ୍ ଉଦରସ୍ଥ କରି ପାଖ ରେଷ୍ଟୁରାଁରୁ କଫେ ଗ୍ରୁ' ପିଇଲି । ମନ ହେଉଥାଏ ଗୁଡ଼ାଏ ହଟଡ଼ଗ୍ ଖାଇଯିବି, ଥୋଡ଼ାଏ ଗ୍ରୁ' ପିଇଯିବି । କିନ୍ତୁ ଅଧିକ ଖର୍ଚ୍ଚ ହୋଇଯିବା ଭୟରେ ତେଣିକି ମନ ଦେଲିନି । ହୋଟେଲକୁ ଫେରି ଆସି ବିଛଣାରେ ଶୋଇପଡ଼ିଲି ।

ମନଟା ଅନେକାଂଶରେ ଶାନ୍ତ ହୋଇ ଯାଇଥିଲା । ଅଧିକ ଟ୍ୟାକ୍‌ସି ଭଡ଼ା ଦେବାକୁ ପଡ଼ିବାରୁ ମନରେ ଯେ ଅବଶୋଷ ରହି-ଯାଇଥିଲା ଅର୍ଦ୍ଧ-ଉପବାସ ଦ୍ୱାରା କଞ୍ଚିତ ମିତବ୍ୟୟିତା ଅବଲମ୍ବନ କରିଥିବାରୁ ସେଇଟା ଉଭେଇଗଲା ଏବଂ ପରମ ସନ୍ତୋଷରେ ନିଦ୍ରାଗଲି ।

ପ୍ରାପ୍ତ ରାତି ଶେଷ ପ୍ରହରକୁ ମୋତେ ପରସ୍ରା ମାଡ଼ିଲା । କିନ୍ତୁ ହୋଟେଲ ଭିତରେ ଯୁଆଡ଼େ ଦେଖିଲି କେଉଁଠି ସ୍ନାନାଗାର, ପାଇଖାନାଘର ଦେଖାଯାଉନି । କି କଥା ଏ ! ପ୍ୟାରିସ୍ ସହରକୁ ଆସି ପରସ୍ରା କରିବାକୁ ଡରିଗଲି ! ନିଜ ଦେଶ କଥା ମନେ ପଡ଼ିଲା । ସେଠାରେ ସେସବୁ ପାଇଁ କେତେ ସୁବିଧା, କି ଅଖଣ୍ଡ ସ୍ୱାଧୀନତା ! ବିଲବାଡ଼, ଦାଣ୍ଡ-ଅଗଣା ଯେଉଁଠି ଇଚ୍ଛା ସେଠି ପରସ୍ରା କରିହେବ, ଝାଡ଼ା ଯାଇପାରିବ । କିନ୍ତୁ ଏ ତ ପ୍ୟାରିସ୍ ସହର । ଯୁଆଡ଼େ ଖାଲି ଘର । ବାହାରକୁ ଯାଇ ରାସ୍ତାକଡ଼ରେ ଅବା ପ୍ରକୃତି ମେଣ୍ଟାଇ ପାରିଥାନ୍ତି । କିନ୍ତୁ ରାତି ର ଏ ନିକାଞ୍ଚନ ପହରରେ ସାତ ରାସ୍ତାକୁ ଯିବାକୁ ଡର ମାଡ଼ିଲା । ଯଦି କୌଣସି ସ୍ଥିର କି ଉଚାଯୁତ ନୋହିଲେ ପୋଲିସ୍ ହାବୁଡ଼ରେ ପଡ଼େ ତେବେ ତ ମହା ହଇରାଣ ! ଏ ପରିସ୍ଥିତିରେ କ'ଣ କରିବାକୁ ହେବ ଚିନ୍ତା କଲି । ବୁଦ୍ଧି ଥିଲେ ଉପାୟ ଆପେ ଆପେ ଆସେ । ମୋ କୋଠରୀରେ ଗୋଟିଏ ବେସିନ୍ ଥାଏ । ସେଥିରେ କୌଣସିମତେ ପ୍ରକୃତି ମେଣ୍ଟାଇ ଟ୍ୟାପ୍ ଖୋଲିଦେଲି । ସାଙ୍ଗେ ସାଙ୍ଗେ ସବୁ ସାଫ୍ ହୋଇଗଲା । ମତେ ଟିକିଏ ହସ ମାଡ଼ିଲା । ଭାବିଲି ପ୍ୟାରିସ୍ ତ ସବୁ ଅବିଦ୍ୟାର ପୀଠ । ତେବେ କ'ଣ ଏଠା ବେସିନସବୁ ପରିସ୍ରାଗାର ଭାବେ ବ୍ୟବହୃତ ହେବା ପାଇଁ ଉଦ୍ଦିଷ୍ଟ !

ଯାହାହେଉ ମନକଥା ମନରେ ରଖି ଶୋଇ ପଡ଼ିଲି । ଭୋରରୁ ଉଠି ପୁଣି ବେସିନ୍‌ରେ ପାଣିଗୁଡ଼ା ତାକୁ ଧୋଇଧାଇ ଦେଲି । ଡର ଲାଗୁଥାଏ କାଳେ ଯଦି ପରସ୍ରା ଗନ୍ଧ ଜଣା ପଡ଼ିବ ହୁଏତ ମୋତେ ଜେଲଖାନା ଯିବାକୁ ପଡ଼ିବ । ପୁଣି ମନେ ମନେ ନିଜକୁ ସାନ୍ତ୍ୱନା ଦେଲି । ନା, ଧରାପଡ଼ିବାର ଭୟ ନାହିଁ । ସେ ପରିସ୍ରା ଯାଇ ପ୍ୟାରିସ୍ ସହରର ଅତଳ ଗର୍ଭରେ ପଡ଼ିବଣି ! କିଛି ସମୟ ପରେ ସହୃଦୟା, ସୁବିନୀତା ପରିଚାରିକା ଚା' ଆଣି ଦେଲେ । ତାଙ୍କୁ ଧନ୍ୟବାଦ୍ ଦେଇ ସ୍ନାନାଗାର ଓ ଶୌଚାଗାରର ସନ୍ଧାନ ନିତାନ୍ତ ସାଧାରଣ ଢଙ୍ଗରେ ପଚାରିଲି । ସେ ମହାଶୟା ସେଇଟା ତଳ ମହଲାରେ ବୋଲି କହିଦେଇ ଅନ୍ତର୍ହିତା ହେଲେ । ମୋ ମନରେ ଗୋଟାଏ ଦୁର୍ଗ ବିଜୟ କରିଥିବାର ଆନନ୍ଦ ଉଲ୍ଲାସ ଖେଳି ଆସିଲା ।

ନିତ୍ୟକର୍ମ ସାରିବା ପରେ ତଳ ମହଲାକୁ ଯାଇ ପ୍ରାତଃଭୋଜନ ସାରିଲି । ତା'ପରେ ବାହାରିଲି ବୁଲିବାକୁ । ସେତେବେଳେ ବସନ୍ତ ଯାଇ ଆସିଥାଏ ଗ୍ରୀଷ୍ମଋତୁ । ଏହି ସମୟରେ ପ୍ୟାରିସ୍‌ବାସୀ ଯାଆନ୍ତି ବାହାରକୁ ବୁଲିବା ପାଇଁ କିନ୍ତୁ ଅନ୍ୟ ଦେଶର ଭ୍ରମଣକାରୀ ଦଳ ଏଠାକୁ ଆସନ୍ତି ଶହ ଶହ ସଂଖ୍ୟାରେ ଚିତ୍ତ-ବିନୋଦନ ସକାଶେ । ଶୀତପ୍ରଧାନ ଇଉରୋପରେ ବସନ୍ତ ଓ ଗ୍ରୀଷ୍ମ ସମୟ ବେଶ୍ ଉପଭୋଗ୍ୟ । ଏହି ସମୟରେ ପ୍ୟାରିସ୍‌ର ଦୃଶ୍ୟ ଖୁବ୍ ଚମତ୍କାର । ଘରଆଡ଼ ଖୁବ ସୁନ୍ଦର, ମନୋରମ ମନେ ହେଉଥାଏ । ବଡ଼ ବଡ଼ କୋଠା ଫାଙ୍କ ଦେଇ ଆକାଶକୁ ଚାହିଁଲେ ଦେଖାଯାଏ ତୁଷାର ଧବଳ ମେଘମାଳ । ସିନ୍ ନଦୀ ଉପରେ ସୂର୍ଯ୍ୟକିରଣ ପଡ଼ି ଝଲସି ଉଠୁଥାଏ । ଆଖପାଖର ପାର୍କ ଓ ବଗିଚାମାନଙ୍କରେ ବହୁ ପ୍ରକାର ଫୁଲ ଫୁଟି ଚମତ୍କାର ଶୋଭା ସୃଷ୍ଟି କରୁଥାନ୍ତି । ଘରଆଡ଼େ ଶୁଣାଯାଉଥାଏ ପକ୍ଷୀମାନଙ୍କର ମଧୁର କାକଳି । କେଉଁଠି କୃତ୍ରିମ ଝରଣା କଳ କଳ ଶବ୍ଦରେ ଝରି ପଡ଼ୁଥାଏ । କେଉଁଠି ପିଲାମାନେ ନାନା ଖେଳ କୌତୁକରେ ମାତି ଉଠିଥାନ୍ତି । ଚାମ୍‌ସ୍ ଏଲସି (Champ Elsees) ରେ ଦଳ ଦଳ ଶିଶୁ ରଙ୍ଗିନ୍ ବେଲୁନ ଉଡ଼ାଇ ବୁଲୁଥାନ୍ତି । ରୁ ଡ଼ ସିନ୍ (Rue de Sein), ରୁ ଡେସ୍ ସେଣ୍ଟ୍‌ସ୍ ପାରି, (Rue des Saints Peres), ରୁ ବନାପାର୍ଟ (Rue Bonparte) ଆଦି ପୁରୁଣା ରାସ୍ତାଗୁଡ଼ିକର ରୂପ ବଡ଼ ଆକର୍ଷଣୀୟ ମନେ ହେଉଥାଏ ।

ଯାଯାବର ପରି ପ୍ୟାରିସ୍ ସହରର ଚାରିଆଡ଼େ ବୁଲୁଥାଏ । କେଉଁଠି କ'ଣ ସୁନ୍ଦର, ମନୋହର ଦେଖିଲେ ଟିକିଏ ଅଟକିଯାଏ । ନୋହିଲେ ପ୍ୟାରିସ୍‌ର ମ୍ୟାପ୍ ହାତରେ ଧରି ଏଣେ ତେଣେ ଧାଇଁଥାଏ, କେତେବେଳେ ବସ୍‌ରେ, କେତେବେଳେ ମାଟିତଳ ଟ୍ରେନ୍‌ରେ, କେତେକ ସମୟରେ ପଦବ୍ରଜରେ । ରୁ ଡେସ୍ ପେଟିସ୍ ଚାମ୍ପସ୍‌ରେ କେତେ ସମୟ କଟାଇଲି କାରଣ ସେଠାକାର ଶୋଭା ମୋ ମନକୁ ବେଶ୍ ପାଇଲା । ବୋଇସ୍ (Bois) ଅଞ୍ଚଳରେ ବହୁ ପ୍ରକାର ଫୁଲ ଫୁଟିଥାନ୍ତି । ଆନେମୋନସ୍ (Anemones), ଜର୍କ୍ୱିଲସ୍ (Jonquils), ଡାଫୋଡ଼ିଲସ୍ (Daffodils), ଟୁଲିପସ୍ (Tulips) ଇତ୍ୟାଦି କେତେ

ଫୁଲ କ'ଣ ! ମାଡ଼େଲିନ୍ (Madeline)ର ଫୁଲ ଦୋକାନ-ମାନଙ୍କରେ ବହୁ ପ୍ରକାର ଫୁଲ ସଜଡ଼ା ହୋଇ ରଖାଯାଇ ଥାଏ । ସାରା ସହରଟା ଯେପରି ଜୀବନ୍ତ ପ୍ରାଣବନ୍ତ ହୋଇ ଉଠିଛି । ଟାକ୍‌ସି, ବସ୍‌ଗୁଡ଼ାକ ଘୂରିଆଡ଼େ ବିକଳ ଚିତ୍କାର କରି ଧାଁଧପଡ଼ କରୁଥାନ୍ତି । ଲୋକେ ବୁଲୁଥାନ୍ତି କେତେ ରୂପରେ କେତେ ବେଶରେ । ମୋତେ ଯେପରି ଭୋକ ଶୋଷ ନଥାଏ । ବୁଲି ବୁଲି ବହୁ ରାତିକି ହୋଟେଲକୁ ଫେରେ । ଖିଆପିଆ ବାହାରେ । ଖାଲି ପ୍ରାତଃ ଭୋଜନଟା ଯାହା ମୋ ହୋଟେଲରେ କରେ ।

ଆଜି ହୋଟେଲ ବଦଳାଇଲିନି । ସେଠାକାର ଦରଟା ଟିକିଏ ବେଶୀ ଲାଗିଲା । କିନ୍ତୁ ପାରିସ୍‌ରେ ସବୁଟାର ତ ଦର ବେଶୀ । ହୋଟେଲ ରହଣି ଖର୍ଚ୍ଚର ଆଧିକ୍ୟ ଖାଦ୍ୟପେୟ ସଙ୍କୋଚ କରି ଭରଣା କରିବାକୁ ମନସ୍ଥ କରିଥାଏ । ସେଇ ଶୋଇବା ସମୟଟକ ଛାଡ଼ିଦେଲେ ବାକିଟା କଟେ ବାହାରେ । ପାରିସ୍‌ବାସୀ ବିନଯାକ ଯାହା କରନ୍ତି ରାତି ହେଲେ ସବୁ ଚିନ୍ତାଦିକୁ ଭୁଲିଯାନ୍ତି । ପ୍ରାୟ ରାତିସାରା ଆନନ୍ଦ ବିହାରରେ କାଳ କାଟନ୍ତି । ମୁଁ ମଧ୍ୟ ଅନେକ ରାତିଯାଏ ବୁଲିବୁଲି କରେ । କିନ୍ତୁ ନିର୍ଗୋଳା, ନିକାଞ୍ଚନ ଜାଗାକୁ ଯାଏନି । କାରଣ ଏହି ସମୟରେ ପାରିସ୍‌ରେ ଚୋର ଡକାୟତଙ୍କର ଭୟ ଖୁବ୍ ଅଧିକ ।

ଘୂରିଆଡ଼େ ବହୁତ ବୁଲିଲି । ଏହି ମନସିଅର Monsieur ମାଡ଼ାମ୍ ସୁଲି ( Mademmoisele ) ବା ଖାଲି ମାଡ଼ାମ୍ (Madam) ର ରାଜ୍ୟ ମୋତେ ସେମିତି ବିଶେଷ କିଛି ଅସୁବିଧାରେ ପକାଇଲାନି । ମୋର ଯେ ସ୍ୱଳ୍ପ କେତେଟା ଫରାସୀ ଶବ୍ଦ ମୁଖସ୍ଥ ଥିଲା ତାହାରି ସାହାଯ୍ୟରେ ବହୁ ପ୍ୟାରିସବାସୀଙ୍କ ସହ ଗପସପ ଜମାଏ । କିନ୍ତୁ ବିଶେଷ କିଛି ତାଙ୍କ କଥାରୁ ବୁଝି ପାରେନି । ସେ ଯାହା କହନ୍ତି ଶୁଣେ । ଖାଲି ମଝିରେ ମଝିରେ Ma Cherie (My dear), Mon dieu (My God), C'est exquisite (excellent) ଇମିତି କିଛି ପଦେ ଅଧେ କହେ । ଶେଷରେ Au Revoir (good bye) କହି ବିଦାୟ ନିଏ । କିନ୍ତୁ ଇଂରେଜୀ ଜାଣିଥିବା ଲୋକଙ୍କ ସାଙ୍ଗରେ ବେଶ୍ ଆଳାପ ଆଲୋଚନା ଜମେଇଦିଏ ।

ପାରିସ୍‌ର ଚିତ୍ରଶାଳାମାନଙ୍କରେ ଖୁବ୍ ବୁଲିଲି । ରୁସେଣ୍ଟ ଅନରରେ ଥିବା ଚିତ୍ରଶାଳା (**Art gallery at Rue St. Honore**) ମାର୍କୋ ପୋଲୋ ଚିତ୍ରଶାଳା (**Galerie Marco Polo**), ଲକ୍‌ଜମ୍ବର୍ଗ ଓ ଲୁଭର ଚିତ୍ରଶାଳା (**Gallerie of Luxembourg and Louvre**), ଗ୍ରାଣ୍ଡ ପାଲେସ୍ (**Grand palais**), ବଲଭେହେର (**Boulevards**) ଆଦି ସ୍ଥାନମାନଙ୍କରେ ବହୁତ ସମୟ କଟାଇଲି । ଇଫେଲ ଟାୱାରରେ ଚଢ଼ି ଚାରିଆଡ଼ର ଦୃଶ୍ୟ ଦେଖେ ଓ କଙ୍କର୍ଡ଼ରେ ଅନେକ ସମୟ କଟାଏ । ବେଶୀ କ୍ଳାନ୍ତ ଲାଗିଲେ ସିନ୍ କୂଳରେ ବସି ପଡ଼େ କମ୍ବା ତା'ଭିତରେ ଥିବା ଟାପୁମାନଙ୍କୁ ଯାଇଁ କେଉଁଠି ଠିଆହୋଇ ସେଠାର କୋଠାବାଡ଼ି, ଗିର୍ଜାକୁ ଚାହେଁ । ଇଫେଲ ଟାୱାରରେ ବି ବହୁ ସମୟ କଟାଏ । ୧୮୮୯ ଖ୍ରୀଷ୍ଟାବ୍ଦରେ ମାତ୍ର କେତେ ମାସ ମଧ୍ୟରେ ଏହି ବିଖ୍ୟାତ ସ୍ତମ୍ଭ ନିର୍ମିତ ହୋଇଥିଲା ଫରାସୀ ବିପ୍ଳବର ସ୍ମାରକୀ ସ୍ୱରୂପ । ଏହାର ନିର୍ମାଣ-କୌଶଳ ଚାରିଆଡ଼େ ଚମକ ଖେଳାଇ ଦେଇଥିଲା । ପ୍ରଥମେ ପ୍ରଥମେ ଫରାସୀମାନେ ଏହାକୁ ବିଶେଷ ପସନ୍ଦ କରୁଥିଲେ । କିନ୍ତୁ କାଳକ୍ରମେ ଏହା ଏକ ଜାତୀୟ କୀର୍ତ୍ତିରୂପେ ଆଦୃତ ହେଲା । ଡାକ ଟିକେଟ୍, କାଗଜ ମୁଦ୍ରା ଓ ମାନଚିତ୍ର ମାନଙ୍କରେ ଏହାର ଚିତ୍ରବହୁଳ ଭାବରେ ବ୍ୟବହାର କରାଗଲା । ଏଥିର ଉପରକୁ ଯିବାକୁ ସିଡ଼ି ଓ ଲିଫ୍‌ଟର ବ୍ୟବସ୍ଥା ଅଛି । ଏହି ସ୍ତମ୍ଭ ତଳୁ ଉପରକୁ ବିଭିନ୍ନ ସ୍ଥାନରେ ଜଳପାନାଗାରମାନ ଅଛି । ପାରିସରେ ତ ସବୁ ଦୁର୍ମୂଲ୍ୟ । କିନ୍ତୁ ଇଫେଲ୍ ଟାୱାରର ଯେତେ ଉପରକୁ ଉଠୁଥିବ ତାର ଜଳଖିଆ ଦୋକାନ ଗୁଡ଼ିକର ଦରଦାମ୍ ସେତିକି ବଢ଼ୁଥିବ ।

ନଟ୍ରାଡ଼ମ୍ ଗୀର୍ଜାକୁ ଦେଖିଲାବେଳେ ଭିକ୍ଟର ହୁଗୋଙ୍କ ବିଖ୍ୟାତ ଉପନ୍ୟାସ ପାରିସ୍‌ର ନଟରଡ଼ମ୍ (**Notre Dame de Paris**) ର ଅପୂର୍ବ ଚରିତ୍ର, ସେ ବପୁବନ୍ତ କୁବ୍ଜାକାର ଚିତ୍ର ଆଖି ଆଗରେ ଭାସି ଉଠିଲା । ସେ କମିତି ଅନ୍ଧାରେ ଗିର୍ଜାର ସ୍ତମ୍ଭ ଖୋଲି ଏଠାରେ ମହାନନ୍ଦରେ ଚଳପ୍ରଚଳ ହେଉଥିଲା, ଦ୍ରୁତ ବେଗରେ ସିଡ଼ିଦେଇ ଗୀର୍ଜା ଉପରକୁ ଉଠି ତାତ ଘଣ୍ଟା ବଜାଉଥିଲା ଆନନ୍ଦ ବିହ୍ୱଳ ଭାବରେ, ସବୁ ମନେ ପଡ଼ିଲା । ତା'ପାଇଁ ଏହି ଗୀର୍ଜା ଥିଲା ସବୁ କିଛି । ସେ ଏଠାରେ

ମୂର୍ତ୍ତିଙ୍କ ସହିତ କଥାବାର୍ତ୍ତା କରୁଥିଲି । ଗିର୍ଜା ଘଣ୍ଟାର ଶବ୍ଦ ଆଣୁଥିଲା ତା'ପ୍ରାଣରେ ଅଦ୍ଭୁତ ଉନ୍ମାଦନା । ତାର ଶରୀର ଥିଲା ନକଳାଙ୍ଗ କିନ୍ତୁ ମନଗଡ଼ା ଥିଲା ସ୍ୱର୍ଗୀୟ ଉପାଦାନରେ । ଏହି ନଟ୍ରୋଡମ୍ ମଧ୍ୟଯୁଗ ପାରିସ୍‌ର ଥିଲା ଜୀବନନାଟିକା । ଏବେ ବି ସେ ତାର ପୂର୍ବ ଗୌରବ ଅନେକାଂଶରେ ବଜାୟ ରଖିଛି । ସେହି ନଟରଡ଼ମ୍ ଦେଖି ମୁଁ ଯେପରି ଆନନ୍ଦରେ ବିହ୍ୱଳ ହୋଇଗଲି ।

ଫରାସୀ ଜାତିର ପ୍ରାଣ-ପ୍ରାଚୁର୍ଯ୍ୟର ସୂଚନା ପାରିସ୍ ସହରରୁ ମିଳେ । ଏହାର ସଂସ୍କୃତି ଓ ସାହିତ୍ୟ ଋଦ୍ଧିମନ୍ତ । ଏହାର ସାହିତ୍ୟକୁ ଭଲଟାୟାର, ମଣ୍ଟେସ୍କ୍ୟୁ, ରୁଷୋ ମହାନ୍ କରିଚନ୍ତି । ଏମାନଙ୍କ ଲେଖଣୀ ବଳରେ ଫରାସୀ ବିପ୍ଳବ ସମ୍ଭବ ହେଲା ଏବଂ ସାରା ବିଶ୍ୱରେ ସ୍ୱାଧୀନତା, ସାମ୍ୟ ଓ ସହଯୋଗ (Liberty, equality and fraternity)ର ଧ୍ୱନି ଉଠିଲା । ଓଃ ! ସେ କି ଭୟାନକ ବିପ୍ଳବ ! ଅତ୍ୟାଚାରୀ ଧନିକ ଓ ସମ୍ଭ୍ରାନ୍ତ ଶ୍ରେଣୀର କେତେ ଲୋକଙ୍କର ମୁଣ୍ଡକାଟ ହେଲା ! ଫରାସୀ ବିପ୍ଳବର ଭୀଷଣତା ଗୋଟିଏ କାହାଣୀରୁ ବେଶ୍ ଜଣାପଡ଼େ । ଯେତେବେଳେ ଫରାସୀ ବିପ୍ଳବପରେ ବିଜୟୀ ବିପ୍ଳବୀମାନେ ସେମାନଙ୍କ ଭିତରେ ପ୍ରଶାସନିକ ପଦବୀ ବାଣ୍ଟିଲେ, ସୁଦୂର ମଫସଲ ଅଞ୍ଚଳରୁ ଆସିଥିବା ଜଣେ ବୃଦ୍ଧ ସେମାନଙ୍କୁ ଗୁହାରି କଲେ ଯେ ତାଙ୍କୁ କିଛି ପୁରସ୍କାର ଦିଆଯାଉ । ଏଥିରେ ବିପ୍ଳବୀମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ "ତୁମେ ବିପ୍ଳବରେ କଣ କରିଚ ? କେତେ ଲୋକଙ୍କୁ ହଣାକଟା କରିଚ ? କେତେ ସମ୍ପତ୍ତି ପୋଡ଼ିଚ ?" ବୃଦ୍ଧ କହିଲେ, 'ଏ ଯେ ଭୟାନକ, ମାରାତ୍ମକ ବିପ୍ଳବ ଘଟିଲା, ରକ୍ତଆଡ଼େ ଯେ ବିଦ୍ରୋହର ନିଆଁ ଜଳିଲା, ଏତେ ହାଣକାଟ ଚାଲିଲା ସେଥିରେ ଆମେ ଯେ ବଞ୍ଚି ରହିଚୁ ସେ କ'ଣ କମ୍ ଗୌରବ, କମ୍ ସାହସର କଥା !" ଓଃ ! କି ଭୟାନକ ଦୁଃଖଭରା କାହାଣୀ !

ଫରାସୀ ଲୋକମାନେ ଯେମିତି ବ୍ୟକ୍ତିଗତ ସ୍ୱାଧୀନତାର ଉପାସକ ସେମାନଙ୍କ ଶୃଙ୍ଖଳାଜ୍ଞାନ ବି ସେମିତି ଉଚ୍ଚକୋଟୀର । ଆଉ ଗୋଟିଏ ଏମାନଙ୍କର ଗୁଣ ହେଲା ବେଶ-ପୋଷାକରେ ଚାକଚକ୍ୟ ଓ ଆଡ଼ମ୍ବର । ଓଃ ! ପାରିସ୍‌ରେ ଦେଖିବ ବେଶପୋଷାକର ବିଭିନ୍ନତା ଓ ତାର

ଛାଞ୍ଚ । ସବୁକାଳେ ପାରିସ୍‌ବାସୀଙ୍କ ବେଶପୋଷାକର ପରିପାଟୀ ସାରା ୟୁରୋପର ଆଦର୍ଶ ହୋଇ ଆସିଛି । ନାନା ଢଙ୍ଗର ନାନା ରଙ୍ଗର ବେଶପୋଷାକ ପ୍ୟାରିସ୍‌ରେ ଦେଖିବାକୁ ମିଳେ । ପ୍ୟାରିସ୍‌ବାସୀ ବିଶେଷତଃ ମହିଳାମାନେ ସେମାନଙ୍କ ବେଶ ପୋଷାକ, ପ୍ରସାଧାନ ବ୍ୟବସ୍ଥାରେ ବେଶ୍ ମନ ଦିଅନ୍ତି । ଚାଲି ଯାଉଥିବେ କେତେ ଦାମିକା ଦାମିକା ପୋଷାକ ପିନ୍ଧି ଛବିଳ ସୁନ୍ଦର ରୂପରେ । କୋକଶିଆଳ ଚମଡ଼ା ଓ ଅଷ୍ଟ୍ରିଚ୍ ଚଢ଼େଇର ପକ୍ଷୀ ଦିଆ ପୋଷାକ ଓ ବିଭିନ୍ନ ଧରଣର ଟୋପି ଦେଖିବ କିଏ ! ଏମାନଙ୍କୁ ଦେଖିଲେ ମନେ ହେବ ଫରାସୀ ବିପ୍ଳବରେ ବୋଧହୁଏ ପୂର୍ବ ଧନିକ ଶ୍ରେଣୀର ମୁଣ୍ଡକାଟ ହୋଇନି । ସେଥିରୁ ଅନେକେ ବର୍ତ୍ତିଯାଇଛନ୍ତି ।

ଗୋଟିଏ କଥା ମୋତେ ବିଶେଷ ରୂପେ ବାଧିଲା । ପ୍ୟାରିସ-ବାସୀଙ୍କର ଭାରତ ସମ୍ବନ୍ଧରେ ପ୍ରକୃତ ଜ୍ଞାନର ଅଭାବ । ଭାରତ ନାଁ ଶୁଣିଲେ ଏମାନେ Les Indes କହି ଦୁଃଖପୂର୍ଣ୍ଣ ଇଙ୍ଗିତ ଦିଅନ୍ତି । ଏମାନଙ୍କର ଧାରଣା ଭାରତ ଦୁଃଖ, ଦୈନ୍ୟ ଓ କୁସଂସ୍କାରରେ ଭରା । ଆମ୍ଭମାନଙ୍କର ମହିଳାମାନେ ମୁଣ୍ଡରେ ଯେ ସିନ୍ଦୁର ଟିପା ପିନ୍ଧନ୍ତି ସେମାନେ ତାକୁ ବୁଝନ୍ତି ଜାତିଭେଦର ଚିହ୍ନ ବୋଲି । କେଉଁଠି ଜଣେ ଭାରତୀୟ ମହିଳାଙ୍କୁ ଏକାକିନୀ ଦେଖିଲେ ଆଶ୍ଚର୍ଯ୍ୟ ହୋଇ ଆଖି ତରାଟି ଚାହିଁବେ । ହୁଏତ ପଚାରିଦେବେ, ସେ ଏକୁଟିଆ ବୁଲିବାକୁ କିଏ ତାଙ୍କ ସ୍ୱାମୀଙ୍କର ଅନୁମତି ଆଣିଚନ୍ତି । ସେମାନେ ଭାବନ୍ତି ଭାରତୀୟ ମହିଳାମାନେ ତାଙ୍କ ସ୍ୱାମୀଙ୍କର କ୍ରୀତଦାସୀ । ସେମାନଙ୍କର ବ୍ୟକ୍ତିଗତ ସ୍ୱାଧୀନତା ଆଦୌ ନାହିଁ । କି ବିଚିତ୍ର ଧାରଣା ! ଆଉ ଗୋଟିଏ ସେମାନଙ୍କର ବିଚିତ୍ର ଧାରଣା ଯେ ଭାରତୀୟମାନେ ପ୍ରତିଦିନ ଶହ ଶହ ସଂଖ୍ୟାରେ ରାସ୍ତାକଡ଼ରେ ଖାଦ୍ୟାଭାବରୁ ମରନ୍ତି ଏବଂ ସକାଳେ ବଳଦ ଗାଡ଼ି ସବୁ ବୁଲି ତାକୁ ଗୋଟାଇ ନିଅନ୍ତି ! ବଡ଼ ଆଶ୍ଚର୍ଯ୍ୟ ଲାଗେ, ଆମର ଏତେ ଦୂତାବାସ, ଏତେ ପ୍ରଚାରସଂସ୍ଥା ଥିବା ସତ୍ତ୍ୱେ ଫରାସୀ ଲୋକେ ଭାରତର ପ୍ରକୃତ ଅବସ୍ଥା ସମ୍ବନ୍ଧରେ ଏତେ ଅଜ୍ଞ କିପରି !

ପ୍ୟାରିସ୍‌ର ବିଭିନ୍ନ ଚିତ୍ରଶାଳାରେ ଭାରତୀୟ ଚିତ୍ର ସେମିତି କିଛି ଦେଖିଲି ନି । ଏ କି କଥା ! ଏଠି ଆମର ଏତେ ଭାରତୀୟ ଅଛନ୍ତି । ତାଙ୍କ ଭିତରେ ବହୁ କବି, ଚିତ୍ରକର ଥିବେ । କିନ୍ତୁ ଆମର ଯେ ଏଡ଼େ ମହାନ୍ ଐତିହ୍ୟ, କଳା-ସ୍ଥାପତ୍ୟର ପ୍ରାଚୁର୍ଯ୍ୟ ଅଛି ସେ ବିଷୟରେ ଏଠାରେ ପ୍ରଚାର କରାଯାଉନି କାହିଁକି ! ପୁସ୍ତକାଗାର, ବହି ଦୋକାନମାନଙ୍କରେ ବି ଭାରତ ସମ୍ବନ୍ଧରେ ସେମିତି କିଛି ବହି ବା ପତ୍ରପତ୍ରିକା ଦେଖିଲିନି । ଯେ କେତୋଟି ଅଛି ତାର ବ୍ୟବହାର ନାହିଁ । ତାକୁ ଧୂଳି, ଅଳିଆ ଘେରି ରହିଛି ।

ପ୍ୟାରିସ୍ ସହର ଆଧୁନିକ ଓ ସୁନ୍ଦର ଦେଖାଗଲେ ବି ଏହାର ଭିତରେ ଅନେକ ଅଣଓସାରିଆ ଗଳିରେ ପୂର୍ବକାଳର ପଥରଦିଆ ରାସ୍ତା ଓ କମଳା ରଙ୍ଗର ଟାଇଲଦିଆ ଛାତ ଦେଖିବାକୁ ମିଳେ । ଏମାନେ ବୋଧହୁଏ ବୁଲଡୋଜରର ଦୌରାତ୍ମ୍ୟରୁ ବର୍ତ୍ତିଯାଇଛନ୍ତି । ପ୍ୟାରିସ୍‌ରେ ବର୍ଣ୍ଣବୈଷମ୍ୟ ପ୍ରାଦୁର୍ଭାବ କିଛି କମ୍ ନୁହେଁ । ବିଲାତରେ ବାହାର ଲୋକଙ୍କ ଭିତରେ ଯେମିତି ବେଶୀ ଭାରତୀୟ, ପାକିସ୍ତାନୀ ଓ ନିଗ୍ରୋ ଲୋକ ଦେଖିବାକୁ ମିଳନ୍ତି ଏଠି ସେମିତି ଆରବ ଦେଶର ଲୋକ ବହୁତ । ଏହି ଆରବୀୟମାନେ ଏଠି ବହୁତ ହୋଟେଲ ଓ ରେଷ୍ଟୁରାଁ କରି ସେମାନଙ୍କର ନିଜସ୍ୱ ସଙ୍ଗୀତ ଓ ଖାଦ୍ୟ ପରିବେଷଣ କରନ୍ତି । କିନ୍ତୁ ଅନେକ ସମୟରେ ସେମାନେ ଫରାସୀ ଲୋକଙ୍କ କ୍ରୋଧର ଶିକାର ହୁଅନ୍ତି । ଏହି ବର୍ଣ୍ଣବୈଷମ୍ୟ ମନ୍ତ୍ରର ଅଗ୍ରଦୂତ ହେଲେ ନାଜିବାଦୀ ଦଳେ ଯୁବକ । ଏମାନେ ଲୁହାର ଡ୍ରେସ୍ ପିନ୍ଧି, ଛୁରି ଧରି, ମଟର ସାଇକଲ ଚଢ଼ି ବେଳେ ବେଳେ ସନ୍ତ୍ରାସବାଦ ଖେଳାଇ ଦିଅନ୍ତି ଏବଂ ବହୁ ହତ୍ୟା ଓ ଧର୍ଷଣ କାର୍ଯ୍ୟରେ ଲିପ୍ତ ହୁଅନ୍ତି । ଏହି ବର୍ଣ୍ଣବୈଷମ୍ୟ ଫଳରେ ଦିନେ ହୁଏତ ଏସୀୟ ଲୋକ ବିଲାତରୁ ବିଦାୟ ନେବେ, ଫ୍ରାନସ୍‌ରୁ ଆରବ ଲୋକେ ବିତାଡ଼ିତ ହେବେ !

# ଏତେ ବୁଲି ବୁଲି ସେହି ଅଗଣା !

ପ୍ୟାରିସ୍‌ରେ ଗୁଡ଼ାଏ ବୁଲାବୁଲି କରି ମୋର ଯେମିତି ବିତୃଷ୍ଣା ଆସିଥାଏ । କେତେ ବୁଲିବି, କେତେ ଦେଖିବି ! ଏଣେ ସ୍ୱଦେଶକୁ ଫେରି ଯିବାକୁ ମନ ବିକଳ ହେଲାଣି ! ବୈଦେଶିକ ମୁଦ୍ରା ଯାହା ଯୋଗାଡ଼ କରିଥାଏ ସେ ଖୁବ୍ ଦ୍ରୁତ ବେଗରେ ସରିଆସୁଥାଏ । ଭାବିଲି ଜର୍ମାନୀ, ସ୍ୱିଜରଲାଣ୍ଡ, ଇଟାଲି ଆଡ଼େ ଟିକିଏ ବୁଲିଆସି ଲଣ୍ଡନ ଫେରିବି । ପ୍ରଥମେ ଠିକ୍ କଲି ଫ୍ରାଙ୍କ୍‌ଫୋର୍ଟ ଯିବାକୁ । ପ୍ଲେନ୍‌ରେ ଯିବାର ଇଚ୍ଛା ନ ଥାଏ । କାରଣ ଏକେ ତ ସେଥିରେ ବେଶୀ ଖର୍ଚ୍ଚ, ଦ୍ୱିତୀୟରେ ପ୍ଲେନ୍‌ରେ ଗଲେ ଦେଖିବି କ'ଣ ? ତେଣୁ ରେଲଯୋଗେ ଫ୍ରାଙ୍କ୍‌ଫୋର୍ଟ ଯିବାକୁ ମନସ୍ଥ କଲି । ପ୍ୟାରିସ୍ ରୁ ଫ୍ରାଙ୍କ୍‌ଫୋର୍ଟ ଏକ୍ସପ୍ରେସ୍ ଯାଏ । ସେଇଥିରେ ଜର୍ମାନୀ ଗଲେ ସୁବିଧା ହେବ ବୋଲି ବୁଝିଲି । ତେଣୁ ମୋ ହୋଟେଲ ଦେୟର ହିସାବଟା ଆଣି ଖର୍ଚ୍ଚପତ୍ରର ଗୋଟାଏ ମୋଟାମୋଟି ଅଟକଳ କଲି । ମନଥାଏ ପ୍ୟାରିସ୍ ଛାଡ଼ିବା ଆଗରୁ ସେଠାକାର ଗୋଟେ ଦି'ଟା ଭଲ ହୋଟେଲକୁ ଯାଇ ଖିଆପିଆର ବ୍ୟବସ୍ଥା କରିବି ।

ପ୍ୟାରିସ୍‌ରେ ବିଭିନ୍ନ ହୋଟେଲର ବିଭିନ୍ନ ଖାଦ୍ୟପେୟ ନେଇ ବିଶେଷ ଖ୍ୟାତି ଥାଏ । କିଏ ଚା' ପାଇଁ ବିଖ୍ୟାତ ତ କିଏ କଫି ପାଇଁ । କେଉଁଠି ଲଞ୍ଚ୍ ଖାଇବା ଆମୋଦଦାୟକ ତ କେଉଁଠି ଡ଼ିନର୍‌ଟା ବେଶ୍ ଜମେ । କିନ୍ତୁ ମୋଟାମୋଟି ସବୁ ହୋଟେଲ, ରେଷ୍ଟୁରାଁରେ ମଦଟା ଖୁବ୍ ସୁରୁଚିରୂପେ ପରିବେଷଣ କରାଯାଏ । ଯେଉଁଦିନ ପ୍ୟାରିସ୍ ଛାଡ଼ିବି ତା'ର ପୂର୍ବଦିନ କେବଳ ଖାଇବା ପିଇବା ନେଇ ବ୍ୟସ୍ତ ରହିଲି । "କ୍ଲାରିଜ୍"ରେ ଚା, "ମେଟ୍ରୋ ଡ଼ ହୋଟେଲ"ରେ ଲଞ୍ଚ୍ ଏବଂ "ସିବ୍"ରେ ଡିନର୍ ଖାଇଲି । ଖାଦ୍ୟ ବୋଇଲେ କେତେ ଯେ ପ୍ରକାରର ତା'ର ଇୟତ୍ତା ନାହିଁ । ଶୁଖୁଆଠାରୁ ଆରମ୍ଭ କରି ମାଛ ମାଂସ ଓ ସାକ୍‌ସବ୍‌ଜି ପର୍ଯ୍ୟନ୍ତ ବିଭିନ୍ନ ପ୍ରକାରେ ରନ୍ଧା ଯାଇଥାଏ । ସ୍ଥଳଚର, ଜଳଚର, ବ୍ୟୋମଚର ବହୁ ଜୀବଜନ୍ତୁଙ୍କୁ ରନ୍ଧା ଖାଦ୍ୟ ଆକାରରେ ପରିଷନ୍ତି ଫରାସୀ ହୋଟେଲସବୁ । ସମୁଦ୍ରର ଯେତେ ପ୍ରକାର ମାଛ ଓ ଜୀବଙ୍କୁ ସିଝା କରି ଖାଦ୍ୟ ସାମଗ୍ରୀରେ

ସାମିଲ କରାଯାଇଥାଏ ତା'ର ଇୟତ୍ତା ନାହିଁ । ଇଂଲଣ୍ଡ ଲୋକେ ଫ୍ରାନ୍ସର ଅଧିବାସୀଙ୍କୁ "ବେଙ୍ଗଖିଆ" ବୋଲି ଆଗେ ଘୃଣା କରୁଥିଲେ । ଫରାସୀ ଲୋକ ବି ବିଲାତବାସୀଙ୍କୁ ଗୋ-ମାଂସଖିଆ ବୋଲି ପରିହାସ କରନ୍ତି । ଏବେ ଦୁଇଦେଶ ଖାଦ୍ୟଜନିତ ଏ ଘୃଣା ସେତେ ଜଣାପଡ଼େନି; କିନ୍ତୁ ଖାଲି ବେଙ୍ଗ କାହିଁକି ଫରାସୀ ଲୋକଙ୍କ ଖାଦ୍ୟରେ ବହୁ ବିଚିତ୍ର ଜଳଚର ଜୀବ ଅନ୍ତର୍ଭୁକ୍ତ ।

ଯାହାହେଉ ଶେଷରେ ପ୍ୟାରିସ୍ ଛାଡ଼ିଲି । ଯେଉଁଦିନ ଫ୍ରାଙ୍କ୍‌ଫୋର୍ଟ ଉଦ୍ଦେଶ୍ୟରେ ଯାତ୍ରା କରିବାର କଥା ସେଦିନ ସକାଳୁ ହୋଟେଲର ଦେୟ ଚୁକ୍ତା ଦେଇ ତା'ର ପରିଚାରିକା ଓ ଅନ୍ୟ କର୍ମଚାରୀଙ୍କ-ଠାରୁ Au Rev ir କହି ବିଦାୟ ନେଲି । ଷ୍ଟେସନ୍‌ରେ ପହଞ୍ଚି ବୁଝିଲି ଅଳ୍ପ ସମୟ ପରେ ଫ୍ରାଙ୍କ୍‌ଫୋର୍ଟ ଏକ୍ସପ୍ରେସ୍ ଛାଡ଼ିବ । ତେଣୁ ଟିକେଟ୍ କିଣିସାରି ଷ୍ଟେସନ୍‌ରେ ଥିବା ଏକ ଚଳନ୍ତି ଟି' ଦୋକାନରୁ କେତେଟା ହଟ୍ ଡଗ୍ ଖାଇ କପେ ଗରମ ଟି' ପିଇଲି । ପ୍ୟାରିସ୍‌ର ମୋହ ଯେପରି ଛୁଟି ନ ଥାଏ । ଯେ କେତେ ସମୟ ହାତରେ ଥିଲି ତାକୁ ସଦ୍‌ବ୍ୟବହାର କରିବାକୁ ଏଣେ ତେଣେ ଘୁରି ବୁଲିଲି । ଷ୍ଟେସନ୍‌ରେ ଜମିଥିବା ଲୋକଙ୍କ ଢଙ୍ଗ ରଙ୍ଗ, ବିଶ୍ରାମାଗାରର ଅବସ୍ଥା ତନ୍ନ ତନ୍ନ କରି ଦେଖୁଥାଏ । ସମସ୍ତେ ସ୍ୱଚ୍ଛନ୍ଦରେ ଆହାର ବିହାର କରୁଥାନ୍ତି । ମୋ ପରି ସେଠି କେହି ଦୁଃସ୍ଥ ନିରାଶ୍ରୟ ଥିବାର ଦେଖିଲିନି । ସମସ୍ତଙ୍କ ଗତି, ଢଙ୍ଗ ରଙ୍ଗ ଚଞ୍ଚଳ କିନ୍ତୁ ସାବଲୀଳ । ଟିପି ଟିପି ବର୍ଷା ହେଉଥାଏ । ମୁଁ ମୋ ବିରାଟ ଓଭର୍-କୋଟ୍ ଉପରେ ଗ୍ଲେଟ ମାର୍କିଟସ୍ଟା ପିନ୍ଧି ଗୋଟାଏ ବିଚିତ୍ର ରୂପ ଧାରଣ କରିଥାଏ । ତେବେ ଦୁଃଖ ନାହିଁ, ଅବଶୋଷ ନାହିଁ । ପ୍ୟାରିସ୍ ଦେଖା ସରିଲା । ବର୍ତ୍ତମାନ ଫ୍ରାଙ୍କ୍‌ଫୋର୍ଟର ପାଳି । ମନଟା ଖୁବ୍ ପ୍ରଫୁଲ୍ଲ ଥାଏ ।

ଗାଡ଼ି ଛାଡ଼ିବାର ସଙ୍କେତ ମିଳିବା ଆଗରୁ ପରିଚିତ ଉତ୍ସୁକ ଫ୍ରାଙ୍କ୍‌ଫୋର୍ଟ ଏକ୍ସପ୍ରେସ୍‌କୁ ଚହଲଟ କଲି । ସେଥିରେ ଗୋଟିଏ ଡବାରେ ବସିଯାଇ ସହଯାତ୍ରୀଙ୍କ ଉପରେ ଟିକିଏ ଆଖି ପକେଇଦେଲି । କିଏ କୁଆଡ଼େ ଯାଉଛି, କାହା ସହିତ ଆଳାପ ଆଲୋଚନା ଜମିବ, ଏସବୁ ଚିନ୍ତା କଲି । ଭାଷାଟା ଗୋଟାଏ ବିରାଟ ପ୍ରତିବନ୍ଧକ ହୋଇ ଉଠିଥାଏ । ତେଣୁ ଅହଜରେ ଗପସପ ସମ୍ଭବ ନୁହେଁ । ଯେଉଁ ଯାତ୍ରୀମାନେ ଇଂରେଜ

ଜାଣିଥାନ୍ତି ତାଙ୍କ ସହିତ ଆତ୍ମୀୟତାଟା ଆରମ୍ଭ ହୋଇଗଲା । ଝରକା କାଚଦେଇ ବାହାରକୁ ଚାହୁଁଥାଏ । ମନରେ ଅବଶୋଷ ଯେ ଫ୍ରାନ୍ସର ରିଭାଇରା (Riviera) ଆଦି ରମ୍ୟ ଅଞ୍ଚଳ ଚାଲି ହୋଇଗଲା କି ତାହାର ଶ୍ୱେତ ଲିଲାକ୍ ଫୁଲ ଦେଖି ହେଲାନି । ସ୍ୱଳ୍ପ ସମୟ ଭିତରେ କେତେଟା ବା ସମ୍ଭବ ହୁଅନ୍ତା ! ତେଣୁ ଏହି ଟ୍ରେନ୍ ଯାତ୍ରା ସମୟରେ ଫ୍ରାନ୍ସର ପୁରପଲ୍ଲୀର ଦୃଶ୍ୟ ମନ ପୂରାଇ ଦେଖୁଥାଏ ।

ରେଳଗାଡ଼ି ଫ୍ରାନ୍ସର ସୀମ ଅତିକ୍ରମ କରି ଜର୍ମାନୀ ଭିତର ଦେଇ ଚାଲିଲା । ସାର ବ୍ରୋକନ୍ ଅଞ୍ଚଳରେ ଦେଖିଲି ଦୁଇପଟେ ବହୁ ନୂଆ ନୂଆ କୋଠା ଗଢ଼ି ଉଠିଛି । ବୃକ୍ଷଲତାର ଶ୍ୟାମଳିମା ଭିତରେ ମୁଣ୍ଡ ଟେକିଛି ବହୁ କାରଖାନା ଏବଂ ତାହାର ନଭସ୍ପର୍ଶୀ ଚିମିନିସବୁ ଦିଗ୍‌ବଳୟକୁ ଆବୋର ରହିଛି । ବହୁ ଘର ଭଙ୍ଗା ଚାଲିଥାଏ । ଏଗୁଡ଼ିକ ପୁରୁଣା ହେଲେ ବି ତାହାର ଆକାର ପ୍ରକାରରୁ ଜଣାଯାଉଥାଏ ସେସବୁ ବଡ଼ ଦାମିକା କୋଠା । ଏପରି ବହୁ କୋଠାବାଡ଼ି ଆମ ଦେଶର ବିଖ୍ୟାତ ସହରମାନଙ୍କର ଶୋଭା ବର୍ଦ୍ଧନ କରୁଛି । ବଡ଼ ଆଶ୍ଚର୍ଯ୍ୟ କଥା ! ଏଗୁଡ଼ାକ ଭଙ୍ଗା ଯାଉଛି କାହିଁକି ? ସହଯାତ୍ରୀମାନଙ୍କ ଭିତରୁ କାହାକୁ କାହାକୁ ପଚାରିଲି, ଏହାର କାରଣ କ'ଣ ? ଉତ୍ତର ମିଳିଲା, ଏଗୁଡ଼ାକ ବସ୍ତିଘର, ସ୍ଲମ୍ସ (Slums) । ଏସବୁ ଭଙ୍ଗାଯାଉଛି, ଏହି ଜାଗାରେ ନୂଆ କୋଠାବାଡ଼ିସବୁ ତିଆରି ହେବ ବୋଲି । କି ବିଚିତ୍ର ! ଏଗୁଡ଼ାକ ପୁଣି ସ୍ଲମ୍ସ ! ତାହାହେଲେ ଆମ ଦେଶର ବହୁ କୋଠାବାଡ଼ି ତ ଏହି ଶ୍ରେଣୀଭୁକ୍ତ ହେବ ! ମୋ ମନରେ ମହା ବିସ୍ମୟ । କ'ଣ ଏ କଥା ! ଏହି ଜର୍ମାନୀ ଦେଶ ଦ୍ୱିତୀୟ ମହାଯୁଦ୍ଧରେ ଧ୍ୱସ୍ତ ବିଧ୍ୱସ୍ତ ହୋଇଯାଇଥିଲା । ଅଜସ୍ର ବୋମା ମାଡ଼ରେ ଏହାର ସହର ବଜାର, ପୁରପଲ୍ଲୀ ଛାରଖାର ହୋଇଥିଲା । କିନ୍ତୁ ଯୁଦ୍ଧ ବନ୍ଦ ହେବାର କେତେଟା ବର୍ଷରେ ଏମାନେ ଏତେ ସମୃଦ୍ଧ ଏତେ ଉନ୍ନତ ହୋଇଗଲେ ଯେ ଏଡ଼େ ସୁନ୍ଦର ସୁନ୍ଦର କୋଠାବାଡ଼ିଗୁଡ଼ିକ ଭାଙ୍ଗୁଛନ୍ତି ତାକୁ ସ୍ଲମ୍ କହି । ଧନ୍ୟ ଏ ଜର୍ମାନୀ ଜାତି ! ଏମାନଙ୍କୁ ଧ୍ୱଂସ କରିବା, ପୂରା ପଦାନତ କରିବା ଅସମ୍ଭବ ।

ଏଥିମଧ୍ୟରେ ଆମ ଡବାକୁ ଉଠିଥାନ୍ତି ଜଣେ ଜର୍ମାନ୍ ଭଦ୍ରଲୋକ । ଅବଶ୍ୟ ବହୁଲୋକ ବିଭିନ୍ନ ଷ୍ଟେସନରେ ଗାଡ଼ିରୁ ଓହ୍ଲାଉଥାନ୍ତି, ଅନେକ

ଗାଡ଼ିରେ ଉଠିଥାନ୍ତି । କିନ୍ତୁ ଏ ଲୋକଟିର ଢଙ୍ଗ ରଙ୍ଗ ମୋତେ ଟିକିଏ ଅସ୍ୱାଭାବିକ ମନେହେଲା । ବେଶ୍ ଉଗ୍ର ଓ କର୍ମଠ ଦେଖାଯାଉଥାନ୍ତି ସେ । ଖୁବ୍ ଭଲ ସ୍ୱାସ୍ଥ୍ୟ । ତୋଫାନି ବେଗରେ ଆସି ଆସନ ଆବୋରି ବସିଗଲେ । ମୁଁ ତାଙ୍କୁ ଚାହିଁ ଚାହିଁ କରି ଲକ୍ଷ୍ୟ କରୁଥାଏ । କିଛି ସମୟ ପରେ ଦେଖିଲି ସେ ଗୋଟିଏ ପ୍ୟାକେଟ୍‌ରୁ ଗୁଡ଼ିଏ ଖଣ୍ଡେ ବଡ଼ ବଡ଼ କୁକୁଡ଼ା ଅଣ୍ଡା କାଢ଼ିଲେ । ତାକୁ ଗୋଟି ଗୋଟି କରି ରେଲଡବାର କାନ୍ଥରେ ବାଡ଼େଇ ଫଟେଇଲେ ଏବଂ ସେଥିରେ ଗୋଟିଏ ଗୋଟିଏ କଣା କଲେ । ସେ ଅଣ୍ଡାକୁ ମୁହଁରେ ଦେଇ ଶୋଷିନେଲେ ଏବଂ ତା'ର ଖୋଳଗୁଡ଼ାକୁ ବାହାରକୁ ଫୋପାଡ଼ି ଦେଲେ । ତା'ପରେ ଦୁଇଟି ଲାଲ ଲାଲ ସେଓ ପକେଟ୍‌ରୁ କାଢ଼ି ତାକୁ ଚୋବେଇଲେ । ଓଃ ! ସେ କି ଖାଇବାର ଢଙ୍ଗ ! ମୋର ପିଲାଦିନେ ପଢ଼ିଥିବା ଅସୁର କାହାଣୀ ମନେ ପଡ଼ୁଥାଏ । କି ବିଚିତ୍ର ଜୀବ ଏ !

ତାଙ୍କ ସାଙ୍ଗେ ବନ୍ଧୁତା ପାତି ଘଟଣାଟା କ'ଣ ବୁଝିବାକୁ ଚେଷ୍ଟା କଲି । ସେଥିକି ଭାଷା କଲା ବଡ଼ ଅଡ଼ୁଆ । ତାଙ୍କୁ ଇଂରାଜୀ କି ଫରାସୀ ଭାଷା ଆସେନି । ମୋତେ ଜର୍ମାନୀ ଭାଷାର ମାତ୍ର କେତୋଟି ଶବ୍ଦ ଜଣା । ତେବେ ସେ ନାନା ଅଭିନୟ କରି ତାଙ୍କ କଥା କହୁଥାନ୍ତି । କିନ୍ତୁ ମୁଁ ବୁଝୁଚି କ'ଣ ? ପ୍ରାୟ କିଛି ନୁହେଁ । ଦୈବାତ୍ ସେ ଡବାରେ ଜଣେ ଇଂରେଜୀ ଲୋକ ଥିଲେ ଯେ କି ଜର୍ମାନୀ ଭାଷା ଜାଣିଥିଲେ । ତାଙ୍କ ସାହାଯ୍ୟରେ କଥାଟା ବୁଝିନେଲି । ସେ ଜଣେ ଜର୍ମାନ୍ ଶ୍ରମିକ । ଫ୍ରାଙ୍କ୍‌ଫୋର୍ଟର କୌଣସି କାରଖାନାରେ କାମ କରନ୍ତି । କିନ୍ତୁ ତାଙ୍କ ଘର ମଫସଲ ଅଞ୍ଚଳରେ । ସେ ନିତି ଭୋରରୁ ଉଠି କେଉଁଦିନ ସାଙ୍ଗରେ କିଛି ଅଣ୍ଡା ଓ ସେଓ, କେଉଁଦିନ କିଛି ସାଣ୍ଡୱିଚ୍ ଧରି ଘରୁ ବାହାରି ଆସନ୍ତି । ଘରେ ଖାଇପିଇ ଆସିବାକୁ ବେଳ ହୁଏନି । ତେଣୁ ଗାଡ଼ିରେ ଗଲାବେଳେ ଏହି ଖାଦ୍ୟର ସଦ୍‌ବ୍ୟବହାର କରନ୍ତି । ମଝିରେ କେଉଁଠି ଷ୍ଟେସନ୍‌ରେ କି ତାଙ୍କ ନିଜ କାରଖାନାରେ ଚା' କପେ ପିଇଦିଅନ୍ତି । ଏତିକିରେ ତାଙ୍କର ପ୍ରାତଃଭୋଜନ ସାଙ୍ଗ ହୁଏ । ମଧ୍ୟାହ୍ନରେ କେଉଁଠି କଣ ଟିକିଏ ଖାଇ ଦିଅନ୍ତି । ସନ୍ଧ୍ୟାବେଳକୁ ଫେରନ୍ତି ଘରକୁ । ପବ୍‌କୁ ଯାଇ ଭଲକରି ପିଅନ୍ତି । ସେଠାରୁ ଫେରି ଘରେ ପେଟେ ଖାଆନ୍ତି

ରୋଟି, ମାଂସ, ଅଣ୍ଡା, ସାକ୍‌ସବ୍‌ଜ ଯାହା ସୁବିଧା ହୁଏ । ତା'ପରେ ଶୋଇଯାଇ ଭୋରରୁ ଉଠନ୍ତି ଏବଂ ପୁଣି ତାଙ୍କ କାରଖାନାକୁ ବାହାରନ୍ତି । ପ୍ରତିଦିନ ରାତିରେ ତାଙ୍କର ନିଜ ପରିବାର ସହିତ ମାତ୍ର କେତେ ଘଣ୍ଟା ଦେଖାସାକ୍ଷାତ, ନଚେତ୍ ବାକିସମୟତକ ତାଙ୍କର କାରଖାନାକୁ ଯିବା ଆସିବା ଓ କାମ କରିବାରେ ଯାଏ । ଅବଶ୍ୟ ଆମ ଦେଶର କଲିକତା ଓ ବମ୍ବେ ଆଦି ସହରରେ ବହୁ ଲୋକ ଏପରି ଭାବରେ କାମ କରନ୍ତି । କିନ୍ତୁ ଜର୍ମାନ୍ ଶ୍ରମିକ ଯେପରି କର୍ମଠ ଭାବରେ ଓ ହସଖୁସିରେ ତାଙ୍କର ଦୈନନ୍ଦିନ କାମ କରୁଥିଲେ ସେଇଟା ମୋ ମନକୁ ବେଶ ଛୁଇଁଲା । ହଁ, ଏହି କଠୋର ପରିଶ୍ରମୀ ଜର୍ମାନ୍ ଲୋକଙ୍କ ଯୋଗେ ଜର୍ମାନୀର ଆଜି ଏ ଅର୍ଥନୈତିକ ଅଭ୍ୟୁଦୟ !

ଲଣ୍ଡନ୍‌ରୁ ମୁଁ ଫ୍ରାଙ୍କଫୋର୍ଟର ଜଣେ ବ୍ୟବସାୟୀ ଅନୁଷ୍ଠାନକୁ ଲେଖିଥାଏ ମୋ ରହିବାର ବନ୍ଦୋବସ୍ତ କରିବାକୁ । ସେ ସବୁ ଠିକ୍‌ଠାକ୍ କରି ହୋଟେଲର ଠିକଣା ମୋତେ ଜଣାଇ ଦେଇଥାନ୍ତି । ମୁଁ କିନ୍ତୁ ତାଙ୍କୁ ମୋ ଆର୍ଥିକ ସମ୍ବଳର ସ୍ୱଳ୍ପତା ସମ୍ବନ୍ଧରେ କିଛି ଲେଖି ନ ଥାଏ । ସେଇଟା ସବୁ ସମୟରେ ଜଣାଇବା ସମ୍ଭବ ହୁଏନି, ମନେ ପଡ଼େନି । ଫ୍ରାଙ୍କ୍ ଫୋର୍ଟ ରେଲ ଷ୍ଟେସନରେ ପହଞ୍ଚିବା ପରେ ମୁଁ ଟିକିଏ ବିବ୍ରତ ହୋଇପଡିଲି । ଏକେ ତ ଭାଷାର ଅସୁବିଧା । କାହାକୁ କିଛି ମନଖୋଲି କହିବା ସମ୍ଭବ ନୁହେଁ । ଦ୍ୱିତୀୟରେ ସେ ବିରାଟ ଷ୍ଟେସନର ଆକାର ପ୍ରକାର, ଜର୍ମାନ୍ ଲୋକଙ୍କ ଉଦ୍ଧାମ, କର୍କଶ ଭାବ ଦେଖି ମନରେ ଗୋଟାଏ ଛନକା ପଶିଲା । ଏ ରାଜ୍ୟରେ ମୁଁ କେମିତି କେତେଦିନ ଚଳିବି ! କିପରି ହୋଟେଲ ମୋ ପାଇଁ ବ୍ୟବସ୍ଥା କରାଯାଇଚି ଏବଂ ସେଥିରେ କେତେ ଖର୍ଚ୍ଚ ପଡ଼ିବ, ଏମିତି ନାନା କଥା ମୁଣ୍ଡରେ ଖେଳୁଥାଏ ।

ଯାହାହେଉ ଷ୍ଟେସନ୍‌ରେ ଥିବା ବୈଦେଶିକ-ମୁଦ୍ରା ବ୍ୟାଙ୍କରେ ମୋ ପାଖରେ ଥିବା ଫ୍ରାଙ୍କ୍‌କୁ ଜର୍ମାନ ମାର୍କରେ ପରିଣତ କଲି । ହୋଟେଲରେ ଖିଆପିଆକୁ ଏଡ଼େଇବାକୁ ଷ୍ଟେସନରେ ସାମାନ୍ୟ କିଛି ଜଳପାନ କରି ବାହାରକୁ ବାହାରିଲି । ଷ୍ଟେସନ ବାହାରେ ବହୁ ଟ୍ୟାକ୍‌ସି ଜମା ହୋଇଥାଏ । ସେଥିରୁ ଗୋଟିକୁ ଆଶ୍ରୟ କରିବାର କଥା । ତା' ନହେଲେ ଏହି ଅଜ୍ଞାତ ସହରରେ ମୋ ହୋଟେଲ ଖୋଜି ବାହାରି

କରିବା ଅସମ୍ଭବ ହେବ । ଟ୍ୟାକ୍‌ସିରେ ବସି ଫ୍ରାଙ୍କ୍ ଫୋର୍ଟ ସହର ଭିତରେ ପଶିଲି । ପ୍ୟାରିସ୍ ଓ ଫ୍ରାଙ୍କ୍ ଫୋର୍ଟର ପ୍ରାର୍ଥକ୍ୟ ଯେମିତି ସ୍ପଷ୍ଟ ଜାଣି ହୋଇଯାଉଥାଏ । ପ୍ୟାରିସ୍‌ଟା ବେଶ୍ ଆନନ୍ଦ ଉତ୍ସବରେ ଭରା । ସେଠାରେ ସବୁଟା ବିଳାସପର୍ଣ୍ଣ, ଆଡ଼ମ୍ବରମୟ ମନେ ହୁଏ । ସତେ ଅବା କେହି ରୂପଶୀଳା କେଳିକୁଟିଳା ବିଳାସିନୀ ଯୁବତୀ ତାର ରୂପ ସମ୍ଭାରରେ ଘୁରିଆଡ଼େ ଗୋଟାଏ ଚମକ ଖେଳାଇ ଆନନ୍ଦରେ ବିହାର କରୁଚି । କିନ୍ତୁ ଫ୍ରାଙ୍କ୍‌ଫୋର୍ଟ ଜଣାଯାଏ ଖୁବ୍ କର୍ମଠ, କର୍ମତତ୍ପର ପରି । ପୁରୁଷମାନେ ଚାଲୁଥାନ୍ତି ସୈନ୍ୟମାନେ ପାଦ ପକେଇଲା ପରି । ସମସ୍ତଙ୍କର ବଳିଷ୍ଠ, ଶକ୍ତ ରୂପ । ପ୍ୟାରିସ୍ ସହରରେ ଯେମିତି ମହିଳାମାନେ ହାଉଯାଉ ହେଉଥାନ୍ତି ଏଠି ସେମାନେ ସେତେ ଦେଖାଯାଉ ନଥାନ୍ତି ।

ହୋଟେଲ ସାମନାରେ ଟ୍ୟାକ୍‌ସି ମୋତେ ଛାଡ଼ିଦେଇ ଚାଲିଗଲା । ମୁଁ ମୋ ସୁଟ୍‌କେଶ୍ ଖଣ୍ଡିକ ଧରି, ବେଶପୋଷାକ ସଜାଡ଼ି ଭିତରକୁ ପଶିଲି । ବିରାଟ ଏକ କୋଠା । ସାମନାରେ ତାର ସୁନ୍ଦର ବଗିଚା, କିନ୍ତୁ ସାମନା କବାଟ ବନ୍ଦ ଥାଏ । କେହି ଦ୍ୱାରପାଳ ନ ଥାନ୍ତି । ଏ କ'ଣ ! ହୋଟେଲ ଖୋଲାନାହିଁ କାହିଁକି ! ଦୁଆର ମୁହଁ ପାଖରେ ଠିଆ ହୋଇ କାହାକୁ ଡାକିବି, କମିତି ସଙ୍କେତ ଦେବି ଚିନ୍ତା କରୁଚି ଏହି ସମୟରେ ଏକ ପ୍ରକାର ଚିଁ ଚିଁ ଶବ୍ଦ ଶୁଣିଲି । "ଆପଣ ଶ୍ରୀଯୁକ୍ତ ମିଶ୍ର ନା ? 'ହଁ' ବୋଲି ମୋ ମୁହଁରୁ ବାହାରି ପଡ଼ନ୍ତେ ପୁଣି ଶୁଣାଗଲା "ଆମେ ଆପଣଙ୍କୁ ଅପେକ୍ଷା କରିଚୁ । ମୁଁ ଆପଣଙ୍କୁ ଫ୍ରାଙ୍କ୍‌ଫୋର୍ଟକୁ ସ୍ୱାଗତ ଜଣାଉଛୁ ।" କିଏ ଏପରି କହୁଚି । କେଉଁଠୁ କହୁଚି । ମୁଁ ଆସି ପହଞ୍ଚିବ ର ଠିକ୍ ସମୟ ଏମାନେ କମିତି ଜାଣିଲେ ଏମିତି ନାନା ଚିନ୍ତାକରି ଚାରିଆଡ଼କୁ ଚାହୁଁଚି ଏହି ସମୟରେ ଦୁଆରଟା ଖୋଲିଗଲା ଓ ସଙ୍ଗେ ସଙ୍ଗେ ଜଣେ ଯୁବତୀ ମହିଳା ମୋ ହାତରୁ ସୁଟ୍‌କେଶ୍‌ଟା ଧରିନେଇ ସହର୍ଷ ବଦନରେ ମୋତେ ଉପରକୁ ଉଠିବାକୁ ଇଙ୍ଗିତ ଦେଇ ଚାଲିବାକୁ ଆରମ୍ଭ କଲେ । ଚାଲି ତ ନୁହେଁ ସେ ଏକ ପ୍ରକାର ଦଉଡ଼ । ଏ ଘଟଣାସବୁ ଏପରି ଦ୍ରୁତ ଗତିରେ ଚାଲିଥାଏ ଯେ ମୁଁ ସବୁଟାକୁ ବୁଝିବାକୁ, ହୃଦୟଙ୍ଗମ କରିବାକୁ ବେଳ ପାଇଲି ନି । କିନ୍ତୁ ସେ ଯୁବତୀଙ୍କ ପଛରେ ଧାଇଁଥାଏ ଯନ୍ତ୍ରଚାଳିତ ପରି । ଉପରକୁ ଉଠିବା ପୂର୍ବରୁ ଲକ୍ଷ୍ୟକଲି ହାତ ଦେଶରେ ଏକ

କ୍ଷୁଦ୍ର ଯନ୍ତ୍ର ସଂଯୋଗ କରାଯାଇଚି; ବୋଧହୁଏ ଲାଉଡ୍ ସ୍ପିକର । ଓ ! ଏହାରି ଜରିଆରେ ତେବେ ମୋତେ ସ୍ୱାଗତ କରାଗଲା ।

ଲିଫ୍ଟରେ ମୋତେ ସେ ତୃତୀୟ ମହଲାକୁ ନେଇଗଲେ । ଲିଫ୍ଟ ଦ୍ୱାରର ଅଳ୍ପ ଦୂରରେ ବସିଥାନ୍ତି ଜଣେ ବରାଟକାୟ ବୃଦ୍ଧ ଲୋକ । ଲାଲ ଟକ୍ ଟକ୍ ଗୋଲ ମୁହଁ । ନାକକୁ ଲାଗି ଗୋଚ୍ଛାଏ ଗୋଚ୍ଛାଏ ଧଳା ନିଶ । ତାର ଶେଷ ଭାଗକୁ ସଯତ୍ନରେ ଗୋଜିଆ କରାଯାଇଛି । ଛାତି ପାଖରେ ପୋଷାକରେ କେତେଟା ମେଡ଼ାଲ୍ ଝୁଲୁଚି । କାଇଜରଙ୍କ ଚେହେରା ପରି ମୋତେ ଦିଶୁଥାଏ । ମୁଁ ଭାବିଲି ସେ ହୋଟେଲର ମ୍ୟାନେଜର ବୋଲି । ତେଣୁ ତାଙ୍କୁ ଇଂରାଜୀରେ ଅଭିବାଦନ ଜଣାଇ ତାଙ୍କ ସହିତ କଥାବାର୍ତ୍ତା ଆରମ୍ଭ କରିଦେଲି । କିନ୍ତୁ ସେ ଯୁବକଟି ସେଠାରେ ବେଶୀ ସମୟ ନ ଅଟକି ପୁଣି ଆଗକୁ ମାଡ଼ି ଚାଲିଲେ । ତେଣୁ ମୁଁ ତାଙ୍କୁ ଅନୁସରଣ କରିବାକୁ ବାଧ୍ୟ ହେଲି । ସେ ମୋତେ ଆଉ ଜଣେ ମଧ୍ୟବୟସ୍କ ଭଦ୍ରଲୋକଙ୍କ ପାଖକୁ ନେଇଗଲେ । ଯାହାଙ୍କ ବେଶଭୂଷା, ଢଙ୍ଗରଙ୍ଗରେ ସେତେ ଉଗ୍ରତା ନ ଥିଲା । କିନ୍ତୁ ବେଶ୍ ପରିଷ୍କାର, ପରିଚ୍ଛନ୍ନ ଓ ମାର୍ଜିତ । ତାଙ୍କ ସାମନାରେ ପଡ଼ିଥିବା ଟେବୁଲରେ କେତେଟା ବଡ଼ ବଡ଼ ଖାତା ଓ ଲେଖାଲେଖି ସରଞ୍ଜାମ ରହିଥାଏ । ସେ ଦରଖଣ୍ଡିଆ ଇଂଲିଶ୍‌ରେ ମୋତେ ସାଦର ସମ୍ଭାଷଣ ଜଣାଇ ଗୋଟିଏ ଖାତାରେ ମୋର ଠିକଣା ଦେଇ ଦସ୍ତଖତ କରିବାକୁ କହିଲେ । ତା'ପରେ ମୋ ପାଇଁ ଉଦ୍ଦିଷ୍ଟ କୋଠରୀକୁ ମୋତେ ନେଇଯିବାକୁ ସେ ଯୁବକଟିଙ୍କୁ ଜର୍ମାନ୍ ଭାଷାରେ ନିର୍ଦ୍ଦେଶ ଦେଲେ ।

ମୁଁ ଯଦିଓ ଏ ତୋଫାନ କାର୍ଯ୍ୟକ୍ରମରେ ଟିକିଏ ଧାଏଁଲା ହୋଇ ଯାଇଥାଏ ତଥାପି ମୋ ବୁଦ୍ଧିବୃତ୍ତିଟା କାମ କରିବାକୁ ଆରମ୍ଭ କରିଥାଏ । ଯେ କେତେ ଜଣ ଚେହେରାବନ୍ତ ଲୋକଙ୍କୁ ଦେଖୁଥାଏ ସେ ସମସ୍ତଙ୍କୁ ସହାସ୍ୟ ବଦନରେ "ସୁଦିନ" କହି ଅଭିବାଦନ ଜଣାଉଥାଏ । କାରଣ ସେମାନଙ୍କ ଭିତରୁ କିଏ ମ୍ୟାନେଜର, କିଏ ଆଉ କଣ ମୁଁ ଠିକ୍ କରିପାରିଲିନି । ତେଣୁ ସମସ୍ତଙ୍କୁ ଅଭିବାଦନ ଜଣାଇଲି । ଯେ ସେମାନଙ୍କ ଭିତରେ ଅଭିନନ୍ଦନୀୟ ସେମାନେ ନିଶ୍ଚୟ ସେମାନଙ୍କ ପ୍ରାପ୍ୟ ପାଇଯିବେ । ଗୋଟିଏ ଘଟଣା ମନେ ପଡ଼ିଲା । ଅନେକ ଦିନ ତଳର କଥା । କୌଣସି

ବ୍ରାହ୍ମଣ ଶାସନରେ ବହୁ ମର୍ଯ୍ୟାଦାଶୀଳ ସାଆନ୍ତ ଥାଆନ୍ତି । ଶମ୍ଭୁ ସାଆନ୍ତ, ବାଜପେୟୀ ସାଆନ୍ତ, ବ୍ରହ୍ମା ସାଆନ୍ତ, ପୁରୋହିତ ସାଆନ୍ତ ଇମିତି କେତେ । ସେ ଗାଁର ବଡରୁ ବୁଢ଼ା ବାଣକର ମନେ ରହେନ କିଏ କି ସାଆନ୍ତ ଏବଂ କାହାକୁ ପ୍ରଣାମ କରିବାକୁ ପଡ଼ିବ । ତେଣୁ ସେ ବ୍ରାହ୍ମଣ ଶାସନ ଭିତରେ ପଶିଲା କ୍ଷଣି ମୁଣ୍ଡ ନୁଆଁଇ ହାତଯୋଡ଼ି ଚାଲେ । ଯାହାକୁ ଦେଖେ ପ୍ରଣାମ ବୋଲି କହେ । ଏଥିରେ ତାର କେଉଁ ସାଆନ୍ତଙ୍କୁ ଅବମାନନା ବା ଅସମ୍ମାନ କରିବାର ଭୟ ରହେନି । କାରଣ ସମସ୍ତଙ୍କୁ ପ୍ରଣାମ କଲେ ଯେ ତା'ଭିତରେ ଯୁଁ ସାଆନ୍ତ ଥିବେ ସେ ତାଙ୍କର ପ୍ରାପ୍ୟ ସମ୍ମାନ ପାଇଯିବେ । ମୁଁ ସେ ଜର୍ମାନ ହୋଟେଲରେ ମୋଟାମୋଟି ସେ ବୁଢା ବାଣକର କୌଶଳ ଅବଲମ୍ବନ କଲି ।

ପରେ କିନ୍ତୁ ସେ ପରିଚାରିକା ଯୁବତୀଙ୍କଠାରୁ ବୁଝିଲି ଯେ ଲିଫ୍ଟ ଦୁଆର ମୁହଁରେ ଯେ ବସିଥିଲେ ସେ ହେଉଛନ୍ତି ଦରଓ୍ୱାନ୍ ଏବଂ ତା'ପରେ ଯେଉଁ ଭଦ୍ରଲୋକଙ୍କ ସଙ୍ଗେ ଦେଖାହେଲେ ସେ ହେଲେ ମ୍ୟାନେଜର । ଅନ୍ୟମାନେ ହେଲେ ହୋଟେଲର କର୍ମଚାରୀ । ତେବେ ମୋର କିଛି ଅବଶୋଷର କାରଣ ନଥିଲା । କାରଣ ମୁଁ ତ ଯାହାକୁ ଦେଖିଲି ତାକୁ ଶୁଭଦିନ କହି ସମ୍ବର୍ଦ୍ଧନା ଜଣାଉଛି । ତେଣୁ ପୂଜ୍ୟପୂଜାର ବ୍ୟତିକ୍ରମ ହେବା ଭୟ ନାହିଁ । ଅବଶ୍ୟ ଏ ସମ୍ମାନସୂଚକ ସମ୍ବର୍ଦ୍ଧନା ଟିକିଏ ଅଧିକ ହୋଇଗଲା । ହେଉ, ଅଧିକନ୍ତୁ ନ ଦୋଷାୟ ।

ସେ ପରିଚାରିକା ମହାଶୟା ମୋତେ ପାଶ୍ଚ୍ୱେଟି ନେଇ ମୋ ବଖରାରେ ପହଞ୍ଚାଇ ଦେଲେ । ମୁଁ ଯେମିତି ଏ ଭିନ୍ନ ବ୍ୟବସ୍ଥାରେ ଟିକିଏ ଛଟପଟ ହୋଇଯାଇଥାଏ । ଜୋର୍‌ରେ ଝିପଟିବା ଫଳରେ ବାଟା ଯୋତା ଦାଉରୁ ଗୋଡ଼ପାଦ ଦିଟା କଟକଟ କରି ଉଠିଥାନ୍ତି । ମୁଁ ଧଇଁସଇଁ ହୋଇ ଉଠିଥାଏ । ତେଣୁ ସେ ଯୁବତୀ ଯେତେବେଳେ ମୋ ରହିବାର ସମସ୍ତ ତାତ୍ତ୍ୱିକ ଉପଦେଶ ଦେଇ, କିଛି ଦରକାର ହେଲେ ଡାକଘଣ୍ଟି ସୁଇଚ ଚିପି ତାଙ୍କୁ ତଲବ କରିବାକୁ ନିର୍ଦ୍ଦେଶ ଦେଇ ଚାଲିଗଲେ ମୁଁ ବିଶେଷ ଆଶ୍ୱସ୍ତ ହୋଇ ପଡ଼ିଲି । ଏଠାରେ ଜୀବନର ଗତି ଯେ ବିଲାତ ଅପେକ୍ଷା ଅଧିକ ଚଞ୍ଚଳ ଏକଥା ବୁଝିବାକୁ ଆଉ ବାକି ରହିଲାନି ।

ମୋ କୋଠରୀର ଚାରିଆଡ଼କୁ ଚାହିଁଲି । ସବୁଟା ବେଶ୍ ସଫାସୁତରା ଚକ୍‌ଚକ୍ ଝକ୍‌ଝକ୍ ଦେଖାଯାଉଛି । ଶୋଇବାକୁ ପଡ଼ିଛି ସୁନ୍ଦର ଭୁଲି-ଚଳ୍ପ । ତା' ଉପରେ ବିଛାଯାଇଛି ତୁଷାର-ଧବଳ ଚାଦର । ମୁଁ ମୋର ବେଶ-ପୋଷାକକୁ ଲକ୍ଷ୍ୟ କଲି । ସେଇଟା ବଡ଼ ମଇଳା, ଅପରିଷ୍କାର ମନେହେଲା । ତାକୁ ଟିକିଏ ଝାଡ଼ିଝୁଡ଼ି ସଫାସୁତୁରା କରିବାକୁ ବସିଲି । କିନ୍ତୁ ସେଇଟା ଯେମିତି ବଡ଼ ଧୂଳି-ଧୂସର । ଲଣ୍ଡନ ଓ ପ୍ୟାରିସ୍‌ର ଯାବତୀୟ ଆବର୍ଜନା ଯେପରି ସୂକ୍ଷ୍ମ ରୂପରେ ତା' ଭିତରେ ବସା ବାନ୍ଧିଛି । ମନେ ହେଲା ମୋର ଅସୁନ୍ଦର, ଅପରିଷ୍କାର ଅଙ୍ଗ-ପ୍ରତ୍ୟଙ୍ଗ, ବସନ-ଭୂଷଣ ସେହି ସୁକୋମଳ ସରସ ସୁନ୍ଦର ଶଯ୍ୟାକୁ ସ୍ପର୍ଶ କଲେ ତାକୁ ହୁଏତ କଳୁଷିତ, କଳଙ୍କିତ କରିବ । ସତେ ଅବା କେଉଁ ଶାପଗ୍ରସ୍ତା ସୁନ୍ଦରୀ ରାଜକୁମାରୀଙ୍କ ପାଖକୁ ଜଣେ ଜୀର୍ଣ୍ଣ-ଶୀର୍ଣ୍ଣ, ଅପରିଷ୍କାର-ଅପରିଚ୍ଛନ୍ନ ଭିକାରୀ ଆଗେଇ ଯାଉଛି ସେଇ ସୁନ୍ଦରୀ ସୁକୁମାରୀର ଅପରୂପ ଅଙ୍ଗଲାବଣ୍ୟକୁ ସ୍ପର୍ଶ କରିବାକୁ କିନ୍ତୁ ପାରୁନି, ବଳସାହସ ପାଉନି ନିଜର ଦୈନଭରା ଦୂଷିତ ଦେହେଡ଼ିକୁ ଲକ୍ଷ୍ୟକରି । ତା'ର ଦେହ-ମନ ସଙ୍କୁଚିତ ହୋଇଯାଉଛି । ମୋର ବି ସେଇ ଅବସ୍ଥା । ତେବେ ସାହାସ ବାନ୍ଧି ନିଜ ବେଶ-ପୋଷାକକୁ ଆଉଥରେ ଝାଡ଼ି ସେଇ ଶେଯ ଉପରେ ଲଥ୍‌କିନା ବସି ପଡ଼ିଲି । ଖଟଟା ଯେମିତି ତଳକୁ ତଳ ଦବିବାରେ ଲଗିଲା । ଏଁ, ଏତେ ବଡ଼ ସୁନ୍ଦର ପଲଙ୍କଟା ମୋ ଦେହ ଭରରେ ଭାଙ୍ଗିଗଲା କି ! ଓ ! ନା, ଶେଯଟାରେ ଉଚ୍ଚା ନରମ ଗଦି ଦିଆଯାଇଛି । ବିଚିତ୍ର ଜର୍ମାନ୍ ବ୍ୟବସ୍ଥା !

ଫ୍ରାଙ୍କଫୋର୍ଟରେ ବହୁତ ବୁଲାବୁଲି କରି ଅନେକ କାରଖାନା ଦପ୍ତର, ବଜାର-ହାଟଣୀ ଦେଖିଲି । ସମସ୍ତେ କର୍ମଠ, ଚଞ୍ଚଳ ପରି ମନେ ହେଲେ । ହାତରେ ଥାଏ ଖୁବ୍ କମ୍ ସମୟ । ତେଣୁ ବିଶେଷ ବୁଲାବୁଲି ସମ୍ଭବ ହେଲାନି । ତେବେ ଯେଉଁଠାକୁ ଗଲି ଜର୍ମାନ୍‌ମାନଙ୍କର କାରିଗରି କୌଶଳ, ଯନ୍ତ୍ରପାତି ତିଆରିର ଅପୂର୍ବ ପ୍ରତିଭା ମୋତେ ବେଶ୍ ମୁଗ୍ଧ କରିଥିଲା ।

ଫ୍ରାଙ୍କଫୋର୍ଟରୁ ଗଲି ହେଡେଲବର୍ଗ । ହେଡେଲବର୍ଗ ସହର ବିଶେଷ ବଡ଼ ନ ହେଲେ ବି ବେଶ୍ ଏକ ସମୃଦ୍ଧ ଶିଳ୍ପାଞ୍ଚଳ । ସେଠାରେ ଥିବା ମୁଦ୍ରଣ-ଯନ୍ତ୍ରର ବିଖ୍ୟାତ କାରଖାନା ଦେଖିବାର

କଥା । ଲଣ୍ଡନରୁ ଚିଠି ଲେଖି ଏଠାରେ ବୁଲାବୁଲାର ବ୍ୟବସ୍ଥା କରିଥିଲି । ନିର୍ଦ୍ଦିଷ୍ଟ ଦିନ ସେଠାରେ ପହଞ୍ଚିବାରୁ କାରଖାନାର କର୍ତ୍ତୃପକ୍ଷ ମୋତେ ସାଦରେ ଅଭ୍ୟର୍ଥନା ଜଣାଇ ତାଙ୍କ ଅତିଥି ଭବନରେ ନେଇ ରଖିଲେ । ସେଠାରେ ଥିବା କଳକାରଖାନା, ଦୋକାନ ବଜାର ବହୁତ ବୁଲି ଦେଖିଲି । ଓଃ ! ଜର୍ମାନୀର କି ଯାନ୍ତ୍ରିକ ଓ ଅର୍ଥନୈତିକ ଅଭ୍ୟୁଦୟ ! କି ବିରାଟ ବିରାଟ କାରଖାନା ! କଳ-କବ୍‌ଜା ତିଆରି କରିବାର କି ଅପୂର୍ବ କୌଶଳ ! ଶ୍ରମିକମାନଙ୍କର କି ନିଷ୍ଠାପର କର୍ମତତ୍ପରତା !

କାରଖାନାର ଉତ୍ପାଦନ ଓ ଉତ୍ପାଦିକା ଶକ୍ତି ଯଥେଷ୍ଟ । ତେଣୁ ଶ୍ରମିକ-ମଙ୍ଗଳ କାର୍ଯ୍ୟରେ ବହୁ ଅର୍ଥବ୍ୟୟ କରାଯାଇ ପାରୁଛି । ସେମାନଙ୍କ ପାଇଁ ଯେଉଁ ବିରାଟ ବିରାଟ ବିଳାସପୂର୍ଣ୍ଣ ବିଶ୍ରାମାଗାର ତିଆରି କରା-ଯାଇଛି ତାକୁ ଦେଖିଲେ ଆଖି ଝଲସି ଯିବ । ହଜାର ହଜାର ଲୋକଙ୍କ ବସିବା ପାଇଁ ଗଦିଦିଆ ଚଉକି ପଡ଼ିଛି । ତା'ର ସମ୍ମୁଖରେ ଏକ ରମଣୀୟ ରଙ୍ଗମଞ୍ଚ ରହିଛି ଯେଉଁଠାରେ ନୃତ୍ୟଗୀତର ବ୍ୟବସ୍ଥା କରାଯାଇ ପାରିବ । ସେହି ଘରେ ବସି ଶ୍ରମିକମାନେ ସେମାନଙ୍କର ମଧ୍ୟାହ୍ନ ଭୋଜନ କରନ୍ତି । ପରିବେଶଟି ବେଶ୍ ସ୍ପୃହଣୀୟ ଓ ଚମତ୍କାର ମନେହେଲା । ଆହୁରି ଚମତ୍କାର ଲାଗିଲା ସେମାନଙ୍କ କାରଖାନାରେ ଖଞ୍ଜା ଯାଇଥିବା ଯାନ୍ତ୍ରିକ ବ୍ୟବସ୍ଥା । ଆମେ ଘୁରିଆଡ଼େ ବୁଲି କଳ-କବ୍‌ଜା ଦେଖିବା ସମୟରେ କାନ୍ଥରେ ପ୍ରଚ୍ଛନ୍ନ ଭାବରେ ରଖାଯାଇ ଥିବା କ୍ୟାମେରାରେ ଆମ ଫଟୋ ଉଠିଯାଉଥାଏ । ମୋର ମନେ ହେଉଥାଏ ମୁଁ ଯେପରି ଏକ ରହସ୍ୟମୟ ପରିସର ଭିତରେ ଗତି କରୁଛି ।

ମନ ମୋର ଯେପରି ଚଞ୍ଚଳ ହୋଇ ଉଠିଲାଣି । ନିଜ ଦେଶ ଓ ପରିବାରଙ୍କ କଥା ମନେ ପଡ଼ି ମୁଁ ବଡ଼ ବିବ୍ରତ ହୋଇ ଉଠୁଥାଏ । କିପରି ଏ ବୁଲାବୁଲି କାମ ସାରି ସ୍ୱଦେଶ ଅଭିମୁଖରେ ବାହାରିବି, ସେ ହୋଇଥାଏ ପ୍ରଧାନ ଚିନ୍ତାର ବିଷୟ । ତେଣୁ ନିଜ ଘର ବାହୁଡ଼ା ପାଇଁ ପ୍ରସ୍ତୁତ ହେଉଥାଏ । ହେଡ଼ଲବର୍ଗ ବଜାରରେ ବୁଲି ଦୁଇଟା ଘଣ୍ଟା, ଗୋଟିଏ ପ୍ରୋଜେକ୍ଟର, ଗୋଟିଏ ଟ୍ରାଞ୍ଜିଷ୍ଟର ରେଡ଼ିଓ କିଣିଲି ।

ଅନେକଙ୍କଠାରୁ ଶୁଣିଥାଏ ଜର୍ମାନ୍ ବଜାରରେ ଏସବୁ ଜିନିଷ ଶସ୍ତା । ଆଜି ଅନେକ ପ୍ରକାର ଲୋଭନୀୟ ଜିନିଷ ବଜାରରେ ଦେଖିଲି । ସବୁ କିଣିବାକୁ ଇଚ୍ଛା କିନ୍ତୁ ପ୍ରଥମରେ ଆବଶ୍ୟକ ଅର୍ଥର ଅଭାବ, ଦ୍ୱିତୀୟରେ କଷ୍ଟମସ୍ ଅର୍ଗଳୀ ଦେଇ ଏସବୁ ନେବାର ଅସୁବିଧା କଥା ଚିନ୍ତା କରି ସେଥିରୁ କ୍ଷାନ୍ତ ହେଲି ।

ଏଥି ମଧ୍ୟରେ ମୋର ଆସିଯାଇଥାଏ ଘୋର ପରିବର୍ତ୍ତନ । ଆଗେ ଆଉ କଣ ଦେଖିବି, ଆଉ କୁଆଡ଼େ ବୁଲିବି ବୋଲି ଯେମିତି ବିକଳ ହେଉଥିଲି ସେ ସବୁ ନାହିଁ । ଏବେ ସ୍ୱଦେଶକୁ ଫେରିବା ପାଇଁ କେତେ ଦିନ ବାକି ଉହିଲା ଏବଂ ଜାହାଜରେ ବସିବା ପରଠୁ କଣ କଣ କରିବି, କେଉଁଠାରୁ କେଉଁ ଜିନିଷ କିଣିବି ସେଇଟା ଯେମିତି ମନକୁ ବେଶୀ ଆଲୋଡ଼ିତ କରୁଥାଏ । ଅନେକ ବେଳେ ମନେ ପଡ଼ୁଥାଏ ସ୍ତ୍ରୀ-ପିଲାଙ୍କ କଥା । ସେମାନେ ମୋ ଫେରିବା ବାଟକୁ ବିକଳ ହୋଇ ଅପେକ୍ଷା କରିଥିବେ । ତଥାପି ଯେମିତି ଏଣ୍ଟ ବୁଲାବୁଲିର ମୋହ ଯୁଦ୍ଧ ଛୁଟୁ ନ ଥାଏ । ତେଣୁ ତରତର ହରବର ହୋଇ ଗୁଡ଼ାଏ ଏଣେ ତେଣେ ବୁଲାଲି । ପୁଣି ଫେରି ଆସିଲି ପ୍ୟାରିସ୍‌କୁ । ଏଣ୍ଟଠାରେ ୟୁରୋପ ଭ୍ରମଣ ସମାପ୍ତ କରି ଲଣ୍ଡନ ଫେରିଯିବାକୁ ମନସ୍ଥ କରିଥାଏ । ଆଜି ଠିକଏ ପ୍ୟାରିସ୍ ସହର ଭଲକରି ଦେଖିବାକୁ, ଏହାର ଗଳିକନ୍ଦି ଆବିଷ୍କାର କରିବାକୁ ମନ ବିକଳ ହେଉଥାଏ । ପୁଣି ଭାବୁଥାଏ କଣ ଅଛି ଏ ସହରରେ ଏତେ ଦେଖିବାକୁ । କଣ ପାଇଁ ପୃଥିବୀରେ ଯାର ଏତେ ଖ୍ୟାତି ! ବୁଚିଆଡ଼େ ଆମୋଦ ପ୍ରମୋଦର ଅଫୁରନ୍ତ ବ୍ୟବସ୍ଥା, ଅନ୍ଦର ମହଲମାନଙ୍କରେ ଉଲଗ୍ନ ଉଦ୍ଭଟ ଯୌନ କାରବାର, ଏଣ୍ଟସବୁ ଏହାକୁ ଏତେ ଜନପ୍ରିୟ କରିଛି ।

ଫରାସୀମାନେ ବଡ ଆତ୍ମାଭିମାନୀ ଓ ନିଜର ସଭ୍ୟତା ସଂସ୍କୃତି ନେଇ ସେମାନଙ୍କର ଖୁବ୍ ଗର୍ବ । କିନ୍ତୁ ଏମାନଙ୍କର ଶକ୍ତି-ସାମର୍ଥ୍ୟ, ବଳ-ବୀରତ୍ତ୍ୱ ବଡ଼ ସୀମିତ । ସେସବୁ ଆସିବ କୁଆଡ଼ୁ ! ନାନା ବିଳାସ-ବ୍ୟସନରେ ମାତି ଏମାନେ ନିଜକୁ ବଡ଼ ଦୁର୍ବଳ କରିଚନ୍ତି । ବହୁବାର ଏମାନେ ଚେଷ୍ଟା କରିଚନ୍ତି ୟୁରୋପରେ ପ୍ରଭୁତ୍ୱ ବିସ୍ତାର କରିବାକୁ ।

କିନ୍ତୁ ପାରିନାହାନ୍ତି । ଅବଶ୍ୟ ମହାବୀର ନେପୋଲିୟନ୍‌ଙ୍କ ସମୟରେ ଫରାସୀ ଜାତିର ଖ୍ୟାତି ଟିକିଏ ବଢ଼ିଥିଲା । କିନ୍ତୁ ସେଇଟା ଥିଲା ବଡ଼ କ୍ଷଣସ୍ଥାୟୀ । ଅଳ୍ପ ସମୟ ମଧ୍ୟରେ ପାଣି ଫୋଟକା ପରି ସେ କୁଆଡେ ଉଭେଇଗଲା ।

ଫରାସୀ ଇତିହାସରେ ନେପୋଲିୟନଙ୍କ ଆବିର୍ଭାବ ଏକ ବିଚିତ୍ର ଘଟଣା । ଏମାନେ ଗଣତନ୍ତ୍ର, ସାମ୍ୟବାଦ, ଆଦିର ଦ୍ୱାହି ଦେଇ ବିପ୍ଳବ କରି ଅଜସ୍ର ଲୋକଙ୍କ ମୁଣ୍ଡ କାଟିଲେ, ଚାରିଆଡେ ହିଂସା, ଦମନର ସୁଅ ଛୁଟେଇଲେ କିନ୍ତୁ ଶେଷରେ ଆମ୍ଭ ଖୋଜୁ ଖୋଜୁ ପାଇଲେ ଆମ୍ଭେଡ଼ା । ପ୍ରବଳ ପ୍ରତାପୀ ନେପୋଲିନ୍ ଏହାର ଶାସନ କରଗତ କରି ଏକାଧିପତ୍ୟ, ଏକଛତ୍ରବାଦ ପ୍ରତିଷ୍ଠା କଲେ । ବହୁ ଅଭିଯାନ ଆରମ୍ଭ କଲେ, ବହୁ ଯୁଦ୍ଧ ଜିଣିଲେ କିନ୍ତୁ କେତୋଟା ବର୍ଷରେ ସବୁ ଧୂଳିସାତ୍ ହୋଇଗଲା । ଦ୍ୱିତୀୟ ମହାସମରରେ ଜର୍ମାନ୍ ବୀର ହିଟ୍‌ଲର ଫ୍ରାନ୍‌ସକୁ ଦଖଲ କଲେ ଅକ୍ଳେଶରେ । ଜର୍ମାନ୍ ସୈନ୍ୟ ଆସୁଚନ୍ତି, ଖାଲି ଏତିକି ଶୁଣି ଫରାସୀ ଲୋକ ଘରଦ୍ୱାର ଛାଡ଼ି ପଳେଇଲେ କୋକୁଆ ଭୟରେ । ଫଳରେ ଏମାନଙ୍କୁ ପରାଜିତ, ପଦଦଳିତ କରିବାକୁ ହିଟ୍‌ଲରଙ୍କୁ ବିଶେଷ ଅସୁବିଧା ହୋଇନାହିଁ । ଅବଶ୍ୟ ସାହିତ୍ୟ-ସଂସ୍କୃତିରେ ଗୌରବ ଏମାନଙ୍କର ଚିରଦିନ ରହିଚି ଓ ରହିବ କିନ୍ତୁ ଏମାନେ ଲଢୁଆ ଜାତି ନୁହନ୍ତି ।

କେତେକ କିଣା ଜିନିଷ, କିଛି କାଗଜପତ୍ର ଧରି ପ୍ୟାରିସ୍ ବିମାନ ଘାଟିରେ ଯେତେବେଳେ ଉଡ଼ାଜାହାଜରେ ବସିଲି ମନରେ ମହା ଦୁଃଖ, ଅଦ୍‌ଭୁତ ବ୍ୟଥା । ଯେମିତି ସେ ସହର ଛାଡ଼ିବାକୁ ମନ ହେଉନି । ସତେ ଅବା କୌଣସି ରସିକ ପ୍ରେମିକ ତାର ନବ-ବିବାହିତ ପ୍ରେୟସୀକୁ ଛାଡ଼ି ଚାଲିଯାଉଛି ଦୂରଦୁରାନ୍ତରକୁ । ଉଡ଼ାଜାହାଜର ରୁଦ୍ଧ ଗବାକ୍ଷ ଦେଇ ବାହାରକୁ ଚାହୁଁ ଥାଏ । ସେଠାରେ ଯେତେ ବୁଲିଥିଲେ ବି ତାର ଆକର୍ଷଣ ଯେମିତି ଏଡ଼ିବାର ସହଜ ନୁହେଁ । କେତେ କଣ ଛୋଟ ବଡ଼ ସ୍ମୃତି ମନରେ ଜାଗି ଉଠୁଥାଏ । କେତେ ଆହା, ଉହୁ ଭାବ, କେତେ ଦୀର୍ଘ ନିଃଶ୍ୱାସ ! ସ୍ୱଦେଶକୁ ଶୀଘ୍ର ଫେରିଯିବି ଏହି ସାନ୍ତ୍ୱନାଟା ମନକୁ ଟିକିଏ ଆଶ୍ୱସ୍ତ କରୁଥାଏ ନଚେତ୍ ଏ ବିରହ, ଏ ବ୍ୟଥା ଯେମିତି ଅସହ୍ୟ । ୟୁରୋପର ସ୍ଥଳଭାଗ ଛାଡ଼ି ଯେତେବେଳେ ସମୁଦ୍ର ଉପରକୁ ଉଡ଼ାଜାହାଜ ଆସିଲା

ଦୂରରୁ ବିଲାତ ଆଡ଼କୁ ଗ୍ୱହିଁଲି । ଅତି ଶୀଘ୍ର ତାକୁ ବି ଗ୍ୱଡ଼ି ଯିବାକୁ ପଡ଼ିବ । ବିଲାତର ରାସ୍ତାଘାଟ, ବଣଜଙ୍ଗଲ, ପାହାଡ଼ ପଥର ସହିତ ଗୋଟାଏ ଯେପରି ଅପୂର୍ବ ସମ୍ପର୍କ ଗଢ଼ି ଉଠିଥାଏ । ସେ ସମ୍ପର୍କ ଛିଣ୍ଡେଇ ଗ୍ୱଲିଯିବାକୁ ହେବ । ମନରେ ରହିବ ଗୋଟାଏ କେବଳ ଅଭୁଲା ସ୍ମୃତି । ଏ ସବୁ ଭାବି ମୁଁ ବଡ଼ ଅସ୍ଥିର ବିବ୍ରତ ହୋଇ ଉଠୁଥାଏ । ନିଜକୁ ଶାନ୍ତ କରୁଥାଏ ମୋର ଆଶୁ ସ୍ୱଦେଶ ପ୍ରତ୍ୟାବର୍ତ୍ତନ କଥା ଚିନ୍ତା କରି । ଧରି ଧୈର୍ଯ୍ୟ ଘେନ ରେ ସାନ୍ତ୍ୱନା ··

ଲଣ୍ଡନ ଉଡ଼ାଜାହାଜ ଘାଟିରେ ପହଞ୍ଚିଲାକ୍ଷଣି ମନରେ ଯେମିତି ଛନକା ପଶିଲା । ଜର୍ମାନୀ, ଫ୍ରାନ୍ସରୁ ଯେ କେତେଟା ଜିନିଷ କିଣି ଆଣିଥାଏ ତାକୁ କଷ୍ଟମ୍‌ସ୍ ଅଫିସରଙ୍କ ଦେଇ ନେବି କିମିତି । କଷ୍ଟମସ୍ କାରବାର ଅନେକଟା ମନସ୍ତାତ୍ତ୍ୱିକ । ସେଠାରେ ନିଯୁକ୍ତ ଥିବା କର୍ମଚ୍ୱାରୀମାନେ କୌଣସି ଯନ୍ତ୍ରପାତିର ସାହାଯ୍ୟ ନେବା ପୂର୍ବରୁ ସେମାନେ ତୁମ ମୁହଁ, ଢଙ୍ଗରଙ୍ଗକୁ ଟିକିଏ ଲକ୍ଷ୍ୟ କରିବେ । ସେଥିରେ ସେମାନେ ଯଦି ସନ୍ଦେହଜନକ କିଛି ଦେଖିଲେ ବ୍ୟାପକ ତନଖା ତନଖି କରିବେ । ନୋହିଲେ ଖାଲି ଟିକିଏ ଦେଖାଦେଖି କରି ଗ୍ୱଡ଼ିଦେବେ । ଅବଶ୍ୟ ସେ କଷ୍ଟମସ୍ ଅଫିସ ଦେଇ ଯେତେ ଯେତେ ଦାମିକା ଜିନିଷ ଯାଉଥାଏ ତା ତୁଳନାରେ ମୋ ପାଖରେ ଯାହାଥାଏ ସେ ନଗଣ୍ୟ । ତଥାପି ଯେତେବେଳେ ଗୋଟାଏ ବେଆଇନ୍ କାମ କରିବାକୁ ଯାଉଚି ସେଥିରେ ଡର ହେବା ସ୍ୱାଭାବିକ । ତେଣୁ ମୁଁ କିଛି ନଜାଣିଲା ପରି ମୁହଁଟାକୁ ହସହସ କରି ଆଗେଇଲି । ହେଲେ ମନ ଭିତରେ ମହାଭୟ । ସେମାନେ କଣ ପଗ୍ୱରିବେ, ମୁଁ କଣ କହିବି, ଏଥି ଯୋଗେ ଗ୍ୱତିଟା ଦାଉଁ ଦାଉଁ ପଡୁଥାଏ । ଏହାର ପ୍ରତିକ୍ରିୟାଟା ନିଶ୍ଚୟ ମୁଖ ମଣ୍ଡଳରେ ପଡୁଥିବ । ଦର୍ପଣରେ ଦେଖିଲେ ସିନା ଜଣା ପଡ଼ିଥାନ୍ତା ମୋ ମୁହଁ କିମିତି ଏଇ ଚେଷ୍ଟାକୃତ ହସ ଓ ସ୍ୱାଭାବିକ ଭୟ ଆଶଙ୍କାରେ ବିକୃତ ରୂପ ଧାରଣ କରିଛି !

ଯାହାହେଉ ବହୁ ଚେଷ୍ଟା କରି ମନ ଭିତରର ଭୟ ବାହାରେ ପ୍ରକାଶ ନ କରି, ମୁହଁକୁ ଯେତେଦୂର ପାରେ ହାଲୁକା ଓ ହସହସ ରଖି ସେଠାରେ ଥିବା କର୍ମଚ୍ୱାରୀମାନଙ୍କ ସମ୍ମୁଖୀନ ହେଲି । ଜଣେ ବୃଦ୍ଧ ଅଫିସର ମୋ ସୁଟ୍‌କେଶ୍ ଖଣ୍ଡିକ ଦେଖିବାକୁ ଆଗେଇ ଆସିଲେ ।

ସେ ପ୍ରଥମେ ଖାଲି ମୋତେ ତନ୍ନ ତନ୍ନ କରି ଚାହିଁଲେ । ମୁଁ ମଧ୍ୟ କିଛି ନ ଜାଣିଲାପରି ତାଙ୍କୁ ଚାହିଁଲି । ସେ ହଠାତ୍ ଆରମ୍ଭ କଲେ—

- ଆପଣ କଣ ଶୀଘ୍ର ଭାରତ ଫେରିଯାଉଛନ୍ତି ?

ଆଚ୍ଛା କଥା ! ଏ କିପରି ମୋ ବିଷୟରେ ଏହି ନିଗୂଢ଼ ତଥ୍ୟଟା ଜାଣିପାରିଲେ ! କଣ ଖାଲି ଅନ୍ଦାଜ କରି ? ବିଚିତ୍ର ଲୋକ ଏମାନେ । ଏମାନଙ୍କୁ ଏ କଷ୍ଟମସ୍ ଅଫିସ୍‌ରୀ ଦାୟିତ୍ୱରେ ନ ରଖି ମନସ୍ତତ୍ତ୍ୱର ଅଧ୍ୟାପକ କଲେ ଭଲ ହୁଅନ୍ତା ।

— ହଁ ! ସଂକ୍ଷେପରେ ଉତ୍ତର ଦେଲି । ହେଲେ ମୋ କଣ୍ଠର ଧ୍ୱନିଟା ଯେମିତି ଟିକିଏ ବେଆଡ଼ା ହେଲାପରି ମନେ ହେଲା । ଏମିତି କାହିଁକି ହେଲା ? ଓ ! ତୋଣ୍ଟି, ଜିଭ ଶୁଖିଯାଉଚି ! ଏପରି ବିବ୍ରତ ହେବାଟା···

—କଣ କଣ ୟୁରୋପରୁ ସାଙ୍ଗରେ ଆଣିଚନ୍ତି ? ପୁଣି ପ୍ରଶ୍ନ ହେଲା ।

—ଏ କିଛି ନାହିଁ, ଏ ସାମାନ୍ୟ, ମାନେ ଅଳ୍ପ କିଛି, ଏଇ ଗୋଟେ ଷ୍ଟେଟ କାମେରା, ଗୋଟାଏ କୁନି ଟ୍ରାଞ୍ଜିଷ୍ଟର, ଉଁ, ଉଁ···। ମୋ କଥାଟା କ୍ରମେ ମୋ ତୁଣ୍ଡରେ ମିଳେଇଗଲା । ଉପରେ ପାଟିରୁ କଥା ବାହାରିଲାନି ।

—ହଉ ଯା'ନ୍ତୁ !

ଓହୋ, ରକ୍ଷା ! ଆଉ ଟିକିଏ ବେଶୀ ଜେରା କରିଥିଲେ ମୁଁ ତ ଭୟରେ ବୋଧହୁଏ ମୂର୍ଚ୍ଛା ଯାଇଥାନ୍ତି । ସେ ମହାଶୟଙ୍କଠାରୁ ନିର୍ଭୟ ବାଣୀ ଶୁଣି ମନ ପ୍ରଫୁଲ୍ଲ ହୋଇ ଉଠିଲା । ମୁଁ ଦ୍ୱାରଦର୍ପରେ ଆଗେଇ ଚାଲିଲି । ଯାହାହେଉ ଗୋଟାଏ ଘାଟି ଗଲା ।

ମହା ଆନନ୍ଦରେ କାମ୍‌ଡେନ୍ ରୋଡ୍‌କୁ ଧାଇଁଲି । କିନ୍ତୁ ଯେମିତି ଆମ ବସା ସାମନାରେ ଆସି ପହଞ୍ଚିଛି ମନ ଭିତରୁ ଗୋଟାଏ କୋହ ଉଠିଲା ।

ଅତିଶୀଘ୍ର ଏଠା ବ ଛାଡ଼ି ଯିବାକୁ ପଡ଼ିବ ! ମୋର ଷ୍ଟେଟ କୋଠରୀଟାର ରୁଦ୍ଧ ଦ୍ୱାର ଖୋଲି ଦେବାକ୍ଷଣି ତା' ଭିତରୁ ଯେମିତି ଦମକାଏ ଦୂଷିତ ପବନ ଆସି ମୋ ନାକ ପାଖରେ ଧକ୍‌କା ଦେଲା ।

ଆହା, କେତେ ଦିନ ହେଲା ମୋର ଏ ପ୍ରିୟ ବଖରାଟିକୁ ଛାଡ଼ି ଚାଲିଯାଇ-ଥିଲି ! ମନ ହେଲା ସାଙ୍ଗେ ସାଙ୍ଗେ ମୋ ଖଟରେ ଟିକିଏ ଶୋଇପଡ଼ିବି । କିନ୍ତୁ ମୋ ବିରହରେ ବିଛଣାଟା ଏପରି କଦର୍ଯ୍ୟ ରୂପ ଧରିଥିଲା ଯେ ସେଥିରେ ଅଙ୍ଗ ଢାଳିବାକୁ ଇଚ୍ଛା ହେଲାନି । ଆଶ୍ଚର୍ଯ୍ୟ କଥା ! ଘରଆଡ଼ ପ୍ରାୟ ସବୁ ବନ୍ଦ । କିନ୍ତୁ ୀ ଧୂଳି, କୋଇଲା ଗୁଣ୍ଡ ଆଦିକୁ ବାଟ ମିଳିଲା କିମିତି ! ହଁ, ଏ ଆକାଶ ଗବାକ୍ଷ ( Sky-light ), ଦୁଆର ଝରକା ଦାଡ଼ର ଫାଙ୍କ, ଏହାର ଭିତରେ ଦେଇ ଏ ଆବର୍ଜନା ମୋ କୋଠରୀ ଭିତରେ ପ୍ରବେଶ କରିଚନ୍ତି । ବିଛଣାକୁ ସଫାସଫି କରି ଶୋଇଥିଲେ ହୋଇଥାନ୍ତା କିନ୍ତୁ ସେ ସବୁ ପାଇଁ ଧୈର୍ଯ୍ୟ ନ ଥିଲା । ତେଣୁ ସୁଟ୍‌କେଶ୍ ଖଣ୍ଡିକ ଖଟ ଉପରେ ଫିଙ୍ଗି ଦେଇ ପଳେଇଲି ରାଣୀଙ୍କ ପାଖକୁ ।

ଏ କଣ ! ଏକ ଅହେତୁକୀ ଦୁଃଖ ମନ ପ୍ରାଣକୁ ଅଥୟ କରି ଦେଉଚି ! କିଛି ଭଲ ଲାଗୁନି, କୌଣସିଥିରେ ଶାନ୍ତି ମିଳୁନି । ରାଣୀ ମୋତେ ଦେଖି ସାଦରରେ ଅଭ୍ୟର୍ଥନା କଲେ, କୁଶଳ ସମ୍ବାଦ ପଚ୍ଛରିଲେ । ତା' ଭିତରେ ଭିତରେ କେଉଁଠି କଣ ଫୁଟ୍ଟି କଲି ଆଦି ପଚ୍ଛରି ଖୁଣ୍ଟା ଦେବାକୁ ଆରମ୍ଭ କଲେ । ଅନ୍ୟ ଦିନ ହୋଇଥିଲେ ମୁଁ ତାଙ୍କ ସହିତ ହସକୌତୁକରେ ମାତି ଉଠିଥାନ୍ତି । ଯେଉଁଦିନ କିନ୍ତୁ କୌଣସିଥିରେ ଆନନ୍ଦ ପାଉନଥାଏ, ମୁହଁ ଚୋହ ଚୋହ । "କଣ ହେଲା ?" ରାଣୀ ବ୍ୟଙ୍ଗଭରା କଟାକ୍ଷ କରି ପଚ୍ଛରିଲେ । କହିଲି "କିଛି ଭଲ ଲାଗୁନି ।" ସେ ପୁଣି ଛଳେଇ କହିଲେ "ସେମିତି ଏଇଲେ କେତେ ଦିନ ଲାଗିବ । କିନ୍ତୁ ଭାରତରେ ପହଞ୍ଚିଲା ପରେ କୁହୁଡ଼ି ସଫା ହୋଇଯିବ । ଆକାଶ ନିର୍ମଳ ଦେଖାଯିବ । ତେଣିକି ଲଣ୍ଡନ ଆଉ ଆମେସବୁ ମନେ ପଡ଼ିବୁ କି ନାହିଁ !" ମୁଁ ଆବେଗଭରା କଣ୍ଠରେ ସାଙ୍ଗେ ସାଙ୍ଗେ କହିଲି "ତା' ହେଇପାରେନା ଲଣ୍ଡନକୁ, ବିଶେଷତଃ ଆପଣମାନଙ୍କୁ ମୁଁ କଣ କେବେ ଭୁଲିପାରେ !" ମୋ ଛାତିଟା ଯେମିତି ଜମାଟ ବାନ୍ଧି ଯାଉଥାଏ । ପାଟିରୁ କଥା ବାହାରୁନି । ଶ୍ରୀମତୀ ମିଶ୍ର ଅବସ୍ଥାଟା ବୁଝିନେଇ ସାନ୍ତ୍ୱନା ଦେଇ କହିଲେ "ହଉ, ଥାଉ ଥାଉ ।" ତାଙ୍କ ସ୍ୱରରେ ଯେପରି ଦୁଃଖର ସୂଚନା ।

ଲିଭରପୁଲ ବନ୍ଦରରୁ ଭାରତ ଅଭିମୁଖରେ ଜାହାଜ ଧରିବାର ବନ୍ଦୋବସ୍ତ କରିଥାଏ । ଆଉ ବୁଲିବାକୁ ମନ ନାହିଁ । ଖାଲି ଗୁମ୍‌ମାରି

ରାଣୀଙ୍କ ପାଖରେ, ଆଶା ଓ ବାଦଲଙ୍କ ପାଖରେ ବସୁଥାଏ । ଡକ୍ଟର ଅଗରୱାଲ, ଡକ୍ଟର ତେଜେଶ୍ୱର ରାଓ ପ୍ରଭୃତି ଆସିଲେ ସେମାନଙ୍କ ସାଙ୍ଗରେ ଗପ କରେ । ସେମାନେ ଯୁଆଡ଼େ ବୁଲିଯାଆନ୍ତି ମୋତେ ସାଙ୍ଗରେ ନେଇଯାନ୍ତି । କୌଣସିମତେ ଦିନଗତକ କଟେ । କିନ୍ତୁ ଭିତରେ ମୋର ସେ ନିକାଞ୍ଚନ ବଖରାରେ ନିଦ ଜମା ହୁଏନି । ତେଣୁ ଜିନିଷପତ୍ର ସଜାଡ଼ିବାରେ ଲାଗିପଡ଼େ ।

ମୋ ଘରେ ଜମା ହୋଇଥାଏ କାଗଜପତ୍ରର ଏକ ବିରାଟ ପର୍ବତ । କେତେ କଣ ଗୁଣଆଡ଼ୁ ଆହରଣ କରିଥାଏ । ସେଥିରୁ କାଣିଛୁଏ ଛାଡ଼ିବାକୁ ମନ ବିମୁଖ । ଦୁଇଟା ବଡ଼ ବଡ଼ ସୁଟ୍‌କେଶ ବିଲାତରୁ କିଣିଥିଲି । ଗୋଟାଏ ବଡ଼ ଲୁହା ଟ୍ରଙ୍କ ନେଇଥିଲି ଭାରତରୁ । ଏସବୁ ଅଳ୍ପ ଜିନିଷ ଓ ବହୁ କାଗଜପତ୍ରରେ ଭର୍ତ୍ତି ହୋଇଗଲା । ମୋର ଲିଭରପୁଲ ବନ୍ଦରରେ ଜାହାଜରେ ବସିବାର କଥା । ସେସବୁର ବ୍ୟବସ୍ଥା କଲି । ଶେଷରେ ଯେଉଁଦିନ ୨୩୫ ନମ୍ବର କାମ୍‌ଡ଼େନ୍ ରୋଡ଼ ଛାଡ଼ିଲି ଆଖି ମୋର ଛଳଛଳ ହୋଇଗଲା । ସୁଦୂର ବିଲାତ ରାଜ୍ୟର ଏ ଘରଟି ଯେତେ ଅସୁନ୍ଦର, ଯେତେ ଅସ୍ୱାସ୍ଥ୍ୟକର ହେଲେ ବି ନାନା ସୁଖଦୁଃଖର ସ୍ମୃତି ଏହା ସହିତ ଜଡ଼ିତ । ତେଣୁ ତାକୁ ଛାଡ଼ି ଆସିବାକୁ ମନରେ ମହାଦୁଃଖ । ସେଦିନ ମନେ ପଡ଼ୁଥାଏ ଘର ଛାଡ଼ି ବିଲାତ ଆସିବା ବେଳର କଥା । ସେତେବେଳେ କେତେ ଭୟଭ୍ରାନ୍ତି, ଚିନ୍ତାଦିକ ମୋତେ ବିବ୍ରତ, ବ୍ୟଥାତୁର କରୁଥିଲା । ଆଜି ସେସବୁ ଶେଷ ହୋଇଛି । ମୋର ବିଲାତ ଯାତ୍ରା ସଫଳ ହୋଇଛି । ମୁଁ ବର୍ତ୍ତମାନ ଫେରୁଛି ମୋ ଦେଶକୁ, ମୋ ଘରକୁ, ମୋର ପ୍ରିୟ ପରିବାରଙ୍କ ପାଖକୁ । ଓଃ ! କି ଆନନ୍ଦ !

କିନ୍ତୁ ଏହି ଆନନ୍ଦ ବିଦାୟକାଳୀନ ଦୁଃଖରେ ଯେମିତି ମଉଳି ଯାଇଥାଏ । ରଜାରାଣୀ ଓ ତାଙ୍କ ପିଲାଙ୍କ ସହିତ ବହୁତ ଖୁସିଗପ କଲି । ଆଶା ଓ ବାଦଲଙ୍କୁ କେତେ ପରାମର୍ଶ ଦେଇ ସେମାନଙ୍କ ମଧ୍ୟରୁ ଯାହାର ଯାହା ନିଜ ଘରକୁ ସମ୍ବାଦ ଦେବାର ଥିଲା ସେସବୁ ଶୁଣି ଟ୍ରେନ୍ ଧରିଲି । ବାଟଯାକ ଚାରିଆଡ଼କୁ ଚାହିଁଥାଏ । କିନ୍ତୁ ଆଉ ଯେମିତି କିଛି ଦେଖିବାର ସ୍ପୃହା ନାହିଁ । ବର୍ତ୍ତମାନ ଗୋଟିଏ ଚିନ୍ତା ଘରେ ଯାଇ କମିତି ପହଞ୍ଚିବି । ଜଳଯାତ୍ରା ତ ବହୁତ ଦିନ ନେବ । ଶେଷରେ ପୁଣି ବମ୍ବେରୁ ସ୍ଥଳପଥରେ

ଯିବାକୁ ପଡ଼ିବ ରେଲରେ । ଏତିକି କେତେଟା ଦିନର ବ୍ୟବଧାନ ଯେପରି ମନେ ହେଉଥାଏ ଏକ ଦୀର୍ଘକାଳ । ତଥାପି ଅନ୍ୟ ଉପାୟ ନାହିଁ । ତାକୁ କୌଣସି ମତେ କାଟିବାକୁ ପଡ଼ିବ ।

ଅନ୍ୟ କେତିକି ସାଙ୍ଗସାଥୀ ଥିଲେ ବାଟରେ ଗପସପ କରି ସମୟ କଟି ଯାଇଥାନ୍ତା କିନ୍ତୁ ଆସିଥିଲି ଏକା, ଯାଉଛି ଏକା । ଅବଶ୍ୟ ଜାହାଜରେ ଭାରତ ଓ ପାକିସ୍ତାନର ଅନେକ ଯାତ୍ରିଙ୍କ ସହିତ ବନ୍ଧୁତା ପାତିଲି । କେତେ ଆଳାପ ଆଲୋଚନା ହେଲା । କିନ୍ତୁ ସବୁ ଖାପଛଡ଼ା, ସବୁ ବେସୁରା । ବେଶୀ ସମୟ କଟୁଥାଏ ଘରକୁ ଚିଠିପତ୍ର ଲେଖିବାରେ, ବିଲାତରୁ ବୋହି ଆଣିଥିବା କାଗଜପତ୍ର ସଜାଡ଼ିବାରେ । ଗୁଡ଼ାଏ ଏଣ୍ଡ଼ୁ-ଚେଣ୍ଡୁ ପତ୍ର ପତ୍ରିକା ଥାଏ । ସେଥିରୁ କେତେକ ସମୁଦ୍ର ଜଳରେ ବିସର୍ଜନ କଲି । ଅବଶ୍ୟ ସେଥିରୁ ଖଣ୍ଡିଏ କାଗଜ ଛାଡ଼ିବାକୁ ମନ ହେଉନଥାଏ । କିନ୍ତୁ ଏଡ଼େନ୍‌ଠାରୁ କିଛି ପିଲାଙ୍କ ପାଇଁ ଲୁଗାପଟା ଆଦି କିଣିବାର ଥାଏ । ତା'ପାଇଁ ଜାଗା ପ୍ରସ୍ତୁତ କରିବାକୁ ସେଥିରୁ କେତେକଙ୍କୁ ବିଦାୟ ଦେବାକୁ ପଡ଼ିଲା । ଅବଶ୍ୟ ଥରେ ଏଡ଼େନ୍‌ରୁ ଲୁଗାପଟା କିଣି ଯେମିତି ହଇରାଣ ହୋଇଥିଲି ଆଉ ସେ କଥା ଚିନ୍ତା କରିବାର ନୁହେଁ । ତଥାପି ସେଠାରେ ଶସ୍ତାରେ ନିଜ ସମ୍ବଳ ମଧ୍ୟରେ କିଛି ମିଳିଯିବ ବୋଲି ଭାବୁଥାଏ । ଅବଶ୍ୟ ମନେ ମନେ ଠିକ୍ କରିଥାଏ ଯେ ଏଥର ଦେଖିଶୁଣି ଇମିତି କିଣାକିଣି କରିବି ଯେଉଁଥିରେ କି ଏଡ଼େନ୍‌ର ଦୋକାନୀମାନେ ମୋତେ କୌଣସି ପ୍ରକାରେ ଠକି ପାରିବେନି ।

ଜାହାଜ ଚାଲିଥାଏ । ଖିଆପିଆ ବି ବେଶ୍ ଜମିଥାଏ । ବିଲାତ ଗଲାବେଳେ କଣ୍ଟା-ଚାମୁଚ କାରବାରଟା ଯେମିତି ଅବାଗିଆ ଲାଗୁଥିଲା ଆଉ ସେ ନାହିଁ । ବର୍ତ୍ତମାନ ପୂରା ସାହେବ । ବେଶ୍ ପୋଷାକପତ୍ର ପିନ୍ଧି ଟାଇ ବାନ୍ଧି ଟେବୁଲ ପାଖରେ ଚଳେଇ ଦେଉଥାଏ ହାତ ଚମତ୍କାର ଭାବରେ । ବାହାରର ବିସ୍ତୃତ ଜଳରାଶିକୁ ଡେକ୍ ଉପରେ ବସି ବିତୁଛି ସମୟ ଚୁହେଁ । ହେଲେ ସେମାନେ ମୋତେ ଯେପରି ବିଶେଷ ଆକୃଷ୍ଟ କରିପାରୁ ନାହାନ୍ତି । ଆଖି ବି ପଡ଼ୁଥାଏ ଇଉରୋପ-ଆଫ୍ରିକାର ସ୍ଥଳଭାଗ ଉପରେ କିନ୍ତୁ ସେ ବି ମୋ ମନକୁ ଛୁଉଁ ନଥାଏ । ଜାହାଜ ଭିତରେ ଯେ ଆମୋଦ-ପ୍ରମୋଦ ଚାଲିଥାଏ ସେଥିରେ ଆତ୍ମହରା ହୋଇ ମିଶିଯିବାକୁ

ଇଚ୍ଛା ନାହିଁ । ଗୋଟାଏ କିମିତି ଆନନ୍ଦ ଭାବ ମୋତେ ଘେରି ରହିଥାଏ । କଣ ହେଲା ମୋର ? ଏତେ ଉତ୍ସାହ ଉଦ୍ଦୀପନା କୁଆଡ଼େ ଉଭେଇ ଗଲା ? ମନ ଖାଲି ଚଞ୍ଚଳ, ଭାବି ଚଞ୍ଚଳ କିମିତି ଘରେ ଯାଇ ପହଞ୍ଚିବି । କିନ୍ତୁ ଚାହିଁଲେ ତ ଯାଇ ସାଙ୍ଗେ ସାଙ୍ଗେ ପହଞ୍ଚି ହେବନି । ସୁଦୂର ପଥ ଅତିକ୍ରମ କରିବାକୁ ପଡ଼ିବ ।

ଜାହାଜ ଚାଲିଥାଏ ଦିନରାତି, ଖୁବ୍ ଦ୍ରୁତ ବେଗରେ । ଆମ ସହଯାତ୍ରୀ ଥାନ୍ତି ଜଣେ ପାକିସ୍ତାନୀ ମହିଳା । ତାଙ୍କ ସାଙ୍ଗରେ ତାଙ୍କର ଗୋଟେ ଝିଅ । ତାଙ୍କ ସ୍ୱାମୀ ବିଲାତରେ ପାକିସ୍ଥାନ ହାଇକମିଶନର କାମ କରନ୍ତି । ଏ ଭଦ୍ର ମହିଳା ସ୍ୱାମୀଙ୍କୁ ବିଦେଶରେ ଛାଡ଼ି ଯାଉଥାନ୍ତି ନିଜ ଦେଶକୁ କୌଣସି ଜରୁରୀ କାମରେ । ବେଶ୍ ଶିକ୍ଷିତା, ରୂପବତୀ ମହିଳା । କଥାବାର୍ତ୍ତା ଖୁବ୍ ମାର୍ଜିତ, ବ୍ୟବହାର ଚମତ୍କାର । ମୁଁ ତାଙ୍କ ସହିତ ବନ୍ଧୁତା ପାତିଥାଏ ତାଙ୍କର ସେହି ସ୍ନେହର ଦୁଲାରୀ ମଧ୍ୟ ଦେଇ । ଚାରି-ପାଞ୍ଚ ବର୍ଷର ଗୋଟେ ଝିଅଟିଏ । ବେଶ କୌତୁକିଆ । ଖୁବ୍ ମଜ୍ଜା ମଜ୍ଜା କଥା କହୁଥାଏ, ଇଂଲିଶ ଗୀତ ବୋଲି ନାଚୁଥାଏ । ମୁଁ ତା' ସହିତ ଆତ୍ମୀୟତା ଆରମ୍ଭ କରୁ କରୁ ତା' ମା'ଙ୍କ ସମ୍ପର୍କରେ ଆସିଲି । ଏପରି ସମ୍ପର୍କ ବି ମୋର ଦରକାର ଥିଲା । କାରଣ ଆମ ଜାହାଜ କରାଚି ଦେଇ ବମ୍ବେ ଯିବ । ତେଣୁ ଯେ କେତେ ସମୟ ଜାହାଜ କରାଚି ବନ୍ଦରରେ ରହିବ ସେଥି ଭିତରେ ସେ ସହରଟା ଦେଖିବାର ଇଚ୍ଛାଥାଏ । ସେ ଭଦ୍ର ମହିଳା ଶ୍ରୀମତୀ ହୋସେନ୍ ଖୁବ୍ ମେଳାପି । ତାଙ୍କ ସହିତ ପାକିସ୍ଥାନର ରାଜନୈତିକ, ଅର୍ଥନୈତିକ ଅବସ୍ଥା ନେଇ ବହୁତ କଥାବାର୍ତ୍ତା ହେଲା । କୌଣସିମତେ ଦିନ ଯାଉ ଯାଏ । କିନ୍ତୁ ରାତିଟା ଜମା କଟେନି । ଯେତେ ଚେଷ୍ଟାକଲେ ବି ଭଲ ନିଦ ହୁଏନି । ଯଦି ନିଦ ହେଲା, ଖାଲି ସ୍ୱପ୍ନ । କଣ ହଜିଗଲା ଯେ ପାଇଛି, କଣ ଭୁଲିଯାଇଛି, ଇମିତି କେତେ କଣ । କାହିଁକି ଇମିତି ଗୁଡ଼ାଏ ଅବାଞ୍ଛିତ, ଅସ୍ପୃହଣୀୟ ସ୍ୱପ୍ନ ଦେଖୁଛି ? ହଁ, ମନର ଅନେକ ଅଭିଳଷିତ ଆଶା-ଆକାଙ୍କ୍ଷା ଚରିତାର୍ଥ ହୋଇ ନପାରି ସ୍ୱପ୍ନ ରୂପରେ ବାହାରକୁ ବାହାରି ପଡ଼ୁଛି । ବାହାରୁ ।

ଜାହାଜ ଏଡେନ୍‌ରେ ପହଞ୍ଚିବା ପରେ ମୁଁ ଟିକିଏ କର୍ମ-ତତ୍ପର ହୋଇ ଉଠିଲି । କିଛି କିଣାକିଣି କରିବା ଉଦ୍ଦେଶ୍ୟରେ ବଜାରଯାକ

ଏଣେ ତେଣେ ବୁଲିଲି । କିନ୍ତୁ ଏଥର ମୁଁ ମହା ସାବଧାନ, ସହଜରେ କିଛି କିଣି ଆଣିବାକୁ ଆଦୌ ଇଚ୍ଛା ନଥାଏ । ବୁଲୁଥାଏ ଦେଖାଦେଖି, କିଛି-କିଛି । ଅବଶ୍ୟ ବେଶୀ କିଛି କିଣିବାର ନଥାଏ । ପିଲାଙ୍କ ପାଇଁ କେତେ ଖଣ୍ଡ ଜାମାପଟା । ଶେଷରେ ସେତିକ କିଣି ଏଣେ ତେଣେ ଟିକିଏ ବୁଲିଲି । ଏଡେନ୍‌ରେ ପାଖରେ ଥିବା ପାଉଣ୍ଡ ଶିଲିଂକୁ ଭାରତୀୟ ମୁଦ୍ରାରେ ପରିଣତ କରିବାର କଥା । ଦେଖିଲି କେତେ ଯାଗାରେ ବେପାରୀମାନେ ଆମ ଶହେ ଟଙ୍କିଆ, ଦଶ ଟଙ୍କିଆ ଆଦି ନୋଟର ଗଦା ମାରିଛନ୍ତି । ହଁ ଗଦା, ଏକଦମ୍ ଘାସଗଦା ପରି । ପାଉଣ୍ଡ-ଶିଲିଂର ଯାହା ଭାରତୀୟ ମୁଦ୍ରାରେ ମୂଲ୍ୟ, ତାର ପ୍ରାୟ ଦୁଇଗୁଣ ଦେଉଛନ୍ତି । ଏହା କିମିତି ସମ୍ଭବ ହେଉଛି ? ବୁଝିଲି ଭାରତରୁ କଳା ଟଙ୍କା ଏଠାକୁ ଆସି ଏହିପରି କାରବାର ହୁଏ । ବଡ଼ ବିଚିତ୍ର ଲାଗିଲା, ଦୁଃଖ ବି ହେଲା ଭାରତୀୟ ମୁଦ୍ରାର ଏ ଦୁର୍ଦ୍ଦଶା ଦେଖି । ଆମ ଦେଶରେ କଳାଟଙ୍କାର କାରସାଦି କଥା ଜାଣିଥିଲି, କିନ୍ତୁ ସେ ଯେ କେତେ ବ୍ୟାପକ ତାହା ଉପଲବ୍ଧି କଲି ଏଡେନ୍ ବାଟ ବଜାରରେ ଆମ ଅଶୋକ ସ୍ତମ୍ଭ ଲଗା ନୋଟ୍ ଗଦାମାନ ଦେଖି । ଯାହାହେଉ ବ୍ରିଟିଶ୍ ମୁଦ୍ରାର ଯେ ସ୍ୱଳ୍ପ ପୁଞ୍ଜି ପାଖରେ ଥିଲା ତାହାକୁ ଟଙ୍କା ଆକାରରେ ପରିଣତ କରିଦେଲି । କିନ୍ତୁ ମନରେ ମହା ସନ୍ଦେହ । ଏ ଯଦି ଜାଲି ଟଙ୍କା ହୋଇଥିବ ତେବେ ତ ମହା ବିପଦ ! କିନ୍ତୁ ପ୍ରକୃତରେ ସେପରି ଭୟର କାରଣ ନଥିଲା । ଖାଣ୍ଟି ଭାରତୀୟ ନୋଟ୍ ଏଠାକୁ ଆଣି ବେପାରୀମାନେ କାରବାର କରୁଛନ୍ତି । ମୁଁ ଏକା ନୁହେଁ, ଅନ୍ୟ ଭାରତୀୟ ଯାତ୍ରୀମାନେ ଏହି ଉପାୟରେ ନିଜ ପାଣ୍ଠିର ପରିମାଣ ବଢ଼ାଉଥାନ୍ତି । ଆମ ଜାହାଜ କରାଚିରେ ପହଞ୍ଚିବାରୁ ପାକିସ୍ଥାନ ଯାତ୍ରୀମାନେ ଓହ୍ଲାଇଲେ । ଭାରତୀୟ ଯାତ୍ରୀମାନେ ମଧ୍ୟ ଓହ୍ଲାଇଲେ କରାଚିରେ ବୁଲାବୁଲି କରିବାକୁ । ମୁଁ ମିସେସ୍ ହୋସେନ୍‌ଙ୍କ ପିଛା ଧରିଥାଏ । ସେ ଗୋଟିଏ ଟ୍ୟାକ୍‌ସିବାଲାକୁ ଡାକି ମୋତେ ଓ ମୋ ସାଙ୍ଗରେ ଥିବା ଅନ୍ୟ କେତେ ଜଣ ଭାରତୀୟ ବନ୍ଧୁଙ୍କୁ କରାଚିର ଚାରିଆଡେ ଭଲକରି ବୁଲାଇବାର ନିର୍ଦ୍ଦେଶ ଦେଇ ଚାଲିଗଲେ । ତାଙ୍କଠାରୁ ବିଦାୟ ନେଲାବେଳେ ମନରେ ଟିକିଏ ଦୁଃଖ ଆସିଲା । ବମ୍ବେରେ ପ୍ରଥମେ ଜାହାଜରେ ବସିଲା ଦିନୁଁ ଏପରି କେତେ ଲୋକଙ୍କ ସହିତ ଆତ୍ମୀୟତା ପାତି ଶେଷରେ ତାଙ୍କୁ ଉଦ୍‌ଯାପନ କରିବାକୁ ପଡ଼ୁଥିଲା । ଏ ପ୍ରକାର

ବନ୍ଧୁତା, ବିଚ୍ଛେଦ ଏକ ପ୍ରକାର ଦେହସୁଆ ହୋଇସାଇଥିଲା । ତଥାପି ମିସେସ୍ ହୋସେନଙ୍କର ସେ ଗୁଲ୍‌ଗୁଲ୍ କୌତୁକିଆ ଝିଅ ବେବି ଯେତେବେଳେ ହାତ ହଲେଇ, "ବାଇ, ବାଇ ଅଙ୍କ୍‌ଲ" କହି ଗ୍ଭଲଗଲା ସେତେବେଳେ ମୋ ମନରେ ଖୁବ ଦୁଃଖ ହେଲା ।

ଟ୍ୟାକସି ଡ୍ରାଇଭର ହୋସେନ୍ ଆମକୁ କରାଚିରେ ବହୁ ଆଡେ଼-ବୁଲାଇଲା । ପାକିସ୍ଥାନରେ ଭାରତୀୟ ମୁଦ୍ରାର ବେଶ୍ ଆଦର । ଯଦିଚ ସରକାରୀ ପରିବର୍ତ୍ତନ ହାର (Exchangrate) ସମାନ, ଖୋଲାରେ ଭାରତୀୟ ଟଙ୍କାକୁ ଦେଢ଼ାରୁ ଅଧିକ ହାରରେ ବଦଳାଇ ହୁଏ । ଏହାର ସୁବିଧା ନେଇ ମୁଁ ହୋସେନ୍ ଜରିଆରେ କିଛି ପାକିସ୍ଥାନୀ ମୁଦ୍ରା ଯୋଗାଡ଼ କଲି ଏବଂ ସେଥିରେ କେତେଟା ସୂତାର ପ୍ୟାଣ୍ଟ, ସାର୍ଟ କିଣିଲି । ଏସବୁ ନିହାତି ଦରକାର ଥିଲା । କାରଣ ବିଲାତରୁ ଯେଉଁ ଗରମ ପୋଷାକ ଆଣିଥିଲି ସେସବୁ ପିନ୍ଧିବା ଆଉ ଆରାମଦାୟକ ହେଉନି । ଏଡେନ୍ ପହଞ୍ଚିଲା ବେଳକୁ ଗ୍ରୀଷ୍ମର ପ୍ରକୋପ ବେଶ୍ ଜଣା ପଡ଼ୁଥିଲା । ଏତେ ଦିନ ବିଲାତରେ ରହିବା ପରେ ଦେହଟା ଯେମିତି ଶୀତଳ ଜଳବାୟୁରେ ଅଭ୍ୟସ୍ତ ହୋଇଯାଇଥିଲା । ତେଣୁ ଦେହ ଖୋଜୁଥିଲା ହାଲୁକା ସୂତା ପୋଷାକ । ସେଥିରୁ କେତେ ଖଣ୍ଡ ଯୋଗାଡ ହୋଇଯିବାରୁ ମନରେ ମହାନନ୍ଦ ।

କରାଚି ପାକିସ୍ଥାନର ଏକ ବିଖ୍ୟାତ ସହର । କିନ୍ତୁ ସେଠାର କୋଠାବାଡ଼ି, ଅଫିସ୍, ଦପ୍ତର ଯାହା ଦେଖିଲି ସେଥିରେ ପାକିସ୍ଥାନୀ ଲୋକଙ୍କ ଅର୍ଥନୈତିକ ଅବସ୍ଥା ସମ୍ବନ୍ଧରେ ବଡ ନ୍ୟୁନ ଧାରଣା ହେଲା । ଆମ ବମ୍ବେ, କଲିକତା ଆଦି ସହରମାନଙ୍କରେ ଲୋକମାନଙ୍କର ବେଶପୋଷାକ ଆଉ ବ୍ୟବହାରରୁ ଯେଉଁ ବୈଷୟିକ ପ୍ରଗତିର ସୂଚନା ମିଳେ ପାକିସ୍ଥାନରେ ତାହା ଦେଖିବାକୁ ମିଳିଲାନି । ପାର୍କ, ହୋଟେଲ, ବଜାର, ବ୍ୟାଙ୍କ୍ ଯୁଆଡେ଼ ଗଲୁ ସବୁଠାରେ ଦାରିଦ୍ର୍ୟର ଛାପ । ଭାରତୀୟ ଲୋକଙ୍କ ତୁଳନାରେ ପାକିସ୍ଥାନୀମାନେ ଟିକିଏ ବଡ ଉଗ୍ର, ଅସନ୍ତୁଷ୍ଟ ପରି ଜଣାଗଲେ । ଯେଉଁମାନଙ୍କ ସହିତ ଆମେ କଥାବାର୍ତ୍ତା କଲୁ, ହୋଟେଲ ବାଲା, ପାନଦୋକାନୀ, ସମସ୍ତଙ୍କ ଭିତରେ ଭାରତ ବିପକ୍ଷରେ ବିଦ୍ୱେଷ ଭରି ରହିଛି । ଜଣେ ପୋଲିସ୍ ଅଫିସରଙ୍କ ସହିତ ଦେଖାହେଲା । ସେ ବେଶ୍ ଭଦ୍ରଭାବରେ

ଆମ ସମ୍ବନ୍ଧ ଭାରତ ବିଷୟରେ ଆଳାପ ଆଲୋଚନା କଲେ; କିନ୍ତୁ ଯେତେବେଳେ ଶୁଣିଲେ ଆମେ କରାଚିରୁ କେତେଟା ପ୍ୟାଣ୍ଟ ସାର୍ଟ କିଣିଛୁ ସାଙ୍ଗେ ସାଙ୍ଗେ ମୁହଁ ଶୁଖାଇ କହିଲେ "ଆପଣମାନେ ତେବେ ପାକିସ୍ଥାନକୁ ଲୁଟ୍ କରିବାକୁ ଆସିଛନ୍ତି ।" କି କଥା ଏ ! ଲୁଟ୍ କଲୁ କିଣ ! ଉଚିତ୍ ମୂଲ୍ୟ ଦେଇ କିଛି ଜିନିଷ କିଣିଲୁ । ଏଠା ତିଆରି ପୋଷାକ ପ୍ରତି ଗ୍ରାହକତା କଲୁ । ଏଥିରେ ଏମାନଙ୍କର ଆନନ୍ଦିତ ହେବାର କଥା, କିନ୍ତୁ ଏ ଅହେତୁକ ଦୁଃଖ କାହିଁକି ? ବୋଧହୁଏ ଭାରତୀୟଙ୍କୁ ଦେଖିଲେ ଏମାନଙ୍କ ମନରେ ଗୋଟାଏ ନ୍ୟୂନଭାବ ଜାତ ହେଉଛି । ତେବେ ଦେଶ ବିଭାଜନ ବେଳେ ଏମାନେ ଯେଉଁ ସୁଖ ସ୍ୱପ୍ନ ଦେଖିଥିଲେ ଏବଂ ପାକିସ୍ଥାନରେ ଖାଲି ଘିଅ-ମହୁ ଭାସିବାର କଳ୍ପନା କରିଥିଲେ ସେଇଟା କାର୍ଯ୍ୟରେ ପରିଣତ ହୋଇପାରିନି । ତେଣୁ ଏ ବିଦ୍ୱେଷ, ଏ ବିଦ୍ରୋହ-ଭାବ !

ଜାହାଜ ବମ୍ବେ ବନ୍ଦର ଆଡ଼େ ମୁହାଁଇଲା ବେଳକୁ ମନରେ ମୋର ଅପୂର୍ବ ଆନନ୍ଦ, ଅପୂର୍ବ ଉତ୍ସାହ ! ଖାଲି ମୁଁ ବିକଳ ହେଉଥାଏ କିମିତି ବମ୍ବେରେ ପହଞ୍ଚିବି ଏବଂ ସେଠାରୁ କଟକ ଉଦ୍ଦେଶ୍ୟରେ ଟ୍ରେନ୍ ଧରିବି । କୁଆଡ଼େ ଗଲା ସେ ବିଲାତ ଯିବାର ମୋହ, କୁଆଡ଼େ ଗଲା ବିଦେଶରେ ବୁଲିବାର ବ୍ୟାକୁଳତା ! ଖାଲି ଘର, ଘର, ଘର ଛଡ଼ା ମୁଁ ଅନ୍ୟ କିଛି ଭାବୁ ନ ଥାଏ । ଏଥି ମଧ୍ୟରେ କେତେ ଖଣ୍ଡ ଚିଠି ମୁଁ ମୋ ସ୍ତ୍ରୀ ଓ ପିଲାମାନଙ୍କ ପାଖକୁ ପଠେଇ ଦେଇଥାଏ, ମୁଁ କେତେବେଳେ, କେଉଁ ଗାଡ଼ିରେ କଟକରେ ପହଞ୍ଚୁଛି ଲେଖି । ସେ ଚିଠିସବୁରେ ଅନ୍ୟ କିଛି ନ ଥାଏ । ଖାଲି ଗାଡ଼ିର ନାମ, ନମ୍ବର ଇତ୍ୟାଦି ବାକିଟା "ସବୁ ଭଲ" ବୋଲି ଚୁମ୍ବକ ସୂଚନା ।

Home, Home, Sweet home, ବାରମ୍ବାର ଇଂରାଜୀ କବିତାର ଏ ପଂକ୍ତିଟା କଣ୍ଠ ଯନ୍ତ୍ରରେ ବାଜି ଉଠୁଥାଏ । ବିକଳ ହୋଇ ଚାହୁଁଥାଏ ଭାରତ ଆଡ଼କୁ, ବମ୍ବେ ବନ୍ଦରକୁ । ଜାହାଜରୁ ଖଣ୍ଡିଏ ରେଲ୍ ଟିକେଟ୍ କିଣି ଦେଇଥାଏ । ବନ୍ଦରରେ ଜାହାଜ ଲାଗିବା କ୍ଷଣି କିମିତି କଷ୍ଟମସ୍ ଅଫିସ୍ ଟପି ରେଲଷ୍ଟେସନକୁ ଯିବି ସେଥିପାଇଁ ମନ ଭାରି ବ୍ୟାକୁଳ । ଆଉ ବମ୍ବେରେ ବୁଲିବାର ମୋହ ନାହିଁ । ଆଉ ଭାତ

ଖାଇବା କି ପାନ କିଣିବାକୁ ଇଚ୍ଛା ନାହିଁ । ବନ୍ଦର ପାଖରେ ଥିବା ମୋର ସେ ପ୍ରିୟ ଓଡ଼ିଆ ହୋଟେଲକୁ ଗଲିନି କି ବମ୍ବେରେ ଯେ ସବୁ ଜଣାଶୁଣା ଲୋକ ଥିଲେ ତାଙ୍କୁ ଦେଖା କଲିନି । କଷ୍ଟମସ୍ ଅଫିସରୁ ମୋ ଟ୍ରଙ୍କ୍ ସୁଟ୍‌କେଶ୍ ଧରି ସିଧା ଷ୍ଟେସନକୁ ବାଟ ଧରିଲି । ସତେ ଯେମିତି ଟ୍ରେନ୍ ସାଙ୍ଗେ ସାଙ୍ଗେ ପଳେଇ ଯାଉଚି ! ସାଙ୍ଗେ ସାଙ୍ଗେ ନ ଗଲେ ବି ଗାଡ଼ି ଛାଡ଼ିବାକୁ ବେଶୀ ଡେରି ନ ଥାଏ । ମୁଁ ସେଥିରେ ଯେତେବେଳେ ନିର୍ଦ୍ଦିଷ୍ଟ ଜାଗାଟା ଦଖଲ କରିନେଇ ମୋର ଜିନିଷପତ୍ର ସଜାଡ଼ି ରଖିଲି ମନ ଟିକିଏ ଶାନ୍ତ ହୋଇଗଲା । ଟ୍ରେନ୍‌ରେ ଗୋଟିଏ ଝରକା ପାଖରେ ବସି ପଶ୍ଚିମ ଦିଗକୁ ଟିକିଏ ଚାହିଁଲି । କୁଆଡ଼େ ରହିଲାଣି ବିଲାତ, ମୋର ପ୍ରିୟ ବିଲାତ ! ଛାତି ଭିତରୁ ଦଲକାଏ ଉଷ୍ଣ ନିଶ୍ୱାସ ବାହାରି ପଡ଼ିଲା ।

ଟ୍ରେନ୍ ଛାଡ଼ିବାକୁ ଅଳ୍ପ ବିଳମ୍ବ ଥାଏ । ଜାହାଜ ବନ୍ଦରରେ ଲାଗିବା ସମୟ ଓ ଟ୍ରେନ୍ ଛାଡ଼ିବା ସମୟର ଯେମିତି ଯୋଗସୂତ୍ର ରଖାଯାଇଚି । ରେଲ ଷ୍ଟେସନରେ ଯାହା ମିଳିଲା କିଛି ଖାଇଲି । କେତେ ଖଣ୍ଡ ପାନ କିଣି ତାକୁ ସାଥୀ ରୂପେ ସାଙ୍ଗରେ ଧରିଲି । ଟ୍ରେନ୍ ଷ୍ଟେସନ ଛାଡ଼ିବାର କେତେ ସମୟ ପର୍ଯ୍ୟନ୍ତ ସେହି ଝରକା ପାଖରେ ବସିଥାଏ । ପଶ୍ଚିମ ଆଡ଼କୁ ଟିକିଏ ଟିକିଏ ଚାହୁଁଥାଏ । ମନ ବିକଳ, ଅସ୍ଥିର । କେତେବେଳେ ହାଓଡ଼ା ଷ୍ଟେସନରେ ଗାଡ଼ି ପହଞ୍ଚିବ । କିନ୍ତୁ ସେଇଟା ଏତେ ଶୀଘ୍ର ସମ୍ଭବ ହୁଅନ୍ତା କିମିତି ! ବମ୍ବେ-ହାଓଡ଼ା ଏକ୍‌ସପ୍ରେସ୍ ଖୁବ୍ ଜୋର୍‌ରେ ଗତି କରୁଥିଲେ ବି ତାକୁ ସୁଦୀର୍ଘ ପଥ ଅତିକ୍ରମ କରିବାକୁ ପଡ଼ିବ । ଭାବିଲି ଶୋଇ ପଡ଼ିଲେ କେତେ ସମୟ କଟିଯିବ । କିନ୍ତୁ ଆଖିକୁ ନିଦ ଆସୁନି । କୁଆଡ଼େ ଗଲା ଆମ କଟକର ପଖାଳଖିଆ ଗହମ ନିଦ ? କେତେ କାଳ ପାଇଁ ବିଲାତ ଯାଇଥିଲି ବୋଲି ମୋର ସବୁ ପ୍ରିୟ ଜିନିଷ ଗୁଡ଼ାକ କଣ ମୋତେ ଭୁଲି ଗଲେ ? ନା, ଭୁଲିବେ କିମିତି ! ଅତିଶୀଘ୍ର ସେମାନଙ୍କ ସହିତ ବନ୍ଧୁତା ପାତିବି । ଏମିତି ନାନା କଥା ଭାବୁଥାଏ ।

ହାଓଡ଼ା ଷ୍ଟେସନରେ ମୋର ଜ୍ୱାଇଁ ଶ୍ରୀମାନ୍ ରଘୁନାଥ ତାଙ୍କ ବନ୍ଧୁମାନଙ୍କ ଗହଣରେ ମୋତେ ଅପେକ୍ଷା କରିଥିଲେ । ତାଙ୍କୁ ଦେଖିବା-କ୍ଷଣି ମନଟା ଆନନ୍ଦରେ ଭରପୂର ହୋଇଗଲା । ସାଙ୍ଗେ ସାଙ୍ଗେ ଘରର ସବୁ ଖବର, ପିଲାମାନଙ୍କର କୁଶଳ ସମ୍ବାଦ ବୁଝିନେଲି । ସେହି ଦିନ

ସନ୍ଧ୍ୟାରେ ହାଓ୍ବଡ଼ା-ପୁରୀ ଏକ୍ସପ୍ରେସରେ ମୋର କଟକ ଯିବାର କଥା । କିନ୍ତୁ ଦୁଃଖର କଥା, ଶୁଣିଲି ବନ୍ୟା ଯୋଗେ କେଉଁଠି ରେଲରାସ୍ତା ଭାଙ୍ଗିଯାଇଥାଏ । ତେଣୁ କଟକକୁ ଟ୍ରେନ ଚଳାଚଳ ବନ୍ଦ । କି ଆଶ୍ଚର୍ଯ୍ୟ । ଘରର ଏତେ ପାଖକୁ ଆସି ବି ସେଠାରେ ସହଜରେ ପହଞ୍ଚି ହେଉନି । ରେଲ କର୍ମଚାରୀମାନେ କହିଲେ, ରାୟପୁର ବାଟେ ଯାଇ ହେବ । କିନ୍ତୁ ଅଧିକ ବିଳମ୍ବ ହୋଇପାରେ; କିନ୍ତୁ ଟ୍ରେନରେ ଯାଇ କଟକରେ ପହଞ୍ଚିବାରେ କୌଣସି ଅସୁବିଧା ନାହିଁ । କେଜାଣି କାହିଁକି ଆଉ ପଛକୁ ଫେରିବାକୁ ମନ ହେଲାନି । କଲିକତାରୁ ପ୍ଲେନ୍‌ରେ ଭୁବନେଶ୍ୱର ପର୍ଯ୍ୟନ୍ତ ଯାଇ ସେଠାରୁ କଟକ ଯିବାକୁ ମନସ୍ଥ କଲି । ରେଲଷ୍ଟେସନରେ ସବୁ ଜିନିଷପତ୍ର ରଖି ଖଣ୍ଡିଏ ସୁଟ୍ କେଶରେ କେତେଖଣ୍ଡ ବେଶ୍ ପୋଷାକ, ପିଲାଙ୍କ ପାଇଁ ଆଣିଥିବା ଜାମାକୁର୍ତ୍ତା ଆଦି ଧରି ରଘୁବାବୁଙ୍କ ସାଙ୍ଗେ ଯାଦବପୁର ଇଞ୍ଜିନିୟରିଂ କଲେଜ ହଷ୍ଟେଲକୁ ଗଲି । ସେ ଦିନ ରାତିଟା ନାନା ଗପସପରେ କଟିଲା । ତହିଁ ଆରଦିନ ସକାଳୁ ବାହାରିଲି ଉଡ଼ାଜାହାଜ ଅଫିସକୁ ଟିକେଟ୍ କରିବାକୁ । କିନ୍ତୁ ଟ୍ରେନ୍ ଯାତ୍ରା ଅପେକ୍ଷା ପ୍ଲେନ୍ ଯାତ୍ରା ଆହୁରି ଅସାଧ୍ୟ, ଅସମ୍ଭବ ମନେ ହେଲା । ବହୁତ ଲୋକ ଅପେକ୍ଷାରେ ଥାନ୍ତି । ତେଣୁ କେବେ ମୋର ଭାଗ ପଡ଼ିବ ତାର ଠିକ୍ ନାହିଁ । ଯାହାହେଉ ଟିକେଟ୍‌ଟିଏ କିଣି ଘରକୁ ଗୋଟିଏ ଟେଲିଗ୍ରାମ କଲି, ମୁଁ କଲିକତା ଆସି-ଯାଇଛି, ଖୁବ୍ ଶୀଘ୍ର କଟକରେ ପହଞ୍ଚିଯିବି । ଏଥିରେ ଯାହା ଟିକିଏ ସାନ୍ତ୍ୱନା ମିଳିଲା ସେତିକ ହାସଲ କରି ପୁଣି ହଷ୍ଟେଲକୁ ଫେରିଲି ।

କି ଦୁର୍ବୁଦ୍ଧି ! ରାୟପୁର ବାଟେ ଯାଇଥିଲେ ଏତେବେଳକୁ କଟକରେ ପହଞ୍ଚି ଯାଇଥାନ୍ତି ଏବଂ ବିଲାତରୁ ଯେଉଁ ଦ୍ରବ୍ୟ ଜିନିଷଗୁଡ଼ାକ ଟ୍ରଙ୍କ-ବାକ୍ସରେ ପୂରେଇ ଆଣିଛି ତାକୁ ସବୁ ସାଙ୍ଗରେ ନେଇ ପାରିଥାନ୍ତି । କିନ୍ତୁ ପ୍ଲେନରେ ଯିବାକୁ ହେଲେ ସେସବୁ ସାଥିରେ ନେଇଯାଇ ହେବନି । ସେହି ଯୋଗେ ଯେଥିରୁ ଅଧିକାଂଶ ଷ୍ଟେସନରେ ଯେଉଁଠି ଯାତ୍ରୀମାନେ ତାଙ୍କର ଜିନିଷପତ୍ର ଜମା ରଖନ୍ତି ସେହି **Left luggage** ଦପ୍ତରରେ ଛାଡ଼ି ଆସିଲି । ମାତ୍ର ପ୍ଲେନ୍‌ରେ ଯିବାର ଏତେ ଅସୁବିଧା ! ତେବେ ନିତି ଉଡ଼ାଜାହାଜ ଅଫିସକୁ ଯାଏ ସେଠାରେ ପରିସ୍ଥିତିଟା ବୁଝେ ଘରକୁ ଗୋଟିଏ ଟେଲିଗ୍ରାମ କରି ହଷ୍ଟେଲକୁ

